# ଅମୃତ ସ୍ୱାକ୍ଷର

(ଜୀବନ-ସଂଗ୍ରାମ ଓ ସ୍ମୃତି-ଅନୁଭୂତି)

ଦୁର୍ଗା ଦାସ

ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

Digitized by srujanika@gmail.com

# ଅମୃତ ସାକ୍ଷର

ଜୀବନ-ସଂଗ୍ରାମ ଓ ସ୍ମୃତି-ଅନୁଭୂତି

ଲେଖକ : ଦୁର୍ଗା ଦାସ
(ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ ଓ ପୂର୍ବତନ ବିଧାୟକ)
ତଲାଡ଼ି, ଭୋଗରାଇ, ବାଲେଶ୍ୱର

ପ୍ରକାଶକ : କାଳୀପଦ ପଣ୍ଡା
ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ଶ୍ରୀକଣ୍ଠପୁର, ବାଲେଶ୍ୱର
ମୋ: ୯୪୩୭୦୮୯୨୪୧

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ପ୍ରଥମ ସଂସ୍କରଣ- ୧୯୮୭
ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ-୨୦୧୨

ମୁଦ୍ରଣ : ଗୁରୁପ୍ରସନ୍ନ ପ୍ରେସ୍, କଟକ

ମୂଲ୍ୟ : ଟ.୨୫୦/-

**AMRUTA SWAKHYARA**

(Memoirs : My life and my struggle)

**by: Durga Das**
Taladi, Bhograi, Balasore

**Publisher : Kalipada Panda**
**SUBARNASHREE PRAKASHINI**
Shreekanthpur, Balasore-1
Mob : 9437089241

**Cover** : Bijay Ku. Pradhan

**First Edition** : 1987
**Second Revised Edition** : 2012

**Printed at** : Guruprasanna Press, Cuttack

**Price** : Rs. 250/-

Digitized by srujanika@gmail.com



## ଉତ୍ସର୍ଗ

ଯେଉଁ ଋଷିପ୍ରତିମ ମହାପୁରୁଷଙ୍କର ଅର୍ଥ, ସାମର୍ଥ୍ୟ, ଅଭୟାଶ୍ରୟ, ସ୍ନେହ-ସାହଚର୍ଯ୍ୟ ଓ ଆଦର୍ଶ ଚରିତ୍ରବତ୍ତା ଆଦି ଶୋଷଣ କରି ଆମେ ଦୁଇଭାଇ କିଞ୍ଚିତ୍ ପରିମାଣରେ ଆଜିର ଜନସମାଜରେ ମୁଣ୍ଡଟେକି ଛିଡ଼ା ହୋଇପାରିଛୁ; ଯାହାଙ୍କର ଅସୀମ ତ୍ୟାଗ, ଅକପଟ ସେବା ଓ ଯତ୍ନ, ଗଭୀର ସ୍ୱଦେଶ ପ୍ରୀତି ଓ ଦେଶାତ୍ମବୋଧ, ବିଚକ୍ଷଣ ରାଜନୀତିକ ଚିନ୍ତାଧାରା ଓ କର୍ମନିଷ୍ଠା ସବୁଦିନେ ଆମକୁ ପଥପ୍ରଦର୍ଶନ କରିଆସିଛି; ସେହି ଆଧ୍ୟାତ୍ମବାଦୀ, ଚିରକୁମାର ମୋର ପରମାରାଧ୍ୟ ପିତୃପ୍ରତିମ ୰ତୁଳସୀଦାସ ଘୋଷ (ମାମା)ଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ମୋର ତାପିତ ଅନ୍ତରର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ରୂପେ ଏହି ପୁସ୍ତକଟି ଅର୍ପଣ କରୁଛି ।

-ବିନୀତ ଲେଖକ

Digitized by srujanika@gmail.com



# ଅଶ୍ରୁ-ତର୍ପଣ

ଉତ୍କଳକେଶରୀ ସ୍ୱର୍ଗତ. ହରେକୃଷ୍ଣ ମହତାବଙ୍କ ଅମର ସ୍ମୃତି ଉଦ୍ଦେଶ୍ୟରେ...

ହେ ମହାତ୍ମନ! ହେ ଭୀଷ୍ମ ପିତାମହ, ବିଂଶ ଶତାବ୍ଦୀର ଇତିହାସ ପୁରୁଷ, ଉତ୍କଳ କେଶରୀ; ହେ କର୍ମଯୋଗୀ ! ରାଜନୀତି ବିଶାରଦ, ସ୍ୱତନ୍ତ୍ରତା ସଂଗ୍ରାମ ସେନାନୀ; ହେ ନବଉତ୍କଳର ବିଶ୍ୱକର୍ମା ! ତୁମକୁ ଛାଡ଼ି ଓଡ଼ିଆ ଜାତି ନିଜକୁ କଳ୍ପନା କରି ପାରେନା । ଏ ମାଟିର କେହି, ବା କିଛି ସମସ୍ୟା ତୁମକୁ ଟପି ଯାଇ ପାରିନାହିଁ । ତୁମର ପର୍ବତ ପ୍ରମାଣ ବ୍ୟକ୍ତିତ୍ୱ, ଅଦମନୀୟ ସାହସ, ଶୌର୍ଯ୍ୟ, ବୀର୍ଯ୍ୟ, ବୁଦ୍ଧି ଓ କୌଶଳ ସମସ୍ତଙ୍କୁ ମୁଗ୍ଧ ଓ ଅବନତ କରିଛି । ଅତନ୍ଦ୍ର ପ୍ରହରୀ ରୂପେ ଓଡ଼ିଆ ଜାତିକୁ ତୁମେ ସଦା ଆବୋରି ଜଗି ରହିଥିଲ । ତୁମେ ଅପରାଜିତ । ଓଡ଼ିଶାର କୋଣେକୋଣେ, ବଣ ପର୍ବତ ଅଭ୍ୟନ୍ତରରେ ପୁରପଲ୍ଲୀ ସହରରେ ବାସ କରି ରହୁଥିବା କୋଟିପ୍ରାଣରେ ବନ୍ଧୁ ଓ ଅଭିଭାବକ ରୂପେ ତୁମେ ବିରାଜ କରୁଥିଲ । ଆପଣାର ସୁଦୀର୍ଘ କର୍ମମୟ ଜୀବନର ପ୍ରତିଟି ମୁହୂର୍ତ୍ତ ପ୍ରତି କ୍ଷେତ୍ରରେ ନିଜକୁ ଦୃଢ଼ ବଜ୍ରକଣ୍ଠରେ ପ୍ରକାଶ କରିବାର ପ୍ରୟାସ କରିଛ ତୁମେ । ତୁମରି ଜୀବନ ତପସ୍ୟା, ଆଜି ଏ ଜାତିର ଏକମାତ୍ର ଜୀବନପାଥେୟ । ମାନବ ସମାଜକୁ ଦୁର୍ନୀତି, କୁସଂସ୍କାର, ଭୀତି, ଅନ୍ୟାୟ, ଅତ୍ୟାଚାରରୁ ମୁକ୍ତ ରଖିବାପାଇଁ ତୁମର ଦୃଢ଼ ଲେଖନୀ ନିସୃତ 'ଗାଁ ମଜଲିସ'କୁ ଏ ଜାତି କେବେ ବିସ୍ମରି ଯିବ ନାହିଁ । ତୁମେ ଥିଲ ଏକ ବିବାଦୀୟ ବ୍ୟକ୍ତିତ୍ୱ ସତ, କିନ୍ତୁ ରାଜ୍ୟର ସବୁ ବିଷୟ ଲୋକ ମନକୁ ପ୍ରଭାବିତ କରିବା ପୂର୍ବରୁ ତୁମର ଗାଁ ମଜଲିସ୍‌ରେ ତୁମେ ସର୍ବପ୍ରଥମେ ଆଲୋଚନା କରୁଥିଲ । ଜୀବନର ସାୟାହ୍ନରେ ମଧ୍ୟ ବାର୍ଦ୍ଧକ୍ୟପୀଡ଼ିତ ସହସ୍ର ସହସ୍ର ଅସହାୟ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ସକାଶେ ତୁମର ଦେଶବ୍ୟାପୀ ସଂଗଠନ, ସଂଗ୍ରାମ ଓ ଅକୃତ୍ରିମ ଦରଦଭରା ଅବଦାନ ଚିର ସ୍ମରଣରେ ରହିବ । ଯୁଆଡ଼େ ଚାହିଁଲେ, ତୁମର ବଳିଷ୍ଠ, ଲମ୍ୱମାନ ହସ୍ତର ସ୍ପର୍ଶ ଓ ଚିହ୍ନ ଜଳଜଳ ହୋଇ ଦିଶୁଛି । ଶତାବ୍ଦୀ ବ୍ୟାପି ଓଡ଼ିଶାର ଇତିହାସରେ ତୁମର ପଦଚିହ୍ନ ସବୁଠାରେ ସବୁ କ୍ଷେତ୍ରରେ ସ୍ପଷ୍ଟ ବାରି ହୋଇପଡ଼େ ।

Digitized by srujanika@gmail.com

ଓଡ଼ିଶାର ଏଭଳି କିଛି ବିଷୟ ନାହିଁ, ଘଟଣା ନାହିଁ, ଯେଉଁଠାରେ ତୁମର ଚିହ୍ନ ବା ସ୍ପର୍ଶ ନାହିଁ । ତୁମର ଆତ୍ମା ସହ ଓଡ଼ିଶାର ଆତ୍ମା ମିଶି ଏକାକାର ହୋଇଯାଇଥିଲା ।

ସ୍ୱଦେଶଧର୍ମ ପ୍ରଚାରରେ ଆସି, ଅବଜ୍ଞାତ ଭୋଗରାଇକୁ ତୁମେ ସର୍ବପ୍ରଥମେ ଜନ ସମକ୍ଷରେ ଟୋଳିଧରି ପରିଚିତ କରାଇବାର ପ୍ରୟାସ କରିଛ । ସରଳ ନିଷ୍କପଟ, ଅନାବିଳ ଭୋଗରାଇର ଧୂଳିମାଟିକୁ ତୁମର ଉଦ୍‌ବେଳିତ ଯୌବନର ଲୀଳାଭୂମିର ଗୌରବ ଦାନ କରି ତାକୁ ଧନ୍ୟ କରିଛ । ସ୍ୱଦେଶ ପ୍ରେମର ଆଲୋକବର୍ତ୍ତିକା ଧରି ତାର ତମସାଛନ୍ନ ହୃଦୟକୁ ଉଜ୍ଜ୍ୱଳାଇ, ତୁମେ ତାକୁ ଜାଗ୍ରତ କରିଛ । ଆଜି ବି ତୁମର ସେ ଦର୍ପିତ ପଦଧ୍ୱନି ଭୋଗରାଇର ଗଗନ ପବନ, ସହସ୍ର ପ୍ରାଣରେ ଅନୁରଣିତ ହୋଇ ସାହସ, ଭରସା ସଂଚାର କରେ । ଭୋଗରାଇର ନନ୍ଦ, ଯଶୋଦା, ସୁଦାମ, ସୁବଳ ଆଦି ପାଖରେ ତୁମେ ନ ଥାଇ ମଧ୍ୟ ଅଛ, ରହିଛ, ରହିଥିବ, କାଳରୁ କାଳାତୀତ ଯାଏ ।

ତୁମେ ବଞ୍ଚି ଥାଉଁଥାଉଁ, ଏ ହତଭାଗ୍ୟ ଅଭାଜନ 'ଅମୃତ ସ୍ୱାକ୍ଷର' ତୁମର ଅଭୟ ପାଦବନ୍ଦନା କରି ପାରିନାହିଁ । ମନେମନେ ତୁମକୁ ସ୍ମରଣ କରି, ତୁମକୁ ପ୍ରଣିପାତ ଜଣାଇ ସେ ତାର ଶୁଭଯାତ୍ରା ଆରମ୍ଭ କରିବାକୁ ଯାଉଛି ।

ତାର ଜୟଯାତ୍ରା ପଥରେ ତୁମର ଆଶିଷବାରି ସ୍ୱର୍ଗରୁ ଶତଧାରାରେ ତୁମେ ଢାଳିଦେବ, ଏହି କାମନା ।

ବିନୀତ ଲେଖକ

Digitized by srujanika@gmail.com



# ଅଭିମତ

**ପ୍ରଫେସର ଡ.ମନ୍ମଥ ନାଥ ଦାସ**
**ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ**
**ପୂର୍ବତନ ସାଂସଦ, ରାଜ୍ୟସଭା**
**୧୭ ସତ୍ୟନଗର, ଭୁବନେଶ୍ୱର**

'ଭୋଗରାଇ'ର ଇତିକଥା ତଥା ସଂଗ୍ରାମଯୁଗରେ ଏହି ଅଞ୍ଚଳର ଭୂମିକା ଉପରେ ଆଲୋକପାତ କରିବାପାଇଁ ଶ୍ରୀଯୁକ୍ତ ଦୁର୍ଗାଦାସଙ୍କ ପ୍ରୟାସ ପ୍ରଶଂସନୀୟ । ଏହି ପ୍ରଥମ ଉଦ୍ୟମ ଭବିଷ୍ୟତ ପ୍ରତି ଏକ ପ୍ରେରଣା ହୋଇ ରହିବ, ଏଥିରେ ସନ୍ଦେହ ନାହିଁ ।

ଲେଖକ ମୋର ସହପାଠୀ । ଜୀବନର ପ୍ରଥମ ଅବସ୍ଥାରୁ ମୁଁ ତାଙ୍କୁ ଜଣେ ନିର୍ଭୀକ ଓ ସ୍ୱାଧୀନଚେତା ବ୍ୟକ୍ତିରୂପେ ଦେଖିଆସିଛି । ବାଲେଶ୍ୱର ଜିଲ୍ଲାସ୍କୁଲରେ ଅଧ୍ୟୟନ ପରେପରେ ୧୯୪୨ ମସିହାର ଯୁଗାନ୍ତକାରୀ 'ଭାରତଛାଡ଼ ଆନ୍ଦୋଳନ'ରେ ଯୋଗଦେଇ ସେହି ଅଳ୍ପ ବୟସରେ ସେ ନିଜ ଦେଶାତ୍ମବୋଧର ପରିଚୟ ଦେଇଥିଲେ । ଆଜୀବନ ଜଣେ ନିଷ୍ଠାପର କଂଗ୍ରେସ କର୍ମୀରୂପେ ତଥା ଜଣେ ନିଃସ୍ୱାର୍ଥପର ଦେଶପ୍ରାଣ ବ୍ୟକ୍ତି ଭାବରେ ନିଜ ଜୀବନକୁ ସେ ଜନସେବା ବ୍ରତରେ ଉତ୍ସର୍ଗ କରି ପାରିଛନ୍ତି । ଏହାହିଁ ତାଙ୍କ ସାର୍ଥକ ଜୀବନର ପରିଚୟ ।

ଏହି ପୁସ୍ତକ ତାଙ୍କର ଅନ୍ୟତମ କୀର୍ତ୍ତିରୂପେ ମହାର୍ଘ ହୋଇ ରହିବ । ଦେଶବାସୀ ଆଗ୍ରହ ଓ ଆଦର ସହକାରେ ତାଙ୍କର ଏହି ଲେଖା ପାଠ କରିବେ, ଏହା ଆମର ଆଶା ।

**ମନ୍ମଥ ନାଥ ଦାସ**
**୨୪। ୫। ୮୬**

*Digitized by srujanika@gmail.com*



# ଅଭିମତ

**ଶ୍ରୀ ପ୍ୟାରୀମୋହନ ଦାସ**
**ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ**
**ପୂର୍ବତନ ବିଧାୟକ (ଭୋଗରାଇ)**

'ଅମୃତ ସ୍ୱାକ୍ଷର' ପୁସ୍ତକର ପାଣ୍ଡୁଲିପି ପଢ଼ିଲି । ଦୁର୍ଗା ଯେଉଁ ଭାବରେ ଓ ଯେଉଁ ଭାଷାରେ ସ୍ୱାଧୀନତା ସଂଗ୍ରାମର ଇତିହାସ ଲେଖିଛି ତାହା ଅତି ମର୍ମସ୍ପର୍ଶୀ ଏବଂ ଜୀବନ୍ତ ହୋଇପାରିଛି । ଏସବୁ ଆମର ଏକାନ୍ତ ହୃଦୟର ଏବଂ ଅଂଗରେ ଲିଭାଇବା କଥା । ରଚନାଟି ସଂପର୍କରେ ମୋର ଅଭିମତ ଲେଖିବାକୁ ଗଲାବେଳେ, ଆଖିରୁ ଲୁହ ବୋହି ଯାଉଛି । ଅମୃତ ସ୍ୱାକ୍ଷର ବହିଟି ଆମ ସମସ୍ତଙ୍କର ପାଠ୍ୟ ପୁସ୍ତକ ହେଉ, ଭବିଷ୍ୟତ ବଂଶଧରମାନଙ୍କର ପଥ ପ୍ରଦର୍ଶକ ହେଉ ଏବଂ ଗ୍ରନ୍ଥକାର ଦୀର୍ଘଜୀବୀ ହେଉ, ମୋର କାମନା ।

ଭାଇ ପ୍ୟାରୀମୋହନ
ଗୋପାଳଗାଁ, ବାଲେଶ୍ୱର
ତା ୧୯। ୩। ୮୬

Digitized by srujanika@gmail.com



# ଅଭିମତ

**ଶ୍ରୀ ଶଶୀକାନ୍ତ ଭଞ୍ଜ**
**ବିଶିଷ୍ଟ ସମାଜସେବୀ ଏବଂ ଆଇନଜୀବୀ**
**ପୂର୍ବତନ ବିଧାୟକ (ଭୋଗରାଇ)**

ଇତିହାସ ଏବଂ ବ୍ୟକ୍ତି ମଧ୍ୟରୁ ବ୍ୟକ୍ତି ମହତ୍ତର । ବ୍ୟକ୍ତିର କାର୍ଯ୍ୟକଳାପ ଇତିହାସର ଉପାଦାନ । ଏହି ପ୍ରକାର ଜଣେ ବ୍ୟକ୍ତି, ଏହି କ୍ଷୁଦ୍ର ପୁସ୍ତିକା 'ଅମୃତ ସ୍ୱାକ୍ଷର'ର ରଚୟିତା ।

ଭୋଗରାଇ ବାଲେଶ୍ୱର ଜିଲ୍ଲାର ଏକ ଅଜ୍ଞାତ ଅଞ୍ଚଳ । ତା'ର ଇତିହାସ ଲେଖିବା ପାଇଁ ଲେଖକ ଯେଉଁ ଉଦ୍ୟମ କରିଛନ୍ତି, ତାହା ସର୍ବଦା ପ୍ରଶଂସନୀୟ । ଶିକ୍ଷା-ଦୀକ୍ଷା, ମାନ-ସମ୍ମାନ, ଧନ-ଦୌଲତ ବ୍ୟକ୍ତି ପରାକାଷ୍ଠାର ମାନଦଣ୍ଡ ନୁହେଁ । ଲେଖକର ଉଦ୍ୟମକୁ ଆଞ୍ଚଳିକ ବୋଲି କେହି ଆଙ୍ଗୁଳି ନିର୍ଦ୍ଦେଶ କରିବା ସମିଚୀନ ହେବନାହିଁ । ପ୍ରତିବେଶୀ ଶିକ୍ଷା ସଭ୍ୟତାରେ ଦୃପ୍ତ ବଙ୍ଗାଳୀ ଅଞ୍ଚଳର ପ୍ରଭାବକୁ ପ୍ରତିହତ କରି ନିଜସ୍ୱ ସାଧନା ଏବଂ କର୍ମ ଯୋଜନା ବଳରେ ଯେଉଁମାନେ ଭୋଗରାଇ ଅଞ୍ଚଳର ଆଞ୍ଚଳିକ ମହତ୍ତ୍ୱକୁ ଜାତୀୟ ସ୍ରୋତାଭିମୁଖୀ କରିଯାଇଛନ୍ତି, ସେମାନଙ୍କର ସାମାନ୍ୟ ପରିଚୟ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏଥିରେ ଲିପିବଦ୍ଧ କରାଯାଇଛି । ଭଗବାନ କରନ୍ତୁ, ଲେଖକ ଆହୁରି ଦୀର୍ଘ ନିରାମୟ ଜୀବନ ପାଆନ୍ତୁ ଏବଂ ମାତୃଭାଷାରେ ତାଙ୍କର ସମସ୍ତ ଅଭିଜ୍ଞତାକୁ ଜନସମାଜ ସମ୍ମୁଖରେ ଉତ୍ତୋଳିତ କରି ଧରନ୍ତୁ ।

**ଶଶୀକାନ୍ତ ଭଞ୍ଜ**
**ସହଦେବଖୁଣ୍ଟା, ବାଲେଶ୍ୱର**
**୧୦। ୩। ୮୬**

*Digitized by srujanika@gmail.com*

# ଅଭିମତ

## ଶ୍ରୀ ସର୍ବେଶ୍ୱର ପଣ୍ଡା

**ଖ୍ୟାତନାମା ନାଟ୍ୟକାର ଓ ଶିଶୁ ସାହିତ୍ୟିକ**

ମହାଭାରତର ସ୍ୱାଧୀନତାସଂଗ୍ରାମରେ ଭୋଗରାଇ ଥାନାର ଅଧିବାସୀମାନେ ସ୍ୱତସ୍ଫୂର୍ତ୍ତ ଭାବରେ ଉଲ୍ଲେଖଯୋଗ୍ୟ ଭୂମିକା ନେଇ ଜନଚିତ୍ତରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲେ, ତାହାରି ରସ-ଘନ ରୂପ, ଗ୍ରନ୍ଥକାରର ଏହି ପ୍ରାମାଣ୍ୟ 'ଅମୃତ ସ୍ୱାକ୍ଷର' ।

ଦାରିଦ୍ରକ୍ଲିଷ୍ଟ ଭାରତର ନିଃସମ୍ବଳ ମଣିଷର ସ୍ୱାଧୀନତାସଂଗ୍ରାମକୁ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ଜାତିର ଜନକ ଏବଂ ସ୍ୱାଧୀନତାସଂଗ୍ରାମର ମହାନାୟକ ମହାତ୍ମାଗାନ୍ଧି ଲୋକଚକ୍ଷୁର ଅଗୋଚରରେ ଯେଉଁ କୂଟନୀତି ବିଷାରଦର ଭୂମିକା ଗ୍ରହଣ କରିଥିଲେ, ପୁସ୍ତକଟିରେ ଗାନ୍ଧିଜୀଙ୍କର ଜୀବନକଥା ଆଲୋଚନା ପ୍ରାକ୍‌କାଳରେ ଏହି ଗୁହ୍ୟ ତଥ୍ୟଟି ଉପରେ ଆଲୋକପାତ କରି ତାଙ୍କର ଲେଖାର ଯଥେଷ୍ଟ ରାଜନୈତିକ ପ୍ରଜ୍ଞାର ପରିଚୟ ଦେଇଛନ୍ତି ଲେଖକ ।

କାଳୋପଯୋଗୀ ଚିନ୍ତାଧାରାରେ ସମୃଦ୍ଧ 'ଅମୃତ ସ୍ୱାକ୍ଷର' ପୁସ୍ତକ ଖଣ୍ଡିକରେ ଲେଖକ ସ୍ୱାଧୀନତାସଂଗ୍ରାମୀମାନଙ୍କର ଚରିତ୍ରର ମହତ୍ ଗୁଣାବଳୀ ଉପରେ ସୁନ୍ଦର ଭାବରେ ଗୁରୁତ୍ୱ ଦେଇ ରେଖାପାତ କରିଛନ୍ତି । ସେ ଦେଖାଇଛନ୍ତି, ସ୍ୱାଧୀନତାସଂଗ୍ରାମୀମାନେ ଅଜସ୍ର ନିନ୍ଦା, ଅପବାଦ, ଅତ୍ୟାଚାରକୁ ମୁଣ୍ଡପାତି ସହିନେଇ, ତ୍ୟାଗ ଦ୍ୱାରା, ଦୁଃଖ ଦ୍ୱାରା, ପ୍ରେମ ଦ୍ୱାରା, ଧୈର୍ଯ୍ୟ ଦ୍ୱାରା ଦେଶର ସବୁ ଶ୍ରେଣୀ ମଣିଷର ଦୁଃଖ କଷ୍ଟକୁ ନିଜର ବୋଲି ଧରି ନେଇଥିଲେ ।

କହିବା ବାହୁଲ୍ୟ, ଲେଖକ ଦୁର୍ଗା ଦାସବାବୁ ବେଶ୍ କୃତିତ୍ୱ ଦେଖାଇଛନ୍ତି, ତାଙ୍କର 'ଅମୃତ ସ୍ୱାକ୍ଷର' ପୁସ୍ତକର ଅମୃତ ବର୍ଣ୍ଣନାରେ ସୁବିନ୍ୟସ୍ତ କରି, ପଦଲାଳିତ୍ୟ

Digitized by srujanika@gmail.com

ଅକ୍ଷୁଣ୍ଣ ରଖି, ପୁସ୍ତକର ଭାଷା ପ୍ରାଞ୍ଜଳ ଓ ଅମୃତବର୍ଷୀ, ବର୍ଣ୍ଣନାଭଙ୍ଗୀ ହୃଦୟଗ୍ରାହୀ, ରଚନା କୌଶଳ ଆଧୁନିକ ମଣିଷର ରଚି ଓ ଚିନ୍ତାସମ୍ମତ ବୋଲି ସୁଖପାଠ୍ୟ ।

ପ୍ରାକ୍-ସ୍ୱାଧୀନତା ଯୁଗର ସ୍ୱାଧୀନତାସଂଗ୍ରାମୀମାନଙ୍କର ନିରସ୍ତ୍ର ବୈପ୍ଲବିକ କାର୍ଯ୍ୟକଳାପ ତଥା ଭୋଗରାଇର ସର୍ବସ୍ତରର ଇତିହାସକୁ ସର୍ବପ୍ରଥମେ ସର୍ବସ୍ତରର ମଣିଷର ଆଖି ଆଗରେ ଟୋଳି ଧରିବାର ଗୌରବ ଅର୍ଜନ କରି ମଧୁସଂଳାପୀ ଗ୍ରନ୍ଥକାର ଦୁର୍ଗା ଦାସବାବୁ ଭୋଗରାଇର ଜନଗଣ ମନର ମଣିକୋଠାରେ ଚିରଜାଗ୍ରତ ରହିବେ, ଏହା ସନ୍ଦେହାତୀତ । ପୁସ୍ତକଟିର ବହୁଳ ପ୍ରଚାର କାମନା କରେ ।

ସର୍ବେଶ୍ୱର ପଣ୍ଡା
ବିଷ୍ଣୁପୁର, ରାମନଗର
ମେଦିନୀପୁର, ପଶ୍ଚିମବଙ୍ଗ
୫। ୨। ୮୬

Digitized by srujanika@gmail.com

# ଅଭିମତ

## ଅଧ୍ୟାପକ ବିପିନ ବିହାରୀ ବିଶ୍ୱାଳ

**ସମ୍ପାଦକ, ଦୀନକୃଷ୍ଣ ସ୍ମୃତି ପରିଷଦ**

ଉପାନ୍ତପଲ୍ଲୀ 'ଭୋଗରାଇ' ମାଟିର ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ, ପୂର୍ବତନ ବିଧାୟକ, ଅନ୍ୟତମ ଗାନ୍ଧିବାଦୀ କଂଗ୍ରେସକର୍ମୀ ଶ୍ରୀ ଦୁର୍ଗା ଦାସ ତାଙ୍କ ଲିଖିତ 'ଅମୃତ ସ୍ୱାକ୍ଷର' ପାଣ୍ଡୁଲିପି ଖଣ୍ଡିକ ସେଦିନ ଅନର୍ଗଳ ଭାବରେ ଭାବ ତନ୍ମୟ ହୋଇ ପଢ଼ି ଚାଲିଥାଆନ୍ତି ଆମରି ଘରେ- ପ୍ରାୟ ତିନିଘଣ୍ଟା ଲାଗିଥିବ । ଆମେ ଲକ୍ଷ୍ୟ କରୁଥିଲୁ, ସତେଅବା ତା' ଭିତରେ ସେ ଏକାବେଳେ ମଜ୍ଜି, ହଜି ଯାଇଛନ୍ତି- ପ୍ରାଣରେ ତାଙ୍କର ଆନନ୍ଦ, ନିରାନନ୍ଦର ଜୁଆର- ଉଚ୍ଚାଟ ଓ ସ୍ପନ୍ଦନ- କୌତୁହଳ ଏବଂ ଆବେଗ-ସତେ ଅବା ୬୬ ବର୍ଷର ବର୍ଷିୟାନ ଆଉ ବୃଦ୍ଧ ନୁହନ୍ତି, ଚିରନ୍ତନ ତାରୁଣ୍ୟର ପ୍ରବାହ ।

ସଂଗ୍ରାମୀମାନଙ୍କ ଭୂମିକା ପଢୁପଢୁ ତାଙ୍କ ନେତ୍ରଯୁଗଳରୁ ସ୍ୱତଃ ଲୋତକବିନ୍ଦୁ ଝରିପଡୁଥିବାର ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଛି । ପ୍ରକୃତ ସଂଗ୍ରାମୀ ପ୍ରାଣର କଥା ଯେମିତିକି ଏ ତାଙ୍କର ! ପ୍ରକୃତ ଜାତିପ୍ରାଣ ବୀର ହେଉଛନ୍ତି ସଂଗ୍ରାମୀ ଦୁର୍ଗା ଦାସ, ଭୋଗରାଇର ସାଂସ୍କୃତିକ ଐତିହ୍ୟ ଓ ଲୋକ-ସଂସ୍କୃତି ଶୀର୍ଷକ ଲେଖା ଭିତରେ ସେ ଅଞ୍ଚଳର ଗ୍ରାମୀଣ ମନୁଷ୍ୟର ଖାଇବା, ପିଇବା ଏପରିକି ପ୍ରତିଦିନର ଜୀବନଯାତ୍ରାର ତନ୍ନତନ୍ନ ଚିତ୍ର ସେ ସୁନ୍ଦରଭାବରେ ରୂପାୟିତ କରିଛନ୍ତି । ଜନଜୀବନର ଅନ୍ତର୍ନିହିତ ଘାତ-ପ୍ରତିଘାତର ମୂଳ ଉପାଦାନଗୁଡ଼ିକ ଅତି ମଞ୍ଜୁଳ ଭାବରେ ଚିତ୍ରିତ ହୋଇଛି ଉକ୍ତ ଗ୍ରନ୍ଥରେ । ବାଲେଶ୍ୱର ଜିଲ୍ଲାର ଧାରାବାହିକ ଇତିହାସ ଲେଖିବାକୁ ଗଲାବେଳେ ଲେଖକଙ୍କର 'ଅମୃତ ସ୍ୱାକ୍ଷର' ଅନେକ ମୂଲ୍ୟବାନ ତଥ୍ୟ ଯୋଗାଇବ- ଏଥିରେ ସନ୍ଦେହ ନାହିଁ ।

Digitized by srujanika@gmail.com

ଡକ୍ଟର ମହତାବଜୀଙ୍କ ଭାଷାରେ- "ପ୍ରତ୍ୟେକ ଅଞ୍ଚଳର ଇତିହାସର ସମଷ୍ଟିରେ ମହାନ ସଂଗ୍ରାମର ଇତିହାସ ଲେଖାଯାଇ ପାରିବ" ।

ଲେଖକଙ୍କ ଜୀବନ ବହୁ ଘାତ-ପ୍ରତିଘାତ ପୂର୍ଣ୍ଣ ସଂଘାତମୟ । ତାଙ୍କ ଅକୃତିମ ଜାତି-ପ୍ରୀତିର ଇତିହାସ ହେଉଛି 'ଅମୃତ ସ୍ୱାକ୍ଷର'ର ଇତିହାସ । ଏହା ତାଙ୍କ ଜୀବନର ଗୀତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଉକ୍ତ ଗ୍ରନ୍ଥ ଖଣ୍ଡିକର ସାରସ୍ୱତ ମୂଲ୍ୟ ଅପେକ୍ଷା ଜାତି-ପ୍ରୀତିର ମୂଲ୍ୟ ଯଥେଷ୍ଟ ବେଶି । ଭୋଗରାଇ ଅଞ୍ଚଳର ବହୁ ଗୁରୁତ୍ୱପୂର୍ଣ୍ଣ ଦିଗ ଓ ଘଟଣାଗୁଡ଼ିକ ଯଥାସମ୍ଭବ ଏଥିରେ ଲେଖକ ଉଲ୍ଲେଖ କରିଛନ୍ତି- ଯାହାକି ପରବର୍ତ୍ତୀ ଗବେଷକମାନଙ୍କୁ ସଂଗ୍ରାମ ଓ ଜାତୀୟଜୀବନର ବହୁ ତଥ୍ୟ ଜାଣିବାରେ ସହାୟତା କରିବ ।

ସର୍ବଶେଷରେ 'ଅମୃତ ସ୍ୱାକ୍ଷର'ର ସ୍ରଷ୍ଟାଙ୍କୁ ତାଙ୍କର ଏ ମହତ୍ ସୃଷ୍ଟି ପାଇଁ ଅଶେଷ ଧନ୍ୟବାଦ ଜଣାଉଛି ଏବଂ ତାଙ୍କ ଦୀର୍ଘ ନିରାମୟ ଜୀବନ କାମନା କରୁଛି ।

ଅଧ୍ୟାପକ ବି.ବି. ବିଶ୍ୱାଳ
ଶ୍ରୀନିକେତନ, ଜଳେଶ୍ୱର, ବାଲେଶ୍ୱର
୧।୨।୮୭

Digitized by srujanika@gmail.com

# ଗର୍ବ ଗୌରବର 'ଅମୃତ ସ୍ୱାକ୍ଷର'

## (ପ୍ରଥମ ସଂସ୍କରଣର ମୁଖବନ୍ଧ)

*"ଯେଉଁମାନେ କର୍ମବୀର, ସେମାନଙ୍କ ଜୀବନର ଘଟଣାବଳୀ ଇତିହାସର ଅଭାବରେ ନଷ୍ଟ ହେଲେ ମହା ଆକ୍ଷେପର କାରଣ ହୁଏ । କାରଣ ସେମାନଙ୍କର ଜୀବନଟାହିଁ ସେମାନଙ୍କର ସର୍ବପ୍ରଧାନ ରଚନା ।"* *-ରବୀନ୍ଦ୍ର ନାଥ*

ଭୋଗରାଇର ଯଶସ୍ୱୀ ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ ଶ୍ରୀ ଦୁର୍ଗା ଦାସଙ୍କ ଜୀବନ ସ୍ମୃତି ସମନ୍ୱିତ 'ଅମୃତ ସ୍ୱାକ୍ଷର' ଉପରୋକ୍ତ ଅଭିବ୍ୟକ୍ତି ଦୃଷ୍ଟିରୁ ଏକ ପ୍ରୟୋଜନୀୟ ସୃଷ୍ଟି ।

ନଦୀ ଓ ସମୁଦ୍ରକୂଳ ସଭ୍ୟତାର ଯୁଗ ଆଜି ନାହିଁ । ଜାତୀୟ ରାଜପଥ ବା ରେଳପଥ କୈନ୍ଦ୍ରିକ ଯାନ୍ତ୍ରିକ ଯୁଗରେ ଓଡ଼ିଶା ଓ ବଂଗଳାର କେନ୍ଦ୍ର ରାଜନୀତିଠାରୁ ଦୂରରେ ଥାଇ, ଉପେକ୍ଷା ଅଭିଶାପ ଜର୍ଜର ଭୋଗରାଇ ତେଣୁ ଆଜି ଭୋଗରହିତ, ହତଶ୍ରୀ । ଶିକ୍ଷା, କଳା, ସଂସ୍କୃତି ଓ ଶୌର୍ଯ୍ୟରେ ସମ୍ଭ୍ରାନ୍ତ ଗୌରବର ଅଧିକାରୀ ହୋଇଥିଲେ ମଧ ଏ ଶତାବ୍ଦୀର ଆଦ୍ୟପାଦରେ ବାରମ୍ବାର ବନ୍ୟା, ବାତ୍ୟା, ଦୁର୍ଭିକ୍ଷ, ବିଧ୍ୱସ୍ତ ଏବଂ ସତତ ବଂଗୀୟ କରାଳଗ୍ରାସ କବଳିତ ଭୋଗରାଇ, ଜାତୀୟ ଆନ୍ଦୋଳନରେ ଦୃଶ୍ୟମାନ ଦୃଷ୍ଟାନ୍ତ ରଖିବାରେ ସମ୍ଭାବନା ହରାଇ ବସିଥିବାବେଳେ ଯେଉଁ କେତେକ ଆଦର୍ଶବାଦୀ ସମର୍ପିତ ପ୍ରାଣ ଜାତୀୟ ପ୍ରାଣବନ୍ୟାରେ କିଶୋର ଜୀବନରୁ ଲମ୍ଫପ୍ରଦାନ କରି ଭୋଗରାଇର ଭାଗ୍ୟରେ ଗଣ ସଂଗ୍ରାମର ରକ୍ତଟୀକା ପିନ୍ଧାଇଥିଲେ, ସେମାନଙ୍କ ମଧରେ ଶ୍ରୀ ଦାସ ଅନ୍ୟତମ ।

ଯେଉଁ ଯୁଗରେ ରାଜନୀତି ସବୁଠାରୁ ଲାଭଜନକ ବ୍ୟବସାୟ, ମାତ୍ର କେତେବର୍ଷର ଧପ୍‌ପାବାଜିରେ ଏକାନ୍ତ ଅର୍ବାଚୀନ ମଧ କ୍ଷମତା ରାଜନୀତିର ଆଶୀର୍ବାଦରେ ଆଧୁନିକ ଅଳଂକରଣର ଶ୍ରେଷ୍ଠତମ ବିଜ୍ଞାପନରେ ବିଭୂଷିତ ହେବାର ସ୍ପର୍ଦ୍ଧା ରଖେ, ସେ ଯୁଗରେ ପ୍ରାକ୍ ସ୍ୱାଧୀନତା କାଳରୁ ଏଯାବତ୍ ରାଜନୀତି ସହିତ ପ୍ରତ୍ୟକ୍ଷ ସଂଶ୍ଳିଷ୍ଟ ଅଥଚ ସେହି ପୂର୍ବଭଳି ପୈତୃକ ଭିଟାମାଟିରେ ସନ୍ତୁଷ୍ଟ ହୋଇ ପଡ଼ି ରହିଥିବା ସମାଜସେବୀଙ୍କ ସଂଖ୍ୟା ପ୍ରାୟ ବିରଳ । ସେହି ବିରଳ କତିପୟଙ୍କ ମଧରେ ଏ ଗ୍ରନ୍ଥର ପ୍ରଣେତା ଅନ୍ୟତମ ।

ଓଡ଼ିଶାର ଜାତୀୟ ଆନ୍ଦୋଳନର ଇତିହାସ ବା ସ୍ୱାଧୀନତା ସଂଗ୍ରାମର ରଥୀ ମହାରଥୀଙ୍କ ଜୀବନୀ ସଂକଳନରେ ଦେଶର ଏ ବିଶେଷ ଅଞ୍ଚଳର ଭୂମିକା ପ୍ରାୟ ଉପେକ୍ଷିତ

Digitized by srujanika@gmail.com

ରହିଥିବାରୁ, ଉତ୍ତର ପୁରୁଷ ତଥା ଦେଶର ସ୍ୱାଧୀନତା ଆନ୍ଦୋଳନର ପୂର୍ଣ୍ଣାଙ୍ଗ ଇତିହାସ ପାଇଁ ଏମିତି ଏକ ବାସ୍ତବ ଅନୁଭୂତି ସଂପନ୍ନ ଚିତ୍ର ଓ ଚରିତ୍ରର ଆଲେଖ୍ୟାଙ୍କନ ଐତିହାସିକ ତଥା ଜାତୀୟ ଆବଶ୍ୟକତା ଦୃଷ୍ଟିରୁ ବିଶେଷ ଭାବରେ ଅନୁଭୂତ ହୁଏ । ଶ୍ରୀ ଦାସଙ୍କର ଏ କୃତୀ ଅଭାବକୁ କେତେକାଂଶରେ ପୂର୍ଣ୍ଣ କରିଛି କୁହାଯାଇପାରେ ।

ସ୍ୱାଧୀନତା ଆନ୍ଦୋଳନର ବିଶାଳ ପୃଷ୍ଠଭୂମି, ସର୍ବଭାରତୀୟ ଗଣସଂଗ୍ରାମର ସଂକ୍ଷିପ୍ତ ଇତିବୃତ୍ତି ଓ ମହାତ୍ମାଗାନ୍ଧିଙ୍କ ଭଳି ଜାତୀୟ ଯୁଗପୁରୁଷଙ୍କ ଉପରେ ତାଙ୍କର ନିଜସ୍ୱ ଅଭିବ୍ୟକ୍ତି ସହ ସ୍ୱାଧୀନତା ସଂଗ୍ରାମୀଙ୍କ ସମସ୍ୟା ସମ୍ବନ୍ଧୀୟ ବିବରଣୀ ତଥା ଭୋଗରାଇର ଐତିହାସିକ, ଭୌଗୋଳିକ, ରାଜନୀତିକ, ଆର୍ଥିକ, ସାଂସ୍କୃତିକ ଇତିବୃତ୍ତ ଏଥିରେ ସନ୍ନିବେଶିତ । ଏ ମାଟିର ଇତିକଥା ଯାହା ଏ ବହିର ଏକାନ୍ତ ନିଜସ୍ୱ ବିଭବ ଏବଂ ଯାହା ଏଥିରେ ପ୍ରକାଶ ପାଇ ନଥିଲେ ସଂପୂର୍ଣ୍ଣ ଅକୁହା ଓ ଅଜଣା ରହିଥାନ୍ତା, ସେହିଭଳି ଆହୁରି ଅଜ୍ଞାତ ଉପେକ୍ଷିତ ଘଟଣା ଓ ଚରିତ୍ରକୁ ଲୋକଲୋଚନକୁ ଅଣାଯାଇ ପାରିଲେ ଗ୍ରନ୍ଥଟିର ସାରସ୍ୱତ ଗୌରବ ଆହୁରି ବଢ଼ିଥାନ୍ତା ।

ଲେଖକ ଜଣେ ସାହିତ୍ୟିକ ନୁହଁନ୍ତି । ତଥାପି ବହିଟି ଜଣେ ଅଣ ସାହିତ୍ୟିକର ସମ୍ବାଦଧର୍ମୀ ବିବରଣୀ ମାତ୍ର ହୋଇନାହିଁ । ପ୍ରକାଶଶୈଳୀ ବେଶ ସରଳ ଓ ହୃଦ୍ୟ; ଅଭିବ୍ୟକ୍ତିରେ ଦୁର୍ବହ ଦାର୍ଶନିକତା ବା ଆତ୍ମବିଜ୍ଞାପନର ବାହାସ୍ଫୋଟ ନାହିଁ । ଭାଷା ଅକୃତ୍ରିମ ଓ ଆବେଗମୟ । ଚିତ୍ର ଓ ଚରିତ୍ର ସମସ୍ତ ସଜୀବ । ଏକ କଥାରେ ଏକ ସଫଳ ସୃଷ୍ଟି ।

କାହାରି ସୁଖ ଦୁଃଖର ସ୍ମୃତି ଯେତେବେଳେ ବ୍ୟକ୍ତିଗତ ସୀମା ଡେଇଁ ନୈର୍ବ୍ୟକ୍ତିକ ହୋଇଯାଏ, ସେତେବେଳେ ସାମାନ୍ୟ ଧୂଳିରେଣୁ ଭିତରେ ଜଗତ ଦର୍ଶନ ('To see the world in its very dust' - William Blake)ର ଗୌରବ ସ୍ୱତଃ ଫୁଟିଉଠେ ଏବଂ କାଳରୁ କାଳାତୀତ ହୋଇ ଏକରୁ ଅନେକଙ୍କ ପାଇଁ ତାହା ସମର୍ପିତ ହୋଇଯାଏ । ଶ୍ରୀ ଦାସଙ୍କର ଏ କୃତି ଏ ସିଦ୍ଧିରୁ ବଞ୍ଚିତ ନୁହେଁ ।

ଆଜିକାଲି ତଥାକଥିତ ଧୂର୍ତ୍ତ ରାଜନୀତିକ ପଦାଧିକାରୀଙ୍କ ପାପାର୍ଜିତ ବିତ୍ତର ଅଧିପତି ସେ ନୁହଁନ୍ତି । ଆଜୀବନ ତ୍ୟାଗପୂତ ଗାନ୍ଧିବାଦୀ ଜୀବନଚର୍ଯ୍ୟାର ସାଧକ ଥାଇ ଉତ୍ତର ଜୀବନରେ ତାଙ୍କର ଏ ସ୍ମୃତିଚାରଣ ଉତ୍ତରଦାୟାଦଙ୍କ ପାଇଁ ହୋଇପାରିଛି ଯଥାର୍ଥରେ ଏକ ଗର୍ବଗୌରବର 'ଅମୃତ ସ୍ୱାକ୍ଷର' ।

ଭୋଗରାଇ, ବାଲେଶ୍ୱର

୧।୧୧।୮୬

Digitized by srujanika@gmail.com

# ମୋ କଥା

## (ପ୍ରଥମ ସଂସ୍କରଣ ପ୍ରକାଶନ ଅବସରରେ)

ଜାତୀୟ ମୁକ୍ତିସଂଗ୍ରାମ ଏବଂ ପ୍ରଗତିର ଇତିହାସରେ ବାଲେଶ୍ୱରବାସୀଙ୍କର ଅମୃତ ସ୍ୱାକ୍ଷର ରଚନା କରିବା ମୋ ପକ୍ଷେ ଅତୀବ ଦୁଃସାଧ୍ୟ । ତଥାପି କାହିଁକି ମୋର ଏ ଧୃଷ୍ଟତା, ଟିକେ ଶୁଣିବେ -

କେବଳ ମୁକ୍ତିସଂଗ୍ରାମର ସବିଶେଷ କାହାଣୀ କାହିଁକି, ବାଲେଶ୍ୱର ବିଶେଷ କରି ମୋ ଜନ୍ମମାଟି ଭୋଗରାଇର ଗୌରବମୟ ଐତିହ୍ୟ, ବହୁମୁଖୀ ପ୍ରତିଭା, ପାରଦର୍ଶିତା, ଦେବଦେବୀ, ଆପଦ-ବିପଦ, ଆଦର୍ଶ ଆତିଥେୟତା, ବୀରତ୍ୱ ଏବଂ ସ୍ୱାଭିମାନର ଇତିହାସ, ଏଯାବତ୍ ଉନ୍ମୋଚିତ ହୋଇପାରିନାହିଁ । ଜନ୍ମମାଟିର ସଞ୍ଚିତ ରତ୍ନଭଣ୍ଡାର ଏବଂ ସୁନା ଫସଲର ଆଂଶିକ ବିବରଣୀ ମଧ୍ୟ ଲୋକଲୋଚନକୁ ଦୁର୍ଭାଗ୍ୟକ୍ରମେ ଅଣାଯାଇ ପାରିନାହିଁ ।

ପରମ କଲ୍ୟାଣୀୟ ସତୀଶ ଚନ୍ଦ୍ର ଦାସ ଅଧିକାରୀ ଏବଂ ଅଧ୍ୟାପକ ବନ୍ଧୁ ଡ.ରମାକାନ୍ତ ବେହେରା ଏ ଦିଗରେ ସର୍ବପ୍ରଥମେ ମୋତେ ସଚେତନ କରିଥିଲେ ଏବଂ ଉଭୟେ ମୁକ୍ତିସଂଗ୍ରାମ ତଥା ଭୋଗରାଇର ସର୍ବକାଳୀନ ଇତିହାସ ଆଗାମୀ ଦିନମାନଙ୍କ ପାଇଁ ଲିପିବଦ୍ଧ କରିବାକୁ ସନିର୍ବନ୍ଧ ଅନୁରୋଧ ଜଣାଇଥିଲେ । ଜାତୀୟ କଂଗ୍ରେସ ଶତବାର୍ଷିକୀ ପାଳନ ଉପଲକ୍ଷେ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ ପ୍ରକାଶ ସଂପର୍କରେ କଂଗ୍ରେସର ପ୍ରସ୍ତାବ ମୋ ମନରେ ପ୍ରେରଣା ଓ ସୁଯୋଗ ଆଣିଦେଲା ।

ମୋର ଶୈଶବାବସ୍ଥା, ୧୯୩୦ ମସିହାଠାରୁ ଆରମ୍ଭ କରି ୧୯୪୪ମସିହା ପର୍ଯ୍ୟନ୍ତ ବଂଗଳା ଏବଂ ଓଡ଼ିଶା ଉଭୟ ପ୍ରାନ୍ତର ବିଶେଷ ଭାବରେ ବାଲେଶ୍ୱର ଏବଂ ମେଦିନୀପୁରର ଭୋଗରାଇ ଏବଂ ରାମନଗର ଅଞ୍ଚଳର ବଡ଼ ସାନ ଅଧିକାଂଶ ବୀର ସେନାନୀମାନଙ୍କ ସହିତ ଜେଲ ଭିତରେ ଏବଂ ବାହାରେ ସଂସ୍ପର୍ଶରେ ଆସିବାର ସୁଯୋଗ ମୋ ଜୀବନରେ ସୌଭାଗ୍ୟକ୍ରମେ ଘଟିଥିଲା । ୧୯୪୨-୪୪ର ଅଗଷ୍ଟ ବିପ୍ଳବ ଏବଂ ଘୋର ଦୁର୍ଭିକ୍ଷ ବେଳେ ଦୀର୍ଘଦିନ ସାରା ଜିଲ୍ଲା ବିଶେଷଭାବରେ ଉତ୍ତର

Digitized by srujanika@gmail.com

ବାଲେଶ୍ୱରର ସବୁଠାରେ ଛଦ୍ମବେଶରେ ପାଦରେ ଚାଲିଚାଲି ବୁଲିଛି । ସେ ସବୁଥିରୁ ଯାହା ଶୁଣିଛି, ଦେଖିଛି ଏବଂ ବୁଝିଛି, ସତ୍ୟର ଅପଲାପ ନକରି ତାହା ସଂକ୍ଷେପରେ ସରଳ ସାବଲୀଳ ଓ ନିରାଡ଼ମ୍ବର ଭାବରେ ପ୍ରକାଶ କରିବାର ପ୍ରୟାସ କରିଛି ।

ଭାଷା ହେଉଛି ଭାବର ବାହକ । ଭାବ ଆଗେ, ଭାଷା ପରେ । ଏହି ଭାବଧାରା ବା ଭାଷା ସମ୍ଭାର ଉଭୟ, ସେପରି ମୋର ନାହିଁ । ପୁଣି ଇତିହାସର ଛାତ୍ର ମୁଁ ନୁହେଁ । ଏଣୁ ଏହି ଗ୍ରନ୍ଥଟିରେ ଭୁଲ ଏବଂ ତ୍ରୁଟିବିଚ୍ୟୁତି ରହିବା ସ୍ୱାଭାବିକ । ଆଧୁନିକ ପାଠକ ପାଠିକାମାନଙ୍କ ଠାରେ ତାହା ବିଶେଷ ହୃଦୟଗ୍ରାହୀ ଏବଂ ଆଦୃତ ହେବାର ଆଶା କମ୍ । ସେଥି ସକାଶେ ସମସ୍ତଙ୍କ ଠାରେ ମୁଁ କ୍ଷମାଭିକ୍ଷା କରି ନେଉଛି ।

କିନ୍ତୁ ଆମର ଏବର ଯୁବସମାଜ ଏବଂ ଭବିଷ୍ୟତ ବଂଶଧରମାନଙ୍କ ନିକଟରେ ଜାତିର ସଂକଟ ମୁହୂର୍ତ୍ତର ଏକ ନିଃସଂଶୟ ଦଲିଲ ରୂପେ କିଛିଟା ଆବଶ୍ୟକତା ଏହି ଅମୃତ ସ୍ୱାକ୍ଷର ପୂରଣ କରିବାକୁ ସମର୍ଥ ହେବବୋଲି ମୋର ଆଶା ଏବଂ ବିଶ୍ୱାସ ।

ଲବ୍ଧପ୍ରତିଷ୍ଠିତ ଐତିହାସିକ ଶ୍ରୀ ଆଶୁତୋଷ ରାୟଙ୍କର ଭାରତର ରକ୍ତକ୍ଷୟୀ ସଶସ୍ତ୍ର ଗଣ ଆନ୍ଦୋଳନର ଅମର ଇତିହାସ 'ରକ୍ତମସୀର ଲେଖା'ରୁ କେତେକ ମୂଲ୍ୟବାନ ତଥ୍ୟ, ପୁସ୍ତକର 'ଅଗ୍ନିଯୁଗ' ଅଧ୍ୟାୟରେ ଉଲ୍ଲେଖ କରାଯାଇଛି । ସେଥିପାଇଁ ଆଦ୍ୟରୁ ଗଭୀର କୃତଜ୍ଞତା ସ୍ୱୀକାର କରୁଛି ।

ପୁସ୍ତକଟିର ପାଣ୍ଡୁଲିପି ପଢ଼ି, ପ୍ରସିଦ୍ଧ ନାଟ୍ୟକାର ଓ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ସର୍ବେଶ୍ୱର ପଣ୍ଡା, ପରମସୁହୃଦ ଏବଂ ସତୀର୍ଥ ବିଶ୍ୱବିଖ୍ୟାତ ଐତିହାସିକ ପ୍ରଫେସର ମନ୍ମଥ ନାଥ ଦାସ, ପୂଜ୍ୟ ବଡ଼ଭାଇ ଶ୍ରୀଯୁକ୍ତ ପ୍ୟାରୀମୋହନ ଦାସ, ଅଗ୍ରଜପ୍ରତିମ, ସମ୍ମାନନୀୟ ଶ୍ରୀଯୁକ୍ତ ଶଶୀକାନ୍ତ ଭଞ୍ଜ, ଏକାନ୍ତ ପ୍ରୀତିଭାଜନ ପ୍ରାବନ୍ଧିକ ଏବଂ ଔପନ୍ୟାସିକ ରମାକାନ୍ତ ବେହେରା ପ୍ରମୁଖ ସଦୟ ଅମୂଲ୍ୟ ଅଭିମତମାନ ପ୍ରକାଶ କରିଥିବାରୁ ସେମାନଙ୍କ ନିକଟରେ ଗଭୀର କୃତଜ୍ଞତା ପ୍ରକାଶ କରୁଛି ।

ଅଧ୍ୟାପକ ଡ.ବେହେରା ବାରମ୍ବାର ଆବଶ୍ୟକୀୟ ପରାମର୍ଶ ଏବଂ ପ୍ରେରଣା ଯୋଗାଇ, ପୁସ୍ତକଟିର କଳେବର ବୃଦ୍ଧି କରିବା ଦିଗରେ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ପ୍ରଫେସର ଡ.ଦାସ ରଚନାଟିର ପ୍ରତିଛତ୍ର ଉପରେ ଆପଣାର ସତର୍କ ଅଭିଜ୍ଞ ଦୃଷ୍ଟି ରଖି, ତାତ୍ତ୍ୱିକ ସମାଲୋଚନା କରିଥିଲେ । ଘଟଣାରାଜିର Chronological ଅବତାରଣା ଦିଗରେ ସୁପରାମର୍ଶ ଦେଇ, ଆବଶ୍ୟକ କେତେକ ସଂଶୋଧନ ଆଣି

Digitized by srujanika@gmail.com

ରଚନାଟିକୁ ଅଭ୍ରାନ୍ତ ଏବଂ ତ୍ରୁଟିମୁକ୍ତ କରି ଥୋଇବା ସକାଶେ, ସସ୍ନେହ ସାହାଯ୍ୟ ମଧ୍ୟ କରିଛନ୍ତି ।

ଗ୍ରନ୍ଥରଚନା ଏବଂ ପ୍ରକାଶ ଦିଗରେ ପରମାତ୍ମୀୟ ଏବଂ ଶ୍ରଦ୍ଧାଭାଜନ ସର୍ବଶ୍ରୀ ସନ୍ତୋଷ କୁମାର ଦାସ, ସୁବଳ ଚନ୍ଦ୍ର ଦେ, ରାଧାଶ୍ୟାମ ପ୍ରଧାନ, ସୁଧାଂଶୁ ଶେଖର ପଟ୍ଟନାୟକ, ପ୍ରାଣକୃଷ୍ଣ ଦେ, ଅମିୟ କୁମାର ବସୁ, ଅନନ୍ତ କୁମାର ବସୁ, ଡ.କାର୍ତ୍ତିକେଶ୍ୱର ପାତ୍ର, ବିପିନ ବିହାରୀ ବିଶ୍ୱାଳ, ଜୟନ୍ତୀ ଦାସ, ସୁଶାନ୍ତ କୁମାର ଚାନ୍ଦ, କବି ମୁରାରୀମୋହନ ସାହୁ, ବୃନ୍ଦାବନ ଦାସ, ଡା.ଶ୍ରୀଶ କୁମାର ଦାଶ, ଧନଞ୍ଜୟ ବେହେରା ଏବଂ ପ୍ରାଣକୃଷ୍ଣ ବାରିକ ପ୍ରମୁଖ କ୍ରମାଗତଭାବେ, ସୁପରାମର୍ଶ ଉତ୍ସାହ ଏବଂ ଶୁଭେଚ୍ଛା ପ୍ରକାଶ କରିଥିବାରୁ ସେମାନଙ୍କୁ ଅଶେଷ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଘଟଣାକ୍ରମରେ ମୃତ ଏବଂ ଜୀବିତ ବହୁ ସଂଖ୍ୟକ ଭଦ୍ରବ୍ୟକ୍ତିଙ୍କୁ ଗ୍ରନ୍ଥଟି ସହ ଯୁକ୍ତ କରି ସ୍ମରଣ କରିବାକୁ ବାଧ୍ୟ ହୋଇଛି । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ପରିଚୟ ଏଥିସହ ନିବଦ୍ଧ ରହିଛି । ଅନେକ କଥା, ଘଟଣା ଓ ଚରିତ୍ର ମୋର ଅଜ୍ଞାତ ହେତୁ, ପୁସ୍ତକଟିରେ ସ୍ଥାନ ପାଇ ନଥିବା ଯୋଗୁଁ ମୁଁ ଲଜ୍ଜିତ । ଆଗକୁ ସୁଯୋଗ ମିଳିଲେ ଚେଷ୍ଟାର ତ୍ରୁଟି ହେବନାହିଁ ।

ସାଂପ୍ରତିକ ଜାତୀୟ ଏବଂ ସମାଜ ଜୀବନ, ଏକ ଘଡ଼ିସନ୍ଧି କ୍ଷଣ ମଧ୍ୟଦେଇ ଗତି କରି ଚାଲିଛି । ଜାତୀୟ ଚରିତ୍ର ଏବଂ ରାଜନୀତି କ୍ରମେ କଳୁଷିତ ହୋଇ ଚରମ ଅବସ୍ଥା ସୃଷ୍ଟି କଲାଣି । ଅଧିକାଂଶ ବ୍ୟକ୍ତି ଏହି ନୈତିକ ଅଧଃପତନରୁ ଦୂରରେ ରହିଛନ୍ତି ବୋଲି ଜୋରକରି କହିହେବ ନାହିଁ । କାଳର କୁପ୍ରଭାବରେ ଏସବୁ ଘଟୁଛି ବୋଲି ଭାବି ଚୁପ୍ ହୋଇ ବସିବା ମୂଢ଼ତା ହେବ । ଅବସ୍ଥା ଆୟତ୍ତକୁ ଆଣିବା ପାଇଁ ଆତ୍ମସ୍ୱାର୍ଥ ଏବଂ ଦୁର୍ବଳତା ପରିହାର କରି, ପାରିପାର୍ଶ୍ୱିକ ଏବଂ ପରିବେଶ ସୁଧାରିବାକୁ ସମସ୍ତେ ଦୃଢ଼ ପରିକର ହେଲେ, କିଛିଟା ଆଲୋକ ଏବଂ ଅଗ୍ରଗତି ଆଶା କରାଯାଏ । ଏ ଦିଗରେ ଅକିଞ୍ଚନ ଗ୍ରନ୍ଥକାରର କତିପୟ ସାନୁନୟ ମତାମତ ପାଇଁ ସହୃଦୟ ପାଠକପାଠିକାଗଣ ନିଜ ଗୁଣରେ କ୍ଷମା କରିବେ, ଆଶା କରି ରହୁଛି ।

ବିନୀତ ଗ୍ରନ୍ଥକାର

(୩।୧୨।୮୬)

Digitized by srujanika@gmail.com

# ପୁଣି କାହିଁକି କଲମ ଧରିଲି
## (ଦ୍ୱିତୀୟ ସଂସ୍କରଣ ଅବସରରେ...)

୧୯୮୭ରେ 'ଅମୃତ ସ୍ୱାକ୍ଷର' ପୁସ୍ତକଟି ପ୍ରଥମେ ଆତ୍ମପ୍ରକାଶ କରିଥିଲା । ଏହା କୌଣସି ନାଟକ ବା ଉପନ୍ୟାସ ନୁହେଁ, ଉତ୍ତର-ବାଲେଶ୍ୱର ଖଣ୍ଡର ଅତୀତ ଇତିହାସ ସେଥିରେ ବର୍ଣ୍ଣନା କରାଯାଇଛି ସଂକ୍ଷେପରେ । ଇତିହାସ ରଚନା କ୍ଷେତ୍ରରେ ମୁଁ ସଂପୂର୍ଣ୍ଣ ନୂଆ । ଅବଶ୍ୟ ପୁସ୍ତକଟି ସର୍ବଜନ ଆଦୃତ ହୋଇ ପାରିଛି । ତା'ପରେ ଦୀର୍ଘ ୨୪ବର୍ଷ ସମୟ ବିତିଯାଇଛି । କଲମ ଧରିବାର ଅଭ୍ୟାସ କମିଗଲାଣି, କିଛିଦିନ ହେଲା ମୋର କନିଷ୍ଠ ପୁତ୍ର ଯୁବଗାଳ୍ପିକ ଓ ସାମ୍ବାଦିକ ଗୌତମବୁଦ୍ଧ ଦାସ ଓ ବନ୍ଧୁ ପ୍ରାବନ୍ଧିକ ଡ.ରମାକାନ୍ତ ବେହେରାଙ୍କ ପ୍ରରୋଚନାରେ ମୁଁ ପୁଣି କଲମ ଧରିବାକୁ ବାଧ ହୋଇଛି । ଏ ପରିଣତ ବୟସରେ ସ୍ମୃତିଚାରଣ କରିବାକୁ ବସିଲାବେଳେ ଅତୀତ ଘଟଣାବଳୀର ଚିତ୍ରମାନ ସେତେ ସ୍ପଷ୍ଟ ଭାବରେ ମୋ ଆଗରେ ମୁଁ ଦେଖିପାରୁନାହିଁ । ମିଥ୍ୟାଚାର ମୋ ପକ୍ଷରେ ସମ୍ଭବ ନୁହେଁ । ତଥାପି ବହୁକଷ୍ଟରେ ସବୁକଥା ମନକୁ ଆଣି ପ୍ରକାଶ କରିବାକୁ ପ୍ରୟାସ କରିଛି । ବର୍ତ୍ତମାନର ପ୍ରବହମାନ ଘଟଣାବଳୀ କ୍ରମରେ କୃତିତ୍ୱପୂର୍ଣ୍ଣ ଜୀବନସବୁ ମୋ ସାମ୍ନାରେ ଧାଡ଼ିବାନ୍ଧି ଛିଡ଼ାହେବାରେ ଲାଗିଛି । ଏଣୁ ସେସବୁ ବିଷୟ ଓ ସେମାନଙ୍କର ବୈଶିଷ୍ଟ୍ୟ ସମଗ୍ର ରାଜ୍ୟରେ ବହୁତ ପ୍ରଭାବ ବିସ୍ତାର କରିପାରିଛି ଏବଂ ରାଜ୍ୟକୁ ଅନେକ କ୍ଷେତ୍ରରେ ବିଶ୍ୱ ଦରବାରରେ ପରିଚିତ କରାଇଛି । ସେମାନଙ୍କୁ ଛାଡ଼ି ମୋର ଏ ସ୍ମୃତିଗ୍ରନ୍ଥ ତଥା ଭୋଗରାଇର ସଂକ୍ଷିପ୍ତ ଇତିହାସ ରଚନା କେବେବି ସଂପୂର୍ଣ୍ଣ ହୋଇପାରିବ ନାହିଁ ।

ଉତ୍ତର ବାଲେଶ୍ୱର କହିଲେ, ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର, ବସ୍ତା, ବାଲିଆପାଳ ଓ ଭୋଗରାଇ ଅଞ୍ଚଳ । ଏ ବିରାଟ ଅଞ୍ଚଳର ଘଟଣାମାନ କିଛି କମ୍ ନୁହେଁ କି ବିଭିନ୍ନ କ୍ଷେତ୍ରରେ ଅଞ୍ଚଳର କୃତୀ ସନ୍ତାନ ମାନଙ୍କର ଜୀବନକାହାଣୀ ଅତୀବ ଉଜ୍ଜ୍ୱଳମୟ । ବର୍ତ୍ତମାନର ଗୌରବମୟ କୀର୍ତ୍ତି ମଧ୍ୟରେ ଖ୍ୟାତିସଂପନ୍ନ ଗାଳ୍ପିକ ମନୋଜ ଦାସ ତଥା ତାଙ୍କର ବଡ଼ଭାଇ ୰ପ୍ରଫେସର ଡ.ମନ୍ମଥ ନାଥ ଦାସଙ୍କ ଜୀବନ

Digitized by srujanika@gmail.com

ଓ କୃତୀ ଅବିସ୍ମରଣୀୟ । ସେମାନଙ୍କ କୃତିତ୍ୱ ଏ ଅଞ୍ଚଳକୁ ବିଶ୍ୱ ଦରବାରରେ ପହଞ୍ଚାଇ ପାରିଛି । ଏସବୁକୁ ଗୋଟାଇ ଏକତ୍ର କରି ଏ ପରିଣତ ବୟସରେ ପ୍ରକାଶ କରିବା ବଡ଼ ଦୁଷ୍କର ବ୍ୟାପାର । କିନ୍ତୁ ମୋ ଚେଷ୍ଟାରେ କିଛି ତ୍ରୁଟି ନାହିଁ । ଏହି କାର୍ଯ୍ୟରେ ମୁଁ ଖୁବ୍ ଆନନ୍ଦ ପାଇଛି । ମୋର ବିଶ୍ୱାସ, ଏହି ଗ୍ରନ୍ଥ ପାଠକମାନଙ୍କୁ ପ୍ରଭୂତ ଆନନ୍ଦ ଓ ତଥ୍ୟ ଯୋଗାଇବ । ଭାଷାଗତ ଓ ଭାବଗତ ତ୍ରୁଟି ହୁଏତ ରହିବ ସେଥିପାଇଁ ପାଠକେ କ୍ଷମା କରିବେ । କିନ୍ତୁ ମୋ ଲେଖାରେ କିଛି କଳ୍ପନା ବା ମିଥ୍ୟାଚାର ନାହିଁ, ସବୁ ସତ୍ୟଘଟଣା ଉପରେ ଆଧାରିତ । ଲେଖା ଅସଂପୂର୍ଣ୍ଣ ବୋଲି ମନେହେଲେ ତ୍ରୁଟି ମାର୍ଜନା କରିବେ । ଏହି ଦ୍ୱିତୀୟ ସଂସ୍କରଣ ପ୍ରକାଶନ ଅବସରରେ ମୋତେ ବିଭିନ୍ନ ଭାବରେ ସହଯୋଗ କରିଥିବାରୁ ମୁଁ ପ୍ରଥିତଯଶା କବି ଡ.ବ୍ରଜନାଥ ରଥ, 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ'ର ପ୍ରତିଷ୍ଠାତା ଶ୍ରୀ କାଳୀପଦ ପଣ୍ଡା ଏବଂ କବି ଓ ଲେଖକ ଅଞ୍ଜନ କୁମାର ଘନ୍ଦଙ୍କ ନିକଟରେ ବିଶେଷ ଭାବରେ କୃତଜ୍ଞ ।

ଶେଷରେ 'ଅମୃତ ସ୍ୱାକ୍ଷର'ର ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣଟି ଆମ ରାଜ୍ୟର ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ ଗାନ୍ଧିବାଦୀ ନେତା, ରଚନାତ୍ମକ କାର୍ଯ୍ୟକ୍ରମର ପ୍ରବକ୍ତା ଓ ଫକୀରମୋହନ ବିଶ୍ୱବିଦ୍ୟାଳୟର ଅନ୍ୟତମ ପ୍ରତିଷ୍ଠାତା ମୋର ଅଗ୍ରଜ ପ୍ରତିମ ୰ଡ.ରବୀନ୍ଦ୍ରମୋହନ ଦାସଙ୍କ ସ୍ମୃତିରେ ଭକ୍ତିପୁଷ୍ପ ରୂପେ ଅର୍ପଣ କରୁଛି ।

*ବିନୀତ ଗ୍ରନ୍ଥକାର*

(୨୭।୭।୧୨)

Digitized by srujanika@gmail.com

# 'ଅମୃତ ସ୍ୱାକ୍ଷର': କିଞ୍ଚିତ୍ ଝଲକ

## (ଦ୍ୱିତୀୟ ସଂସ୍କରଣର ମୁଖବନ୍ଧ)

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ଭୋଗରାଇର ପୂର୍ବତନ ବିଧାୟକ ଶ୍ରୀଯୁକ୍ତ ଦୁର୍ଗାଦାସ ମୋର ଅଗ୍ରଜ ସ୍ଥାନୀୟ । କିଛି ବର୍ଷ ତଳେ 'ଅମୃତ ସ୍ୱାକ୍ଷର' ନାମରେ ତାଙ୍କର ସ୍ମୃତିକଥା ସମ୍ବଳିତ ଏକ ପୁସ୍ତକ ସେ ମୋତେ ଉପହାର ଦେଇଥିଲେ । ସେହି ପୁସ୍ତକଟିରେ ତାଙ୍କର ଜୀବନର କେତେ ସ୍ମୃତିକଥା ସହିତ ସ୍ୱାଧୀନତା ସଂଗ୍ରାମ ଓ ସଂଗ୍ରାମୀମାନଙ୍କ ସଂପର୍କରେ ତଥା ତାଙ୍କ ନିଜ ଜନ୍ମମାଟି ଭୋଗରାଇ ସଂପର୍କରେ ଅନେକ କଥା ଲେଖିଥିଲେ । ଯାହାକୁ ପଢ଼ି ମୁଁ ଖୁବ୍ ମୁଗ୍ଧ ଓ ଆନନ୍ଦିତ ହୋଇଥିଲି । ସାକ୍ଷାତରେ ଦୁର୍ଗାବାବୁଙ୍କୁ ମଧ୍ୟ ସେ ପୁସ୍ତକ ସଂପର୍କରେ ମୋର ମତାମତ ଜଣାଇ ସେହି ପୁସ୍ତକଟିର ପରିବର୍ଦ୍ଧିତ ରୂପ ପ୍ରକାଶ କରିବା ପାଇଁ ଅନୁରୋଧ କରିଥିଲି । କାରଣ, ତାଙ୍କ ଜୀବନର ବହୁ ବିଚିତ୍ର ଅନୁଭୂତି ଆହୁରି ଲେଖିବାର ଆବଶ୍ୟକତା ମୁଁ ଅନୁଭବ କରିଥିଲି । ଯାହାହେଉ, ଦୁର୍ଗାବାବୁ ମୋ ଭଳି ହୁଏତ ଆହୁରି ଅନେକ ବନ୍ଧୁଙ୍କର ସାଗ୍ରହ ଅନୁରୋଧକୁ ରକ୍ଷାକରି ଏହି ପରିଣତ ବୟସରେ ସେହି ପୁସ୍ତକରେ ଆହୁରି ଅନେକ ସ୍ମୃତିକଥା ସଂଯୋଜନା କରି ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରୁଛନ୍ତି । ପୁସ୍ତକଟି ନିଶ୍ଚିତ ଭାବରେ ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ମଶାଲ ସଦୃଶ କାର୍ଯ୍ୟ କରିବ । ଏଥିରେ ଏଭଳି କିଛି ବିଷୟ ଅଛି, ଯାହା ତାଙ୍କର ଠିକ୍ ସ୍ମୃତିକଥା ନହେଲେ ମଧ୍ୟ ତାଙ୍କ ଚିନ୍ତା ଓ ଭାବନାର ସଫଳ ଅଭିବ୍ୟକ୍ତି । ସେ ଏହି ପୁସ୍ତକକୁ ଛଅଗୋଟି ପରିଚ୍ଛେଦରେ ବିଭକ୍ତକରି ପ୍ରତ୍ୟେକ ପରିଚ୍ଛେଦକୁ ଭିନ୍ନଭିନ୍ନ ବିଷୟରେ ପରିପୁଷ୍ଟ କରିଛନ୍ତି ।

ପ୍ରଥମ ପରିଚ୍ଛେଦରେ ଜୀବନ ଯେମିତି, ସେହିସବୁ ଅଭୁଲାଦିନ. ଅଣପଚାଶର ଝଡ଼ତୋଫାନ, ବନ୍ୟା ଓ ଦୁର୍ଭିକ୍ଷ, ନେତାଜୀଙ୍କ ସହ ସେଇ ପାଞ୍ଚଘଣ୍ଟା, ଗାନ୍ଧିଜୀଙ୍କ ସହ ଦିନଟିଏ ଯେଉଁଭଳି ଉପାଦେୟ ସ୍ମୃତିକଥା, ସେହିଭଳି ଦ୍ୱିତୀୟ ପରିଚ୍ଛେଦରେ ଅଗ୍ନିଯୁଗ, ଗାନ୍ଧିଯୁଗ, ଲବଣ ସତ୍ୟାଗ୍ରହ ଓ ଅଗଷ୍ଟ ବିପ୍ଳବ ସମ୍ବନ୍ଧିତ ଲେଖାମାନ ଖୁବ୍

Digitized by srujanika@gmail.com

ଉପାଦେୟ ହୋଇଛି, ତୃତୀୟ ପରିଚ୍ଛେଦରେ ଏ ମାଟିର ବୀର ସଂଗ୍ରାମୀ ଯଥା ନୀଳାମ୍ବର ଦାସ, ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, ବିପ୍ଳବୀ ପ୍ୟାରୀମୋହନ ଦାସ, ସଂଗ୍ରାମୀ ରବୀନ୍ଦ୍ରମୋହନ ଦାସ ଏବଂ କଳିଙ୍ଗବୀର ବିଜୁ ପଟ୍ଟନାୟକ ସଂପର୍କରେ ତାଙ୍କର ସ୍ମୃତିଚାରଣ ଖୁବ୍ ପ୍ରାଣସ୍ପର୍ଶୀ । ଚତୁର୍ଥ ପରିଚ୍ଛେଦରେ ଭାରତ ବିଭାଜନ ସଂପର୍କରେ- ଅଖଣ୍ଡ ଭାରତ ବିଖଣ୍ଡିତ ହେଲା, ଅରି ଫେରିନାହିଁ, ଯୁଦ୍ଧ ସରିନାହିଁ, ମୋ ଆଖିଦେଖା ଓଡ଼ିଶା ବିଷୟମାନ ଅତ୍ୟନ୍ତ ତଥ୍ୟପୂର୍ଣ୍ଣ । ସେହିଭଳି ପଞ୍ଚମ ପରିଚ୍ଛେଦରେ ନିଜ ଜନ୍ମମାଟି ଭୋଗରାଇ ସଂପର୍କରେ ଲେଖିବାକୁ ଯାଇ ବିଶଦଭାବରେ ତତ୍କାଳୀନ ଭୋଗରାଇର ରାଜନୀତିକ ଚିତ୍ର ଦେବା ସଙ୍ଗେସଙ୍ଗେ ତା'ର ଭାଷା, ସାହିତ୍ୟ, ସଂସ୍କୃତି, ରାଜନୀତି ସାଂସ୍କୃତିକ ଆନ୍ଦୋଳନ, ସାରସ୍ୱତ ପ୍ରତିଭା, ଲୋକଗୀତ, ସଂଗୀତ ଓ ନାଟ୍ୟକଳା, ବୈଷ୍ଣବଧର୍ମ ଚେତନା, ଆର୍ଥନୀତିକ ବ୍ୟବସ୍ଥା ଓ ଅଗ୍ରଗତି ଇତ୍ୟାଦି ସଂପର୍କରେ ନିଜର ସ୍ମୃତି ଓ ଅନୁଭୂତିରେ ରସାଣିତ କରି ପ୍ରକାଶ କରିଛନ୍ତି । ସେହିଭଳି ଷଷ୍ଠ ପରିଚ୍ଛେଦରେ ଏମାଟିର ବରପୁତ୍ରମାନଙ୍କ ସଂପର୍କରେ ନିଜର ବ୍ୟକ୍ତିଗତ ସଂପର୍କର ଚିତ୍ର ପ୍ରଦାନ କରିଛନ୍ତି ।

ଏବେ ଜୀବନର ସାୟାହ୍ନରେ ଉପନୀତ ହୋଇଥିବା ଏହି ଖ୍ୟାତାନାମା ସଂଗ୍ରାମୀ ଓ ସମାଜସେବୀ ଶ୍ରୀଯୁକ୍ତ ଦୁର୍ଗାଦାସ ମହୋଦୟଙ୍କ ଜୀବନ-ସଂଗ୍ରାମ ଓ ସ୍ମୃତି-ଅନୁଭୂତି ସମ୍ବଳିତ ଏହି ଗ୍ରନ୍ଥ 'ଅମୃତ ସ୍ୱାକ୍ଷର' ପରବର୍ତ୍ତୀ ପିଢ଼ି ପାଇଁ ଏଭଳି କିଛି ତଥ୍ୟ ଯୋଗାଇବ, ଯାହା ସେମାନଙ୍କୁ ନିଜ ମାଟି ସଂପର୍କରେ ଜାଣିବାରେ ସହାୟକ ହେବ ଏବଂ ଜୀବନ ସଂଗ୍ରାମରେ ଯୁଝିବାର ପ୍ରେରଣା ଯୋଗାଇବ ।

ଶ୍ରୀଯୁକ୍ତ ଦାସଙ୍କର ରଚନାଭଙ୍ଗୀ ବେଶ୍ ସାବଲୀଳ ଓ ମର୍ମସ୍ପର୍ଶୀ । ତଥ୍ୟ ଓ ବିଷୟ ଉପସ୍ଥାପନାରେ ଚମତ୍କାରିତା ପରିଲକ୍ଷିତ ହୁଏ । ମୁଁ ଆଶା କରିବି, ଶ୍ରୀଯୁକ୍ତ ଦାସ ଦୀର୍ଘ ନିରୋଗ ଜୀବନ ଲାଭ କରି ଆମୃତ୍ୟୁ ଆମ୍ଭମାନଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହେବା ସଙ୍ଗେସଙ୍ଗେ ପ୍ରେରଣାର ଉତ୍ସ ହୁଅନ୍ତୁ ଏବଂ ଏହି ପୁସ୍ତକ ବହୁଳ ଭାବେ ପ୍ରସାର ଲାଭ କରୁ ।

ସୁନହଟ, ବାଲେଶ୍ୱର

Digitized by srujanika@gmail.com

# ସୂଚୀ

## ପ୍ରଥମ ପରିଚ୍ଛେଦ



## ଦ୍ୱିତୀୟ ପରିଚ୍ଛେଦ



Digitized by srujanika@gmail.com

## ତୃତୀୟ ପରିଚ୍ଛେଦ



## ଚତୁର୍ଥ ପରିଚ୍ଛେଦ



## ପଞ୍ଚମ ପରିଚ୍ଛେଦ



Digitized by srujanika@gmail.com

Digitized by srujanika@gmail.com

# ଜୀବନ ଯେମିତି

ଜନ୍ମରୁ ମୁଁ ଏକ ଗାଁର ପିଲା । ଇଂରେଜ ଅମଳର ଗାଁ । ଅନେକଟା ଅନ୍ଧାରିଆ ଗାଁ । ଗଛଲତା ପୂର୍ଣ୍ଣ ଖାଲ ଢିପରେ ବନ୍ଧୁର ଅସୁସ୍ଥ ପରିବେଶର ଗାଁ । ମଝିରେ ଅଣଓସାରିଆ ବିଲ ଖଣ୍ଡେ ବଂଗ ଉତ୍କଳ ସୀମାରେଖାରେ ଅବସ୍ଥିତ । ଏଠିସେଠି ଅଜାଡ଼ି ହୋଇ ପଡ଼ିଥିବା ୩୦-୪୦ଟି ଚାଳଘରରେ ପୂର୍ଣ୍ଣ ଦୁଇଶହ ସରିକି ଗାଉଁଲି ଲୋକଙ୍କର ବାସସ୍ଥାନ । ଗାଁ ଟିର ଅବସ୍ଥିତି ଏକ ନିମ୍ନ ଭୂଖଣ୍ଡ ଉପରେ ଗଢ଼ି ଉଠିଥିବାରୁ ଏଇ ଗାଁଟିର ନାମ ତଳିଆଡ଼ି ବା ତଲାଡ଼ି । ଗାଁର ଲୋକମାନେ ଅଳ୍ପଶିକ୍ଷିତ ଦିନ ମଜୁରିଆ । ଚାଷପାଇଁ ସେପରି ଧାନ ବିଲ ନାହିଁ । ନିଅଣ୍ଟ ପେଟପାଟଣା ସକାଶେ କିଛି ଲୋକ କଲିକତା ସ୍ଥିତ ବାବୁବାଡ଼ିରେ କିମ୍ବା ସ୍ଥାନୀୟ ଜମିଦାର ଘରେ ହୁକୁମ ମାନୁଥିବା କର୍ମଚାରୀ । ଅବଶିଷ୍ଟ ଲୋକ ମୂଲ ଲାଗିଥାନ୍ତି । ଆର୍ଥିକ ସ୍ଥିତି ଅତି ନଗଣ୍ୟ, କରୁଣ । ଢୋକେ ପିଇ ଦଣ୍ଡେ ଢିଙ୍ଗିଲା ଭଳି । ଏହି ତଳିଆ ଗାଁରେ ରାସ୍ତାମାନେ ନାଳ ଗୋହିରୀ, ବର୍ଷାଦିନେ ପାଣି ଭର୍ତ୍ତି । ସେହି ପାଣି ଠେଲି ଠେଲି ଆମର ଗାଁ ହାଟ ବଜାରକୁ ଯିବାକୁ ପଡ଼େ । ଏହି ଗ୍ରାମରେ ଦୁଇଟି ବ୍ରାହ୍ମଣ କର ଓ ପାଣିଗ୍ରାହୀ ପରିବାର ସହ ୫ଘର କରଣ ଦାସ ପରିବାର କେଉଁ ଅଜଣା ଦକ୍ଷିଣ ରାଇଜରୁ ଆସି ବାସ କରୁଥାନ୍ତି । ବାକି ଲୋକେ ହେଲେ ଜାତିରେ ବଣିଆ । ବିଂଶ ଶତାବ୍ଦୀର ୨ୟ ଦଶକର କଥା କହୁଛି । ଏହି ଦାସ ପରିବାରର ଦୁଇଭାଇ, କୁଶଧ୍ୱଜ ସ୍ଥାନୀୟ ଜମିଦାର ବାଡ଼ିରେ ଅମିନାତି ଓ ତ୍ରୈଲୋକ୍ୟ ରାଜବୈଦ୍ୟ କାମ କରୁଥାନ୍ତି । ବଡ଼ଭାଇ କୁଶଧ୍ୱଜଙ୍କ ପୁଅ ଥିଲେ ପ୍ୟାରୀମୋହନ ଓ ସାନ ତ୍ରୈଲୋକ୍ୟଙ୍କ ପୁଅ ଥିଲି ମୁଁ । ପ୍ୟାରୀଭାଇ ମୋଠାରୁ ଦଶବର୍ଷ ବଡ଼ଥିଲେ । ଦୁଇଭାଇଙ୍କର ଦୁଇ ସନ୍ତାନ ହେଲେ ମଧ ଆମେ ଏକା ମା' ପେଟର ଦୁଇଭାଇ ଭଳି ଚଳୁଥିଲୁ । ପରବର୍ତ୍ତୀ କାଳରେ ଦୁଇ ସହୋଦର ଭାଇ ଭାବରେ ସର୍ବସାଧାରଣରେ ପରିଚିତ ହୋଇଥିଲୁ । ୧୯୨୧ ମସିହାରେ ମୋ ଜନ୍ମବେଳକୁ ପ୍ୟାରୀଭାଇଙ୍କୁ ଦଶବର୍ଷ ପୂରି ଯାଇଥାଏ । ପ୍ୟାରୀଭାଇଙ୍କ ନେତୃତ୍ୱରେ ଭୋଗରାଇରେ କଂଗ୍ରେସର ଅସହଯୋଗ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଯାଇଥାଏ ।

ସ୍ୱାଧୀନତା ସଂଗ୍ରାମୀ ନିଳାମ୍ବର ଦାସ ଆଦିଙ୍କ ପ୍ରରୋଚନାରେ ପ୍ୟାରୀଭାଇ ଗାଁରେ ସଂଗ୍ରାମ ଆରମ୍ଭ କରିଦେଲେ ଗାଁର ସାଥୀ ଭାଇମାନଙ୍କୁ ନେଇ । ବନ୍ଦେମାତରମ୍,



Digitized by srujanika@gmail.com

ମହାତ୍ମାଗାନ୍ଧିଙ୍କ ଜୟ ଧ୍ୱନିରେ ଓ ଇଂରେଜ ସରକାରଙ୍କର ପୁଲିସ୍‌ର ଘନଘନ ପଦଧ୍ୱନି ଅତ୍ୟାଚାରରେ ସ୍ଥାନୀୟ ଗାଁ ଗହଳି ମାଟି ସରଗରମ ଓ ଉତ୍ତେଜିତ ହୋଇ ପଡ଼ିଥାଏ । ବିଦେଶୀ ବସ୍ତ୍ରମାନ ପୋଡ଼ିବା, ଭୋଗରାଇ ରାମନଗର ସମୁଦ୍ର ଉପକୂଳରେ ଲୁଣ ମାରିବା ସକାଶେ ଦଳଦଳ ନରନାରୀଙ୍କର ସୁଅ ଲାଗିଥାଏ । ବନ୍ଦେ ମାତରମ୍ ଧ୍ୱନିରେ ଅଞ୍ଚଳର ବକ୍ଷ ରାତିଦିନ ଆନ୍ଦୋଳିତ ଓ ମୁଖରିତ ହେଉଥାଏ । ମୋ ଶିଶୁ ହୃଦୟରେ ସ୍ୱଦେଶୀ ଆନ୍ଦୋଳନର ପ୍ରଭାବ ପଡ଼ି ଦେଶାତ୍ମବୋଧର ବୀଜ ଅଙ୍କୁରିତ ହେବାକୁ ଲାଗିଲା । ଭାଇଙ୍କର ସଦାସର୍ବଦା ଆଖପାଖ ଗାଁର ତରୁଣମାନଙ୍କ ସହ ମିଶି ଅସହଯୋଗ ଆନ୍ଦୋଳନରେ ବୁଡ଼ି ରହିବା ଦେଖି ମୁଁ ଆଶ୍ଚର୍ଯ୍ୟ ହେବା ସହିତ ଭୀତତ୍ରସ୍ତ ହୋଇ ପଡୁଥାଏ । ୩୦-୩୨ ମସିହାରେ ଭାଇ ଜେଲ୍ ଚାଲିଗଲା ପରେ ମୁଁ ଗାଁର ପ୍ରାଥମିକ ସ୍କୁଲରେ ନାମ ଲେଖାଇଥାଏ । ବାପା, ବଡ଼ବାପା ସେତେବେଳକୁ ସଂସାରରୁ ବିଦାୟ ନେଇଥାନ୍ତି । ଆମର ଆର୍ଥିକ ଅବସ୍ଥା ସେତେବେଳକୁ ବଡ଼ ଶୋଚନୀୟ । ମା' ଲୋକଙ୍କ ଘରେ ଧାନକୁଟି ଖୁଦ, କୁଣ୍ଡା, ଜାଉ ପିଆଇ କୌଣସି ପ୍ରକାରେ ଅନ୍ୟ ଭାଇ ଭଉଣୀମାନଙ୍କୁ ପାଳିଥାନ୍ତି ଅତି କଷ୍ଟରେ । ଘରେ ଖାଇ ପାଠପଢ଼ିବା ମୋ ପକ୍ଷେ ସମ୍ଭବ ହେଲାନାହିଁ । ସ୍କୁଲର ପ୍ରଧାନ ଶିକ୍ଷକ କ୍ଷେତ୍ରମୋହନ ମହାନ୍ତି ଏହା ଦେଖି ଏକ ଉପାୟ କଲେ । ସେ ନିକେ ପାଖ ମନ୍ଦାରୀ ଗ୍ରାମର ୰ମହେନ୍ଦ୍ର ସାହୁଙ୍କ ଘରେ ତାଙ୍କ ପୁଅ ନଗେନ୍ଦ୍ରକୁ ପଢ଼ାଇବା ସକାଶେ ରହୁଥିଲେ । ସାହୁବାବୁଙ୍କୁ ଆମ ଦୁରବସ୍ଥା କହି ତାଙ୍କ ଘରେ ମୋତେ ଆଶ୍ରୟ କରାଇଦେଲେ । ସେଠି ରହି ତିନିବର୍ଷ କାଳ ମୁଁ ନଗେନ୍ଦ୍ର ଭାଇଙ୍କ ସହ ମିଶି ଗାଁ ସ୍କୁଲକୁ ଆସି ପାଠ ପଢୁଥାଏ । ଘରକୁ କେବେ ଆସୁନଥାଏ କି ମା' ବା ଘରର ଅନ୍ୟ କାହା କଥା ମୁଁ ଜାଣିପାରୁନଥାଏ ।

ମୋର ସାନ ପିଉସା ସୁରେନ୍ଦ୍ର ନାଥ ମହାନ୍ତି ଚାକୁଆ ଗ୍ରାମର ସ୍ଥାନୀୟ କଖଡ଼ା ମ.ଇ. ସ୍କୁଲର ପ୍ରଧାନଶିକ୍ଷକ କାମ କରୁଥାନ୍ତି । ତାଙ୍କର ଅଦୂରବର୍ତ୍ତୀ ଝକଝକି ୟୁ.ପି.ସ୍କୁଲର ପ୍ରଧାନ ପଣ୍ଡିତ ସ୍ୱର୍ଗତ ଲକ୍ଷ୍ମୀଚରଣ ଗିରିଙ୍କ ସହ ଗଭୀର ପ୍ରୀତି ଥାଏ । ଗାଁ ସ୍କୁଲରୁ ଉତ୍ତୀର୍ଣ୍ଣ ହେଲାପରେ ପିଉସା ତାଙ୍କୁ କହି ଝକଝକି ସ୍କୁଲରେ ନାମ ଲେଖାଇଦେଲେ । ବାବାଜୀ ଲକ୍ଷ୍ମୀଚରଣ ବାବୁ ଅତୀବ ଧର୍ମପ୍ରାଣ ଓ ସଦାଶୟ ବ୍ୟକ୍ତି ଥିଲେ । ସେ ମୋତେ ଉକ୍ତ ଗ୍ରାମର କୃଷ୍ଣମୋହନ ପାଳ ଘରେ ରଖାଇଦେଲେ । କୁଆରି କୁଣ୍ଡଘରେ ବାବୁଙ୍କ ପୁଅ ଶ୍ରୀକାନ୍ତ ସ୍କୁଲର ୨ୟ ଶିକ୍ଷକ ଥାଆନ୍ତି । ସେତେବେଳେ ତାଙ୍କର କିଛି ପିଲାପିଲି ନଥିଲେ । ତାଙ୍କର ସ୍ତ୍ରୀଙ୍କୁ ମା' ମା' ବୋଲି ଡାକୁଥାଏ । ସେମାନେ ମୋତେ ଖୁବ୍ ସ୍ନେହ ଶ୍ରଦ୍ଧା କରୁଥାଆନ୍ତି । ଏହିପରି ଶିକ୍ଷକମାନଙ୍କର ଓ କୁଣ୍ଡୁ ପରିବାରର ଅଶେଷ କରୁଣା ଓ ଆଶୀର୍ବାଦ



Digitized by srujanika@gmail.com

ମୋ ଉପରେ ରହିଥାଏ । ମୁଁ କୁଆଡ଼େ ଭଲ ପାଠ ପଢୁଥାଏ । ଗରିବ ଛାତ୍ର ବୋଲି ସମେସ୍ତ ସହାନୁଭୂତି ଦେଖାଉଥାନ୍ତି ।

ସେଠାରେ ପଢ଼ିସାରିଲା ପରେ ପିଉସା ବାବୁ ମୋତେ ଆପଣାର ମ.ଇ. ସ୍କୁଲ କଖଡ଼ାରେ ନାମ ଲେଖାଇ ଦେଲେ । ଈଶ୍ୱରଙ୍କ କୃପାରୁ କଖଡ଼ାର ଜମିଦାର ରାୟ ବାହାଦୁର ମନ୍ମଥ ନାଥ ବାବୁଙ୍କ ଘରେ ମୋତେ ସ୍ଥାନ ମିଳିଗଲା । ସେତିକିବେଳେ ମନ୍ମଥନାଥ ବାବୁ ଭଦ୍ରଖର ଏସ୍.ଡି.ଓ. ଥାଆନ୍ତି । ମଝିରେ ମଝିରେ ଘରକୁ ଆସୁଥାନ୍ତି । ଉକ୍ତ ବୋସ୍ ପରିବାରର ପୁଅ ଅନନ୍ତବାବୁ ମୋର ସହପାଠୀ ଥିଲେ ଏବଂ ପରେ ସେ ମାଜିଷ୍ଟ୍ରେଟ୍ ହୋଇପାରିଥିଲେ । ଆହୁରି ସୌଭାଗ୍ୟ ମୋର ଥିଲା ଏଠାରେ ପ୍ରଫେସର ମନ୍ମଥ ନାଥ ଦାସ ମୋର ସହପାଠୀ ଥିଲେ ଓ ବିଶିଷ୍ଟ ସମାଜସେବୀ ତଥା ଆଇନ୍‌ଜୀବୀ ଶଶୀକାନ୍ତ ଭଞ୍ଜ ଆମ ଉପର ଶ୍ରେଣୀରେ ପଢୁଥିଲେ । କଖଡ଼ା ଗ୍ରାମର ଜଣେ ଆଦର୍ଶ ବିଦ୍ୟାବନ୍ତ ଶିକ୍ଷକ ତରୁଣ କୁମାର ସିଂ ଆମକୁ ଟ୍ୟୁସନ କରୁଥାନ୍ତି ଶ୍ରଦ୍ଧା ଓ ବିଦ୍ ପତିର ସହ । ମ.ଇ. ସ୍କୁଲର ସମସ୍ତ ଶିକ୍ଷକ ଆଦର୍ଶ ଓ ଯୋଗ୍ୟ ଥିଲେ । ସେମାନେ ହେଲେ ସର୍ବଶ୍ରୀ ସୁରେନ୍ଦ୍ର ମହାନ୍ତି, ଶ୍ରୀହରି ମହାନ୍ତି, ସୁଧାସିନ୍ଧୁ ମହାନା, ଉପେନ୍ଦ୍ର ପଟ୍ଟନାୟକ । ଏତିକିବେଳେ ଗ୍ରାମର ଘୋଷ ପରିବାରର ସୁରେଶ କୁମାର ଆମ ତଳ ଶ୍ରେଣୀରେ ପଢ଼ିବାକୁ ଲାଗିଲେ । ତାଙ୍କ ସହ ମୋର ଖୁବ୍ ଆନ୍ତରିକତା ଜନ୍ମିଥିଲା । ପରବର୍ତ୍ତୀକାଳରେ ସେ ପାଠପଢ଼ି ବିଲାତ ଯାଇ ଫାଇବର ଇଂଜିନିଅରିଂ ପାସ୍‌କରି ବିହାର, ଓଡ଼ିଶା ଓ ବଂଗର ଝୋଟକଳମାନଙ୍କରେ ହର୍ତ୍ତାକର୍ତ୍ତା ହୋଇ ପାରିଥିଲେ ।

ସେ ସମୟରେ କଖଡ଼ାର କାୟସ୍ଥ ପଡ଼ା ଏକ ସମୃଦ୍ଧ ଓ ସଂସ୍କୃତି ସଂପନ୍ନ ଶିକ୍ଷିତ ଭଦ୍ରବ୍ୟକ୍ତିମାନଙ୍କର ବାସସ୍ଥଳୀ ଥିଲା । ଏକେ ତ ରାୟବାହାଦୁର କଲେକ୍ଟରଙ୍କ ଜନ୍ମସ୍ଥାନ, ମୋତିଲାଲ୍ ବସୁ, ଜିଲ୍ଲାବୋର୍ଡ଼ ଇଂଜିନିଅର ହରେନ୍ଦ୍ରଲାଲ ବସୁ ତଥା ବିଶିଷ୍ଟ ଶିକ୍ଷାବିତ୍ ସୁଧୀର କୁମାର ଘୋଷ୍‌ଙ୍କ ଘର ଏହି ଗ୍ରାମରେ । ସର୍ବୋପରି ନିଷ୍ପାପର ପ୍ରତିଭାବାନ୍ ଶିକ୍ଷକ ତରୁଣ କୁମାର ସିଂ ଗ୍ରାମର ସବୁ ପିଲାଙ୍କୁ ପ୍ରାଥମିକ ଶିକ୍ଷା ଦେବାରେ ବ୍ରତୀ ଓ ପାରଙ୍ଗମ ଥିଲେ । ସେ ସମସ୍ତଙ୍କୁ ମନଜାଣି ପାଠ ପଢ଼ାଉଥିଲେ । ତାଙ୍କଠାରେ ବର୍ଷବର୍ଷ ଧରି ଟ୍ୟୁସନ ହୋଇ ଆମେ ସମସ୍ତେ ଅନନ୍ତ, ଅନିଲ୍, ଭବତୋଷ, ମହେଶ, ଶିଶିର, ରାଧାନାଥ ଓ ସୁରେଶ ଆଦି ମଣିଷ ହୋଇଛୁଁ । ନୀତିନିଷ୍ଠ ଜୀବନ, ଚରିତ୍ରବତ୍ତା ଆଦର୍ଶ ସଂସ୍କୃତିର ବାତାବରଣ ସେ ଛାତ୍ରମାନଙ୍କ ମଧ୍ୟରେ ସୃଷ୍ଟି କରିପାରୁଥିଲେ । ଗ୍ରାମର କାଳୀମାତା 'ତରୁଣ ସଂଘ'ର ତରୁଣ ବାବୁ ପରିଚାଳକ ଥିଲେ ଏବଂ ନିଜ ହାତରେ ଲେଖି 'କାଳିର ଦାଗ' ନାମକ ଏକ ମାସିକ ପତ୍ରିକା (ବଂଗଳା ଭାଷାରେ) ବାହାର କରିଥିଲେ ଓ ତାହାକୁ



Digitized by srujanika@gmail.com

ଚଳାଇ ରଖିଥିଲେ । ପରେ ଏହି ଆଦର୍ଶ ମଣିଷଟି କଖଡ଼ା ଫିଡର ସ୍କୁଲର ପ୍ରଧାନଶିକ୍ଷକ ପଦବୀ ଅଳଙ୍କୃତ କରିଥିଲେ । ତାଙ୍କୁ ଆମେ ସାରାଜୀବନ ଭୁଲିପାରିବୁ ନାହିଁ । କାଳିମାତା ତରୁଣ ସଂଘ ପ୍ରତିବର୍ଷ ଭଲଭଲ ନାଟକମାନ ବଂଗଳାରେ ମଞ୍ଚସ୍ଥ କରି ଅଭିନୟ କରୁଥିଲେ ଓସ୍ତାଦ ଆଦ୍ୟାଚରଣ ପଣ୍ଡାଙ୍କ ନିର୍ଦ୍ଦେଶନାରେ । ରମାପତି, ବିଶ୍ୱପତି, ସୁରପତି, ଭାନୁ ବୈଷ୍ଣବ, ନିତ୍ୟାନନ୍ଦ ପାଣି, ଗୌରାଙ୍ଗ ସୁର ଆଦି ମିଶି ବର୍ଗେବର୍ଗୀ ପୃଥ୍ୱୀରାଜ, ନରମେଧ ଯଜ୍ଞ, ଗାନ୍ଧାରୀ ଆଦି ପ୍ରସିଦ୍ଧ ନାଟକମାନ କାଳୀତଳାରେ ଅଭିନୟ କରୁଥାନ୍ତି । ଇଂଜିନିଅର ହରେନ୍‌ବାବୁ ଜିଲ୍ଲାବୋର୍ଡ଼ର ଯନ୍ତ୍ରୀ ଥିଲେ । କଖଡ଼ା ଏମ୍.ଇ. ସ୍କୁଲ, ବାଳିକା ସ୍କୁଲ ଓ ଜଗନ୍ନାଥ ମନ୍ଦିରର ସ୍ଥାୟୀ ଗୃହ ସେ ନିର୍ମାଣ କରାଇଥିଲେ । କଲେକ୍ଟର ମନବାବୁ ଇଂରେଜ ଅଧୀନରେ ଥାଇ ମଧ୍ୟ ୪୩ ଓ ୪୪ର ଦୁର୍ଭିକ୍ଷ ସମୟରେ ଭୋଗରାଇ ତଥା ଉତ୍ତର ବାଲେଶ୍ୱର ଲୋକଙ୍କୁ ହା ଅନ୍ନ କବଳରୁ ରକ୍ଷା କରିବାକୁ ଶତଚେଷ୍ଟା କରିଥିଲେ । ଏଣୁ କଖଡ଼ା ଗ୍ରାମର ସେବେଳର ଆଦର୍ଶ ଶିକ୍ଷା ଓ ସଂସ୍କୃତିଗତ ବାୟୁମଣ୍ଡଳର ପ୍ରଭାବ ଆମ ସମସ୍ତଙ୍କ ଉପରେ ସାରା ଜୀବନ ପଡ଼ି ଜୀବନ ସଂଗ୍ରାମର ବାଟ କଢ଼ାଇ ନେବାରେ ପ୍ରଭୂତ ସାହାଯ୍ୟ କରିଛି ।

ଆଉ ସୁଧୀର କୁମାର ଘୋଷ ଆମ ଗ୍ରାମର ଦୁଇ ସ୍କୁଲର ପ୍ରଧାନଶିକ୍ଷକ, ତାଙ୍କର ଆଦର୍ଶ ଶିକ୍ଷକପଣିଆ ହେତୁ ସେ ତ ମରି ଅମର ହୋଇ ଯାଇଛନ୍ତି । ମୋର ଛାତ୍ରାବସ୍ଥାରେ ଏହି ବଂଗାଳୀ ପରିବାରର ନରନାରୀ ସମସ୍ତଙ୍କର ଅକୁଣ୍ଠ ସାହାଯ୍ୟ ସହଯୋଗ, ମାୟା ମମତା ସବୁଦିନ ପାଇଁ ମୋତେ କୃତଜ୍ଞ କରି ରଖିଛି ।

୧୯୩୮ରେ ମୁଁ ମାଇନର ପାଶ୍ କଲି ସତ କିନ୍ତୁ ଆଗକୁ ପଢ଼ିବାର ଇଚ୍ଛା ଥିଲେ ମଧ୍ୟ ମୋର ଗରିବ ଅବସ୍ଥା ତାହା କରାଇ ଦେଲାନାହିଁ । ମୋର ବନ୍ଧୁମାନେ ଅନେକ ପ୍ରାଇମେରୀ ସ୍କୁଲରେ ଶିକ୍ଷକ ପଦରେ ନିଯୁକ୍ତ ହେଲେ ମାସିକ ୯ଟଙ୍କା ବେତନରେ । ସେତେବେଳେ ଏକଟଙ୍କାରେ ବତିଶି ସେର ଚାଉଳ ମିଳୁଥିଲା । ମାତ୍ର ତିନିଟଙ୍କାରେ ଜଣେ ଛାତ୍ର ସ୍କୁଲ ବୋର୍ଡ଼ିଂରେ ରହି ପାଠ ପଢ଼ିପାରୁଥିଲା ।

ଜିଲ୍ଲାରେ ମାତ୍ର ତିନୋଟି ହାଇସ୍କୁଲ ଥିଲା । ଲକ୍ଷ୍ମଣନାଥ ଗୋଲକମଣି ହାଇସ୍କୁଲ, ବାଲେଶ୍ୱର ଜିଲ୍ଲାସ୍କୁଲ ଓ ମିଶନ ହାଇସ୍କୁଲ ବାଲେଶ୍ୱର । ଏସବୁ ସ୍କୁଲ କଥା ମୁଁ କେବଳ କାନରେ ଶୁଣିଥିଲି । କିନ୍ତୁ ଆଖିରେ ଦେଖିନାହିଁ । ପଢ଼ିବାତ ଦୂରର କଥା ଯାଇ ଦେଖିବାର ସାଧ ମଧ୍ୟ ନଥିଲା । ଛ'ବର୍ଷ ବୟସରୁ ବାପ ଛେଉଣ୍ଡ ଥିଲି । ଦୁଃଖିନୀ ମା' ମୋତେ ପ୍ରାଇମେରୀ ଶିକ୍ଷକତା କରିବାକୁ ଜିଦ୍ କରୁଥାନ୍ତି । କାରଣ ଦାରିଦ୍ର୍ୟର କଷାଘାତ ତାଙ୍କୁ ଜର୍ଜରିତ କରି ପକାଉଥାଏ । ପରଘର ଢିଙ୍କି ସେ ଆଉ ଟାଣିପାରୁ ନଥିଲେ । କ'ଣ



Digitized by srujanika@gmail.com

କରିବି ? ଏଣେ ଘରର ଏହି ଦୁରବସ୍ଥା, ତେଣେ ଆଗକୁ ପଢ଼ିବାର ଦୁର୍ବାର ଆକାଂକ୍ଷା । କିଛି ଅନୁକୂଳ ଉପାୟ ମୁଁ ପାଉନଥାଏ । ମନପ୍ରାଣ ବଡ଼ ଆକୁଳି ବିକୁଳି ହେଉଥାଏ ।

କଥାରେ ଅଛି "ଇଚ୍ଛା ଥିଲେ ଉପାୟ ଆପେ ଆସେ" । ଭାଗ୍ୟକୁ ଏତିକିବେଳେ ଆମ ପ୍ୟାରୀଭାଇଙ୍କ ଉପନୟନ ବ୍ରତ ଆମ ଗାଁରେ ହେଲା । ମାମା ତୁଳସୀ ଦାସ ଘୋଷ ଆମ ଗାଁକୁ ଭାଇଙ୍କ ସହ ଆସିଥିଲେ । ଭାଇ ବାଲେଶ୍ୱର ସହରର ଚିଡ଼ିଆପୋଲ ସନ୍ନିକଟସ୍ଥ ରେବତୀ ସରକାରଙ୍କ ପୁଅ ପ୍ରିୟ ସରକାରଙ୍କ ଘରେ ମାମା ତୁଳସୀ ଦାସ ବାବୁଙ୍କ ସହ ରହୁଥିଲେ । ତୁଳସୀବାବୁ ପ୍ରିୟ ବାବୁଙ୍କ ମାମୁଥିଲେ । ତାଙ୍କ ବଡ଼ ଭଉଣୀ ସୁଲକ୍ଷଣା ଦେବୀ ପ୍ରିୟ ବାବୁଙ୍କର ମା' ଅଟନ୍ତି । ପ୍ରିୟବାବୁ ଏମ୍.ଏ.ବି.ଏଲ୍.ପାସ କରି ଓକିଲାତି କରୁଥିଲେ । ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ । ମାମା ବି.ଏସ୍.ସି. ପାସ୍ କରିଥିଲେ । ମୋତିଗଞ୍ଜ ବଜାରରେ 'ତୁଳସୀରାମ ଏଣ୍ଡ କମ୍ପାନୀ' ନାମରେ ଏକ ବଡ଼ ଧରଣର ତେଜରାତି ଦୋକାନ ସେ ଖୋଲିଥିଲେ । ପ୍ରିୟ ବାବୁଙ୍କ ସହ ହଜାରିବାଗ୍ ଜେଲରୁ ପ୍ୟାରୀଭାଇ ଫେରି ଆଉ ଘରକୁ ନଆସି ମାମାଙ୍କ ସହ ଏହି କାରବାରରେ ମାତିଗଲେ । ଆସ୍ତେଆସ୍ତେ ଭାଇ ଏହି ଦୋକାନର ସର୍ବେସର୍ବା ବନିଗଲେ । ସେତେବେଳକୁ ବାପା ବଡ଼ବାପା ସ୍ୱର୍ଗବାସୀ ହୋଇଥାନ୍ତି । ଘରେ ଆମର ବଡ଼ ଦୁଃଖଦ ଅବସ୍ଥା ।

ମୋ ମନକଥା ମା' ଭାଇଙ୍କୁ ଓ ମାମାଙ୍କୁ ଜଣାଇଲେ । ମୋର ପଢ଼ିବାର ଆଗ୍ରହ ଦେଖି ସେମାନେ ରାଜି ହେଲେ ଏବଂ ଭଗବାନଙ୍କ କୃପାରୁ ମୁଁ ୧୯୩୮ ମସିହାରେ ବାଲେଶ୍ୱର ଜିଲ୍ଲାସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ ଏହି ଜିଲ୍ଲାସ୍କୁଲ ଏବେକାର ଫକୀରମୋହନ କଲେଜ ଗୃହରେ ଚାଲୁଥାଏ । ଇଂରାଜୀ ମିଡିୟମ୍‌ରେ ଶ୍ରୀମାନଙ୍କରେ ଶିକ୍ଷାଦାନ ଚାଲୁଥାଏ । ରାଜ୍ୟର ବହୁ ଖ୍ୟାତନାମା ଶିକ୍ଷକ ଏହି ଜିଲ୍ଲାସ୍କୁଲରେ ଶିକ୍ଷକତା କରୁଥିଲେ । ରାୟ ସାହେବ ଭୀମଚରଣ ରାଉତ, ବିଶିଷ୍ଟ ଗଣିତଜ୍ଞ ପ୍ରଧାନ ଶିକ୍ଷକ କାମ କରୁଥିଲେ । ସଂଯୋଗକ୍ରମେ ଯାଇ ଦେଖିଲି ମୋର ସତୀର୍ଥ ମନ୍ମଥ ନାଥ ଦାସ ସହିତ ଭୋଗରାଇରୁ ବସନ୍ତ ମହାନ୍ତି, ନଗେନ୍ଦ୍ର ଚାନ୍ଦ, ମୃତ୍ୟୁଞ୍ଜୟ ଜେନା ଆଦି ମୋ କ୍ଲାସରେ ପୂର୍ବରୁ ପଢୁଛନ୍ତି । ଖୁବ୍ ଭଲ ଲାଗିଲା ସେମାନଙ୍କ ସହ ମିଶି । ଏମାନେ ସମସ୍ତେ ହଷ୍ଟେଲ ଓ ଉଷା ମେସ୍‌ରେ ରହୁଥାନ୍ତି । ମୁଁ ଚାଲିଚାଲି ଚିଡ଼ିଆପୋଲଠାରୁ ଜେଲ୍‌ଖାନା ପାଖଦେଇ ସ୍କୁଲକୁ ଯିବାଆସିବା କରୁଥାଏ । ଏକାଦଶ ଶ୍ରେଣୀ ଯାଏ ଚାରିବର୍ଷର ପାଠ ଆମକୁ ପଢ଼ିବାକୁ ହେବ ଜାଣିଲି । ସେ ସମୟରେ କେବଳ ଥିଲାବାଲା ଲୋକଙ୍କର ପିଲାମାନେ ଏହି ସରକାରୀ ସ୍କୁଲରେ ପଢ଼ି ପାରୁଥିଲେ । କେବଳ ମୁଁ ହିଁ ଥିଲି ଗରିବ । ଭାଇ ଓ ମାମା ମୋତେ ସୁଯୋଗ ଦେଇଥିଲେ । ଓକିଲ



Digitized by srujanika@gmail.com

ଚାରୁଚନ୍ଦ୍ର ରାୟଙ୍କର ମଧ୍ୟମପୁତ୍ର ଭବେଶ ରାୟ ମଧ୍ୟ ଆମ ସହିତ ପଢୁଥିଲେ । ଆମ ବସା ପାଖରୁ ମାତ୍ର ଏକ ଫର୍ଲଙ୍ଗ ଦୂରରେ ମିଶନ ସ୍କୁଲରେ ଆମର ସମସାମୟିକ ଶ୍ରୀ ରାଧାକୃଷ୍ଣ ପାଣିଗ୍ରାହୀ ଓ ଇନ୍ଦୁଭୂଷଣ ଦାସ ପ୍ରମୁଖ ପାଠ ପଢୁଥିଲେ । ପରବର୍ତ୍ତୀକାଳରେ ଏମାନେ ମୋର ଘନିଷ୍ଠ ହୋଇପାରିଥିଲେ ।

ଜିଲ୍ଲାସ୍କୁଲରେ ସେତେବେଳେ ୭୫୦ଜଣ ଛାତ୍ର ଅଧ୍ୟୟନ କରୁଥିଲେ । ଏମାନେ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନ୍ ସଂପ୍ରଦାୟର ଥିଲେ । ଇଂରାଜୀ, ବଂଗଳା, ଓଡ଼ିଆ ଓ ଉର୍ଦ୍ଦୁ ପଢ଼ାଯାଉଥିଲା । ସଭିଙ୍କ ମାଧ୍ୟମ ଇଂରାଜୀ ଥିଲା । ୪୦ଜଣରୁ ଊର୍ଦ୍ଧ୍ୱ ପ୍ରବୀଣ ଶିକ୍ଷକ ଥିଲେ । ମୌଲବୀ ଇବ୍ରାହିମ୍ ବେଗ୍, ଇବ୍ରାହିମ୍ ଖାଁ, ସତାର ମିଆଁ, ଜଗନ୍ନାଥ ସାହା, ଜଗନ୍ନାଥ ହରିଚନ୍ଦନ, କରୁଣାସିନ୍ଧୁ ରାୟ, ମହେଶ୍ୱର ମିଶ୍ର, ମହିମ ନନ୍ଦ, ନଗେନ୍ଦ୍ର କର, ମନମୋହନ ପଟ୍ଟନାୟକ, କୃଷ୍ଣଚନ୍ଦ୍ର କର ଆଦି ଖ୍ୟାତନାମା ଗୁରୁଜୀମାନେ ଶିକ୍ଷକତା କରୁଥିଲେ । ସେମାନେ ଏପରି ସଫଳ ଶିକ୍ଷକ ଥିଲେ ଯେ ପାଠ୍ୟପୁସ୍ତକ ବିନା ସାହାଯ୍ୟରେ ପାଠ ପଢ଼ାଇ ପାରୁଥିଲେ । ଘରୋଇ ଟ୍ୟୁସନ ପାଠପଢ଼ାର ବ୍ୟବସ୍ଥା ସେ କାଳରେ ନଥିଲା । କ୍ଲାସରେ ବସି ପାଠଦାନ ଶୁଣି ଆମେ ଖାତାରେ ନୋଟ୍ କରି ଆଣୁଥିଲୁ ଏବଂ ପରୀକ୍ଷାବେଳେ ଏହି ନୋଟ୍‌ଖାତାମାନ ପଢ଼ି ଆମେ ପରୀକ୍ଷା ଦେଉଥିଲୁ । ହେଡ୍‌ମାଷ୍ଟର ଭୀମବାବୁ ଅତି କଡ଼ା ମିଜାଜ୍‌ର ଲୋକଥିଲେ । ଶିକ୍ଷକ ଓ ଛାତ୍ରମାନେ ତାଙ୍କୁ ଖୁବ୍ ସମିହ କରି ଚଳୁଥିଲେ । ଜିଲ୍ଲା କଲେକ୍ଟର ସଲମନ୍ ସାହେବ ଆମ ସ୍କୁଲ କମିଟିର ଅଧ୍ୟକ୍ଷ ଥିଲେ । ଶ୍ୟାମସୁନ୍ଦର ତ୍ରିପାଠୀ ଡି.ପି.ଆଇ. ଓ ଏସ୍ ରାୟ ସ୍କୁଲ ବିଭାଗର ଇନ୍‌ସପେକ୍ଟର ଥିଲେ । ଏପରିକି ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ ଆମ ସ୍କୁଲ ପରିଦର୍ଶନରେ ଆସୁଥିଲେ । ସେ ସମୟରେ ଆମ ଜିଲ୍ଲାସ୍କୁଲ ସମଗ୍ର ଜିଲ୍ଲାରେ ଏକ ଆଦର୍ଶ ସ୍କୁଲ ଥିଲା । ପାଠପଢ଼ା ସମେତ କ୍ରୀଡ଼ା, ବକ୍ତୃତା ତଥା ଅନ୍ୟାନ୍ୟ କ୍ଷେତ୍ରରେ ଆମ ସ୍କୁଲ ଆଗୁଆ ଥିଲା ଏବଂ ଏହି ସ୍କୁଲର ଛାତ୍ର ଭାବରେ ଆମେ ନିଜକୁ ଅତି ଭାଗ୍ୟବାନ ଓ ଗର୍ବିତ ମନେ କରୁଥିଲୁ । ମୋ ଜୀବନରେ ଯାହା କିଛି ଶିକ୍ଷା ଏହି ସ୍କୁଲରୁ ଘଟିଥିଲା । କାରଣ ପରବର୍ତ୍ତୀ କାଳରେ କଲେଜ୍ ଶିକ୍ଷା ମୋ କପାଳରେ ଘଟିନଥିଲା ।

ଏମାନଙ୍କ ଛଡ଼ା ଅବ୍‌ଦୁଲ୍ ସୋଭାନ୍, ଇଦ୍ରିଖ ଖାଁ, ଫେଦା ମିଆଁ, ବଦ୍ରୁଲିନର ହୋସେନ୍, ସନ୍ତୋଷ ବର୍ଦ୍ଧନ, ଶ୍ରୀକାନ୍ତ ବର୍ଦ୍ଧନ, ସୁବାସ ମହାପାତ୍ର, ପ୍ରସୁନ ବୋସ, ଫ୍ରାନ୍‌ସିସ୍ ଜୋସେଫ୍, ବାରୀନ୍ଦ୍ର ମିତ୍ର, ପୂର୍ଣ୍ଣ ଶତପଥୀ, ରାମନାରାୟଣ ପାଣି, ବଦ୍ରିପ୍ରସାଦ ତିୱାରୀ ପ୍ରଭୃତି ମୋ ସହ ପାଠ ପଢୁଥିଲେ । ଏମାନେ ସମସ୍ତେ ବାଲେଶ୍ୱର ସହରର ବାସିନ୍ଦା ଥିଲେ ।



Digitized by srujanika@gmail.com

୧୯୩୮ରୁ ୪୧ ମସିହା ଯାଏ ଏହି ସ୍କୁଲରେ ମୋର ଅଧ୍ୟୟନ କାଳ ଥିଲା ୪ବର୍ଷ । ପ୍ୟାରୀଭାଇ, ପ୍ରିୟବାବୁ, ତୁଳସୀ ମାମୁ ଏମାନେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ଜିଲ୍ଲାର ପ୍ରମୁଖ ସଂଗ୍ରାମୀମାନଙ୍କର ଘନଘନ ଯାତାୟତ ଆମ ବସାକୁ ଥିଲା । ଏଣୁ ମହତାବ ବାବୁ, କରୁଣାକରବାବୁ, ରବିବାବୁ, ଗୌରବାବୁ ଓ ସର୍ଦ୍ଦାରଜୀ ପ୍ରମୁଖଙ୍କୁ ଦେଖିବାର ଶୁଣିବାର ତଥା ସେମାନଙ୍କ ସାହଚର୍ଯ୍ୟ ଲାଭ କରିବାର ସୁଯୋଗ ବାରମ୍ବାର ମୋତେ ମିଳୁଥିଲା । ଛାତ୍ରଜୀବନରୁ ଦେଶାତ୍ମବୋଧ, ଗୋରା ଇଂରେଜୀ ବିରୋଧୀ ଭାବ ମୋ ଭିତରେ ପଶି କ୍ରମେ ମୋତେ ସଂଗ୍ରାମୀ କରି ଗଢ଼ି ତୋଳିବାର ସାହାଯ୍ୟ କରିଥିଲା । ଏହି ସମୟକାଳ ୨ୟ ବିଶ୍ୱଯୁଦ୍ଧର ଆଦି ସମୟ ଥିଲା । ଗୋରା ଓ ଆମେରିକୀୟ ସୈନ୍ୟମାନେ ସାରା ସହରକୁ ଛାଇ ହୋଇ ରହିଥିଲେ । ୧୯୪୧ରେ ଯୁଦ୍ଧ ବିରୋଧୀ ଆନ୍ଦୋଳନ ବ୍ୟକ୍ତିଗତ ସତ୍ୟାଗ୍ରହ କଂଗ୍ରେସ ଆରମ୍ଭ କଲା । ବଛାବଛା କଂଗ୍ରେସ ଲୋକେ ଏହି ଆନ୍ଦୋଳନରେ ଯୋଗଦେଲେ ଓ ଜେଲ୍ ଗଲେ । ପ୍ୟାରୀଭାଇଙ୍କ ସାନଭାଇ ଭଜହରି ଭାଇ ଏହି ଆନ୍ଦୋଳନରେ ମୋ ଆଖି ଆଗରେ ରେମୁଣା ହାଟରେ ଧରାହୋଇ ଜେଲ୍ ଗଲେ । ବିଶ୍ୱନାଥ ଦାସଙ୍କ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲା । ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ । କଂଗ୍ରେସ ଦଳରୁ ଚାରୁବାବୁ, ସରଳା ଦେବୀ ଗୋଦାବରୀଶ ମିଶ୍ର ଓ ନୀଳକଣ୍ଠ ଦାସ ପ୍ରମୁଖ ଏଥିରେ ଯୋଗଦେଲେ । ବିଶ୍ୱଯୁଦ୍ଧ ଘୋରତର ଚାଲିଥାଏ । ଏକ ପକ୍ଷରେ ମିତ୍ରଶକ୍ତି, ବ୍ରିଟିଶ ଜାତି, ଫ୍ରାନ୍ସ, ଆମେରିକା, ଋଷିଆ ଓ ଅନ୍ୟପକ୍ଷରେ ଜର୍ମାନୀ, ଇଟାଲି, ଜାପାନ ଆଦି ଫାସିଷ୍ଟ ଶକ୍ତି । ସମଗ୍ର ପୃଥିବୀ ଯୁଦ୍ଧର ଘନଘଟାରେ କମ୍ପିବାକୁ ଲାଗିଲା । ଭାରତବର୍ଷର ଜନସାଧାରଣଙ୍କ ବିନା ମତରେ ଇଂରେଜ ସରକାର ଭାରତକୁ ଯୁଦ୍ଧରେ ସାମିଲ କରି ଘୋଷଣା କଲେ । ଜାତୀୟ କଂଗ୍ରେସ ଏହି ଘୋଷଣାର ପ୍ରତିବାଦରେ ଆନ୍ଦୋଳନ କଲା । ଭାରତର ଅବସ୍ଥା ଏପରି ସଂଗୀନ୍ ହେଲା ଯେ, ଜାତୀୟ କଂଗ୍ରେସ ବମ୍ବେଠାରେ ୧୯୪୨ ଅଗଷ୍ଟ ୮ ତାରିଖରେ ବସି ଅନ୍ତିମ ସଂଗ୍ରାମ ସକାଶେ 'ଇଂରେଜ ଭାରତଛାଡ଼' ପ୍ରସ୍ତାବ ଗ୍ରହଣ କଲା । ବିଜୟ ଲକ୍ଷ୍ମୀ ପଣ୍ଡିତ୍ ସମଗ୍ର ପ୍ରାଚ୍ୟ ଖଣ୍ଡ ଓ ଆମେରିକା ବୁଲି ଇଂରେଜ ଅତ୍ୟାଚାର ଓ ଯୁଦ୍ଧ ବିରୁଦ୍ଧରେ ପ୍ରଚାର କଲେ । ଇଂରେଜ ସରକାର ବଡ଼ ଅଡୁଆରେ ପଡ଼ିଲେ । ସମଗ୍ର ଭାରତର ଜନଜୀବନ ଅସ୍ତବ୍ୟସ୍ତ ହୋଇ ଉଠିଲା । ଭାରତର ଆପାମର ଜନସାଧାରଣ ଇଂରେଜମାନଙ୍କୁ ଭାରତରୁ ହଟାଇବା ସକାଶେ ପାଗଳ ପରି ଲାଗିପଡ଼ିଲେ । ହିଂସା ଓ ଅହିଂସା ମିଶି ଏକାକାର ହୋଇଗଲା । ସ୍କୁଲ, କଲେଜ, କୋର୍ଟ, କଚେରି ଓ ବ୍ୟବସାୟକେନ୍ଦ୍ରମାନ ସବୁ ବନ୍ଦ ହୋଇଗଲା । ଇଂରେଜ ସରକାର ମାରମୁଖୀ



Digitized by srujanika@gmail.com

ହୋଇପଡ଼ିଲେ । ହିତାହିତ ଜ୍ଞାନ କାହାରି ରହିଲା ନାହିଁ । ଭାରତର ସବୁ କଂଗ୍ରେସ ନେତାଙ୍କୁ ଗିରଫ କରି ଜେଲ୍ ମାନଙ୍କରେ ଅଟକ କରିଦିଆଗଲା । ଥୋକେ ଅଗ୍ରଗାମୀ ଯୁବନେତା ଆତ୍ମଗୋପନ କରି ଆନ୍ଦୋଳନକୁ ଚଳାଇ ରଖିଲେ । ପୋଡ଼ାଜଳା, ଗୁଳିଗୋଳା ଉଭୟ ପକ୍ଷରୁ ଚାଲି ଭାରତର ବକ୍ଷ ଉତ୍ତପ୍ତ ହୋଇ ଉଠିଲା । ଆମ ଜିଲ୍ଲାରେ ପୁଲିସ୍ ଗୁଳିରେ ଇରମ୍, ଲୁଣିଆ, ଧୁସୁରି, ଖେରୀ ଓ ଲକ୍ଷ୍ମଣନାଥରେ ଶହଶହ ଲୋକ ପ୍ରାଣ ହରାଇଲେ ।

ଆମ ରାଜ୍ୟର ସମସ୍ତ ପ୍ରମୁଖ କଂଗ୍ରେସ ନେତାଙ୍କୁ ସରକାର ଧରିନେଇ ଜେଲ୍‌ରେ ପୂରାଇ ଦେଲେ । ସୁରେନ୍ଦ୍ର ଦ୍ୱିବେଦୀଙ୍କ ନେତୃତ୍ୱରେ ଦଳେ ଉଗ୍ର କଂଗ୍ରେସ କର୍ମୀ ଲୁଚିରହି ବିପ୍ଳବ ସଂଗଠନ କରିବାକୁ ଲାଗିଲେ । ରାଜ୍ୟର ଇଂରେଜ ଶାସନମୁଖ୍ୟ ସେକ୍ରେଟାରୀ ବାଉଷ୍ଟୋଡ୍ ସାହେବ ବଡ଼ କଂଗ୍ରେସ ବିରୋଧୀ ଓ ଅତ୍ୟାଚାରୀ ଥିଲେ । ଏହାଙ୍କୁ ଗୋପନରେ ହତ୍ୟା କରିବାକୁ ମସୁଧା ଚାଲିଲା । ବାଲେଶ୍ୱରରେ ଛାତ୍ର ଆନ୍ଦୋଳନ ତେଜି ଉଠିଲା । ଆମେ କେତେକ ତ୍ରିଲୋଚନ, ସୁବାସ ଓ ପୀତାମ୍ବର ଆଦି ଗିରଫ ହୋଇ ଜେଲ୍ ଗଲୁ ଅଗଷ୍ଟ ମାସ ଶେଷଭାଗରେ । ପଡ଼ୋଶୀ ବଂଗ ଦେଶରେ ଏହି ଆନ୍ଦୋଳନ ପ୍ରବଳ ହୋଇ ଉଠିଲା । ସବୁ ଜେଲ୍‌ରେ ଜାଗାର ଅଭାବ ଦେଖାଦେଲା ସଂଗ୍ରାମୀମାନଙ୍କୁ ରଖାଇବାକୁ । ଏତିକିବେଳେ ଜେଲ୍‌ରେ ବସିବସି ମୁଁ ଉତ୍ତରବାଲେଶ୍ୱରର ଦୁର୍ଭିକ୍ଷ ଗୀତ ଓ ଇରମ ଗୁଳିକାଣ୍ଡ ଉପରେ କରୁଣ ଗୀତ ରଚନା କରିଥିଲି - ସେ ଗୀତମାନ ଇଂରେଜ ସରକାରର ପ୍ରଚଣ୍ଡ ମୁଣ୍ଡବ୍ୟଥାର କାରଣ ହୋଇଥିଲା ।

ତାପରେ ୧୯୪୨ର ମହାବାତ୍ୟା ୪୩ର ପ୍ରଳୟଙ୍କରୀ ବନ୍ୟା, ଦୁର୍ଭିକ୍ଷ, ହଙ୍ଗର ମାର୍ଚ୍ଚ, ଖାଦ୍ୟଦ୍ରବ୍ୟ ଲୁଟ୍‌ତରାଜ, କୋଟ କଚେରିରେ ମାଲିମୋକଦ୍ଦମା ଚାଲିଲା ଆମ ବିରୁଦ୍ଧରେ ।

୧୯୪୪ ଅଗଷ୍ଟ ମାସରେ ମୁଁ ବାଲେଶ୍ୱର ଜେଲ୍‌ରୁ ବରହମପୁର ସର୍କଲ ଜେଲ୍‌କୁ ବଦଳି ହୋଇ ଆସିଲି । ଏହି ପ୍ରକାଣ୍ଡ ଜେଲ୍‌ଖାନାରେ କଏଦୀଙ୍କ ଛଡ଼ା ପ୍ରାୟ ୫ହଜାର ରାଜନୀତିକ ବନ୍ଦୀଙ୍କୁ ରଖାଯାଇଥାଏ । ଏମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଜେଲ୍ ନିର୍ମାଣ କରାଯାଇଥାଏ । କେବଳ ମହତାବ ବାବୁଙ୍କ ଛଡ଼ା ଆଉ ପ୍ରାୟ ରାଜ୍ୟର ସମସ୍ତ ବଳିଷ୍ଠ ନେତୃବୃନ୍ଦ ଏଠାରେ ବସା ବାନ୍ଧିଥାନ୍ତି । ମହତାବଜୀ ଅହମ୍ମଦ ନଗର ଫୋର୍ଟରେ ରହିଥିଲେ । ଜେଲ୍‌ଖାନା ମଧ୍ୟରେ କି ଅପୂର୍ବ ପରିବେଶ । ବଡ଼ିସକାଳୁ ସମୂହ ପ୍ରାର୍ଥନା ପରେ କର୍ମମୟ ଜୀବନର ଶୁଭାରମ୍ଭ । ସେ ଏକ ମଣିଷଗଢ଼ା କର୍ମଶାଳା । ବନ୍ଦୀମାନଙ୍କ ମଧ୍ୟରେ ରାଜ୍ୟର ସମସ୍ତ ଦୁର୍ଦ୍ଧର୍ଷ ସଂଗ୍ରାମୀ, କର୍ମବୀର, ତ୍ୟାଗୀ, ଗାନ୍ଧିବାଦୀ ରାଜନୀତିଜ୍ଞ



Digitized by srujanika@gmail.com

ତଥା ସବୁ ପାଠରେ ଧୁରନ୍ଧର ଲୋକ ଥାଆନ୍ତି । ସବୁ ଦେଶପ୍ରେମୀ ସତ୍ ଲୋକଙ୍କ ମେଳି । ସକାଳଠାରୁ ରାତି ଅଧଯାଏ ସବୁ ଶ୍ରେଣୀ ପାଠ କାମ ଚାଲୁଥାଏ । ବିଶ୍ରାମ ଘଣ୍ଟାଏ ମାତ୍ର ଖେଳ କସରତ, ପୁଣି ରାତି ଅଧଯାଏ ପାଠ । ଏହି ଜେଲ୍‌ଖାନା ଏକ ବିଶାଳ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଥାଏ । ସରକାର ଖାଇବାକୁ ରହିବାକୁ ଜାଗା ଦେଇଥାନ୍ତି । ଗୋଟାଏ ମୁହୂର୍ତ୍ତ ଆମର ବୃଥାରେ କଟେନାହିଁ । ଗୁରୁ ଶିଷ୍ୟମାନଙ୍କର କି ଅପୂର୍ବ ପ୍ରାଣର ମେଳ । କୋରାପୁଟର ଶବର ନେତା ଲକ୍ଷ୍ମଣ ନାଏକ ମଧ ଏହି ଜେଲ୍‌ରେ ଥାଆନ୍ତି । ତାଙ୍କୁ ଫାଶୀଦଣ୍ଡ ଆଦେଶ ମିଳିଥାଏ । ତାଙ୍କୁ ଯେଉଁଦିନ ଏହି ଜେଲ୍‌ରେ ଫାଶି ଦିଆ ଯାଇଥିଲା ସେଦିନ ଆମେ ଉପବାସ ରହି ନିରବ ପ୍ରାର୍ଥନା କରିଥିଲୁ । ଆଖିପତା ଆମର ଲୋତକରେ ଭରି ଯାଇଥିଲା । ଭି. ରାମନାଥନ୍ ଆଇ.ସି.ଏସ୍. ବାଲେଶ୍ୱରର କଲେକ୍ଟର ଥିଲେ । ଯୁବକଲୋକ ଉତ୍ତର ବାଲେଶ୍ୱରର ଦୁର୍ଭିକ୍ଷ ଦେଖି ଅଥୟ ହୋଇ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା କରିବାକୁ ସେ ସରକାରଙ୍କୁ ସୁପାରିଶ କଲେ । ତାଙ୍କର ଏହି ଦୋଷ ଯୋଗୁଁ ତାଙ୍କୁ ୬ମାସ କାଳ ଛୁଟିରେ ଯିବାକୁ ବାଧ କରାଯାଇଥିଲା । ଏହି ଛୁଟି କାଳ ମଧରେ ଲକ୍ଷ୍ମଣ ନାଏକଙ୍କର ବିଚାର ଜଣେ ସ୍ପେଶାଲ ଜଜ୍ ଭାବରେ ନିଯୁକ୍ତ ହୋଇସେ ତାଙ୍କୁ ଫାଶି ଦଣ୍ଡରେ ଦଣ୍ଡିତ କରିଥିଲେ ।

୧୯୪୫ ଜାନୁଆରୀ ମାସ ୨୬ ତାରିଖ ଜେଲ୍ ପରିସର ମଧରେ ସ୍ୱାଧୀନତା ଦିବସ ବନ୍ଦୀମାନେ ପାଳନ କରିବା ସ୍ଥିର କରି ତ୍ରିରଙ୍ଗା ପତାକା ଉଡ଼ାଇବାର ମସୁଧା କଲେ । ଚରଖା ଚିହ୍ନିତ ଏକ ତ୍ରିରଙ୍ଗା ପତାକା ପ୍ରସ୍ତୁତ କରାଗଲା । ବିଶ୍ୱନାଥ ଦାସ ପତାକା ଉତ୍ତୋଳନ କରିବେ । ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ପ୍ରସ୍ତୁତ ରାଜବନ୍ଦୀ ପତାକା ସ୍ତମ୍ଭ ନିକଟରେ ଧାଡ଼ିବାନ୍ଧି ପ୍ରସ୍ତୁତ ଏ ଖବର ସରକାରଙ୍କ କାନକୁ ଗଲା । ଭି. ନାୟାର୍ ଜେଲ୍‌ର ଓ ଅରୁଣାଚଳମ୍ ଆଇ.ସି.ଏସ୍ ଗଞ୍ଜାମର ଜିଲ୍ଲାପାଳ ଥାଆନ୍ତି । ଗୋପାଳପୁରରୁ ଗୋରା ସୈନ୍ୟମାନେ ଆସିଲେ । ପତାକା ଉତ୍ତୋଳନ କାର୍ଯ୍ୟ ଆରମ୍ଭ ବେଳେ ଗୋରାସୈନ୍ୟମାନେ ଲାଠି ଧରି ଜେଲ୍ ମଧକୁ ମାଡ଼ି ଆସିଲେ ଏବଂ ସଂଗେସଂଗେ ଯମଦୂତ ଭଳି ଧାଡ଼ିବାନ୍ଧି ଛିଡ଼ା ହୋଇଥିବା ରାଜବନ୍ଦୀମାନଙ୍କୁ ବିଶ୍ୱନାଥଙ୍କ ସହ ଅନ୍ଧାଧୁନିଆ ପିଟିଗଲେ ଏବଂ ସମସ୍ତଙ୍କୁ ଧରାଶାୟୀ କରିଦେଲେ । ଏହାଥିଲା ସେ ସମୟରେ ଜେଲ ବନ୍ଦୀମାନଙ୍କ ଉପରେ ଏକ ବର୍ବର ବେଆଇନ୍ ଅତ୍ୟାଚାର । ରକ୍ତର ସୁଅ ଛୁଟିଲା । ମୁଣ୍ଡ ହାଡ଼ମାନ ଭାଂଗିଗଲା ଅଧିକାଂଶଙ୍କର । ମୂର୍ଚ୍ଛା କରି ପକାଇ ଦେଇ ଚାଲିଗଲେ ଗୋରା ଫୋର୍ସ । ଚିକିତ୍ସା କରି ଭଲ ହେବାକୁ ସମସ୍ତଙ୍କୁ ଆଠମାସ ଲାଗିଗଲା ।



Digitized by srujanika@gmail.com

ବରହମ୍ପୁର ଜେଲରେ ରାଜବନ୍ଦୀମାନଙ୍କ ଉପରେ ପାଶବିକ ଅତ୍ୟାଚାରର ଖବର ଚାରିଆଡ଼େ ରାଷ୍ଟ୍ର ହୋଇଗଲା । ସରକାରଙ୍କ ଟଣକ ପଡ଼ିଲା । ଅବସ୍ଥା ସୁଧାରିବା ପାଇଁ ତତ୍‌କ୍ଷଣାତ୍ ସମ୍ବଲପୁର ଜିଲ୍ଲାର ଡି.ସି. ମେକ୍ ଡୋନାଲ୍ଡ ସାହେବଙ୍କୁ ଏହି ଜେଲ୍‌ର ସୁପରିନ୍‌ଟେଣ୍ଡେଣ୍ଟ କରି ଅଣାଗଲା । ବନ୍ଦୀମାନଙ୍କର ଅହିଂସା ପ୍ରତିରୋଧ, ଅନଶନ ଓ ଅସହଯୋଗ ଜେଲ୍ କର୍ମଚାରୀମାନଙ୍କ ସହ ସେ ଦେଖିଲେ । ମେକ୍‌ଡୋନାଲ୍ଡ ସାହେବ ଭାରି ଭଲ ପୋଖତ ଲୋକଥିଲେ । ଜେଲ୍ ମଧ୍ୟରେ ବୁଲିବୁଲି ସଭିଙ୍କ ସହ ମଧୁର ଆଳାପ କରି, ସୁସଂପର୍କ ସ୍ଥାପନ ପୂର୍ବକ ଜେଲ୍‌ର ବହୁତ କଟକଣାକୁ ସୁଧାରି ଶାନ୍ତି ସ୍ଥାପନ କରିବାକୁ ସେ ସମର୍ଥ ହୋଇ ପାରିଥିଲେ ଏବଂ ଖୁବ୍ ଲୋକପ୍ରିୟ ହୋଇ ପାରିଥିଲେ ।

ଜେଲ୍ ମଧ୍ୟରେ କର୍ମଶାଳା କାର୍ଯ୍ୟମାନ ଜୋରସୋରରେ ଚାଲିଥାଏ । ଜେଲ୍‌ରେ ସବୁ କିସମର ବନ୍ଦୀଥିଲେ । ଗାନ୍ଧିବାଦୀ, ସାମ୍ୟବାଦୀ ଓ ଫରଓ୍ୱାର୍ଡ଼ ବ୍ଲକ୍‌ର ସମର୍ଥକମାନେ ବେଶ୍ କିଛି ସଂଖ୍ୟକ ରହିଥିଲେ । କୁନି ମିଶ୍ର, ସ୍ୱରାଜମଲ୍ଲ ସାହା ଫରଓ୍ୱାର୍ଡ଼ ବ୍ଲକ୍‌ର, ବୈଦ୍ୟନାଥ ରଥ, ଦୁର୍ଗା ମହାନ୍ତି, ମନମୋହନ ମିଶ୍ର ପ୍ରମୁଖ ସି.ପି.ଆଇ. ଓ ଗୋପବନ୍ଧୁ ଚୌଧୁରୀଙ୍କ ଦଳ ଗାନ୍ଧିବାଦୀ, ବାକିମାନେ ସାଧାରଣ ଭାବରେ କଂଗ୍ରେସର ସମର୍ଥକ । ବିଶ୍ୱନାଥ ଦାସ, ନବକୃଷ୍ଣ ଚୌଧୁରୀ ସମେତ । ରାଜବନ୍ଦୀମାନଙ୍କର ନେତା ଭାବରେ ନବବାବୁ ସର୍ବଜନ ମାନ୍ୟ ଥିଲେ । ନିଜ ଭିତରେ ବିବାଦ କନ୍ଦଳମାନ ବୁଝି ସେ ମୀମାଂସା କରୁଥିଲେ । କଟକ ସହରର ବିଶ୍ୱନାଥ ପଣ୍ଡିତ ଓ ମଥୁରୀ ସାହୁଙ୍କର ବାହୁବଳର ପରିପ୍ରକାଶ ମଝିରେ ମଝିରେ ଜେଲ୍ ମଧ୍ୟରେ ହେଉଥାଏ । ରାଜସ୍ୱ, ଜମିଜମା, ଚିକିତ୍ସା ଶାସ୍ତ୍ର, ଭାଗବତ ଗୀତା, ରାଜନୀତି, ଅର୍ଥନୀତି, ସାହିତ୍ୟ, ସଂଗୀତ, ସବୁ ବିଷୟ ଶ୍ରେଣୀରେ ଆଲୋଚିତ ହେଉଥାଏ । ଏସବୁ ବିଷୟରେ ଯେଉଁମାନେ ବିଶାରଦ ଥିଲେ ସେହିମାନେ ହିଁ କେବଳ ଆଲୋଚନା କ୍ଲାସ ନେଉଥିଲେ । ସକାଳଠାରୁ ରାତି ବାରଟା ପର୍ଯ୍ୟନ୍ତ ଆମର ତ୍ରାହି ନଥାଏ । ସଂଗୀତ ଓ ଡିବେଟ୍ ପ୍ରତିଯୋଗିତା ସନ୍ଧ୍ୟାରେ ଖୁବ୍ ମନଲୋଭା ହେଉଥାଏ ।

ଥରେ ମେ' ଡ଼େ ଜେଲ୍ ଭିତରେ ପାଳନ କରାଗଲା ମେ ମାସ ପହିଲାରେ । ନବ୍‌ବାବୁ ସଭାପତି, ନିମାପଡ଼ାର ସାମ୍ୟବାଦୀ ନେତା ମୋହନ ଦାସ ପ୍ରଧାନ ବକ୍ତା, ମନମୋହନ ମିଶ୍ର ଆଶୁକବି ଓ ଗାୟକ ଥିଲେ । ଉଦ୍‌ବୋଧନୀ ସଂଗୀତ ମିଶ୍ରେ ଗାୟନ କରିଥିଲେ ତୀବ୍ର କଣ୍ଠରେ । ଯୁଦ୍ଧ ବିରୋଧୀ ସଂଗୀତ ଗରିଲା ବୀର ଆମେ...

ମୋହନ ଦାସ ଦୀର୍ଘ ୬ଘଣ୍ଟା କାଳ ପ୍ରାଞ୍ଜଳ ଭାବରେ ମେ ଡେ'ର ତାତ୍ପର୍ଯ୍ୟ ଆମକୁ ବୁଝାଇଥିଲେ । ଏତେ ଦୀର୍ଘ ଭାଷଣ ଶୁଣି ସଭାପତି ସମେତ ସମସ୍ତ ଶ୍ରୋତାବୃନ୍ଦ



Digitized by srujanika@gmail.com

ଆଖିବୁଜି ବୁଲାଇବାକୁ ଲାଗିଲେ । ସମ୍ବଲପୁରର ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ହିନ୍ଦୀ, ଉର୍ଦ୍ଦୁ, ସଂସ୍କୃତ ଓ ଇଂରାଜୀ ଓ ରବୀନ୍ଦ୍ର ସାହିତ୍ୟର କ୍ଲାସ୍ ନେଉଥାନ୍ତି । ଧୁରନ୍ଧର ପଣ୍ଡିତ ସେ । ଅନର୍ଗଳ ବକ୍ତା ଥିଲେ ଏହି ବିଷୟମାନଙ୍କରେ । ଏହି ବନ୍ଦୀମାନଙ୍କ ମଧ୍ୟରେ ମୁଁ ଅଳ୍ପଶିକ୍ଷିତ ଓ ସର୍ବକନିଷ୍ଠ ବ୍ୟକ୍ତି ଥିଲି । ଅନ୍ୟମାନେ ମୋର ଗୁରୁଜନ ଓ ସବୁବିଦ୍ୟାରେ ଦ୍ୱିଗୁଣ ଥିଲେ । ସେମାନଙ୍କ ସହ ଦୀର୍ଘଦିନ ବାସ ଓ ସତ୍‌ସଂଗ କରି କିଛିଟା ଜ୍ଞାନ ବିଭିନ୍ନ ବିଷୟରେ ଲାଭକରି ନିଜକୁ ଧନ୍ୟ ମଣିଲି । ଓଡ଼ିଶା ରାଜ୍ୟର ଦେଶାତ୍ମବୋଧ ଓ ଯାବତୀୟ ବିଷୟର ଜ୍ଞାନର ଭଣ୍ଡାର ଯେଉଁମାନେ, ଯାହାଙ୍କୁ ଜୀବନରେ ଥରେ ବି ଦେଖିବାର ସୁଯୋଗ ନଥିଲା ସେମାନଙ୍କ ସହ ଏକତ୍ର ବାସ କରିବା କେତେ ଭାଗ୍ୟର କଥା ଆମପକ୍ଷେ ଥିଲା । ସାଧାରଣ କଲେଜରେ ପାଠପଢ଼ି ପାସ୍ କରିବା ଅପେକ୍ଷା ଏହି ଘରୋଇ ବାତାବରଣରେ ଦୀର୍ଘକାଳ ଥାଇ ସବୁ ବିଷୟରେ ଜ୍ଞାନାର୍ଜନ, ରାଜନୀତି, ସମାଜନୀତି, ସେବା, ସାହିତ୍ୟ ସଂସ୍କୃତିର ପ୍ରସାର କ୍ଷେତ୍ରରେ ସାଧାରଣ ଜ୍ଞାନ ଆମେ ଅଧିକ ପରିମାଣରେ ଅର୍ଜନ କରିପାରିଥିଲୁ । ଯାହାକି ପରବର୍ତ୍ତୀ ଜୀବନରେ ଆମକୁ ବହୁତ ସାହାଯ୍ୟ କରିଛି । ସର୍ବୋପରି ଦେଶପ୍ରାଣ ସତ୍ ଓ ସଜ୍ଜନମାନଙ୍କର ସଂଗ ଆମକୁ ମଣିଷ କରି ଗଢ଼ିଛି । ଜୀବନକୁ ପୂର୍ଣ୍ଣାଙ୍ଗ ଅନେକାଂଶରେ କରିବାକୁ ସାହାଯ୍ୟ କରିଛି । ଏସବୁ ଆମେ ପ୍ରାଣେପ୍ରାଣେ ଅନୁଭବ କରିଛୁ । ସତ୍‌ପଥରେ ଚାଲିବାକୁ, ସତ୍ ପଥରେ ରହିବାକୁ ଆମର ଏହି ଜେଲ୍‌ଜୀବନ ଆମକୁ ଏହି ନିର୍ଦ୍ଦେଶ ଦେଇଛି, ଏଥିରେ ସନ୍ଦେହ ନାହିଁ । ସଂହତ ଛନ୍ଦବଦ୍ଧ ଜୀବନର ଚଳଣି ଆମେ ଏହି ଜେଲ୍ ଜୀବନରୁ ଲାଭ କରିଛୁ । ତୀବ୍ର ଦେଶାତ୍ମବୋଧ, ତ୍ୟାଗପୂତ ସେବାବ୍ରତ ଓ ସମନ୍ୱିତ ଜୀବନ ଏହି ଦୀର୍ଘଦିନ ଧରି ସତ୍‌ସଂଗରୁ ଆମେ ପାଇଛୁ । ଏହି ଯୁଗଜନ୍ମା ସଂଗ୍ରାମୀମାନଙ୍କର ସତ୍‌ଗୁଣମାନ ଆମ ଦେହ, ମନ ଓ ପ୍ରାଣରେ ସଂଚରି ଯାଇଛି କିଛି ପରିମାଣରେ । ଏହାଠାରୁ ମହତ୍ ଲାଭ ଜୀବନରେ ଆଉ କ'ଣ ହୋଇପାରେ ? ଜେଲ୍ ଜୀବନ ଆମକୁ ମାନବୀୟ ମୂଲ୍ୟବୋଧ ଶିଖାଇଛି । ଏହି ଶିକ୍ଷା ମିଳି ନଥିଲେ ସ୍ୱାଧୀନତା ପରବର୍ତ୍ତୀ ଜୀବନରେ ଆମେ କେବେ କୌଣସି ପ୍ରକାର ସତ୍‌କାର୍ଯ୍ୟ କରିପାରି ନଥାନ୍ତୁ କି ଜୀବନର ସାର୍ଥକତା କିଛି ପରିମାଣରେ ଆମକୁ ମିଳିପାରି ନଥାନ୍ତା । ଏହିସବୁ ମହତ୍ ସଂଯୋଗ ପ୍ରଭୁଙ୍କ ଆଶୀର୍ବାଦ ଓ କଲ୍ୟାଣରୁ ସମ୍ଭବ ହୋଇଥିବା ମୋର ଦୃଢ଼ ବିଶ୍ୱାସ ।

❑❑❑



Digitized by srujanika@gmail.com

# ସେଇସବୁ ଅଭୁଲା ଦିନ

ସେଦିନ ସକାଳ । ୧୯୩୦ର ଆଷାଢ଼ ମାସ ହେବ । ମେଘ ଘୋଟିଥାଏ । ଧୂଳିଝାଡ଼ିଲା ଭଳି ବର୍ଷା ମଧ୍ୟ ପଡୁଥାଏ । ମାତ୍ର ସାତବର୍ଷର କିଶୋର ମୁଁ ଗାଁ ଚାଟଶାଳୀକୁ ଯାଉଥାଏ । ପଡ଼ିଶାଘରର ମୂଲିଆ ଖତଭାର କାନ୍ଧରେ ଧରି ତାଳପତ୍ର ପଖିଆ ମୁଣ୍ଡରେ ଥୋଇ ଆଗେଆଗେ ବିଲକୁ ଚାଲିଥାଏ । ହଠାତ୍ ଜଣେ ଷଣ୍ଢମାର୍କା ଲୋକ ସାମନାଆଡୁ ଦୌଡ଼ିଆସି ମୂଲିଆଟିକୁ ଧକ୍କାଟିଏ ପକାଇ ତା ଠାରୁ ଖତଭାର ଓ ପଖିଆ ଛଡ଼ାଇ ନେଲେ ଏବଂ ବିପରୀତ ଦିଗକୁ ଚାଲିବାକୁ ଆରମ୍ଭ କଲେ । ଅବିଳମ୍ବେ ଚାରିପାଞ୍ଚଜଣ ନାଲି ପଗୁଡ଼ିଆ ସିପାହୀ ସେହି ସାମନା ଆଡୁ ଦୌଡ଼ିଆସି କେହି ଏଆଡ଼େ ଦୌଡ଼ି ପଳାଇବା ଦେଖିଛକି ବୋଲି ପଚାରିବାରେ ମୂଲିଆ ଜଣକ ପଶ୍ଚାତ୍ ଦିଗକୁ ମୁଣ୍ଡ ଟୁଙ୍ଗାରି ଇଂଗିତ ଦେଲେ । ସିପାହୀମାନେ ଦୌଡ଼ି ଚାଲିଗଲେ, ମାତ୍ର ଖତଭାର ଧରିଥିବା ଯୁବକ କିଛିଦୂର ଆଗକୁ ଯାଇ ଖତ ବୋଝ ଓ ପଖିଆ ରାସ୍ତା କଡ଼ରେ ଥୋଇ ନିଜ ବାଟରେ ଚାଲିଗଲେ । ସେହି ଘଟଣା ଦେଖି ମୋ କିଶୋର ମନ ଓ ଶରୀର ଭୟରେ ଥରୁଥାଏ । ଏହି ଶକ୍ତ, ସମର୍ଥ, ଖର୍ବକାୟ ଯୁବକଟିକୁ ମୁଁ ଭଲକରି ଚିହ୍ନିଥିଲି । ମୋ ବଡ଼ଭାଇ ପ୍ୟାରୀମୋହନଙ୍କ ପାଖକୁ ସେ ବରାବର ଲୁଚିଲୁଚି ଆସନ୍ତି । ସେ ହେଲେ ଜିଲ୍ଲାର ପ୍ରଖ୍ୟାତ ଅହିଂସା ବିପ୍ଳବୀ ଶ୍ରୀଯୁକ୍ତ ନୀଳାମ୍ବର ଦାସ । ନୀଳାମ୍ବର ବାବୁଙ୍କର ସେ ବେଳର ସାହସ ଓ ରଣକୌଶଳ ମୋର କିଶୋରମନ ଉପରେ ଯଥେଷ୍ଟ ପ୍ରଭାବ ପକାଇଥାଏ ।

୧୯୩୧ ସାଲରେ ତରୁଣ ବିପ୍ଳବୀ ପ୍ୟାରୀମୋହନ ନିଜଘରେ ବନ୍ଦୀଥାଇ କିପରି କାନ୍ଥମୁଣ୍ଡଳୀକୁ ଚଢ଼ି ଚାଳକାଟି ସମସ୍ତଙ୍କର ଅଲକ୍ଷ୍ୟରେ ଡେଇଁପଳାଇ ଯାଇ ମୁକ୍ତି ଆନ୍ଦୋଳନରେ ଯୋଗଦେଲେ - ତାହା ମଧ୍ୟ ମୁଁ ଦେଖିଛି । ବାନରସେନା ଦଳରେ ନାମ ଲେଖାଇ ପ୍ୟାରୀଭାଇ ସହ ଗ୍ରାମର ଗୌରାଙ୍ଗ, ମୃତ୍ୟୁଞ୍ଜୟ, ରାଜେନ୍ଦ୍ର, ସୀତାନାଥ ଓ ବୈକୁଣ୍ଠ ମିଶି ସରିଷା ହାଟରେ ବିଦେଶୀ ଲୁଗା ଦୋକାନକୁ କିରାସିନି ଢାଳି କିପରି ଜାଳିଦେଲେ, ଶହଶହ ଲୋକଙ୍କ ମେଳରେ ନିଆଁ ଚାରିପାଖେ ବନ୍ଦେମାତରମ୍, ଇନ୍‌କ୍ଲାବ୍ ଜିନ୍ଦାବାଦ ଧ୍ୱନି କରି ଉଲ୍ଲାସରେ ନାଚିଥିଲେ, ଖବର ପାଇ ଯମଦୂତ ପ୍ରାୟ ଦଳେ ସିପାହୀ ବେଗୁନିଆ ଓ ଚାକୁଣ୍ଡା ବାଡ଼ିରେ ସେମାନଙ୍କୁ ପିଟିପିଟି ମୂର୍ଚ୍ଛା କରି ପକାଇଦେଲେ ଏବଂ



Digitized by srujanika@gmail.com

ହାଟସାରା ଲୋକ ଭୟରେ ହାଟଛାଡ଼ି କିପରି ପଳାଇଗଲେ ଏସବୁ ଦୃଶ୍ୟ ଦେଖି ମୋ ମନ କ୍ରମେ ବିଦ୍ରୋହୀ ହୋଇ ଉଠୁଥାଏ । ଜାତୀୟ ମୁକ୍ତି ଆନ୍ଦୋଳନରେ ୧୯୨୨ଠାରୁ ୩୪ ମସିହା ଯାଏ କ୍ରମାଗତ ଭାବେ ବଡ଼ଭାଇଙ୍କର ଏତାଦୃଶ ଶଙ୍କାବିହୀନ ଆଚରଣ ଓ ତେଜୋଦୀପ୍ତ କାର୍ଯ୍ୟକଳାପମାନ ନିଜ ଆଖିରେ ଦେଖି ଏବଂ କାନରେ ଶୁଣି, ମୋ ପ୍ରାଣ ଅସ୍ଥିର ହୋଇଉଠୁଥିଲା ଏବଂ ମନେମନେ ତାଙ୍କୁ ଗୁରୁକରି ନେଇଥିଲି ।

ବିଧବା ମା' କୋଳରେ ଶୋଇ ସୀମାନ୍ତ ମେଦିନୀପୁର ଗ୍ରାମାଞ୍ଚଳରୁ ଭାସି ଆସୁଥିବା ଜାତୀୟ ନାରା 'ବନ୍ଦେ ମାତରମ୍'ର ଉଦ୍ଦାତ୍ତ ଆହ୍ୱାନ ରାତି ପରେ ରାତି ଶୁଣିଶୁଣି ମୋ ଶିଶୁପ୍ରାଣ କାନ୍ଦି ଉଠିଛି । ବଙ୍ଗଳାର ତତ୍କାଳୀନ ଭିକାରି ବେଶୀ ଚାରଣ କବି ଏବଂ ବାଉଲ ସନ୍ନ୍ୟାସୀମାନଙ୍କ କଣ୍ଠ ଉଚ୍ଛୁଳି ଘରେ ଘରେ ଭାସି ଯାଉଥାଏ । ତରୁଣ ଦେଶଭକ୍ତ ଖୁଦିରାମର ମାତୃବନ୍ଦନାର କରୁଣ ହୃଦୟସ୍ପର୍ଶୀ ସଂଗୀତ -

"ଏକବାର ବିଦାୟ ଦାଓ ମା' ଘୁରେ ଆସି,
ହାଁସିହାଁସି ପରବ ଫାଶୀ, ଦେଖବେ ଭାରତବାସୀ
ଅଭିରାମେର ଦ୍ୱୀପାନ୍ତର ମା' ଖୁଦିରାମେର ଫାଶୀ ।
ହାତେର ବୋମା ତୈରିକରେ, ଦାଁଡିଏ ଛିଲାମ ଲାଇନ୍ ଧାରେ,
ମା'ଗୋ ବଡ଼ଲାଟକେ ମାରବ ବୋଲେ, ମାରଲାମ ଇଂରେଜବାସୀ
ଥାକତ ଯଦି ହାତେ ଛୋରା, ତୋର ଖୁଦିକି ପଡ଼ତୋ ଧରା, ମା' ଗୋ'
ରକ୍ତ କରତାମ୍ ଚଲାଚଲ୍ ମା', ଦେଖ ତ ଜଗତବାସୀ ।"

ଗୀତ ଶୁଣି ମୋ ସ୍ପର୍ଶକାତର ମନ ଆକୁଳି ବିକୁଳି ହୋଇ ଉଠୁଥାଏ ।

ମେଦିନୀପୁରର ଜନପ୍ରିୟ ସ୍ୱଦେଶୀ କବି ଓ ଗଣଯାତ୍ରା ପାଲାଗାୟକ ୰ମୁକୁନ୍ଦ ପ୍ରସାଦ ଦାସ ସେତେବେଳେ ଗ୍ରାମେଗ୍ରାମେ ବୁଲି ଲୋକଶିକ୍ଷା ପାଇଁ ପ୍ରକାଶ୍ୟ ଦିବାଲୋକରେ ଯାତ୍ରାଭିନୟ ଦେଖାଉଥାନ୍ତି । ମୁଁ ଚାଟଶାଳୀରୁ ଫେରି ସେ ସବୁ ପାଲାଗାଆଣ ଶୁଣି ଓ ଅଭିନୟ ଦେଖିବାରୁ ହୃଦୟରେ ସ୍ୱଦେଶପ୍ରେମ ଜାଗ୍ରତ ହେଉଥାଏ ।

"ବଲବ କି ଶୁନ୍ ବେ କେରେ ଆଛେ କି କାରୋ କାନ୍
ଆଛେ କି ଏମନ୍ ଛେଲେ ଦେଶେର ଲାଗି କାନ୍ଦେ ପ୍ରାନ୍,
ଦେଶ ବିଦେଶେ ଘୂରେଘୂରେ - କତଇ ସୁରେ ଗାଇନୁ ଗାନ୍
ସେ ଗାନ୍ ଶୁନ୍ ଲୋନା କେଉ - ବୁଝ୍‌ଲୋନା କେଉ,
କୋନ୍ ସୁରେତେ ଧରେଛି ଟାନ୍

× × ×



Digitized by srujanika@gmail.com

କରମେର ଯୁଗ ଏସେଛେ, ସବାଇ କାଙ୍କେମତେ ଗେଛେ,
ମୋରା ସୁଧୁ ର ବକି ଶୟାନ୍,
ରହିବ ସବାର ନୀଚେ, ଚଲିବ ସବାର ପିଛେ
ସହିବ ଶତ ଅପମାନ
ନିଜେରେ ଭେବନା ହୀନ ଧନୀ, ମାନୀ, ଦୁଃଖୀ, ଦୀନ୍,
ରାଜା ପ୍ରଜା ସକଲେ ସମାନ
ଦ୍ୱେଷ ହିଂସା ପାୟେ ଦଲେ ଆୟ ଛୁଟେ ଆୟ ଚଲେ
ଚଲିଶ୍ କୋଟି ହିନ୍ଦୁ ମୁସଲମାନ୍ ।

ବଂଗଳାଦେଶର ସଂଗ୍ରାମୀ ବିଦ୍ରୋହୀ କବି କାଜି ନଜରୁଲ୍ ଇସଲାମଙ୍କର ଅଗ୍ନିବର୍ଷୀ, ଜ୍ୱାଳାମୟୀ ସଂଗୀତର ମୂର୍ଚ୍ଛନା ମୋ ହୃଦୟରେ ବାରମ୍ବାର ଆଘାତ କରି କ୍ରମେ ବିଦ୍ରୋହୀ କରି ତୋଳୁଥିଲା । ଶୈଶବର ନୀତିପୁଷ୍ଟ ଧମନୀର ରକ୍ତପ୍ରବାହ ଭବିଷ୍ୟତକୁ ଉତ୍ତପ୍ତ ଓ ଖରତର କରିଥିଲା ।

"କାରାର ଏଇ ଲୌହ କପାଟ୍ - ଭେଙ୍ଗେଫେଲ୍ କରୋରେ ଲୋପାଟ୍
ରକ୍ତ ଜାମଟ ଶିକଲ ପୂଜାର ପାଷାନ୍ ବେଦୀ
ଗାଜନେର ବାଜ୍ନାବାଜା କେ ମାଲିକ୍ କେ ସେ ରାଜା
କେ ଦେୟ ସାଜା, ମୁକ୍ତ ସ୍ୱାଧୀନ ସତ୍ୟ କେରେ ?
ଓରେ ଓ ପାଗ୍ଲା ଭୋଲା - ଦେ'ରେ ଦେ' ବାରୁଦ ଗୋଲା
ଡାକ୍ ଓ ରେ ଡାକ୍ ମ୍ରିତ୍ୟୁକେ ତୋର ଜୀବନ ପାନେ
ଲାଥିମାର ଭାଙ୍ଗ୍‌ରେ ତାଲା ଯତ ସବ ବନ୍ଦୀଶାଲା
ଆଗୁନ୍ ଜାଲ୍, ଆଗୁନ ଜାଲା ଫେଲ ଉପାଡ଼ି ।

ଦିଗନ୍ତ ବ୍ୟାପି ମାତୃଭୂମିର ଶ୍ୟାମଳିମା ଆଡ଼େ ଆପଣାର ସୀମାହୀନ ଦୃଷ୍ଟି ଲମ୍ବାଇ ଦେଇ ସ୍ଥିର ଭାବରେ ସେଦିନ ରୁଦ୍ଧଶ୍ୱାସରେ ଦେଶମାତାର ବନ୍ଧନ ମୁକ୍ତି ଯଜ୍ଞରେ ନିଜକୁ ସଂପୂର୍ଣ୍ଣ ରୂପେ ସମର୍ପଣ କରିବାର ସେଦିନର ସଂକଳ୍ପର କଥା ମୋ ସ୍ମୃତିପଟକୁ ଆଜି ହଠାତ୍ ଚହଲି ଆସୁଛି ।

୧୯୩୮ରେ ଅତି ତରୁଣ ବୟସରେ ବାଲେଶ୍ୱରର ଚିଡ଼ିଆପୋଲ ପାଖ ଗୋପାଳଗାଁର ଶ୍ରୀଯୁକ୍ତ ପ୍ରିୟନାଥ ସରକାରଙ୍କ ଘରେ ପଢ଼ିବା ଉଦ୍ଦେଶ୍ୟରେ ଆସି ପହଞ୍ଚିଲି । ବିପ୍ଲବୀ ବୀର ଶ୍ରୀଯୁକ୍ତ ତୁଳସୀ ଦାସ ଘୋଷ, ପ୍ରିୟବାବୁ, ପ୍ୟାରୀବାବୁ, ରବିବାବୁ, ଅକ୍ଷୟବାବୁ ଏବଂ ଗୌରବାବୁଙ୍କ ଆଡ୍ଡା ଏହି ଐତିହାସିକ ଘରଟିରେ ଜମିଥାଏ । ସେମାନଙ୍କର ପବିତ୍ର



Digitized by srujanika@gmail.com

ସଂସ୍ପର୍ଶରେ ବର୍ଷବର୍ଷ ଧରି ବିପ୍ଳବର ଅଙ୍କୁର ଅଧିକ ଦୃଢ଼ ଭାବରେ ମୋ ହୃଦୟରେ କ୍ରମେ କ୍ରମେ ଡାଳ ମେଲାଇ ବିସ୍ତାରଲାଭ କରିଲା । ମଝିରେ ମଝିରେ, ମୋତିଗଞ୍ଜ ବଜାରର ପ୍ରଜାତନ୍ତ୍ର ଅଫିସରେ ମହତାବବାବୁ, ସର୍ଦ୍ଦାର ଜୀ, କରୁଣାକରବାବୁ ପ୍ରଭୃତିଙ୍କ ସହ ଦୂରରୁ ମୋର ସାକ୍ଷାତ ହେଉଥାଏ ।

୧୯୪୧ ମସିହାରେ ଭାରତ ମାଟିରୁ ଗୋପନରେ ନିରୁଦ୍ଦିଷ୍ଟ ହୋଇଯିବାର ଅବ୍ୟବହିତ ପୂର୍ବରୁ ଶ୍ରୀ ସୁଭାଷ ଚନ୍ଦ୍ର ବୋଷ ଓଡ଼ିଶା ଗସ୍ତରେ ଆସି ବାଲେଶ୍ୱର ଟାଉନ୍‌ହଲ୍‌ରେ ତାଙ୍କର ଶେଷ ସାଧାରଣ ସଭା କରିଥିଲେ । ସେଦିନ ଚିଡ଼ିଆପୋଲ ପାଖ ପ୍ରିୟବାବୁଙ୍କ ଘରେ ତାଙ୍କର ପରିଚର୍ଯ୍ୟା କରିବାର ସୌଭାଗ୍ୟ ମୋ କପାଳରେ ଘଟିଥିଲା । ନେତାଜୀଙ୍କର ତେଜସ୍କର ଅସାଧାରଣ ବ୍ୟକ୍ତିତ୍ୱ, ଅମୂଲ୍ୟ ସାନ୍ନିଧ୍ୟ ଲାଭ କରି ଏବଂ ବ୍ରିଟିଶ ସରକାର ବିରୁଦ୍ଧରେ ଅଗ୍ନିବର୍ଷୀ ଜ୍ୱାଳାମୟୀ ବକ୍ତୃତା ଶୁଣି ମୋ ମନପ୍ରାଣ ଓ ଶରୀର ବିଷେଇ ଏବଂ ତାତି ଉଠିଥିଲା । ସ୍ୱଦେଶୀ ନେତାମାନଙ୍କ ସହ ଦୀର୍ଘଦିନର ଏତାଦୃଶ ସାହଚର୍ଯ୍ୟ ମୋ ତରୁଣ ପ୍ରାଣରେ ବିଦେଶୀ ଶାସନ ପ୍ରତି ବିଦ୍ୱେଷ ଭାବ ଓ ସ୍ୱଦେଶ ପ୍ରୀତିର ପ୍ରବଳ ଉନ୍ମାଦନା କ୍ରମାଗତ ଭାବେ ଜାଗ୍ରତ ହୋଇଉଠିଲା । ତେଣୁ ୧୯୪୨ର ଅଗଷ୍ଟ ବିପ୍ଳବର ବନ୍ୟା ଅକ୍ଲେଶରେ ମତେ ଭସାଇ ନେଇଯିବାଟା ଖୁବ୍ ସ୍ୱାଭାବିକ ଥିଲା । ଏସବୁ ମହାର୍ଘ ଯୋଗାଯୋଗ, ସାନ୍ନିଧ୍ୟ, କର୍ମପ୍ରେରଣା ଏବଂ ଅଭିଜ୍ଞତା କ'ଣ ଏତେ ସହଜରେ ମୋ ଜୀବନରେ ବ୍ୟର୍ଥ ହୋଇଯିବ ?

ନା' ମୁହୂର୍ତ୍ତକେ ସ୍ଥିର ହେଲି । ଶତସିଂହର ବଳ ମୋ ଭିତରେ ଜାଗ୍ରତ ହେଲା । ଫେରି ଚାଲିଲି ବାଲେଶ୍ୱର ପାଦରେ ଚାଲିଚାଲି । ସକ୍ରିୟ କର୍ମୀ କେତେଜଣ ଦରକାର । ଭାଗ୍ୟକୁ ସେତେବେଳେ ନରେନ୍ଦ୍ର ଜେନା, ନିରଞ୍ଜନ ଭୂୟାଁ, ମହେନ୍ଦ୍ର ଜେନା, ଅହମ୍ମଦ, ଶ୍ୟାମ ସେନାପତି ଓ ତ୍ରିଲୋଚନ ସେନାପତି ଆଦି ଜେଲରୁ ମୁକୁଳି ଆସି ବାଲେଶ୍ୱରରେ ଥାଆନ୍ତି । ନିମାପଡ଼ାର ଲୋକନାଥ ସେନାପତି ଏତିକିବେଳେ ପୁରୀ ଜେଲ ଡେଇଁ ପଳାଇ ଆସି ତାଙ୍କ ସହ ଯୋଗଦେଇଥାନ୍ତି । ଏମାନଙ୍କୁ ଧରି ବାଲିଆପାଳ ବାଟେ ସୁବର୍ଣ୍ଣରେଖା ଡେଇଁ ପୁଣି ଭୋଗରାଇରେ ପ୍ରବେଶ କଲେ । ସେତେବେଳକୁ ସମଗ୍ର ଉତ୍ତର ବାଲେଶ୍ୱର ଦୁର୍ଭିକ୍ଷର କରାଳ ଛାୟା ମଧ୍ୟରେ ରହି ହା' ଅନ୍ନ ଚିତ୍କାର କରୁଥାନ୍ତି । ଶ୍ରୀ ଶଶୀକାନ୍ତ ଭଞ୍ଜ, ଲକ୍ଷ୍ମୀନାରାୟଣ ସାହୁ ଓ ଈଶ୍ୱରଲାଲ ବ୍ୟାସଙ୍କ ତତ୍ତ୍ୱାବଧାନରେ ମାରଓ୍ୱାଡ଼ି ରିଲିଫ୍ ସୋସାଇଟି ଓ ଓଡ଼ିଶା ରିଲିଫ୍ କେନ୍ଦ୍ର ସ୍ଥାନେସ୍ଥାନେ ଖୋଲା ଚୁଡ଼ା ଚାଉଳ ବାଣ୍ଟୁଥିଲେ । କିନ୍ତୁ ସେସବୁ ସମୁଦ୍ରକୁ ଶଙ୍ଖେ ମାତ୍ର ଥିଲା । ଯାହା ଆସିଲା ସେସବୁ ହାତେହାତେ ଗଲା । କୁଆଡ଼େ ଆଉ ଯିବାର ନାହିଁ କି କାହାକୁ କିଛି କହିବାର ନାହିଁ । ଚାରିଆଡ଼େ ଅନ୍ଧାର । ବୋଝ



Digitized by srujanika@gmail.com

ଉପରେ ନଳିତା ବିଡ଼ା ପରି ସମଗ୍ର ବଂଗଦେଶ ସେତେବେଳକୁ ହା' ଅନ୍ନର କରାଳଗ୍ରାସରେ ପଡ଼ି ଛଟପଟ ହେଉଥାଏ । ଶହଶହ ଭୋକିଲା ଲୋକ ଘରଦ୍ୱାର ଛାଡ଼ି ଛିନଛତର ହୋଇ, ଖାଦ୍ୟ ଅନ୍ୱେଷଣରେ ଏଣେତେଣେ ପଳାଇବାକୁ ଲାଗିଲେ । ଅନେକ ବାଂଲାଦେଶୀ ଆସି ଭୋଗରାଇ ମାଟିରେ ଛାଇଗଲେ ଏବଂ ରାସ୍ତାକଡ଼ରେ ପଡ଼ି ମରି ଗଡ଼ିବାକୁ ଲାଗିଲେ ।

ଖାଦ୍ୟ ବିନା କିଛି ସମ୍ଭ୍ରାନ୍ତ ପରିବାର ବିଷଖାଇ ଆତ୍ମହତ୍ୟା କଲେ । ପ୍ରତିଦିନ ଡକାୟତି, ରାହାଜାନି ଲାଗି ରହିଲା । ଗୋରା ସରକାରର ପରିତ୍ୟକ୍ତ ଭୋଗରାଇ ଏକ ଅନାହାରକ୍ଳିଷ୍ଟ ଅରାଜକତାର ରାଜ୍ୟରେ ପରିଣତ ହେଲା । ପ୍ରତିଦିନ ମୃତ୍ୟୁର ବୀଭତ୍ସ ଲୀଳା ଦେଖିଦେଖି ଛାତିଟା ପଥର ପାଲଟି ଯାଉଥାଏ । ଖବରକାଗଜ ଉପରେ କଟକଣା ଜାରିଥାଏ । ଏଣୁ ଏସବୁ ସମ୍ବାଦ ପ୍ରକାଶ କରିବାର ଉପାୟ ନଥିଲା ।

× × ×

ଦିନକରେ ଦେଉଳା ହାଟପଦାରେ ସଂଧ୍ୟାତକ ଗାଁ ବୁଲିବୁଲି ଡାକିଡାକି ବହୁ କଷ୍ଟରେ କିଛି କଂକାଳସାର ସ୍ତ୍ରୀ ପୁରୁଷଙ୍କୁ ଏକତ୍ର କରାଯାଇଥାଏ । ସ୍ଥାନୀୟ ମଦନବାବୁ ଅଦୂର ଶିବ ମନ୍ଦିରରେ ବସି ରହିଥାନ୍ତି । ଈଶ୍ୱରବାବୁ ଛୋଟ ତ୍ରିରଙ୍ଗା ପତାକାଟିଏ ଧରି ସଭାରେ ବୁଲିବୁଲି ସମସ୍ତଙ୍କୁ ଇଂଗିତରେ ଉତ୍ସାହ ଦେଉଥାନ୍ତି । ମୋ ସହ ନିରଞ୍ଜନ ଏବଂ ଲୋକନାଥ ଲୋକଙ୍କୁ ମୁକାମ୍ ଯିବାକୁ ବୁଝାଉଥାନ୍ତି । ହଠାତ୍ ମା' କୋଳରେ ଥାଇ ଏକ ଶିଶୁର ସଭାସ୍ଥଳରେ ମୃତ୍ୟୁ ସମ୍ବାଦ ଶୁଣାଗଲା । କର୍ମୀମାନେ କ୍ଷିପ୍ତ ହୋଇ ଉକ୍ତ ଯୁବତୀ ମା'କୁ ନାନା କୁଭାଷାରେ ଭର୍ତ୍ସନା କରିବାକୁ ଲାଗିଲେ, କାହିଁକି ବୁକୁର କ୍ଷୀର ତୁ ନ ଦେଲୁ ପିଲାକୁ ? କ୍ଷୁଧା ଜର୍ଜର ଅଭିମାନୀ ସନ୍ତାନହୀନା ଜନନୀ ନିଜ ଶିଶୁପୁତ୍ରର ଶବଟିକୁ ତଳେ ଶୁଆଇ ଦେଇ ସଭାରେ ଉଠି ଛିଡ଼ା ହେଲା । ବୁକୁର ଲୁଗା ଆଡ଼େଇ ଦେଇ ଦୁଇ ହସ୍ତରେ ଦୁଇଗୋଟି କୁଞ୍ଚିତ ସ୍ତନ ଚିପିଧରି ଅଶ୍ରୁହୀନ କ୍ରନ୍ଦନ ଦାନ୍ତ କାମୁଡ଼ି କାନ୍ଦିବାକୁ ଲାଗିଲା । ଦୁଇଗୋଟି ସ୍ତନରୁ ଦୁଇବୁନ୍ଦା କଳାରକ୍ତ ଝରିପଡ଼ିଲା । ସଭାସ୍ଥ ଜନତା ନିସ୍ତବ୍ଧ ହୋଇଗଲେ ।

ରଣକୋଠା ହରିଜନ ବସ୍ତିରେ ଉଲଗ୍ନ ବାଳକ ବାଳିକାମାନେ କ୍ଷୁଧା ନିବାରଣ ପାଇଁ ତୁଣ୍ଡପୋଡ଼ା ପତର ଗୋଟିଗୋଟି କରି ତୋଳି ଖାଇବା ଓ ମାରିସ ମୂଳ ଛେଚି, ଡାଙ୍କୁ ଭଂଗା ଖୋଳାରେ ସିଝାଇ ଖାଇବାର ଭିଡ଼ାଭିଡ଼ି ଦୃଶ୍ୟ ଦେଖି ମୋ ପାଦ ଅଟକି ଯାଉଥାଏ । ରାସ୍ତାକଡ଼ ଗଛମାନଙ୍କରେ ସ୍ଥାନେସ୍ଥାନେ ମୁର୍ଦ୍ଦାରମାନ ଝୁଲି ରହିଥାଆନ୍ତି । ରାତ୍ରିର ଅନ୍ଧକାରରେ ମୁଣ୍ଡରେ ବାଜୁଥାଏ । ଖୋଲିବାକୁ କେହି ନଥାଏ । ନରସିଂହପୁର ଆଡ଼ିଆ ଉପରେ ରାହାଜାନି ଜନିତ ହତ୍ୟା ଏବଂ ଶଙ୍ଖାରୀ ମଧୁବାବୁଙ୍କ ଘରେ ଜାମକୁଣ୍ଡା ଗ୍ୟାଙ୍ଗର



Digitized by srujanika@gmail.com

ସଶସ୍ତ୍ର ଡକାୟତି ଚାରିଆଡ଼େ ଭୀତିର ସଞ୍ଚାର କରିଥାଏ । ଦୁର୍ଘଟଣା ପରେ ଦୁର୍ଘଟଣା ଘଟି ସ୍ଥାନୀୟ ପୁଲିସ୍‌କୁ ମଧ୍ୟ ଅଥୟ କରି ପକାଇଥାଏ ।

ଏସବୁ ସତ୍ତ୍ୱେ ମୁଁ ଓ ମୋର ସାଥୀମାନେ ଅଟଳ ଏବଂ ଅଚଳ ରହିଥାନ୍ତି । କିନ୍ତୁ ବିପଦ ହେଲା ତିରିଶଜଣ କଂଗ୍ରେସକର୍ମୀଙ୍କୁ ଭୋଗରାଇରେ ରଖି ଖିଆପିଆ କରାଇବା । ମୁଠାଏ ହେଲେ ଖାଦ୍ୟ କେଉଁଠି ମିଳିବାର ନାହିଁ । ସହରରୁ ଚୁଡ଼ା ଚାଉଳ ମୁଣ୍ଡରେ ବୋହି ଆଣିବାକୁ ପଡ଼ିବ । ପଇସା ବା ଆମ ପାଖରେ କାହିଁ ? ଶେଷରେ ଗୋଟିଏ ପନ୍ଥା ଦେଖାଗଲା । ସେ ସମୟରେ ଅତ୍ୟାଚାରୀ ଗୋରା ଓ ସରକାରୀ କର୍ମଚାରୀମାନଙ୍କର ଜେଲ ଭିତରେ ଏବଂ ବାହାରେ ନିଷ୍ଠୁର ହିଂସାକାଣ୍ଡ ଏବଂ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହୀ ସମ୍ବେଦନଶୀଳ ମନର କରୁଣ ତଥା ବାସ୍ତବ ପ୍ରତିବେଦନ କେତେକ ଚାରଣ ସଂଗୀତ ରୂପରେ ପ୍ରକାଶ ପାଇଥିଲା । ଉତ୍ତର ବାଲେଶ୍ୱର ଦୁର୍ଭିକ୍ଷର ଭୟାବହ ଚିତ୍ର, ଇରମ ଗୁଳିକାଣ୍ଡର କରୁଣ କାହାଣୀ ଏବଂ ବନ୍ଦୀ ଜୀବନ ସଂଗୀତ ପ୍ରଭୃତି ସେଥି ମଧ୍ୟରୁ ଅନ୍ୟତମ । ଏଗୁଡ଼ିକ ଗୋପନରେ ସୁଦୂର କଲିକତାରୁ ଛପାଇ ଆଣି ଗୀତ ଗାଇଗାଇ ପୁସ୍ତିକା ଆକାରରେ ଚାରିଆଡ଼େ ପ୍ରଚାରର ବ୍ୟବସ୍ଥା କରିଥିଲୁ ଏବଂ ସହରରୁ ଭିକ୍ଷା ସଂଗ୍ରହ କରୁଥିଲୁ । ଶେଷକୁ ଏପରି ଅବସ୍ଥା ହେଲା ଯେ, ସେ ଗୀତ ବହିମାନ ଯାହାଠାରୁ ମିଳିଲା, ତାକୁ ଆଖିବୁଜା ଛଅମାସ କାରାଦଣ୍ଡ ଭୋଗିବାକୁ ପଡ଼ିଲା ।

**ଦୁର୍ଭିକ୍ଷ ଗୀତ (ଶେଷାଂଶ)**

ଧନ୍ୟ ପାରଳା, ଧନ୍ୟ ଗୋଦାବରୀଶ
ପିଆରି, ଶୋଭାନ ଖାଁ, ମନ୍ମଥ ବୋଷ,
ଏ ପାଣ୍ଡବ ପାଞ୍ଚ
ଚାରୁଚନ୍ଦ୍ରମା' ଆମ ଶକୁନି ଛାଞ୍ଚ ।
ଧନ୍ୟ ପଣ୍ଡିତ ନୀଳ ଶ୍ରୀକୃଷ୍ଣ ବେଶେ,
କୁରୁକ୍ଷେତ୍ରେ କରିଛ ଆମରି ଦେଶେ ହେ
ଲକ୍ଷଲକ୍ଷ ମହଣ
ଆମ ପେଟରୁ କାଟି କରୁଛ ଦାନ
.... କରୁଛ ଲୀଳା
ମଂଗଳମୟ ତୁମ ବୁଡ଼ାଉ ଭେଳା
ସାହା ଆମର ଭାଇ ଏକା ଈଶ୍ୱର
ସେ ନ ରଖିଲେ ଆମେ ମଲୁ ଏଥର



Digitized by srujanika@gmail.com

ମଲେ ମରିବୁ
ଏ ଗୁଣ୍ଡା ସରକାର ଧ୍ୱଂସ ଭଜିବୁ
ଈରମ ଗୁଳିକାଣ୍ଡ

କାଂଶବାଂଶ କୂଳେ ବାସୁଦେବପୁରେ
ରାଜଇ ମୋର ଗାଁ ଇରମେ,
ଯେଉଁ ଅଘଟଣ ଘଟଣା ଘଟିଲା
ଜାଗି ରହିଛି ତା' ମରମେ ।
ଭାଇ ହେ -
କୁଞ୍ଜିଆ କି'ଶ ନ କଲା,
ଶତ ଯୁବତୀର ସିନ୍ଥିର ସିନ୍ଦୂର
ନିମିଷେ ଲିଭାଇ ଦେଲା ।

**ବନ୍ଦୀ ଜୀବନ ସଂଗୀତ -**

ଭାରି ମଜା ଏ ଜେଲଖାନା,
ଛତିଶ ଫାଟକ କାରଖାନା ।
ହେଲେ ମୋର ସ୍ୱାଧୀନ ଦେଶ
ଧରି ସରକାରୀ ଗୋଲାମ କେଶ,
ପୂରାଇବି ଏହି ପାଷାଣ ପୁରୀରେ
ଏ ହେବ ଚୋରଙ୍କ ଚିଡ଼ିଆଖାନା ।

× × ×

କର୍ମୀମାନେ ବହୁକଷ୍ଟରେ ରାତିଦିନ ଗାଁ ଗାଁ ବୁଲି ଲୋକମାନଙ୍କୁ ସଂଗଠିତ କରିବାକୁ ଲାଗିଲେ । ପ୍ରତିଦିନ ହଜାର ହଜାର ମହଣ ଧାନ, ଚାଉଳ, ସରକାର ବଂଗଳାକୁ କଳାବଜାର ଦରରେ ପଠାଉଥାନ୍ତି । ଚାହିଁଲେ, ଅବହେଳେ ସରକାର ଆମକୁ ଖାଦ୍ୟ ଯୋଗାଇ ପାରନ୍ତେ । ଭୋଗରାଇକୁ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା କଲେ ସମସ୍ୟାର ସମାଧାନ ହୋଇପାରନ୍ତା । କିନ୍ତୁ ଜାପାନକୁ ତାଙ୍କର ଭୟ । ଦୁର୍ଭିକ୍ଷର ଖବର କୁଆଡ଼େ ପ୍ରଚାରିତ ହେଲେ ପୂର୍ବ ଉପକୂଳରେ ଜାପାନ ଓହ୍ଲାଇ ପଡ଼ି ଆମକୁ ତାଙ୍କର କରିନେବେ । ଏ



Digitized by srujanika@gmail.com

ସରକାର ଚାହେଁ ଆମେ ନ ଖାଇ ନପିଇ ମରୁ । ସରକାର ବିଦେଶୀ, ଆମର ନୁହଁ । ଆମ ପ୍ରତି ତାଙ୍କର ଦରଦ ଆସିବ କୁଆଡୁ ? ଆମର ସରକାର ହୋଇଥିଲେ, ଯେପରି ଭାବରେ ହେଉ ଆମକୁ ଦାନାପାଣି ଯୋଗାନ୍ତେ । ସରକାରର ଏହି ମାରାତ୍ମକ ମନମୁଖୀ ଶାସନ ବିରୁଦ୍ଧରେ ଆମକୁ ରୁଖି ଛିଡ଼ା ହେବାକୁ ପଡ଼ିବ । ଆମକୁ ବଞ୍ଚିବାକୁ ହେବ । ଚାଲ, ହଜାର ହଜାର ସଂଖ୍ୟାରେ ପଟୁଆର କରି ମୁକାମ୍ ଯିବା । ସରକାରଙ୍କୁ ପଚାରିବା, ଆମକୁ ଭାତ ଦେବେକି ନାହିଁ ? କିନ୍ତୁ କଥାଗୁଡ଼ିକ କହିଦେବା ଖୁବ୍ ସହଜ । କୋଟରସ୍ଥ ଶହଶହ ଅସହାୟ ଆଖି ଭୁଲୁରୁ ଭୁଲୁରୁ ଅନାଇଥାନ୍ତି । ସଭାମାନ ନିଷ୍ପନ୍ଦ, ଉତ୍ତର ନାହିଁ ତର୍କ ନାହିଁ, ଜୀବନ ନାହିଁ । ଏ ହେଉଛି କଙ୍କାଳମାନଙ୍କର ସଭା । ସଭାରେ ବସି ବସି ଅନେକଙ୍କର ହୃଦ୍‌କ୍ରିୟା ବନ୍ଦ ହେବାର ଦେଖାଗଲା । ଧୈର୍ଯ୍ୟର ବନ୍ଧ ଭାଂଗିଯାଏ କର୍ମୀର । ପାଖରେ କୌଣସି ବଳକା ସମ୍ବଳ ନାହିଁ । ଯଦି ଭୋଗରାଇର ମାଟିରୁ ଟାଣିଓଟାରି ଏମାନଙ୍କୁ ବାହାର ଜଗତର ଲୋକଲୋଚନକୁ ନିଆଯାଏ; ତେବେ କିଛି ପ୍ରତିକାର ହୁଏତ ଆଶା କରାଯାଇପାରେ । ହତାଶାରେ କର୍ମୀ ମୁହଁରୁ ଅସଂଯତ ଗାଳି ସଭାରେ ବର୍ଷଣ ହୁଏ । ଅଧୀରତା ଏବଂ କ୍ଷୋଭରେ ଆଖିରୁ ପାଣି ଝରି ଯାଉଥାଏ - ଦେଖ ଭାଇ । କର୍ମୀ ପୁଣି ଆରମ୍ଭ କରେ, ଆମର କାହାରି ପେଟରେ ଅନ୍ନ ନାହିଁ । ଆମେ କ'ଣ କରିପାରୁ । କିନ୍ତୁ କାହାକୁ ଏଠି ପଡ଼ିରହି ପଚିସଢ଼ି ମରିବାକୁ ଦେବୁନାହିଁ । ଆମ ସହ ଚାଲ ମୁକାମ ଯିବା । କେତେ ଖାଇବ, ବହୁତ ଆଣିଦେବୁ । କିନ୍ତୁ ସବୁ ଚେଷ୍ଟା ଭଣ୍ଡୁର ହେବାକୁ ଲାଗିଲା । ଏଣେ ମଣିଷ ଶବ ଟାଣିଟାଣି ହାଲିଆ ଲାଗୁଥାଏ । ଗୋରା ସରକାର କାନରେ ଆମ ମାନଙ୍କର ଆଚରଣ ସମ୍ବାଦ ପହଞ୍ଚିଗଲା । ଗିରଫ ପରୱାନା ବାହାରିପଡ଼ିଲା । ଆମେମାନେ ଦେହଛପା ଦେଲୁ ।





Digitized by srujanika@gmail.com

# ଅଣପଚାଶର ଝଡ଼ତୋଫାନ, ବନ୍ୟା ଓ ଦୁର୍ଭିକ୍ଷ

୧୯୪୨ ଅକ୍ଟୋବର ମାସ ଦୁର୍ଗାପୂଜା ସପ୍ତମୀ ଦିନ ନାହିଁ ନଥିବା ଝଡ଼ ଓ ତୋଫାନ୍ ହଠାତ୍ ବହିବାକୁ ଆରମ୍ଭ କଲା । ସେହିଦିନ ଓ ରାତି ତମାମ ଏହି ମହାବାତ୍ୟା ଓ ବୃଷ୍ଟିପାତର ତାଣ୍ଡବଲୀଳା ଚାଲିଲା । ଦୀର୍ଘ ୧୬ଘଣ୍ଟା କାଳ ଭୟଙ୍କର ପ୍ରାଣାନ୍ତକ ପ୍ରଭଞ୍ଜନ ସହ ଅବିରାମ ପ୍ରବଳ ବାରିପାତ ଫଳରେ ସମଗ୍ର ବଙ୍ଗୋପସାଗର କୂଳରେ ପ୍ଲାବନ ଦେଖାଦେଲା । ସମୁଦ୍ରର ଜଳୋଚ୍ଛ୍ୱାସ ଗ୍ରାମାଞ୍ଚଳ ଭିତରକୁ ପଶି ଆସି ଘରଦ୍ୱାର, ଜୀବଜନ୍ତୁ ଏବଂ ସୁପ୍ତ ଗ୍ରାମବାସୀଙ୍କୁ ପ୍ରବଳ ବେଗରେ ଭସାଇ ନେଇଗଲା । ପ୍ରାଣ ଭୟରେ ସମସ୍ତଙ୍କର ହୃଦୟ କମ୍ପି ଥରହର ହେଲା । ସମଗ୍ର ବଂଗ ଉପକୂଳ, ଭୋଗରାଇ ଏବଂ ବାଲିଆପାଳ ଅଞ୍ଚଳ ମାଟିରେ ଶୋଇଗଲା । ଘରଦ୍ୱାର, ଗଛପତ୍ର ଏବଂ ଫସଲର ଚିହ୍ନବର୍ଣ୍ଣ ରହିଲା ନାହିଁ । ଏହି ପ୍ରଳୟଙ୍କରୀ ଝଡ଼ ତୋଫାନ ପରେ ବେଢ଼ି ଉପରେ କୋରଡ଼ାମାଡ଼ ଭଳି ୧୯୪୩ ସାଲର ପ୍ରବଳ ବନ୍ୟା ମାଡ଼ି ଅବଶିଷ୍ଟ ଯାହାଥିଲା ସବୁ ଧୋଇ ନେଇଗଲା । 'ଭୂଆବନ୍ଧ' ଭାଂଗି ସୁବର୍ଣ୍ଣରେଖାର ବନ୍ୟା ସ୍ରୋତ ଭୋଗରାଇର ବୁକୁଚିରି ନୂଆ ନଈଟିଏ ଖୋଲି ଦେଇଗଲା । ବାଇତପୁର ସ୍ଥିତ ଗଣ୍ଡ ଏବେ ମଧ୍ୟ ବିଦ୍ୟମାନ । ତୋଫାନ ଏବଂ ବନ୍ୟା ଦାଉରେ କେତେ ମଣିଷ, ଗୋରୁଗାଈ, ଜୀବଜନ୍ତୁ ଯେ ମୃତାହତ ହେଲେ, ତା'ର କଳନା ନାହିଁ । ସମଗ୍ର ବଂଗଦେଶ ଏବଂ ଭୋଗରାଇର ବହୁଅଂଶ ଶ୍ମଶାନରେ ପରିଣତ ହେଲା । ହା' ଅନ୍ନର ଘନ କରାଳ ଛାୟା ସ୍ୱାଧୀନତାକାମୀ ଭୋଗରାଇବାସୀଙ୍କ ମୁଣ୍ଡ ଉପରେ ପ୍ରବଳ ବେଗରେ ଓହ୍ଲାଇ ଆସିଲା । ଦଶ, ପନ୍ଦରଦିନ କାଳ କ୍ରମାଗତ ନିରନ୍ନ ଥାଇ କେତେକ ମୂକ ଏବଂ ପଙ୍ଗୁ ପାଲଟିଗଲେ । ଭୋଗରାଇର ହଜାର ହଜାର ପୁଅଝିଅ ପୋକମାଛି ପରି ରାସ୍ତାକଡ଼ରେ ପଡ଼ି ମରିବାକୁ ଲାଗିଲେ । ହିଂସ୍ର ବିଦେଶୀ ସରକାର ଠାରୁ କୌଣସି ସାହାଯ୍ୟ ଆସିଲା ନାହିଁ । ବରଂ ଏତିକିବେଳେ ରାଜ୍ୟର ମୁଖ୍ୟ ସଚିବ ବାଉସ୍‌ଟେଡ୍ ସାହେବ ବିପ୍ଳବୀମାନଙ୍କୁ ନାନା କୌଶଳ ଜାଲରେ ପକାଇ ବିପ୍ଳବ ଦବାଇବାରେ ବିଶେଷ ସକ୍ରିୟ ଦେଖାଗଲେ । ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀଙ୍କ ନେତୃତ୍ୱରେ ଗୌରବାବୁ, ପ୍ୟାରୀବାବୁ, ଦୁଃଖୀବାବୁ ଓ ରମାବାବୁ ଆଦି ଦଳେ ଉଗ୍ର ବିପ୍ଳବୀ ଛପିରହି ତାଙ୍କୁ ହତ୍ୟା କରିବାର ଷଡ଼ଯନ୍ତ କରୁଥାନ୍ତି । ଫୁଲାଡ଼ିର ରେଳପୋଲ ଉଡ଼ାଇ ଦେବାପାଇଁ



Digitized by srujanika@gmail.com

ଡିନାମାଇଟ୍ ଖଞ୍ଜା ଯାଇଥିଲା । କିନ୍ତୁ କିଛି ଦୂର ଅଗ୍ରସର ହୋଇ ସେମାନେ ହଠାତ୍ ଧରା ପଡ଼ିଗଲେ । ଭଂଗାରୁଜା ହତ୍ୟା ଓ ଷଡ଼ଯନ୍ତ୍ର ଅପରାଧ ବିଚାରରେ ତାଙ୍କୁ ସବୁ ଫାଶୀଦଣ୍ଡ ହେବାର କଥା, କିନ୍ତୁ କରୁଣାବତାର ଗାନ୍ଧିଜୀଙ୍କ ହସ୍ତକ୍ଷେପ ଫଳରେ ସେମାନେ ସମସ୍ତେ ବଞ୍ଚିଗଲେ । ମାତ୍ର ଚାରିବର୍ଷ କରି ସଶ୍ରମ କାରାଦଣ୍ଡର ଆଦେଶ ସେମାନଙ୍କୁ ହେଲା । ବିଶିଷ୍ଟ ଆଇନ୍‌ଜୀବୀ ସ୍ୱାମୀ ଶ୍ରୀ ବିଚିତ୍ରାନନ୍ଦ ଦାସ ଏହି ଷଡ଼ଯନ୍ତ୍ର ମାମଲା ବିପ୍ଳବୀମାନଙ୍କ ତରଫରୁ ଲଢ଼ିଥିଲେ ।

ଭୋଗରାଇ ଓ ରାମନଗର ଥାନାର ସୀମାନ୍ତବର୍ତ୍ତୀ ଗ୍ରାମଗୁଡ଼ିକ ସେତେବେଳକୁ ଅଗଷ୍ଟ ବିପ୍ଳବର ନିଆଁରେ ଜଳୁଥାଏ । ଗୋରା, ମୁସଲମାନ ଏବଂ ବିହାରୀ ପୁଲିସ୍ ଫୌଜମାନେ ବନ୍ଧୁକମୁନରେ ଘରେଘରେ ପଶି ତଲାସି ନେଉଥାଆନ୍ତି । ଚନ୍ଦନପୁର, ବିଷ୍ଣୁପୁର ଏବଂ କାଦୁଆ ପ୍ରଭୃତି ଗ୍ରାମ ଗୁଡ଼ିକୁ ପୋଡ଼ି ପାଉଁଶ କରି ଦିଆଗଲା । କାନ୍ଥି ମହକୁମା ପୁଲିସ୍ ଅଫିସର ଦୁହା ଏବଂ ଏସ.ଡି.ଓ. ଗଫୁରର ଅତ୍ୟାଚାର ଚରମକୁ ଉଠିଲା । ପ୍ରାଣ ଭୟରେ ରାମନଗର ଥାନାର ଶତଶତ ପରିବାର ବେଲାବାସନ ଧରି ଭୋଗରାଇ ଭିତରକୁ ପଳାଇ ଆସି ଆଶ୍ରୟ ନେଲେ । ଶ୍ରୀ ବଳାଇଲାଲ ଦାସ ମହାପାତ୍ର ଏବଂ ଶ୍ରୀ ପୁଲିନ ବିହାରୀ ଚୌଧୁରୀ ପ୍ରମୁଖ ନେତାମାନେ ଭୋଗରାଇ ପାହିରେ ଆତ୍ମଗୋପନ କଲେ ।





Digitized by srujanika@gmail.com

# ଐତିହାସିକ ହଙ୍ଗରମାର୍ଚ୍ଚ

ମାସମାସ ଧରି ଡୋଗରାଇର ନିରବ ନିଥର ଶ୍ମଶାନ ଭୂଇଁ ଉପରେ ବୁଲିବୁଲି ପରିଶେଷରେ ୧୯୪୩ ଏପ୍ରିଲ ମାସ ୧୮ ତାରିଖ ସକାଳେ ଏହି ନୃଶଂସ ଗଣହତ୍ୟାର ପ୍ରତିବାଦ ସ୍ୱରୂପ ଏକ ବୁଭୁକ୍ଷୁ ପଟୁଆର ଧୀର ମନ୍ଥର ଗତିରେ ଦକ୍ଷିଣ-ପଶ୍ଚିମ ଦିଗକୁ ଆଗେଇବାକୁ ଆରମ୍ଭ କଲା । ଚାଲିଚାଲି ଜଳେଶ୍ୱର ବାଟେ ଗଲେ ଦୂର ହେବ ବୋଲି ନଦୀ ଡେଇଁ ବାଲିଆପାଳ ବାଟେ ଯାଇ ବସ୍ତା ସଡ଼କ ଧରିବା ବେଳକୁ ରାତ୍ରିର ଅନ୍ଧକାର ହୋଇଯାଇଥାଏ । ରାତ୍ରିରେ ଜଳେଶ୍ୱରବାଟେ କିଛି ସଂଖ୍ୟକ ବୁଭୁକ୍ଷୁ ଆସି ଏମାନଙ୍କ ସହ ଯୋଗଦେଲେ । ଆମ୍ୱଚୁଆ ରିଲିଫ୍ ଅଫିସରୁ ମୁଣ୍ଡରେ ବୋହି ଯାହା ଚୂଡ଼ା ଚାଉଳ ସେମାନେ ଆଣିଥିଲେ ସେସବୁ ସେମିତି କଞ୍ଚା ବାଟରେ ଖତମ ହୋଇଗଲା । କେବଳ ଖାଇବା ଲୋଭରେ ପଟୁଆର ଆଗେଇ ଚାଲିଥାଏ । ବାଟରେ ଯେତେ ଇଚ୍ଛା ସେତେ ଖାଇବାକୁ ଦିଆଯିବ । ଏହି ଆଶ୍ୱାସନା ସେମାନଙ୍କୁ ଦିଆଯାଇଥାଏ । ଜେନାଭାଇ ନରେନ୍ଦ୍ର ବହୁ ଟଙ୍କା ସାଂଗରେ ଆଣିଥାନ୍ତି । ସେ ନୋଟ୍‌ବିଡ଼ା ଲୋକଙ୍କ ଆଗରେ ଖୋଲି ଦେଖାଉଥାନ୍ତି କିଛି ଭୟ ନାହିଁ ଆଗେଇ ଚାଲ, ଯେତେ ଦାମ ପଡ଼ିବ ପଡୁ, ଖାଦ୍ୟ କିଣି ଦିଆଯିବ । ଲକ୍ଷେ ଟଙ୍କା ସେ ଘରୁ ଆଣିଛନ୍ତି । କୁଛ୍ ପରବାୟ ନାହିଁ । ଜେନାମଣି ନରେନ୍ଦ୍ରଙ୍କ ପ୍ରାଣରେ ଅଶେଷ କରୁଣା ତାଙ୍କ ଦେଶବାସୀ ପ୍ରତି । ପୁଲିସ୍ ଅତ୍ୟାଚାରରେ ସେ ସ୍ଥାନାନ୍ତରିତ ହୋଇଥିଲେ ଦୁଡ଼ପଲରୁ ଡଗରାକୁ । ଦୁଇହଜାର ମହଣ ଧାନ ତାଙ୍କର ଡଗରାଠାରେ ମହଜୁଦ୍ ଥିଲା । ଅନ୍ୟମାନେ ପଚିଶ ଟଙ୍କା ମହଣରେ ବିକୁଥିଲେ ବଙ୍ଗଳାକୁ । କିନ୍ତୁ ଜନ ଦରଦୀବନ୍ଧୁ ଜେନାଭାଇ ଏବଂ ତାଙ୍କ ପରିବାର ମିଶି, ସବୁ ଧାନ ଭାତ ପଖାଳ କରି ଅନ୍ନକ୍ଲିଷ୍ଟମାନଙ୍କୁ ପ୍ରତିଦିନ ଖନ୍ଦା ବସାଇ ଖୁଆଇ ଦେଲେ । ଶେଷରେ ଖାଲିନା ଗ୍ରାମରୁ ନୌକା ଯୋଗେ ତିନିଶହ ମହଣ ଧାନ କରଜ ଆଣି ଅନ୍ନ ବାଣ୍ଟିବାକୁ ଲାଗିଲେ । ତେଣୁ ତାଙ୍କର ଜବାବ ପଟୁଆର ଉପରେ ବିଶେଷ ପ୍ରଭାବ ପକାଉଥାଏ ।

ରାତ୍ରିର ଅନ୍ଧକାର ପୁଣି ବ୍ଲାକ୍ ଆଉଟ୍ । ଅଠର ହଜାର ସରିକି ନିରନ୍ନ ବା ଅନ୍ନ ପୀଡ଼ିତ ଲୋକର ଏହି ବିରାଟ ପଟୁଆର ସହିତ ପ୍ରାୟ ସହସ୍ରାଧିକ ଅର୍ଦ୍ଧନଗ୍ନ ସ୍ତ୍ରୀ ଲୋକ ମଧ୍ୟ ରହିଥାନ୍ତି । ମୁଁ ସ୍ୱୟଂ ଏହି ପଟୁଆର ପରିଚାଳନା କରୁଥାଏ । ସହଯୋଗୀ ଥାନ୍ତି



Digitized by srujanika@gmail.com

ଲୋକନାଥ ଏବଂ ଜେନାଭାଇ ନରେନ୍ଦ୍ର ପ୍ରମୁଖ । ବେଶଭୂଷା ଏବଂ ଚେହେରାରୁ ତାଙ୍କୁ ଚିହ୍ନିବା କଷ୍ଟକର ଥିଲା । କିନ୍ତୁ ପଟୁଆର ତାଙ୍କୁ ବେଶ୍ ଚିହ୍ନି ରଖିଥିଲେ । ଚାଲିଚାଲି ପାଦରେ କାହାରି ଜୁ' ନଥାଏ । ବସ୍ତାରେ ସମସ୍ତେ ରାତ୍ରିଯାପନ କରିବାକୁ ବାଧ ହେଲେ । ୧୯ ତାରିଖ ସକାଳେ ଜାତୀୟ ସଡ଼କ ଧରି, ଧୀର ମନ୍ଥର ଗତିରେ ପଟୁଆର ପୁଣି ଆଗେଇ ଚାଲିଲା । ବାଟରେ ଅନେକେ ଟଳି ପଡ଼ି ସଡ଼କ କଡ଼କୁ ଗଡ଼ିଗଲେ । ସେଥିପ୍ରତି କାହାରି ଭ୍ରୂକ୍ଷେପ ନଥିଲା । ଏହା ଯେପରି ଏକ ନିତ୍ୟ ନୈମିତ୍ତିକ କାର୍ଯ୍ୟ ଥିଲା ।

ସେଦିନ ସଞ୍ଜରେ ଅସ୍ଥି ପଞ୍ଜରା ସାର ନଗ୍ନଦେହୀ ଏହି ବିରାଟ ନିରବ ପଟୁଆର ସହର ପାଖ ଲୁଣିଆଯୋଡ଼ି ପୋଲ ଧରିଥାଏ । ବସ୍ତା ଏବଂ ହଳଦୀପଦାଠାରେ ସରକାରଙ୍କ ପଦସ୍ଥ କର୍ମଚାରୀମାନେ ଭୟ ଓ ପ୍ରଲୋଭନ ଦେଖାଇ ଏମାନଙ୍କର ଗତିରୋଧ କରିବାର ଚେଷ୍ଟା କରୁଥିଲେ । ଏମ୍.ଏଲ୍.ଏ. ଶ୍ରୀ ଚାରୁଚନ୍ଦ୍ର ରାୟ ମହାଶୟ ଏବଂ ଜିଲ୍ଲାପାଳ ଶ୍ରୀ ଭି. ରାମନାଥନ୍ ବହୁ ଚେଷ୍ଟା କରି ବିଫଳ ହେଲେ । ଭୋଗରାଇର କଂକାଳସାର ଲୋକଙ୍କ କରୁଣ ରୂପ ଓ ଦୃଶ୍ୟ ଦେଖି ଯୁବକ ଜିଲ୍ଲାପାଳଙ୍କ ହୃଦୟ ଦୟା ଓ କରୁଣାରେ ଦ୍ରବୀଭୂତ ହୋଇଗଲା । ଭୋଗରାଇକୁ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା କରିବାପାଇଁ ସେ ତତ୍‌କ୍ଷଣାତ୍ କାନ୍ଦିକାନ୍ଦି ସରକାରଙ୍କୁ ଫୋନ୍ ଯୋଗେ ଅନୁରୋଧ କଲେ, କିନ୍ତୁ ଫଳ ହେଲା ଓଲଟା । ଜିଲ୍ଲାପାଳ ପଦରୁ ତାଙ୍କୁ ୬ମାସ ବାଧ୍ୟତାମୂଳକ ଛୁଟି ଦିଆଗଲା ।

ଭୋଗରାଇ ଅଞ୍ଚଳରୁ ହଜାର ହଜାର 'ହାଘରୀ' ମାଡ଼ି ଆସୁଛନ୍ତି ବୋଲି ସହରଯାକ ରାଷ୍ଟ୍ର ହୋଇଗଲା । ଲୋକେ, ଦୋକାନ ବଜାର ବନ୍ଦ କରି ପଳାଇଗଲେ । ସରକାରୀ ଖଜଣାଖାନା, କୋର୍ଟ କଚେରି ଏବଂ କଲେକ୍ଟରଙ୍କ କୋଠିକୁ ମିଲିଟାରୀ ପୁଲିସ୍ ଘେରିଗଲେ । ଭାତ ଦିଅ କାମ ଦିଅ, ନହେଲେ ସରକାରଙ୍କୁ ମାନିବୁ ନାହିଁ, ଗୋଳା ବାରୁଦ ମାନିବୁ ନାହିଁର ସ୍ଲୋଗାନ ଦେଇ ଦମ୍ଭର ସହ ବଜ୍ର କଣ୍ଠରେ ଚିତ୍କାର କରି ରାତ୍ରିର ଘନ ଅନ୍ଧକାର ମଧ୍ୟରେ ପଟୁଆର ସହର ମଧ୍ୟରେ ପ୍ରବେଶ କଲା । ଜେଲଖାନାରେ ରୁଦ୍ଧ ଶତଶତ ସ୍ୱାଧୀନତା ସଂଗ୍ରାମୀ ପଟୁଆର ସହ କଣ୍ଠ ମିଳାଇ 'ଇନ୍‌କ୍ଲବ୍ ଜିନ୍ଦାବାଦ' ଧ୍ୱନିକରି ସାରା ସହରକୁ ଉଚ୍ଛୁଳାଇ ପକାଇଲେ । ଜେଲ୍ ଫାଟକ ଭାଂଗିଯିବା ଉପକ୍ରମ ହେଲା ।

ଯୁଦ୍ଧ ବିରୋଧୀ ଭୂମିକା ପାଇଁ ୧୯୪୧ରେ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳକୁ ବରଖାସ୍ତ କରି ଜେଲରେ ଅଟକାଇ ଦେବା ହେତୁ, ତାଙ୍କ ସ୍ଥାନରେ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ମର୍ଦ୍ଦରାଜଙ୍କ ମିଳିତ ମନ୍ତ୍ରୀମଣ୍ଡଳ ସେତିକିବେଳେ ଚାଲିଥାଏ । ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ଗୌରୀଶଙ୍କର ରାୟ, ସୋଭାନ ଖାଁ, ଶ୍ରୀମତୀ ସରଳା ଦେବୀ ଏବଂ ଆମ ଚାରୁବାବୁ ପ୍ରମୁଖ କଂଗ୍ରେସ ଦଳରୁ ଓହରିଯାଇ



Digitized by srujanika@gmail.com

ଗୋରା ସରକାରଙ୍କ ଗୋଡ଼ାଣିଆ ପାରଳା ମହାରାଜାଙ୍କ ସହିତ ମିଶି ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିଥାଆନ୍ତି । ଅବସ୍ଥା ଅସମ୍ଭାଳ ଦେଖି, ଗୋରା ସରକାର ଖାଦ୍ୟମନ୍ତ୍ରୀ ଗୋଦାବରୀଶ ମିଶ୍ରଙ୍କୁ ରାତାରାତି ବାଲେଶ୍ୱର ପଠାଇଦେଲେ । ଜିଲ୍ଲାପାଳ ଶ୍ରୀ ରାମନାଥନ୍ ସେହି ରାତ୍ରିରେ ବିଦାୟ ନେଲେ । ଅବସରପ୍ରାପ୍ତ କଲେକ୍ଟର ରାୟ ବାହାଦୁର ମନ୍ମଥନାଥ ବୋଷଙ୍କୁ ଜିଲ୍ଲାର ଦାୟିତ୍ୱ ଦିଆଗଲା ।

ଶେଷରେ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା ନକରି ମଧ ଅନୁରୂପ ରିଲିଫ୍ ବ୍ୟବସ୍ଥାମାନ ସରକାର ଗ୍ରହଣ କରିବାକୁ ବାଧ ହେଲେ । ଫ୍ରିକିଚେନ୍, ଫ୍ରିଡୋଲସ୍, ଶସ୍ତା ଚାଉଳ ଗୋଲା, ତଗାବୀ ଋଣ, ଟେଷ୍ଟ ରିଲିଫ୍ କାମ ଓ ପଶ୍ଚିମ ବଂଗଳା ସହ ଧାନ ଚାଉଳର ଅବାଧ କାରବାର ପ୍ରଭୃତି ସୁବିଧା ଓ ବ୍ୟବସ୍ଥାମାନ ବ୍ୟାପକ ଭାବେ କାର୍ଯ୍ୟକାରୀ କରିବାର ଆଦେଶ ଜାରିହେଲା । ଗାଁ କଲେକ୍ଟର (ଭୋଗରାଇର କଖଡ଼ା ଗ୍ରାମର ଅଧିବାସୀ) ସ୍ୱୟଂ ତାର ଦାୟିତ୍ୱ ନେଲେ । ଭୋଗରାଇ ଶ୍ୱସ୍ତିର ନିଶ୍ୱାସ ଛାଡ଼ି ବଞ୍ଚିଲା । ତା'ପରେ ସରକାର ପାଣି ପକାଇ ମୋ ସମେତ ଅନ୍ୟ ପ୍ରମୁଖ ବିପ୍ଳବୀମାନଙ୍କୁ ସହର ତମାମ ଖୋଜିଲେ, କିନ୍ତୁ ପାଇଲେ ନାହିଁ ।

ପଟୁଆର ତିନିଦିନ ଧରି ସହର ପରିକ୍ରମା କଲା । ସରକାରଙ୍କ ମୁଖା ଖୋଲିଗଲା ଓ ଇଜ୍ଜତ ପଦାରେ ପଡ଼ିଲା । ନଗରବାସୀ, ବୁଦ୍ଧିଜୀବୀ, ବ୍ୟବସାୟୀ ଗୋଷ୍ଠୀ ସାମନ୍ତ ରାଧାପ୍ରସନ୍ନ ଓ ରାଜା ମନ୍ମଥନାଥ ଦେବଙ୍କ ରାଜ ପରିବାର ମିଶି ବୁଭୁକ୍ଷୁମାନଙ୍କର ଆପ୍ରାଣ ସେବା କଲେ । ଦୀର୍ଘଦିନ ଅନାହାର ପରେ ଭୁରିଭୋଜନ କରି କିଛି ଲୋକ ପ୍ରାଣ ହରାଇଲେ । ତାପରେ ପଟୁଆର ଖୁସି ମନରେ ସହରବାସୀଙ୍କଠାରୁ ବିଦାୟ ନେଇ ସପ୍ତାହ ପରେ ଘରକୁ ବାହୁଡ଼ିଲେ । ସରକାର କଥାର ଖିଲାପ କରିପାରିଲେ ନାହିଁ । ଖାଦ୍ୟ ଯୋଗାଣର ପର୍ଯ୍ୟାପ୍ତ ବ୍ୟବସ୍ଥା ଅବଶ୍ୟ ଗ୍ରହଣ କରାଯାଇଥିଲା । ଛାଇପରି ମୁଁ ସରକାରୀ ରିଲିଫ୍ କାର୍ଯ୍ୟ ଗୋପନରେ ବୁଲି ତଦାରଖ କରୁଥିଲି ଏବଂ ତ୍ରୁଟି ସମୂହ କଲେକ୍ଟର ଜାଣିପାରି ପ୍ରତିକାର ମଧ କରୁଥିଲେ । ଅବସ୍ଥା ସମ୍ଭାଳିବା ପାଇଁ ଏହି ରାୟବାହାଦୁର ଯେ ସହାନୁଭୂତିର ସହ ଆପ୍ରାଣ ଉଦ୍ୟମ କରିଥିଲେ, ଏଥିରେ ସନ୍ଦେହ ନାହିଁ ।

ଭାରତର ଏହି ଅବିସ୍ମରଣୀୟ ଅଗଷ୍ଟ ବିପ୍ଳବ ଇତିହାସରେ ଭୋଗରାଇର ଏହି ଗଣ ନରବଳୀ ଏକ କଳଙ୍କମୟ ଅଧ୍ୟାୟ ସୃଷ୍ଟି କରିଛି । ଶତ ଜାଲିଆନାୱାଲାବାଗ ଏବଂ ସହସ୍ର ଇରମ୍ ତାର ସମକକ୍ଷ ହୋଇପାରିବ ନାହିଁ । ଭୋଗରାଇ ସହିତ, ଚରମ ଦୁର୍ଭିକ୍ଷ ପ୍ରପୀଡ଼ିତ ପଡ଼ୋଶୀ ବଂଗଦେଶକୁ ଦ୍ୱିତୀୟ ବିଶ୍ୱ-ମହାଯୁଦ୍ଧରେ ବିଦେଶୀ ଇଂରେଜ ସରକାର ପୂର୍ଣ୍ଣାହୁତି ଦେଇ ଆପଣାର କବରଖାନା ପାଖେଇ ଆଣି ମହାପାପର ପ୍ରାୟଶ୍ଚିତ କରିଥିଲେ ।



Digitized by srujanika@gmail.com

ଗୋଟିଏ ବିପଦରୁ ମୁକ୍ତି ପରେ ଆଉ ଏକ ବିପଦ ଆସି ଦେଖାଦେଲା । ସରକାରୀ ରିଲିଫ୍ କାର୍ଯ୍ୟ କେବଳ ଭୋଗରାଇ ଥାନା ମଧ୍ୟରେ ସୀମିତ ଥିଲା । କିନ୍ତୁ ବାଲିଆପାଳ ଓ ଜଳେଶ୍ୱରରେ ଅବସ୍ଥା କହିଲେ ନସରେ । ଏଠାରେ କେତେକ ଶସ୍ତା ଚାଉଳ ଦୋକାନ ଖୋଲିଦେଇ ସରକାର ଚୁପ୍ ରହିଲେ । ଧାନ ମହାଜନମାନେ ଗାଁ ଲୋକଙ୍କୁ ଧାନ କରଜ ନଦେଇ ମହଣକୁ ପଚିଶ ଟଙ୍କା ମୂଲ୍ୟରେ ବଂଗଳାର ବେପାରୀମାନଙ୍କୁ ବେପରୱା ବିକ୍ରୟ କରିବାକୁ ଲାଗିଲେ । ଅଖା ପାଛିଆ ଧରି ବୁଲିବୁଲି କେହି ପୁଞ୍ଜାଏ ଧାନ ପାଇଲେ ନାହିଁ । ମୁଁ ଏବଂ ମୋର ବନ୍ଧୁମାନେ ଜଳେଶ୍ୱର ଥାନାର ଗାଁ ଗହଳକୁ ଛଦ୍ମବେଶରେ ଗସ୍ତ ଆରମ୍ଭ କଲୁ । ସାଧାରଣ ଲୋକଙ୍କ ଅସହାୟ ଅବସ୍ଥା ଓ ଧନିକ ଶ୍ରେଣୀର ନିଷ୍ଠୁର ମନୋଭାବ ଆମକୁ ଉତ୍ତେଜିତ କଲା । ଗ୍ରାମବାସୀଙ୍କୁ ସଂଗଠିତ କରି ଧାନ ମହାଜନମାନଙ୍କ ଘରକୁ 'ହଙ୍ଗରମାର୍ଚ୍ଚ' ରଚନା କଲୁ । ଅବସ୍ଥା ସେଥିରେ ସୁଧୁରିଲା ନାହିଁ । ଆରମ୍ଭ ହେଲା ଲୁଟ୍‌ତରାଜ । ଶତଶତ ଗ୍ରାମବାସୀ ମିଶି ଦିନ ଦ୍ୱିପହରରେ ଧନୀ ଚାଷୀଙ୍କ ଧାନ ଅମାର ସବୁ ଭାଂଗି ଧାନତକ ବାଣ୍ଟି ବୋହିନେଲେ । ଖାଲିନା ଗ୍ରାମର ଶ୍ରୀ ବୈଦ୍ୟନାଥ ଦାସ, ଆରୁହାର ଶ୍ରୀ ଅନନ୍ତ ମହପାତ୍ର, ଦେବକୁମାରର ଶ୍ରୀ କାବୁଲି କର, କଲ୍ୟାଣପୁରର ଶ୍ରୀ ଭୀମ ଜେନା ଓ ଅଲାଲପୁରର ଚୌଧୁରୀ ପରିବାର ପ୍ରଭୃତିଙ୍କ ଅମାର ଏହି ଲୁଟ୍‌ତରାଜ ମୁହଁରୁ ତ୍ରାହି ପାଇନାହିଁ । ସମଗ୍ର ଉତ୍ତର ବାଲେଶ୍ୱରର ଧାନ ମହାଜନମାନଙ୍କ ମଧ୍ୟରେ ଭୟଙ୍କର ସନ୍ତ୍ରାସ ସୃଷ୍ଟିହେଲା । ଗିରଫଦାରୀ ଓ ମକଦ୍ଦମା ଚାଲିଲା । ଖବର ପାଇ ଖାଦ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର, ଶ୍ରୀଯୁକ୍ତ ଚାରୁଚନ୍ଦ୍ର ରାୟ ମହାଶୟ, ଏମ୍.ଏଲ୍.ଏ. ଓ ସଦର ଏସ୍.ଡି.ଓ. ଶ୍ରୀଯୁକ୍ତ ରତ୍ନାକର ଷଡ଼ଙ୍ଗୀ ଦଉଡ଼ି ଆସିଲେ । ଧାନ ମହାଜନମାନଙ୍କ କଳାଧନ ଜବଦ କରାଗଲା । ଏବଂ ନିୟନ୍ତ୍ରିତ ପାଞ୍ଚଟଙ୍କା ମୂଲ୍ୟରେ ଗାଁ ଲୋକଙ୍କୁ ବିକ୍ରୟ କରିବାକୁ ବାଧ୍ୟ କରାଗଲା । ଶସ୍ତା ଚାଉଳ ଗୋଲାର ସଂଖ୍ୟା ବଢ଼ିବା ସଂଗେସଂଗେ ଚାଉଳର ପରିମାଣ ମଧ୍ୟ ବଢ଼ାଇଦେଲେ ।

ସେତେବେଳକୁ ୧୯୪୩ ସାଲ ମଧ୍ୟଭାଗ ହେବ । ସେଠାରୁ ମୁଁ ଏବଂ ମୋର ବନ୍ଧୁମାନେ ପଳାଇ ଆସି ବାଲେଶ୍ୱର ଥାନା ଗୋପୀନାଥ ପୁର ଓ ଇଚ୍ଛାପୁର ଗ୍ରାମରେ ଆଶ୍ରୟ ନେଲୁ । ଉତ୍କଟ ଖାଦ୍ୟାଭାବ ଚାରିଆଡ଼େ ଦେଖା ଦେଇଥିଲା । ସରକାର କାଳ ପାଲଟି ଯାଇଥିଲେ । ଯଶିପୁରରେ ଧାନ ମହାଜନ ଆଦ୍ୟା ପଣ୍ଡା, ଓଲନ୍ଦାର ଶ୍ରୀ ଭଗବାନ ପ୍ରଧାନ ଓ ଶ୍ରୀ ଲାଲମୋହନ ପ୍ରଧାନ ପ୍ରଭୃତି ଲୋକମାନଙ୍କୁ ଧାନକରଜ ଦେଲେ ନାହିଁ । ତାଙ୍କ ଘରେ ରୀତିମତ ଯୁଦ୍ଧ କରି ଧାନ ଅମାର ଲୁଟ କରାଯାଇଥିଲା ।



Digitized by srujanika@gmail.com

କ୍ଷିପ୍ର ଗତିରେ ଆମଦଳ ଉତ୍ତର ବାଲେଶ୍ୱର ଏବଂ ବାଲେଶ୍ୱରର ସମସ୍ତ ଗ୍ରାମ ବୁଲି ଦରାଣ୍ଡି ପକାଇଲେ । ରସଦପୂର୍ଣ୍ଣ, ଚୋରା କାରବାରୀ ଏବଂ ସରକାରୀ ନୌକା ସବୁ ଏହି ଲୁଟତରାଜ ମୁହଁରୁ ତ୍ରାହି ପାଇନଥିଲା । ଗୁଡ଼ଦାଖାଲଠାରେ ଶତାଧିକ ନୌକା ଏହିପରି ଲୁଣ୍ଠିତ ହୋଇ ଦୁର୍ଗତ ଲୋକଙ୍କୁ ବଣ୍ଟା ଯାଇଥିଲା । ହଜାର ହଜାର ନିରନ୍ନ ଗ୍ରାମବାସୀ ଆମର ସାଥୀ ଥିଲେ । ଆମର ବା ଭୟ କାହାକୁ ? ଉପକାରୀଙ୍କୁ ଭଗବାନ ସହାୟ । ଆମ ଲୋକଙ୍କୁ ଅନ୍ନ ମିଳିବ, ମୁହଁରେ ହସ ଫୁଟିବ । ଜୀବନଟାକୁ ହାତ ପାପୁଲି ଉପରେ ଥୋଇ, ଆମେ ପ୍ରାଣମୂର୍ଚ୍ଛା ସଂଗ୍ରାମ କରୁଥାଉ ସରକାର ଏବଂ ତତ୍କାଳୀନ ଅସ୍ୱାଭାବିକ ପରିସ୍ଥିତି ସହିତ ।

ଦିନକର ଏକ ଦୁଃସାହସିକ ଘଟଣା ମନେପଡ଼ିଲେ ଆଜିବି ଆଶ୍ଚର୍ଯ୍ୟ ଲାଗେ, କେମିତି ଏମିତି ହୋଇପାରିଲା । ଇଚ୍ଛାପୁର ଗ୍ରାମର ସ୍କୁଲଘରେ ମୁଁ ଓ ମୋର ସାଥୀ ଲୋକନାଥ ଛପି ରହିଥାଉ, ଦିନ ଦ୍ୱିପ୍ରହର ବେଳେ ଗୋଡ଼ିମିଶା ବଗଡ଼ା ଭାତ ସହ ପୋଇଶାଗ ଭଜା ଖାଇ ବସିଥାଉ । ଏତିକିବେଳେ ଖବର ଆସି ପହଞ୍ଚିଲା ଗୁଡ଼ଦାଖାଲଠାରେ ସରକାରୀ ରିଲିଫ୍ ଏବଂ ଚୋରା ଚାଲାଣ ଧାନଚାଉଳ ପୂର୍ଣ୍ଣ ସାତଖଣ୍ଡ ନୌକାକୁ ସେ ଅଞ୍ଚଳର ବୁଭୁକ୍ଷୁ ପ୍ରାୟ ହଜାରେ ସରିକି ହେବେ ଘେରି ରହିଛନ୍ତି । ସଶସ୍ତ୍ର ପୁଲିସ୍ ବୋଟ ଉପରେ ଥାଇ ସେମାନଙ୍କୁ ଗୁଳି କରିବାପାଇଁ ବନ୍ଧୁକ ଉଞ୍ଚାଇ ଧରିଛନ୍ତି । ଏପରି ଅବସ୍ଥା ଯେ, ଟିକିଏ ଆଗପଛ ହେଲେ ଗୁଳି ମୁହଁରୁ କେହି ତ୍ରାହି ପାଇବେ ନାହିଁ । ଦୁଃସମ୍ବାଦ ପାଇ ମୁଁ ଅସ୍ଥିର ହୋଇପଡ଼ିଲି । ଖାଇବା ପତ୍ରରୁ ଉଠି ଦଣ୍ଡେ ଛିଡ଼ା ହେଲି । ହଜାର ହଜାର ମହଣ ଧାନ ଚାଉଳ ଜବରଦସ୍ତ ଏଯାବତ୍ ଲୁଟ୍‌କରି ଲୋକଙ୍କୁ ବାଣ୍ଟିଛି, କିନ୍ତୁ ଏପରି ସଂକଟ ଅବସ୍ଥାର ସମ୍ମୁଖୀନ କେବେ ହୋଇନାହିଁ । ଅବସ୍ଥା ବିଚାର ନକରି ପେଟ ବିକଳିଆମାନଙ୍କର ବିଶୃଙ୍ଖଳ ଆଚରଣ ସକାଶେ ଟିକିଏ ଶଙ୍କିଗଲି । ସତରେ କ'ଣ ଏ ଲୋକଗୁଡ଼ାକ ବନ୍ଧୁକ ମୁନରେ ପ୍ରାଣ ଦେବେ ? କିନ୍ତୁ ଅରକ୍ଷିତଙ୍କୁ ଦଇବ ସାହା । ଖାଲ ପାଖକୁ ଦୌଡ଼ି ଯାଉଯାଉ ମତେ ଅଚାନକ ଏକ ବୁଦ୍ଧି ଦେଖାଗଲା । ପଦାରୁ କେତେଖଣ୍ଡ ବେଗୁନିଆ ଛଡ଼ି ଭାଂଗିନେଲି ଏବଂ ଘଟଣା ସ୍ଥଳରେ ପହଞ୍ଚି ବିନା ବାକ୍ୟବ୍ୟୟରେ ସବୁ ଲୋକଙ୍କୁ ଗୁଡ଼େଇ ଗୁଡ଼େଇ ବେଦମ ପ୍ରହାର କରିବାକୁ ଲାଗିଲି । ଅଶ୍ଳୀଳ ଭାଷାରେ ଗାଳିଗୁଲଜ କଲି । ହଠାତ୍ ପ୍ରହାର ଖାଇ ଜନତା ଆଶ୍ଚର୍ଯ୍ୟ ହେବା ସଂଗେସଂଗେ ଛତ୍ରଭଂଗ ଦେଇ ଦୂରକୁ ପଳାଇଗଲେ । ପୁଲିସ୍ ସିପାହୀମାନେ ମୋର ଏ ଢଙ୍ଗ ଦେଖି ଆଶ୍ଚର୍ଯ୍ୟ ଏବଂ କୌତୁହଳୀ ହୋଇଉଠିଲେ । ଲୋକେ ଦୂରେଇ ଗଲା ଉତ୍ତାରୁ ପୁଲିସ୍‌ବାଲାଙ୍କୁ ଯାଇ ଲମ୍ବା ଜୁହାରଟିଏ ହେଲି ଏବଂ ଗ୍ରାମବାସୀଙ୍କ ତରଫରୁ ମାଫି ମାଗିଲି । ପୁଲିସ୍



Digitized by srujanika@gmail.com

ମୋର ଏ ଅଦ୍ଭୁତ ଆଚରଣରେ ହସି ପରିଚୟ ମାଗିବାରୁ ମୁଁ ଗ୍ରାମର ଅବଧାନେ ବୋଲି କହିଲି । ପୁଲିସ୍ ବାହିନୀ ଦମ୍ଭ ଦେଖାଇ ସମସ୍ତଙ୍କୁ ବନ୍ଧୁକରେ ଲାଛି ଦେଇଥାନ୍ତେ ବୋଲି ପ୍ରକାଶ କଲେ ଏବଂ ଏ ଲୋକଙ୍କୁ ନିଶ୍ଚିତ ଗୁଳିମୁହଁରୁ ରକ୍ଷା କରିଥିବାରୁ ମୋତେ ପ୍ରଶଂସା କଲେ । ପରେ ନୌକାର ମାସ୍ତୁଲ ଦିହରେ ସାତଖଣ୍ଡ ବନ୍ଧୁକ ଡେରିଦେଇ ଛଇ ଉପରେ ବିଡ଼ି ପିଇ ବସିଲେ ସେମାନେ ଆରାମରେ । ଅବସ୍ଥା ଶାନ୍ତ ହେବାରୁ ବୋଟ୍ ଗୁଡ଼ିକ ଧୀର ମନ୍ଥର ଗତିରେ ଖାଳଆଡ଼ି ଧାରେଧାରେ ପୁଣି ଗୁଣ ଟାଣି ଆଗେଇ ଚାଲିଥାଏ । ଲୋକେ ସେମାନଙ୍କ ନେତାଙ୍କର ଅପୂର୍ବ ବ୍ୟବହାରରେ ହତ ଚକିତ ହୋଇ ଯାଇଥାନ୍ତି । ସେଥିମଧ୍ୟରୁ ଚାରିଜଣ ଯୁବକ ଭୟେଭୟେ ଆସି ଇତିମଧ୍ୟରେ ମୋ ପାଖେପାଖେ ଧୀରେଧୀରେ ଚାଲିଥାନ୍ତି । ଇଂଗିତରେ ସେମାନଙ୍କ ସହିତ କଥା ହେଲି । କିଛିଦୂର ଅଗ୍ରସର ହୋଇ ପୁଲିସ୍‌ମାନଙ୍କୁ ଧନ୍ୟବାଦ ଦେଇ ସଶବ୍ଦ ତାଳିମାରି ହାତଯୋଡ଼ି ବିଦାୟ ନମସ୍କାର ଜଣାଇଲି । ହଠାତ୍ ଦେଖାଗଲା ପଛପଟୁ ଚାରିଜଣ ଯୁବକ ପୁଲିସ୍ ନୌକା ଉପରକୁ ଡିଆଁମାରି ଉଠି ବନ୍ଧୁକତକ ତଳୁ ଗୋଟାଇ କେନାଲ ପାଣିକୁ ଫୋପାଡ଼ି ଦେଲେ ଓ ପାଣିକୁ ଡେଇଁପଡ଼ିଲେ । ଉପସ୍ଥିତ ସମସ୍ତେ ଘଟଣା ଦେଖି ଚମକି ଗଲେ । ଅଦୂରରେ ଛିଡ଼ା ହୋଇ ଲକ୍ଷ୍ୟ ରଖିଥିବା ଜନତା ଦୌଡ଼ିଆସି ପୁଣି ନୌକାଗୁଡ଼ିକୁ ଘେରିଗଲେ ଏବଂ ସବୁ ଧାନ ଚାଉଳ ନୌକାରୁ ବୋହିଆଣି ବାଣ୍ଟିନେଲେ । ନିରସ୍ତ୍ର ପୁଲିସ୍ ହତବାକ୍ ହୋଇ ହାତବାନ୍ଧି ଛିଡ଼ା ହୋଇ କେବଳ ଦେଖୁଥାନ୍ତି । ଜନତାର ଭିଡ଼ ମଧ୍ୟରେ ମୁଁ ଅନ୍ତର୍ଦ୍ଧାନ ହୋଇଗଲି ।

ବାଲେଶ୍ୱର ସହର ବାରବାଟିସ୍ଥ ଶ୍ୟାମସୁନ୍ଦର ମନ୍ଦିର ଆମ ବିପ୍ଳବୀ ଦଳର ଗୁପ୍ତ ଆଡ୍ଡା ଥିଲା । ଶ୍ରୀ ଶରତ ପାଣିଗ୍ରାହୀ, ସେଖ ସଇଦୁ, ଡାକ୍ତର ଭୁବନ ଦତ୍ତଗୁପ୍ତ, ଡାକ୍ତର ଅନିଲ ବିଶ୍ୱାସ, ତୁଳସୀ ଦାସ ଘୋଷ, ପୁଲିସ ବିଭାଗର ବିଲଡିଂ ଇନ୍‌ସ୍‌ପେକ୍ଟର ନିଜାମୁଦ୍ଦିନ ଅହମ୍ମଦ, ମୌଲାଚି ସୟଦ ଅବଦୁଲ ଜବ୍‌ବର, ପରଶୁରାମ ପୃଷ୍ଟି, ମୋତିଲାଲ ସେଠ, ଈଶ୍ୱରଲାଲ ଜେଠି ଏବଂ ପୁଲିସ୍ ଜମାଦାର ସୀତାରାମ ଦେ ପ୍ରମୁଖ ଜାତୀୟତାବାଦୀ ହିନ୍ଦୁ ମୁସଲମାନ ଏମାନଙ୍କର ପୃଷ୍ଠପୋଷକତା କରୁଥିଲେ ।

ପ୍ରବଳ ଚେଷ୍ଟା କରି ମଧ୍ୟ ସରକାର ଆମ ଦଳକୁ ଧରିପାରିଲେ ନାହିଁ । ଆମକୁ ଚିହ୍ନିବା କଷ୍ଟ ଥିଲା । ଜନସାଧାରଣଙ୍କ ଅକୁଣ୍ଠ ସମର୍ଥନ ଏହାର କାରଣ ଥିଲା । ଶେଷରେ ୧୯୪୩ ସାଲ ଶେଷ ଭାଗରେ ଏହି ବିପ୍ଳବୀ ଦଳଟି ଗୋଟିକ ପରେ ଗୋଟିଏ ଧରା ପଡ଼ିଗଲେ । ମକଦ୍ଦମା ଚାଲିଲା । ୩୮ଜଣ ଆସାମୀ ଓ ୧୧୪ଜଣ ସାକ୍ଷୀ । ଭାରତ ରକ୍ଷା ଓ ଭାରତୀୟ ପିଙ୍ଗଳ କୋର୍ଡ଼ର ମାରାତ୍ମକ ଧାରାମାନ ସମସ୍ତଙ୍କ ବିରୁଦ୍ଧରେ ଲାଗୁ କରାଯାଇଥାଏ । ଦୀର୍ଘ ଦଶମାସ ଧରି ପ୍ରତିଦିନ ବିଚାର ଚାଲିଥାଏ । କେବଳ ପୁଲିସ୍‌ଙ୍କ



Digitized by srujanika@gmail.com

ଛଡ଼ା ଆଉ କେହି ସାକ୍ଷୀ ଦେଲେ ନାହିଁ । ଓକିଲଖାନାର ସମସ୍ତ ଓକିଲ ମୋକଦ୍ଦମା ଲଢ଼ିବାକୁ ଆଗେଇ ଆସିଲେ । ପ୍ରଥମେ ସଦର ଏସ୍.ଡି.ଓ. ଶ୍ରୀ ଗୋଡି ଆପ୍ପାରାଓ ଓ ପରେ ଅତିରିକ୍ତ ଜିଲ୍ଲା ଦୌରାଜଜ୍ ମିଷ୍ଟର ଟଣ୍ଡନ ବିଚାର କଲେ । ଶେଷରେ ୧୯୪୪ ସାଲ ମଧ୍ୟ ଭାଗରେ ସେସ୍‌ନସ୍ ଜଜ୍‌କୋର୍ଟରୁ ସମସ୍ତେ ବିନା ଅପରାଧରେ ଖଲାସ ହେଲେ ।

ଖଲାସ ହୋଇ ମଧ୍ୟ ଆମର ତ୍ରାହି ନଥିଲା । ପୁଲିସ୍ ସୁପାର ମିଷ୍ଟର ଜି.ଆର.ଜି. ଫୋକସ୍ ସମସ୍ତଙ୍କୁ କୋର୍ଟରୁ ବାନ୍ଧି ନେଇ ଜେଲ ହାଜତରେ ଅଟକାଇ ରଖିଲେ ତିନିମାସ କାଳ । ୧୯୪୪ ମସିହା ଜୁଲାଇରେ ଆମକୁ ମୁକ୍ତି ଦିଆଗଲା । ଉକ୍ତ ମାସ ଫକୀରମୋହନ ମହାବିଦ୍ୟାଳୟ ବାଲେଶ୍ୱରରେ ସର୍ବପ୍ରଥମେ ଖୋଲାଗଲା । ବିପ୍ଳବୀ ମାମା ତୁଳସୀ ଦାସଙ୍କ ପରାମର୍ଶରେ ପ୍ରଥମ ବାର୍ଷିକ କଳା ବର୍ଷରେ ମୁଁ ସର୍ବପ୍ରଥମ ନାମ ଲେଖାଇଥିଲି । କିନ୍ତୁ କଲେଜପଢ଼ା ମୋ କପାଳରେ ନଥିଲା । ମାତ୍ର ୧୫ଦିନ ପରେ କଲେଜ ଛାତ୍ରମାନଙ୍କର ଏକ ସଭାରେ ଗୋରା ସରକାରଙ୍କ ବିରୁଦ୍ଧରେ ତୀବ୍ର ବିଷ ଉଦ୍‌ଗାର କରି ବସିଲି ଏବଂ ସଂଗେସଂଗେ ମତେ ଗିରଫ କରି ନିଆଗଲା । ଭାରତୀୟ ନିରାପତ୍ତା ଆଇନ ମୋ ବିରୁଦ୍ଧରେ ଲାଗୁ କରାଗଲା । ରାଜ୍ୟର ମୁଖ୍ୟ ସଚିବ ମିଷ୍ଟର ବାଉଷ୍ଟେଡଙ୍କର ଆଦେଶ ଆସିଲା - His presence out side the prison bar is detrimental to the interst of his Majesty the king emperor ଏହି ନିରାପତ୍ତା ଆଦେଶ ବଳରେ ୧୪ମାସ କାଳ ମୁଁ ବରହମପୁର ସର୍କଲ ଜେଲରେ ଅଟକବନ୍ଦୀ ଭାବରେ କଟାଇବାକୁ ବାଧ୍ୟ ହେଲି ।

ଅଗଷ୍ଟ ବିପ୍ଳବ ତଥା ସ୍ୱାଧୀନତା ଆନ୍ଦୋଳନକୁ ବଞ୍ଚାଇ ରଖିବା ପାଇଁ ଜେଲ ବାହାରେ ଭୋଗରାଇ କିମ୍ବା ବାଲେଶ୍ୱର ମାଟିରେ ଏହାପରେ ଆଉ କେହି ଅବଶିଷ୍ଟ କଂଗ୍ରେସକର୍ମୀ ରହିଲେ ନାହିଁ ।





Digitized by srujanika@gmail.com

# ନେତାଜୀଙ୍କ ସହ ସେଇ ପାଞ୍ଚଘଣ୍ଟା

ନେତାଜୀ ସୁଭାଷ ଚନ୍ଦ୍ର ବୋଷ ୧୮୯୭ ମସିହା ଜାନୁଆରୀ ମାସ ୨୩ ତାରିଖରେ କଟକ ସହରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାପା ୰ଜାନକୀନାଥ ବୋଷ ସେତେବେଳେ କଟକରେ ଜଣେ ଖ୍ୟାତନାମା ଓକିଲ ଭାବେ ବସବାସ କରୁଥିଲେ । ଜାନକୀବାବୁ ବଂଗ ଦେଶର ଦକ୍ଷିଣ ଚବିଶପ୍ରଗଣାର କୋଡାଲିଆ ଗ୍ରାମ୍‌ର ଅଧିବାସୀ ଥିଲେ । ମା' ପ୍ରଭାତୀ ଦେବୀ ଭାରତବର୍ଷର ବୃହତ୍ତର ଅମୂଲ୍ୟ ପରମ୍ପରା ଓ ଐତିହ୍ୟ ବିଷୟରେ ପିଲାଦିନୁ ସୁଭାଷଙ୍କୁ ଅବହିତ କରାଇବାକୁ ସଦା ଚେଷ୍ଟିତ ଥିଲେ । ମାତୃଭୂମିର ଗୌରବମୟ ଅତୀତର ଇତିହାସ ସଦାବେଳେ ସୁଭାଷଙ୍କ ହୃଦୟକୁ ଆନ୍ଦୋଳିତ କରି ଦେଶମାତୃକା ପ୍ରତି ଗଭୀର ପ୍ରେମ ଜାଗ୍ରତ କରିଥିଲା । ପରେପରେ ରେଭେନ୍ସା କଲିଜିଏଟ୍ ସ୍କୁଲରେ ପଢ଼ିବାବେଳେ ତାଙ୍କର ଜଣେ ଶିକ୍ଷାଗୁରୁ ୰ବେଣୀମାଧବ ଦାସଙ୍କର ଉପଦେଶ ଓ ଶିକ୍ଷା ତାଙ୍କୁ ଜଣେ ଦେଶଭକ୍ତ ଭାବେ ଗଢ଼ିବାରେ ପ୍ରଭୂତ ସାହାଯ୍ୟ କରିଥିଲା । ସୁଭାଷ ପ୍ରଥମରୁ ଜଣେ ମେଧାବୀ ଛାତ୍ର ଥିଲେ । ଏନ୍‌ଟ୍ରାନ୍ସ ପରୀକ୍ଷାରେ ସେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ ।

ଏନ୍‌ଟ୍ରାନ୍ସ ପରୀକ୍ଷା ପରେ ସେ କଲିକତା ଯାଇ ସେଠାରେ ଉଚ୍ଚଶିକ୍ଷା ଲାଭ କଲାପରେ ବିଲାତ ଯାଇ ଆଇ.ସି.ଏସ୍. ପରୀକ୍ଷା ଦେଇ ଉକ୍ତ ପରୀକ୍ଷାରେ ୪ର୍ଥସ୍ଥାନ ଅଧିକାର କରିଥିଲେ । ଭାରତର ତତ୍କାଳୀନ ବିଦେଶୀ ଇଂରେଜୀ ଶାସକଙ୍କ ଭାରତର ନିରୀହ ଜନତା ଉପରେ ଅତ୍ୟାଚାର, ଶୋଷଣ ତାଙ୍କୁ ଖୁବ୍ ଅଭିଭୂତ କରିଥିଲା । ଏଣୁ ସେ ଆଇ.ସି.ଏସ୍. ଚାକିରି ନକରି ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ସହ ମିଶି ଭାରତର ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ । ଜଣେ ତେଜିଆନ୍ ଯୁବକ ଥାଇ ସୁଭାଷ ସାରା ଦେଶ ଭ୍ରମଣ କରି ଦେଶର ଯୁବଶକ୍ତିକୁ ଏକତ୍ର କରି ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଏକ ସୁସଂହତ ରୂପ ଦେବାକୁ ଚେଷ୍ଟା କରିଥିଲେ । ତାଙ୍କର ଅପାର ସଂଗଠନ ଶକ୍ତି ଜାତୀୟ କଂଗ୍ରେସକୁ ଅଧିକ ଶକ୍ତିଶାଳୀ କରିପାରିଥିଲା । ସେଥିପାଇଁ ଏ ମହାନ୍ କଂଗ୍ରେସ ନେତା ଦୁଇ ଦୁଇଥର ଭାରତର ଜାତୀୟ କଂଗ୍ରେସର ସଭାପତି ଭାବେ ନିର୍ବାଚିତ ହୋଇପାରିଥିଲେ । ୧୯୩୮ ମସିହାରେ ଗୁଜୁରାଟର ହରିପୁରଠାରେ ଓ ୧୯୩୯ରେ



Digitized by srujanika@gmail.com

ମଧ୍ୟପ୍ରଦେଶର ତିପରୀ କଂଗ୍ରେସ ଅଧିବେଶନରେ ସଭାପତିତ୍ୱ କରିଥିଲେ । ଏହି ସମୟ କାଳ ମଧ୍ୟରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସେ ବହୁଥର କାରାବରଣ କରିଥିଲେ । କଂଗ୍ରେସର ଅହିଂସା, ଅସହଯୋଗ ଓ ସତ୍ୟାଗ୍ରହ ଆଦି ଆନ୍ଦୋଳନ ଜରିଆରେ ଦେଶର ସ୍ୱାଧୀନତା ହାସଲ କରିବା ନୀତିକୁ ସେ ପସନ୍ଦ କରୁନଥିଲେ । ଏହି ଉଗ୍ର ରୁଦ୍ର ସ୍ୱାଧୀନତା ସଂଗ୍ରାମୀ ଜଣକ ଯେକୌଣସି ଉପାୟରେ ଦେଶକୁ ସ୍ୱାଧୀନ କରିବାର ସ୍ୱପ୍ନରେ ଅଧୀର ଥିଲେ । ଏଣୁ ସେ କଂଗ୍ରେସର ନେତୃତ୍ୱ ଛାଡ଼ି ୧୯୩୯ ମସିହା ମେ ମାସରେ କଂଗ୍ରେସ ମଧ୍ୟରେ ଏକ ଅଗ୍ରଗାମୀ ଦଳ ସୃଷ୍ଟିକଲେ ଫରୱାର୍ଡ଼ ବ୍ଲକ୍ ନାମରେ । ଏହି ବ୍ଲକ୍ ବା ଗୋଷ୍ଠୀ ଇଂରେଜ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ଲାଗିଲେ ଚାରିଆଡ଼େ ବୁଲିବୁଲି । ସେଥି ସକାଶେ ତାଙ୍କୁ ବହୁବାର ଜେଲ୍ ଯିବାକୁ ପଡ଼ିଛି । ଭାରତବର୍ଷ ତମାମ୍ ଗସ୍ତକରି ସେ ବିଦେଶୀ ସରକାରଙ୍କୁ ହତଚକିତ ଓ ବ୍ୟସ୍ତ କରି ପକାଇଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ୧୯୩୯ରେ ଆରମ୍ଭ ହୋଇ ସାରା ବିଶ୍ୱକୁ ଭୀତତ୍ରସ୍ତ କରି ଦୁର୍ବିସହ, ଦୁଃଖ, ଅଭାବ ଓ ସର୍ବନାଶ ମଧ୍ୟକୁ ଟାଣିବାରେ ଲାଗିଥାଏ । ଏହି ଯୁଦ୍ଧ ୧୯୪୫ ଯାଏ ଚାଲି ଶେଷ ହୋଇଥିଲା । ୧୯୪୧ ମସିହା ଏକ ଅସହ୍ୟ ନିଦାଘ ଉତ୍ତପ୍ତ ଦିବସରେ ସେ ଓଡ଼ିଶା ଗସ୍ତରେ ଆସି ପ୍ରତ୍ୟୁଷରେ ବାଲେଶ୍ୱର ରେଳ ଷ୍ଟେସନରେ ଓହ୍ଲାଇଥିଲେ । ଓଡ଼ିଶାର ତତ୍କାଳୀନ ବିଖ୍ୟାତ ନେତା ପଣ୍ଡିତ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, ଯଦୁମଣି ମଂଗରାଜ ଆଦି ତାଙ୍କର ସାଥୀ ହୋଇ ଆସିଥିଲେ । ବାଲେଶ୍ୱର ଷ୍ଟେସନରେ ହଜାର ହଜାର ବାଲେଶ୍ୱରବାସୀ, ଛାତ୍ରଛାତ୍ରୀ, ବ୍ୟବସାୟୀ, ବୁଦ୍ଧିଜୀବୀ ଓ ସାଧାରଣ ଭାଇଭଉଣୀମାନେ ଉପସ୍ଥିତ ହୋଇ ବାରମ୍ବାର ତୋପ ଧ୍ୱନି କରି ଏହି ମହାନ୍ ନେତାଙ୍କୁ ସ୍ୱାଗତ ଜଣାଇଥିଲେ । ସେତେବେଳେ ଜାତୀୟ କଂଗ୍ରେସ ସୁଭାଷଙ୍କ ଗସ୍ତକ୍ରମକୁ ବୟକଟ୍ କରିଥାଏ । ଏଣୁ କତିପୟ କିଛି କଂଗ୍ରେସ ଲୋକଙ୍କ ସହ ମିଶି ସୁଭାଷଙ୍କୁ ସ୍ୱାଗତ ଓ ସଂଗଦେବାକୁ ଚାରୁଚନ୍ଦ୍ର ରାୟ, ଏମ୍.ଏଲ୍.ଏ., ରାଧାମୋହନ ରଣା, ଜ୍ଞାନ ପଟ୍ଟନାୟକ ଓ ସୁରେନ୍ଦ୍ର ପଟ୍ଟନାୟକ ଆଦି ବୁଦ୍ଧିଜୀବୀମାନେ ତାଙ୍କୁ ଏକ ବର୍ଣ୍ଣାଢ୍ୟ ପଟୁଆରରେ ନେଇ ଝାଡ଼େଶ୍ୱର ମନ୍ଦିର ପାଖ ଚାରୁବାବୁଙ୍କ ବାସଭବନକୁ ପାଛୋଟି ଆଣିଲେ ।

ସେତେବେଳେ ମୁଁ ଜଣେ ପ୍ରବେଶିକା ପାଠ ଶ୍ରେଣୀର ସାମାନ୍ୟ ଛାତ୍ରଥିଲି । ବିଖ୍ୟାତ କଂଗ୍ରେସ ନେତା ତଥା ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ପ୍ରିୟନାଥ ସରକାରଙ୍କ ଘରେ ଗୋପାଳଗାଁରେ ରହୁଥିଲି । ମୋ ସହିତ ମୋର ବଡ଼ଭାଇ ସ୍ୱାଧୀନତା ସଂଗ୍ରାମୀ ପ୍ୟାରୀମୋହନ ଦାସ ଓ ମାମା ତୁଳସୀ ଦାସ ଘୋଷ ମଧ୍ୟ ରହୁଥିଲେ । ଏହି ସରକାର ବାସଭବନରେ ଏକାଂଶରେ ବାଲେଶ୍ୱରର ଏକମାତ୍ର ସାଧାରଣ ପାଠାଗାର 'ବାଣୀଭବନ'



Digitized by srujanika@gmail.com

ରହି ଆସିଥିଲା । ପ୍ରିୟବାବୁ ଏତିକିବେଳେ ବାଲେଶ୍ୱର ମ୍ୟୁନିସ୍‌ପାଲଟିର ଚେୟାରମେନ୍ ଥିଲେ ।

ଗସ୍ତକ୍ରମ ଅନୁସାରେ ଅପରାହ୍ଣ ପୂର୍ବରୁ ସୁଭାଷବାବୁଙ୍କୁ ନେଇ ଅଗ୍ରଗାମୀ ନେତାମାନେ ପ୍ରିୟବାବୁଙ୍କ ଘରେ ପହଞ୍ଚାଇ ଦେଲେ । ଭୀଷଣ ଗ୍ରୀଷ୍ମ ବାତାବରଣକୁ ଉତ୍ତପ୍ତ କରିଥାଏ ଏବଂ ଉପସ୍ଥିତ ସମସ୍ତଙ୍କୁ ଅସ୍ତବ୍ୟସ୍ତ କରି ପକାଉଥାଏ । ସେତେବେଳେ ବିଜୁଳି ଶକ୍ତି ଯୋଗାଣର ବ୍ୟବସ୍ଥା ସହରରେ ନଥାଏ ।

ହଠାତ୍ ସୁଭାଷବାବୁ ଗାନ୍ଧିବାଦୀ ଚେୟାରମେନ୍ ପ୍ରିୟବାବୁଙ୍କର ସାକ୍ଷାତ୍‌କାର ଚାହିଁ ବସିଲେ । 'ଯାର ବାଡ଼ିତେ ଏଲାମ ତା'ର ସଂଗେ ଦେଖା କରବନା' । ଏକଥା ଜାଣି ପ୍ରିୟବାବୁ ଖଣ୍ଡିଏ ଛୋଟ ଖଦଡ଼ ଧୋତି ଆଣ୍ଠୁ ଉପରକୁ ପିନ୍ଧି ଫୁଙ୍ଗୁଲା ଦିହରେ ଘରୁ ବାହାରି ସୁଭାଷବାବୁଙ୍କ ସାମନାରେ ଆଣ୍ଠୁମାଡ଼ି ବସିଲେ ଓ ତାଙ୍କୁ ନମସ୍କାର କଲେ । ଦୁହିଁଙ୍କ ମଧ୍ୟରେ ଅନେକ ସମୟ ମଧୁର ଆଳାପ ଆଲୋଚନା ପରେ ପ୍ରିୟବାବୁଙ୍କୁ ସୁଭାଷବାବୁ କହିଲେ - 'ଆମି କି ଏତେ ଅସ୍ପୃଶ୍ୟ ଯେ ଆପନାର କଂଗ୍ରେସ ଲୋକେରା ଆମାର୍ ସଂଗେ ଦେଖା କରତେ ଚାନ୍‌ନା ?' ପ୍ରିୟବାବୁ ଅଳ୍ପ ଲଜ୍ଜିତ ହୋଇ ପାଲଟା ପ୍ରଶ୍ନ କଲେ - 'ଆପଣ ତ ଆମର ସଭାପତି ଥିଲେ, ବେଶ୍ ଥିଲେ, ଫରଓ୍ୱାର୍ଡ଼ ବ୍ଲକ୍ ଗଠନ କରିବା କ'ଣ ଦରକାର ଥିଲା ? ଏକଥା ଶୁଣି ସୁଭାଷବାବୁ ରାଗରେ ଗରଗର ହୋଇ ଫାଟିପଡ଼ିଲେ । ତାଙ୍କ ଦେହରୁ ଗମ୍‌ଗମ୍ ହୋଇ ଝାଳ ବୋହିଗଲା ଏବଂ ସର୍ବାଙ୍ଗ ଲାଲ୍ ପଡ଼ିଗଲା ।

ବଡ଼ଭାଇ ପ୍ୟାରୀବାବୁ ଓ ମୁଁ ଦୁଇଟା ବଡ଼ ତାଳ ପତ୍ରର ପଙ୍ଖା ଧରି ସୁଭାଷ ବାବୁଙ୍କୁ ଦୁଇ ପାଖରୁ ପବନ କରି ଚାଲିଥାଉ ଓ ସେ ଘର୍ମାକ୍ତ ହୋଇ ପାଚିଲା ଆମ୍ବଭଳି ଦିଶୁଥାନ୍ତି । ତାଙ୍କର ଗୌରବର୍ଣ୍ଣ ଶରୀର ଲାଲ୍ ପଡ଼ିଯାଇଥାଏ । ଦେହରେ ଖଦଡ଼ ଧୋତି, ପଞ୍ଜାବୀ ଓ ଗାନ୍ଧିଟୋପି ମଣ୍ଡିତ ସୁଭାଷ ବାବୁଙ୍କୁ ମୁଁ ଚାହିଁ ରହିଥାଏ ନିର୍ନିମେଷ ନୟନରେ । ତାଙ୍କ ଦେହରୁ ଯେପରି ତେଜରଶ୍ମି ବାହାରି ଆମ୍ଭମାନଙ୍କୁ ଘାରି ପକାଉଥାଏ ।

ଆମେ ଦୁଇଭାଇ ଏତିକିବେଳେ ଜୋର୍ ବେଗରେ ପଙ୍ଖା କରି ଚାଲିଥାଉ । ଶେଷରେ ସୁଭାଷ ବାବୁ କିଛିଟା ଶାନ୍ତ ହୋଇ କହିଲେ - 'ଆଜି ଟାଉନ୍ ହଲ୍‌ରେ ମୁଁ ଏକ ସଭା କରିବି, ଆପଣ ଆସନ୍ତୁ, ଏ ପ୍ରଶ୍ନର ଜବାବ ମୁଁ ସେଠେଇଁ ଆପଣମାନଙ୍କୁ ଦେବି । ଏସବୁ କଥା ବଂଗଳା ଭାଷାରେ ଉଭୟଙ୍କ ମଧ୍ୟରେ ହେଉଥାଏ । ଆମେ ସେତେବେଳେ ପିଲାଲୋକ । ଏସବୁ କଥାର ମର୍ମ ଆମେ ସେତେବେଳେ ଜାଣି ନପାରି କେବଳ ଥରଥର ବୁକୁରେ ଅନେଇ ରହିଥାଉ । କିଛି ସମୟ ପରେ ସୁଭାଷ ବାବୁଙ୍କ ଦଳ ଉଠି ଠିଆହେଲେ ।



Digitized by srujanika@gmail.com

ହସି ଉଭୟେ ଉଭୟଙ୍କୁ ବିଦାୟ ସମ୍ଭାଷଣ ଜଣାଇ ଚାଲିଗଲେ । ସମୟ ଗଡ଼ିଯାଇ ସେତେବେଳକୁ ପ୍ରାୟ ସନ୍ଧ୍ୟା ଆସିବାରେ ଲାଗିଥାଏ ।

ସଂଧ୍ୟା ପରେପରେ ସଭା । ଟାଉନ୍‌ହଲ୍‌ରେ ତିଳଟିଏ ପକାଇବାକୁ ସ୍ଥାନ ନଥାଏ । ହଜାର ହଜାର ଲୋକ ଆବାଳବୃଦ୍ଧବନିତା ମିଶି ଗୁଣ୍ଡ ହୋଇଥାନ୍ତି ଅନ୍ଧାରରେ । କାରଣ ଯୁଦ୍ଧ କଟକଣା ହେତୁ ସାରା ସହରରେ ବ୍ଲାକ୍ ଆଉଟ୍ ଲାଗୁ ହୋଇଥାଏ ।

ସଭାରେ ସୁଭାଷବାବୁ ଦୁଇ ଚାରିଟି ବାକ୍ୟ ଓଡ଼ିଆରେ କହି ପ୍ରାଞ୍ଜଳ ହିନ୍ଦୀ ଭାଷାରେ ତାଙ୍କର ଓଜସ୍ୱିନୀ ଭାଷଣ ଆରମ୍ଭ କଲେ । ବିଦେଶୀ ଇଂରେଜ ସରକାର ନିରୀହ ଭାରତବାସୀଙ୍କ ଉପରେ ଶୋଷଣ, କଷଣ ଓ ଅତ୍ୟାଚାର ବିରୁଦ୍ଧରେ କଂଗ୍ରେସ ଅହିଂସା ଆନ୍ଦୋଳନ ମାଧ୍ୟମରେ ଜବାବ ଦେଇପାରିବ ନାହିଁ । ଏଥି ସକାଶେ ଏକ ସର୍ବାତ୍ମକ ସୁସଂହତ ବୃହତ୍ତମ ଆନ୍ଦୋଳନର ପ୍ରୟୋଜନ । ସେଥି ସକାଶେ ଭାରତର ଯୁବଶକ୍ତିକୁ ଏକତ୍ର ହୋଇ ଲଢ଼ିବାକୁ ଉଦାତ୍ତ କଣ୍ଠରେ ଡାକରା ଦେଇଥିଲେ । ସେ କହିଥିଲେ - ରୋଲ୍ ରୋଲ୍ ବ୍ରିଟାନିଆ ଆଉ ବେଶିଦିନ ନୁହେଁ, ଆଉ କିଛିଦିନ ପରେ ତୁମକୁ ଆମ ଭାରତ ମାଟିକୁ ଛାଡ଼ି ପଳାଇବାକୁ ନିଶ୍ଚୟ ପଡ଼ିବ । ବାହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା, ଗାନ୍ଧିଜୀ ଓ କଂଗ୍ରେସର ଅନ୍ତିମ ଡାକରା, 'ବର୍ତ୍ତାନିଆ ଭାରତସେ ହଟ୍‌ଯାଓ' ଭାରତ ବ୍ୟାପି ଦୁର୍ଦ୍ଦମନୀୟ ସତ୍ୟାଗ୍ରହ ଚାଲିଥିବାବେଳେ ସୁଭାଷବାବୁଙ୍କର ଇଂରେଜ୍ ସରକାରଙ୍କୁ ଚ୍ୟାଲେଞ୍ଜ କରି ରୋଷ ବିଷ ଉଦ୍‌ଗାର ଓ ଅଗ୍ନିବର୍ଷୀ ଭାଷଣ ସହସ୍ର ପ୍ରାଣରେ ଅଗ୍ନି ସଂଯୋଗ କରିଥିଲା । ଦେଶ ମାତୃକାର ସ୍ୱାଧୀନତା ସକାଶେ ଡେଇଁପଡ଼ି ଶେଷ ରକ୍ତବିନ୍ଦୁ ଥିବାଯାଏ ଲଢ଼ି ଯିବାକୁ ପ୍ରେରଣା ଦେଇଥିଲା । ସୁଭାଷବାବୁଙ୍କ ସହ ଆମର କେତେକ ଅମୂଲ୍ୟ ମୁହୂର୍ତ୍ତର ସାକ୍ଷାତକାର, ବସିବା ଓ ସମ୍ଭାଷଣ ଶୁଣିବାର ସୁଯୋଗ ଆମକୁ ବିରଳ ସୌଭାଗ୍ୟର ଅଧିକାରୀ କରିଛି ଏଥିରେ ସନ୍ଦେହ ନାହିଁ ।

ସଭାଶେଷରେ ରାତ୍ରିର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ସୁଭାଷବାବୁ ଓଡ଼ିଶା ମାଟି ଛାଡ଼ି କଲିକତା ଚାଲିଯାଇଥିଲେ ସେଦିନ । ତାପରେ ଅନ୍ତରୀଣ ବନ୍ଦୀ ଭାବରେ ତାଙ୍କର କଲିକତା ବାସଭବନରେ ତାଙ୍କୁ ରଖା ଯାଇଥିଲା ବେଶ୍ କିଛିକାଳ । ସୁଯୋଗ ଉଣ୍ଡି ସେ ସଭିଙ୍କ ଅଲକ୍ଷ୍ୟରେ ଛଦ୍ମବେଶରେ ଭାରତଛାଡ଼ି ଜର୍ମାନ ଚାଲିଯାଇଥିଲେ ପଶ୍ଚିମର ପାର୍ବତୀୟ ପଥ ଅତିକ୍ରମ କରି । ଜର୍ମାନୀରୁ ବୁଡ଼ା ଜାହାଜ ଯୋଗେ ଜାପାନରେ ପହଞ୍ଚିଥିଲେ । ଜାପାନ ସରକାରଙ୍କ ସାହାଯ୍ୟରେ ପ୍ରବାସୀ ଭାରତୀୟମାନଙ୍କୁ ଶହଶହ ସଂଖ୍ୟାରେ ଏକଜୁଟ କରି ଆଜାଦ୍ ହିନ୍ଦ୍ ଫୌଜର ଶକ୍ତି ବୃଦ୍ଧି କରିବାକୁ ଲାଗିଲେ । ଏବଂ ହଂକଂ, ସିଙ୍ଗାପୁର, ମାଲୟ, ବ୍ରହ୍ମଦେଶ, ଆସାମ, ମଣିପୁର, ତ୍ରିପୁରା, ଇମ୍ଫାଲ ଆଦି ରାଜ୍ୟ ତାଙ୍କର ସଶସ୍ତ୍ର



Digitized by srujanika@gmail.com

ଆକ୍ରମଣ ଆଗରେ ନତ ସ୍ୱୀକାର କରିଥିଲା । ଆଜାଦ୍ ହିନ୍ଦ୍, ଜିନ୍ଦାବାଦ, ଜୟହିନ୍ଦ, ଦିଲ୍ଲୀ ଚଲୋ, ଆଦି ଡାକରାମାନ ଇଂରେଜ ଶକ୍ତିର ହୃତ୍‌କମ୍ପ ସୃଷ୍ଟି କରିଥିଲା । ଏହି ମହାନାୟକ ବୀର, ସଂଗ୍ରାମୀ ସୁଭାଷ ବୋଷ ଓରଫ୍ ନେତାଜୀ ଚିରଦିନ ସକାଶେ ପୃଥିବୀ ପୃଷ୍ଠରୁ ଅନ୍ତର୍ହିତ ହୋଇ ଯାଇଛନ୍ତି । ଏ ଜାତିର ଅମର ସେନାପତି ନେତାଜୀଙ୍କ ଚିତ୍ର କିନ୍ତୁ ଭାରତବାସୀଙ୍କ ହୃଦୟରେ ଚିର ଜାଗ୍ରତ ହୋଇ ରହିଛି ରହିବ । ଏହି ସ୍ୱର୍ଗୀୟ ନେତାଙ୍କର ଅବିସ୍ମରଣୀୟ ଚେହେରା ଓ ଉଦ୍ଦାତ୍ତ ବାଣୀ ମୋର କିଶୋର ପ୍ରାଣରେ ଅପାର ଉନ୍ମାଦନା ଶକ୍ତି ଓ ଦେଶପ୍ରୀତି ଆଣି ଦେଇଛି । ମୋର ଏଇ ଅକିଞ୍ଚନ ଜୀବନରେ ମୁଁ ମହାତ୍ମାଗାନ୍ଧିଙ୍କର ସ୍ୱର୍ଗୀୟ ସାନ୍ନିଧ ତିନିଦିନ ଧରି ଦେଶ ସ୍ୱାଧୀନ ହେଲା ପରେ ଅଦୂରବର୍ତ୍ତୀ କାନ୍ଥି ସହରରେ ୧୯୪୮ ମସିହାରେ ପାଇଛି । ତାଙ୍କୁ ଅନାଇ ଅନାଇ ତାଙ୍କର ଖିଲିଖିଲି ହସରେ ହିଂସାରେ ଉନ୍ମତ୍ତ ସମସ୍ତ ପୃଥିବୀକୁ ନିର୍ଦ୍ଦେଶ ଦେଲାଭଳି ବକ୍ତୃତା ମାନ ତାଙ୍କର ଅନାବୃତ ବଦନରୁ ଶୁଣିଛି । ପଣ୍ଡିତ ନେହେରୁ, ଇନ୍ଦିରା ଗାନ୍ଧିଙ୍କୁ ବାରମ୍ବାର ପାଖରେ ପାଇ ଦେଖିଛି ଓ ଶୁଣିଛି । କିନ୍ତୁ ଏହି କ୍ଷଣଜନ୍ମା ମହାପୁରୁଷ ସୁଭାଷବାବୁଙ୍କ ସହ ସେ ଦିନର ସେ ମହାର୍ଘ ସାକ୍ଷାତ୍‌କାର ଏବଂ ସମ୍ଭାଷଣ ମୋ ଜୀବନକୁ ଧନ୍ୟ କରିବା ସଂଗେସଂଗେ ଚିରଦିନ ପାଇଁ ମହାର୍ଘ ହୋଇ ରହିଛି ଓ ରହିଥିବ ।

ସୁଭାଷ ବାବୁଙ୍କର ଜ୍ୟୋତିଷ୍କର ଅନିନ୍ଦ୍ୟ ସୁନ୍ଦର ଚେହେରା ମୋର ଚର୍ମଚକ୍ଷୁକୁ ଓ ମନପ୍ରାଣକୁ ଝଲସାଇ ଦେଇଛି । ଆଜିବି ତାଙ୍କ କଥା ମନେପଡ଼ିଲେ, 'କଦମ୍ କଦମ୍ ବଢ଼ାଏ ଯା, ଆଜାଦ୍ ହିନ୍ଦ୍ ଜିନ୍ଦାବାଦ, ଦିଲ୍ଲୀ ଚଲୋ ଓ ଜୟହିନ୍ଦ୍ ନାରା କାନରେ ଝଙ୍କୃତ ହୋଇ ମୋ ପ୍ରାଣକୁ ଉଚ୍ଚାଟ କରିପକାଏ । ଏ ପରିଣତ ବୟସର ବାର୍ଦ୍ଧକ୍ୟ ପୀଡ଼ିତ ଶରୀରରେ ଏହା ନବ ଉନ୍ମାଦନା ଆଣିଦିଏ । ନେତାଜୀ ସୁଭାଷ କେବଳ ଉତ୍କଳୀୟ, ବଂଗୀୟ ଓ ଭାରତୀୟ ନଥିଲେ ସେ ସମଗ୍ର ମାନବ ଜାତିପାଇଁ ଜନ୍ମଗ୍ରହଣ କରି ମାନବ ଜାତିକୁ ଶୋଷଣ, କଷଣ ଓ ଅତ୍ୟାଚାର କବଳରୁ ଉଦ୍ଧାର କରିଥିଲେ । ଜାତିର ଦୁର୍ଜ୍ଜେୟ ବୀର ସଂଗ୍ରାମୀ ରୂପରେ ସମଗ୍ର ପୂର୍ବ ଭାରତଖଣ୍ଡକୁ ପ୍ରକମ୍ପିତ ଓ ଦଖଲ କରି ଶେଷରେ ଆଜାଦ୍ ହିନ୍ଦ୍ ସରକାର ପ୍ରତିଷ୍ଠା କରି ରିକ୍ତ ହସ୍ତରେ ଶୂନ୍ୟରେ ଉଭାନ୍ ହୋଇଗଲେ । ତାଙ୍କୁ ଆଉ କେହି ଦେଖିବାକୁ ପାଇଲେ ନାହିଁ । ଏହି ବଳିଷ୍ଠ ତେଜସ୍ୱୀ ଓ ହିମଗିରି ସଦୃଶ ବିଶାଳ ବ୍ୟକ୍ତିତ୍ୱ ପଛରେ ଭାରତର ଯୁବଶକ୍ତି ଧାଡ଼ି ବାନ୍ଧିଥିଲେ, ବିଦେଶୀ ଶାସନରୁ ମୁକ୍ତ ହେବାକୁ । ରକ୍ତ ବିନିମୟରେ ମୁକ୍ତି ତାଙ୍କର ପଣ ଥିଲା ।

ନେତାଜୀ ସୁଭାଷ ଆଜି ଆମ ଗହଣରେ ନାହାନ୍ତି ସତ, କିନ୍ତୁ ତାଙ୍କର ଅମର ଆତ୍ମା ଭାରତର ଗଗନ, ପବନ, ମାଟି, ପାଣି ଓ ଆକାଶରେ ସଦାସର୍ବଦା ଘୂରି ବୁଲୁଛି ।



Digitized by srujanika@gmail.com

କୋଟିକୋଟି ଭାରତୀୟ ପ୍ରାଣ ତାଙ୍କ ପାଇଁ ଝୁରି ଚାଲିଛି । ସେ ଏକ ବିମାନ ଦୁର୍ଘଟଣାରେ ଜଳିଗଲେ ବୋଲି କୁହାଯାଇଛି । ହୋଇଥାଇପାରେ । କିନ୍ତୁ ଭାରତବର୍ଷର ସ୍ୱାଧୀନତା ମହାସମରର ପ୍ରକୃତ ନେତା ଥିଲେ ନେତାଜୀ । ଦେଶକୁ ବିଦେଶୀ ଶାସନ କବଳରୁ ମୁକ୍ତ କରିବାର ଦୁର୍ବାର ଆକାଂକ୍ଷା ଓ କ୍ଷୁଧା ତାଙ୍କର ମନପ୍ରାଣକୁ ଗ୍ରାସି ଯାଇଥିଲା । ସେଥିପାଇଁ ନୀତି, ଅନୀତି ବାଛବିଚାର କରିବାର ଅବସର ସେ ପାଇନଥିଲେ । ଜାତୀୟ କଂଗ୍ରେସର ସମସ୍ତ ସମର ଅସ୍ତ୍ରଶସ୍ତ୍ରମାନ ତତ୍କାଳୀନ ତାଙ୍କଠାରେ ଦୁର୍ବଳ ଜଣା ପଡ଼ିଥିଲା । ତେଣୁ ସେ ଦେଶମାଟିକୁ ତ୍ୟାଗ କରି ପଳାଇ ଯାଇ ଅନ୍ୟ ବିଦେଶୀ ଶକ୍ତି ଗୋଷ୍ଠୀର ଆଶ୍ରୟ ଓ ସହାୟତା ଗ୍ରହଣ କରିବାକୁ ପଛାଇ ନଥିଲେ । ମଧ୍ୟ ବୟସରେ ମଧ୍ୟ ସେ ଆଧୁନିକ ସମରାଭ୍ୟାସ କରି ପାରିଥିଲେ ଏବଂ ବିରାଟ ଆଜାଦ୍‌ହିନ୍ଦ ଫୌଜର ସର୍ବାଧିନାୟକ ରୂପେ ନିଜକୁ ଗଢ଼ି ପାରିଥିଲେ । ନିଜେ ଜଣେ ଭାରତୀୟ ଥାଇ ଇଂରେଜ ଶାସିତ ଭାରତର ପୂର୍ବ ଖଣ୍ଡକୁ ଜିଣି ପାରିଥିଲେ ଆପଣାର ସୈନ୍ୟବାହିନୀ ଦ୍ୱାରା । ହଂକଂ, ମାଳୟ, ସିଙ୍ଗାପୁର, ବ୍ରହ୍ମଦେଶ, ସମଗ୍ର ଆସାମ, ମଣିପୁର, ତ୍ରିପୁରା ଓ ଇମ୍ଫାଲ ଆଦି ଅଞ୍ଚଳକୁ ଜୟକରି ଆଜାଦ୍ ହିନ୍ଦ୍ ସରକାର ପ୍ରତିଷ୍ଠା କରିପାରିଥିଲେ । ଜାତୀୟ କଂଗ୍ରେସର ଅନ୍ତିମ ସଂଗ୍ରାମୀର ଡାକରା 'ଭାରତଛାଡ଼ ଆନ୍ଦୋଳନ'ର ସର୍ବାତ୍ମକ ଦାବାଗ୍ନି ସହ ନେତାଜୀଙ୍କ ସମରର ଉଦ୍‌ଘୋଷଣା ମିଶି ଇଂରେଜ ସରକାରର ଦୁଇଶହ ବର୍ଷର ଶାସନ କଳ ଶିଥିଳ ଓ ଦୁର୍ବଳ ହେଇପଡ଼ିବାକୁ ବାଧ୍ୟ ହୋଇଥିଲା । ଏଥିପାଇଁ ନେତାଜୀଙ୍କ ଅଭୁତପୂର୍ବ ବୀରତ୍ୱ ଓ ସମର ଶଯ୍ୟା ବହୁ ପରିମାଣରେ ଦାୟୀ ଏଥିରେ ସନ୍ଦେହ ନାହିଁ । ୧୮୫୭ଠାରୁ ୧୯୪୫ ଯାଏ, ସ୍ୱାଧୀନତା ପାଇଁ ଭାରତମାଟିରେ କେତେ ପ୍ରକାରର ସଂଗ୍ରାମ ସଂଘଟିତ ହୋଇଛି, ଯେତେ ଦେଶପ୍ରେମୀ ପ୍ରାଣବଳି ଦେଇଛନ୍ତି, ସେସବୁକୁ ବଳି ଯାଇଥିଲା ନେତାଜୀଙ୍କର ଏହି ଅନ୍ତିମ ସଂଗ୍ରାମ । ଏକଥା ସମସ୍ତେ ନିର୍ବିବାଦରେ ସ୍ୱୀକାର କରିବେ । ନେତାଜୀଙ୍କ ପାଇଁ ଗାନ୍ଧିଜୀଙ୍କ ଆଖିରୁ ମଧ୍ୟ ଅଶ୍ରୁ ଝରି ଯାଇଛି । ଏଣୁ ଭାରତ ସ୍ୱାଧୀନ ହେଲାପରେ ସମସ୍ତେ ଏବେ ସୁଦ୍ଧା ନେତାଜୀଙ୍କୁ ଖୋଜି ବୁଲୁଛନ୍ତି । ସେ ନାହାଁନ୍ତି ବୋଲି କାହାରି ବିଶ୍ୱାସ ହେଉନାହିଁ । ଏଣୁ ନେତାଜୀ ହିଁ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମର ଜଣେ ଅନନ୍ୟ ଶ୍ରେଷ୍ଠତମ ନେତା ଥିଲେ ଏହା ନିଃସନ୍ଦେହ ।





Digitized by srujanika@gmail.com

# ଗାନ୍ଧିଜୀଙ୍କ ସହ ଦିନଟିଏ

"ଧନ୍ୟ ଧନ୍ୟ ହେ ଗାନ୍ଧି ମହାରାଜା, ଭାରତ କେ

କଷ୍ଟ ମିଟାନେ ବାଲେ, ଭାରତ କେ ରଖବାଲେ ।"

ଏହି ବିଖ୍ୟାତ ସଂଗୀତଟି, ଏକ ସମୟରେ ଜଣେ ଗୁଜୁରାଟି ଯୁବକ ମନ ଆନନ୍ଦରେ ରେଳଗାଡ଼ିର ଏକ ଡବାରେ ବସି ଗାଇଗାଇ ଚାଲିଥିଲେ । ରେଳଗାଡ଼ିଟିର ଯାତ୍ରା ମହାତ୍ମାଜୀଙ୍କର ଏକସଭାକୁ ଉଦ୍ଦିଷ୍ଟ ଥିଲା । ସମୟ ୧୯୨୧-୩୦ ମଧ୍ୟରେ । ଭାରତବାସୀ ସେ ସମୟରେ ଗାନ୍ଧିଙ୍କ କଥା ଶୁଣିଥିଲେ କିନ୍ତୁ ସମସ୍ତେ ଦେଖି ନଥିଲେ । ଯୁବକଜଣକ ଗାଡ଼ିଭର୍ତ୍ତି ଲୋକ ମଧ୍ୟରେ ଜୋର ଜବରଦସ୍ତି ପଶିଯାଇ ଗାନ୍ଧିଜୀ ବସିଥିବା ଜାଗାରୁ ହଟାଇ ଦେଇ ନିଜେ ସେ ଜାଗାରେ ବସି ଆରାମରେ ଗୀତ ଗାଇ ଚାଲିଲେ । ଗାନ୍ଧିଜୀ ମଧ୍ୟ ଉକ୍ତ ରେଳଗାଡ଼ିରେ ସଭାକୁ ଯାଉଥିଲେ । ଯୁବକଙ୍କ ଗୀତଶୁଣି ଗାନ୍ଧିଜୀ ମୁରୁକି ମୁରୁକି ହସୁଥାନ୍ତି । ସେ ଆଡ଼େ କାହାରି ନଜର ନଥାଏ ।

ସଭାସ୍ଥାନରେ ଗାଡ଼ି ପହଞ୍ଚିବା ମାତ୍ରେ ଶହଶହ ଲୋକ ପତାକା ଓ ଫୁଲମାଳ ଧରି ଉକ୍ତ ଡବା ଆଡ଼କୁ ମାଡ଼ି ଆସିଲେ ଏବଂ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ପାଛୋଟି ନେଇଗଲେ । ତାହାଦେଖି ଯୁବକ ଜଣକ କାବା । ସେ ଦେଖିଲେ ଯାହାଙ୍କୁ ଜୋରଜୁଲୁମ କରି ଡବା ମଧ୍ୟରେ ହଟାଇ ଦେଇ ନିଜେ ବସିଥିଲେ ସେ ଥିଲେ ସ୍ୱୟଂ ଗାନ୍ଧି । ଦୌଡ଼ିଯାଇ ପାଦରେ ପଡ଼ି କ୍ଷମା ମାଗିବା ଛଡ଼ା ତାଙ୍କର ଅନ୍ୟ ଉପାୟ ନଥିଲା ।

ଗାନ୍ଧିଜୀ ଏକ ସାଧାରଣ ଲୋକଙ୍କର ଜୀବନ ବଞ୍ଚୁଥିଲେ । ତାଙ୍କୁ ସହଜରେ ଚିହ୍ନିବା ମୁସ୍କିଲ୍ ଥିଲା । ୧୯୧୭ ମସିହାରେ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଫେରି ଭାରତ ଜାତୀୟ କଂଗ୍ରେସର ଲଗାମ ଧରିଥିଲେ । ସତ୍ୟ ଓ ଅହିଂସା ତାଙ୍କର ଅସ୍ତ୍ର ଥିଲା । ସେହି ଅସ୍ତ୍ର ଧରି ସେ କୋଟିଏ ଭାରତବାସୀଙ୍କର ହୃଦୟକୁ ଜୟ କରିପାରିଥିଲେ ଏବଂ ବିଦେଶୀ ଶାସନକୁ ଦେଶମାଟିରୁ ହଟାଇ ଦେଇଥିଲେ ।

ମୋ ଛାତ୍ର ଜୀବନବେଳେ ମହାତ୍ମାଜୀ ଦୁଇଥର ଓଡ଼ିଶା ଗସ୍ତରେ ଆସିଥିଲେ । ପ୍ରଥମଥର ୧୯୩୪ରେ ହରିଜନ ମୁକ୍ତି ଆନ୍ଦୋଳନ ଗସ୍ତରେ ଓ ଦ୍ୱିତୀୟଥର ପୁରୀ-



Digitized by srujanika@gmail.com

ତେଲାଙ୍ଗଠାରେ ଗାନ୍ଧି ସେବାସଂଘ ବୈଠକରେ ଯୋଗଦେବାକୁ ସେ ଆସିଥିଲେ । କିନ୍ତୁ ତାଙ୍କୁ ଦେଖିବାର ସୁଯୋଗ ଆମେ ପାଇ ନଥିଲୁ । ଦେଶ ବିଦେଶୀ ଶାସନରୁ ମୁକ୍ତ ହେଲାପରେ ମିରାଟ ଓ ଜୟପୁରଠାରେ ଦୁଇଟି କଂଗ୍ରେସର ଖୋଲା ଅଧିବେଶନ ମଞ୍ଚ ଉପରେ ଫୁଙ୍ଗୁଳା ଦିହରେ ବସି ଚରଖାରେ ସୂତା କାଟୁଥିବା ଅବସ୍ଥାରେ ଦେଶର ଅନ୍ୟାନ୍ୟ ତୁଙ୍ଗ ନେତାଙ୍କ ଗହଣରେ ତାଙ୍କୁ ଦୂରରୁ ଦେଖିଥିଲୁ । ସେଥିରେ ଆମର ମନ ପୂରି ନଥିଲା । ଦେଶ ଦୁଇଭାଗ ହେଲା, ହିନ୍ଦୁସ୍ଥାନ ଓ ପାକିସ୍ଥାନ । ବଂଗଦେଶ ଓ ପଞ୍ଜାବ ଦୁଇଭାଗ ହେଲା । ବଂଗଦେଶରେ ପ୍ରବଳ ହଣାକଟା ଚାଲିଲା । ନୟାଖାଲିରେ ଶାନ୍ତିସ୍ଥାପନ ସକାଶେ ଗାନ୍ଧିଜୀ ଶାନ୍ତିପଦଯାତ୍ରା କରି ସଫଳ ହେଲେ । ଦେଶରେ ଶାନ୍ତି ଫେରି ଆସିଲା । ଏସବୁ ଥିଲା ଆମ ସ୍ୱାଧୀନତା ପ୍ରାପ୍ତିର ରକ୍ତକ୍ଷୟୀ ଇତିହାସ ।

ଭାରତର କଟ୍ଟର ହିନ୍ଦୁମାନେ ଗାନ୍ଧିଜୀଙ୍କର ଏହି ହିନ୍ଦୁ ମୁସଲମାନ ସଦ୍‌ଭାବ ସ୍ଥାପନ କାର୍ଯ୍ୟକ୍ରମକୁ ଭଲ ଆଖିରେ ଦେଖୁ ନଥିଲେ ।

୧୯୪୮ ମସିହାରେ ମେଦିନୀପୁର ଜିଲ୍ଲାର କାନ୍ଥି ମହକୁମା ସହରକୁ ଗସ୍ତରେ ଆସିଥିଲେ । ଏହି ସହର ଆମ ଉତ୍ତର ବାଲେଶ୍ୱର ସୀମାର ଅନତି ଦୂରରେ ଅବସ୍ଥିତ । ମାତ୍ର ୫୦କି.ମି. ଦୂରରେ ଅବସ୍ଥିତ ଥିଲା । ଆମ ଭୋଗରାଇର ବେଶ୍ କିଛି ସଂଖ୍ୟକ ସ୍ୱାଧୀନତା ସଂଗ୍ରାମୀ ତଥା କଂଗ୍ରେସକର୍ମୀ ଗାନ୍ଧିଜୀଙ୍କୁ ଭେଟିବାକୁ ଯାଇଥିଲୁ ପ୍ରବଳ ଉତ୍ସାହର ସହ । ଆମକୁ ଭବ୍ୟ ଅଭ୍ୟର୍ଥନା, ଆତିଥ୍ୟ ଓ ଆଶ୍ରୟ ଦାନ କରିଥିଲେ କାନ୍ଥି ସହରର ତତ୍କାଳୀନ ନେତୃବୃନ୍ଦ । ଏହି ଗସ୍ତରେ ବାପୁଜୀ ଆସି ୩ଦିନ ଯାଏ ସହରରେ ରହିଥିଲେ । ଗାନ୍ଧିଜୀଙ୍କର ବସାର ଅଳ୍ପ କିଛି ଦୂରରେ ଆମର ତମ୍ବୁ ପଡ଼ିଥାଏ । ତେଣୁ ତାଙ୍କୁ ସଦାବେଳେ ଦେଖିବାର ଶୁଣିବାର ଅପାର ସୁଯୋଗ ଓ ଆନନ୍ଦ ଆମକୁ ସୌଭାଗ୍ୟବଶତଃ ମିଳିଥାଏ ।

ଗାନ୍ଧିଜୀ ପ୍ରତିଦିନ ପ୍ରାତଃଭ୍ରମଣ କରୁଥିଲେ ଓ ସଂଧ୍ୟାପୂର୍ବରୁ କାନ୍ଥି ମୈଦାନରେ ପ୍ରାର୍ଥନା ସଭା କରୁଥାନ୍ତି । ଲକ୍ଷଲକ୍ଷ ଦର୍ଶନାର୍ଥୀଙ୍କ ଭିଡ଼ ସେତିକିବେଳେ ସହରରେ ସଦାସର୍ବଦା ଲାଗି ରହିଥାଏ । ସେ ଏକ ବିରଳ ଦୃଶ୍ୟ ସହର ତମାମ । କିନ୍ତୁ ବାୟୁମଣ୍ଡଳ ଶାନ୍ତ ରହିଥାଏ । ଆମେ ଚାହିଁ ଦେଖିଲୁଁ ବାପୁଜୀ ବେଶ୍ ଉଚ୍ଚ ଚେହେରାର ମଣିଷଟିଏ । କାନ, ନାକ, ବେଶ୍ ବଡ଼ ମାପର । ମୁଣ୍ଡ ତାଳୁରେ ବାଳ ନାହିଁ ଟାଙ୍ଗରାମୁଣ୍ଡ । ନାକ ତଳେ ଧଳା ନିଶ ହଳେ ଓ ଆଖିରେ ସାଧାରଣ ଚଷମାଟାଏ ନାଇଥାନ୍ତି । ହାତ ଦୁଇଟି ଆଜାନୁଲମ୍ବିତ । କଟିଦେଶ ସରୁ ପତଳା । ପାଦ ଓ ଜଙ୍ଘ ଲମ୍ବା । ଚାଲିଲାବେଳେ ପାଦଦେଶ ଚହଲି ପଡୁଥାଏ । ତେଣୁ ଶୀଘ୍ର ଚାଲିବାକୁ ତାଙ୍କୁ ଏକ ଲାଠିର ଆବଶ୍ୟକ



Digitized by srujanika@gmail.com

ହେଉଥାଏ । ଅଣ୍ଟାରେ ନାତିଦୀର୍ଘ ଖଦଡ଼ ଲୁଗା ଖଣ୍ଡିଏ ଦ୍ୱାରା ଆବୃତ ଏକ ବଡ଼ ହାତବନ୍ଧର ଘଡ଼ି ଅଣ୍ଟାରେ ଝୁଲୁଥାଏ । ଦେହର ରଂଗ ଉଜ୍ଜ୍ୱଳ ତାମ୍ରବର୍ଣ୍ଣ । ସଦା ହସହସ ମୁଖ । କଣ୍ଠସ୍ୱର ନାରୀ ସୁଲଭ । ପୁରୁଷପଣିଆ କମ୍ ଜଣାପଡୁଥାଏ । ଚାଲିବାବେଳେ କାନ୍ସୁ ଗାନ୍ଧି ଓ ଆଭା ଗାନ୍ଧିଙ୍କ କାନ୍ଧରେ ହାତଦେଇ ଚାଲୁଥାନ୍ତି ।

ଲକ୍ଷ ଜନତାର ସମାବେଶରେ ଶାନ୍ତ ବାତାବରଣ ମଧ୍ୟରେ ପ୍ରତିଦିନ ଉପରବେଳା, ପ୍ରାର୍ଥନା ସଭା ସେ କରୁଥିଲେ । ସଭାରେ ରବୀନ୍ଦ୍ରନାଥଙ୍କର ପ୍ରାର୍ଥନା ସଂଗୀତ ଭାବଗମ୍ଭୀର ନାଦରେ ବୋଲା ଯାଇଥାଏ । ପ୍ରାର୍ଥନା ଶେଷରେ ଗାନ୍ଧିଜୀଙ୍କର ଭାଷଣ ସମଗ୍ର ଦେଶ ଓ ମାନବ ଜାତି ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଥାଏ । ଦେଶରେ ଓ ପୃଥିବୀରେ ଶାନ୍ତିରକ୍ଷା, ଯୁଦ୍ଧ ବିଗ୍ରହରୁ ମୁକ୍ତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଜାତିଜାତି ମଧ୍ୟରେ କରିବାକୁ ସେ ଅପିଲ କରି ଆସିଛନ୍ତି । ଏହିସବୁ ବିଷୟ ତାଙ୍କ ଭାଷଣର ମୂଳବସ୍ତୁ ଥାଏ । ଭାଷଣମାନ ସଂକ୍ଷିପ୍ତ ଓ ଭାବଗମ୍ଭୀର ।

ପୃଥିବୀର ସବୁ ଦେଶର ପତ୍ରକାର ଓ ସାମ୍ବାଦିକ ମାନଙ୍କର ଭିଡ଼ ଏହି ପ୍ରାର୍ଥନା ସଭାରେ ଲାଗିଥାଏ । ସେ ସମୟରେ ସମ୍ବାଦପତ୍ର ଛଡ଼ା ଅନ୍ୟ କୌଣସି ପ୍ରକାର ମିଡିଆର ବ୍ୟବସ୍ଥା ନଥାଏ, ଆଧୁନିକକାଳ ଭଳି ।

ଏଣୁ ଗାନ୍ଧିଜୀଙ୍କର ଭାଷଣ ମାନ ପୃଥିବୀର ସବୁ ଖବରକାଗଜରେ ପ୍ରତିଦିନ ପ୍ରଥମ ପୃଷ୍ଠାରେ ବଡ଼ବଡ଼ ଅକ୍ଷରରେ ପ୍ରକାଶ ପାଇବାରେ ଲାଗିଥାଏ । ହିଂସା ଓ ଶତ୍ରୁତାର ପଥ ପରିହାର କରି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବାଟ ଆପଣାଇବା ସକାଶ ସବୁ ଦେଶ ଓ ଜାତିକୁ ନିର୍ଦ୍ଦେଶନାମା ତାଙ୍କ ଭାଷଣର ମର୍ମ ଥାଏ ।

ଚାଲିବା ଓ କଥା କହିବାବେଳେ ତାଙ୍କର ପ୍ରାଣ ଖୋଲା ଖିଲିଖିଲି ହସ ମୋତେ ଭାରି ଭଲ ଲାଗୁଥାଏ । କି ଆଶ୍ଚର୍ଯ୍ୟ, କଟିଦେଶରେ ଖଦଡ଼ କନା ବକଟେ ପିନ୍ଧା, ପାଦରେ ହଳେ ଚମଡ଼ା ଚଟି ଏହି ମହାମାନବର ଶରୀରକୁ ଆବୋରିଥାଏ କେବଳ ମାତ୍ର । ଏହି ଶୀର୍ଣ୍ଣ ଦେହୀ ପ୍ରାଣବନ୍ତ ଶରୀର ମନ ପ୍ରାଣ ଓ ଭାଷଣରେ ଏତେ ଅପ୍ରମିତ ଶକ୍ତି ଓ ପ୍ରଭାବ ସେ ଧାରଣ କରୁଥିଲେ ଯେ ସାରା ଦୁନିଆ ତାଙ୍କ କଥାକୁ ଚାହିଁ ରହିଥିଲେ । ଏକଥା ଆଜି କେହି ବିଶ୍ୱାସ କରିପାରିବେ ନାହିଁ । ଏଣୁ ତାଙ୍କୁ ଏ ଚର୍ମଚକ୍ଷୁରେ ଦେଖି ଓ ଶୁଣି ଆମେ ନିଜକୁ ଧନ୍ୟ ମଣୁଥିଲୁ ।

ଏହି ଦେବ ଦୁର୍ଲଭ ଶକ୍ତି ସେ ପ୍ରାପ୍ତ ହୋଇଥିଲେ ସାରାଟା ଜୀବନ ବ୍ରହ୍ମଚର୍ଯ୍ୟ ଧାରଣ ସହ ଆଧ୍ୟାତ୍ମିକ ତପଶ୍ଚର୍ଯ୍ୟା, ତପସ୍ୟା ଓ ଅନଶନରୁ । ସେ ସତ୍ୟର ପୂଜାରୀ ଥାଇ



Digitized by srujanika@gmail.com

ମହାଭାରତ, ରାମାୟଣ ବେଦ ବେଦାନ୍ତ ଓ ଗୀତା ଭଗବତ୍‌ର ଅନୁସରଣ କରୁଥିଲେ ଏବଂ ରାମଭକ୍ତ ପ୍ରାଣ ଥିଲେ । ମରଣ ବେଳେ ହା ରାମ କହି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ଦିନକରେ କାଛି ହାଇସ୍କୁଲ ପିଲାମାନେ 'ଆମି ସୁଭାଷ ବଲ୍‌ଛି' ନାଟକ ମଞ୍ଚସ୍ଥ କରିବାର ପ୍ରସ୍ତୁତି କରିସାରି ବାପୁଜୀ ନାଟକ ଦେଖିବାକୁ ଯିବା ସକାଶ ନିମନ୍ତ୍ରଣ ଜଣାଇଲେ । ଗାନ୍ଧିଜୀ ସମ୍ମତ ଥିଲେ । ସେଦିନ ସଂଧ୍ୟାରେ ଆମେ ସମସ୍ତେ ମଞ୍ଚ ସମ୍ମୁଖରେ ଦର୍ଶକ ଗ୍ୟାଲେରୀରେ ଉପସ୍ଥିତ ଥିଲୁ ବାପୁଜୀ ଓ ତାଙ୍କ ଦଳସହ । ଆମ ଦଳ ମାତ୍ର କେତେ ଦୂରରେ ବସିବାକୁ ସ୍ଥାନ ପାଇଥାଉ ଓ ନିର୍ନିମେଷ ନୟନରେ ସେମାନଙ୍କୁ ଚାହିଁଥାଉ । ନାଟକର ପ୍ରଥମ ଦୃଶ୍ୟରେ ଅବିକଳ ଗାନ୍ଧି ଅଭିନେତାଙ୍କୁ ଦେଖି ବାପୁଜୀ ଖିଲିଖିଲି ହସି ଗଡ଼ିଗଲେ ଏବଂ ସମସ୍ତଙ୍କୁ ଦେଖିବାକୁ କହିଲେ । ତାପରେ ନେତାଜୀ ବେଶରେ ସୁଭାଷ ବାବୁ ମଞ୍ଚରେ ଆବିର୍ଭାବ ହେଲେ । ଦୃଶ୍ୟ ଦେଖି ବାପୁଜୀଙ୍କର ହଠାତ୍ ଅସ୍ଥିର ଭାବାନ୍ତର ଘଟିଲା ତାଙ୍କର ଉଚ୍ଛ୍ୱାସ ଚାଲିଗଲା । ସେ ଶାନ୍ତ ଓ ନିରବ ହୋଇଗଲେ । ପର୍ଦ୍ଦାଆଡ଼କୁ ଅନାଇ ଉଠି ଛିଡ଼ାହେଲେ ଏବଂ ଦୁଇହାତରେ ଆପଣାର ଆଖି ଦୁଇଟିକୁ ପୋଛିଦେଲେ ଓ ଦର୍ଶକ ଗ୍ୟାଲେରୀ ଛାଡ଼ି ଚାଲିଗଲେ ଧୀର ପଦକ୍ଷେପରେ । ଆମର ବେଶ ମନେହେଲା ଦିବଂଗତ ନେତାଜୀଙ୍କୁ ମଞ୍ଚ ପର୍ଦ୍ଦାରେ ଦେଖି ସେ ଧୈର୍ଯ୍ୟ ଧରିପାରିଲେ ନାହିଁ । ହାହାକାର ଓ କାରୁଣ୍ୟରେ ତାଙ୍କର ମନପ୍ରାଣ ଭରିଗଲା – ହା ସୁଭାଷ, ତୁମେ କୁଆଡ଼େ ଗଲ ଭାବି ।

ତହିଁପରେ ଗାନ୍ଧିଜୀ କାନ୍ଥି ସହର ଛାଡ଼ି ଦିଲ୍ଲୀ ଚାଲିଗଲେ ୩ଦିନ ପରେ । ଆମେ ମଧ ବାହୁଡ଼ି ଆସିଲୁ । ଦିଲ୍ଲୀରେ ବିରଳାଭବନ ଆଗ ପଡ଼ିଆରେ ପ୍ରାର୍ଥନା ସଭାକୁ ଯିବାବାଟରେ ନାଥୁରାମଙ୍କ ଗୁଳିରେ ସେ ଟଳି ପଡ଼ିଥିଲେ 'ହା ରାମ କହି' । ତାଙ୍କର ମହାଜୀବନ ଦୀପ ଚିରଦିନ ସକାଶେ ଲିଭିଗଲା ।

ନେତାଜୀଙ୍କ ଭଳି ଗାନ୍ଧିଜୀଙ୍କୁ ଆଉ କେହି ଏ ଦୁନିଆରେ ଦେଖିବାକୁ ଏହାପରେ ସମର୍ଥ ହେଲେ ନାହିଁ । ବିଧିର ବିଧାନ କେ କରିବ ଆନ । ଆମେ ସଭିଏଁ ବାପଛେଉଣ୍ଡ ହୋଇ ରହିଗଲୁ ।

ହାଡ଼ପଞ୍ଜରାବୃତ ଏକ ରକ୍ତମାଂସ ଶରୀରରେ ଯେ ଏତେ ବଳ ସାହସ ଓ ତ୍ୟାଗ ଭରି ରହିଥିଲା ତାହା ଏବେ କେହି ବିଶ୍ୱାସ କରିପାରିବେ ନାହିଁ । ସେ ଥିଲେ ମାନବ ଶରୀରରେ ଭଗବାନଙ୍କ ଅବତାର ।



Digitized by srujanika@gmail.com

ବାପୁଜୀଙ୍କ ଶରୀରରେ ଓ ମନପ୍ରାଣରେ ଭଗବାନଙ୍କର ସତ୍ତା ଓ ଶକ୍ତି ତଥା କଳାର ପରିପ୍ରକାଶ ଏତେ ଅତ୍ୟଧିକ ମାତ୍ରାରେ ଦେଖିବାକୁ ମିଳିଥିଲା ଯେ ସେ ମହାମାନବ ବା ମହାତ୍ମା ପାଲଟି ଯାଇଥିଲେ । ସାରାଜୀବନ ତାଙ୍କୁ କଠିନ ତପଶ୍ଚରଣ, ବ୍ରହ୍ମଚର୍ଯ୍ୟ ଧାରଣ, ଦୀର୍ଘମିଆଦି ଅନଶନ ବ୍ରତ କରିବାକୁ ପଡ଼ିଛି । ରାତ୍ରିଦିନ ପ୍ରାର୍ଥନା, ନିଷ୍ଠାର ସହ ସତ୍ୟ ଅହିଂସା ବ୍ରତର ପାଳନ କାୟମନୋବାକ୍ୟରେ । ଖାଲି ଏତିକି ନୁହଁ ବେଦ, ଉପନିଷଦ, ଗୀତା, ଭାଗବତ ଆଦିକୁ ସେ ଦୃଢ଼ ଭାବରେ ବିଶ୍ୱାସ ଓ ଆଶ୍ରୟ କରି ଏକ ମହାଜୀବନ କାଟୁଥିଲେ ।

ଗାନ୍ଧିଜୀ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଏକାନ୍ତ ଉପାସକ ଥିଲେ । ଅନ୍ତିମକାଳରେ 'ହା ରାମ' କହି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।





Digitized by srujanika@gmail.com

# ପଶୁବଳିକୁ ବିରୋଧ

ଦୁର୍ଗାପୂଜା ସପ୍ତମୀରେ ମୋର ଜନ୍ମ । ତେଣୁ ମୋର ନାମ ଦୁର୍ଗା ଦାସ ବୋଲି ମା' କହୁଥାନ୍ତି । ପିଲାଦିନୁ ଦୁର୍ଗାପୂଜା ଯାତ ଦେଖିବାର ନିଶା ମୋର ପ୍ରବଳ ଥାଏ । ଆମ ଘର ପାଖ ମସାଡିଆଁ, କଖଡ଼ା ଓ ନୂଆଗାଁ ଆଦିରେ ବହୁତ ଦୁର୍ଗାପୂଜା ମେଢ଼ ମୁଁ ଦେଖିଛି । ମୁଖ୍ୟତଃ ବଙ୍ଗାଳୀ ଭାଇମାନେ ଏହି ଦୁର୍ଗାପୂଜା କରିଥାନ୍ତି । ଜମିଦାର ବଂଶୀୟମାନେ ପୁରୁଷାନୁକ୍ରମେ । ଏହି ଦୁର୍ଗାପୂଜା ବହୁ ନିୟମ ନିଷ୍ଠା ଓ ସମସ୍ୟାର ପୂଜା । ତାନ୍ତ୍ରିକ ପୂଜା ଟିକିଏ ବ୍ୟତିକ୍ରମ ହେଲେ ବଂଶନାଶ ହୋଇଯାଏ ବୋଲି ବିଶ୍ୱାସ । ଏହାର ନଜିର ଆମ ଅଞ୍ଚଳରେ ବହୁତ ଦେଖାଯାଇଛି । ଏଣୁ ସାହସ କରି ଖୁବ୍ କମ୍ ଲୋକ ଦୁର୍ଗାପୂଜା ମନାସିଥାନ୍ତି । ବ୍ୟକ୍ତିଗତ ପୂଜା ଏବେ ସାର୍ବଜନୀନ ପୂଜାରେ ପରିଣତ ହୋଇଛି । ଅନେକଟା ସାତ୍ତ୍ୱିକ ଭାବରେ । ଛାଗ ମହିଷ ବଳି ପ୍ରାୟ ଉଠିଗଲାଣି ।

ଆଜି ମୋର ଖୁବ୍ ମନେପଡ଼େ । ନୂଆଗାଁ ବଡ଼ାଳ ଘର, ଦେହୁର୍ଦା ମହାଶୟଙ୍କର ଓ ଲକ୍ଷ୍ମଣନାଥ ମହାଶୟଙ୍କ ଘର ଦୁର୍ଗାପୂଜାରେ ଅସଂଖ୍ୟ ପଶୁବଳି ଦିଆଯାଉଥାଏ । ମୁଁ ଶୁଣିଥିଲି କେବେ ଦେଖି ନଥିଲି ।

ମୋ ମାମୁଘର ଦେହୁର୍ଦା ମହାନ୍ତି ଘର । ବଡ଼ମାମୁଙ୍କର ନାମ ଅଦୈତ୍ୟ ମହାନ୍ତି । ମୁଁ ପ୍ରାଇମେରୀ ସ୍କୁଲରେ ପଢ଼ିବାବେଳେ ବଡ଼ମାମୁ ଦେହୁର୍ଦା ମହାଶୟ ଘର ଦୁର୍ଗାପୂଜା ଦେଖାଇବାକୁ ମୋତେ କାନ୍ଧରେ ବସାଇ ନେଇ ଯାଇଥିଲେ । ଦୁର୍ଗା ସପ୍ତମୀ କି ଅଷ୍ଟମୀ ତିଥିରେ ମହାଶୟ ଘର ଦୁର୍ଗାମଣ୍ଡପ ସମାନା କୋଠା ଛାତ ଉପରେ ଠିଆ କରି ଦେଇଥିଲେ ପୂଜା ଦେଖିବାକୁ । ସେଦିନ ଏକ ଦାମୁଡ଼ିଆ ମହିଷକୁ ବଳି ଦେବାର ପାଳିଥିଲା । ଏଥି ପୂର୍ବରୁ ମୁଁ କେବେ ପଶୁବଳି ଦେଖିନଥିଲି ଆଖିରେ । ମହିଷଟିର ମୁହଁକୁ ଏକ ବଡ଼ ହଡ଼ି କାଠରେ ବାନ୍ଧି, ପାଦ ଚାରିଟାକୁ କାଛିରେ ବାନ୍ଧି କିଛି ଲୋକ ଜୋର୍‌ରେ ଟାଣି ଧରିଥାନ୍ତି । ଅଣିରା ମହିଷଟି ଛାଟିପିଟି ହେଉଥାଏ । ଶହଶହ ଲୋକ ଘେରି ରହି ଏହି ଦୃଶ୍ୟ ଦେଖୁଥାନ୍ତି । ହଣତ୍‌କାର ଜଣକ ଏକ ବିଶାଳ ହାଲମା ଧରି କିଛି ଦୂରରେ ପଶୁଟିକୁ ହାଣିବାକୁ ପ୍ରସ୍ତୁତ ହେଉଥାଏ । ହଠାତ୍ ଦେଖାଗଲା ହଡ଼ିକାଠଟି ମୂଳରୁ ଭାଂଗିଗଲା ମହିଷଟିର ମୁଣ୍ଡକୁଟରେ । କାଛି ଦଉଡ଼ି ଧରିଥିବା ଲୋକମାନେ ଭୟରେ ଛାଟିପିଟି ହୋଇ ପଳାଇବାକୁ ଲାଗିଲେ



Digitized by srujanika@gmail.com

ଅନ୍ୟମାନଙ୍କ ସହ । ମହିଷଟି ମୁଣ୍ଡରେ ବନ୍ଧା ହୋଇଥିବା ସେହି ହଡ଼ିକାଠଟିକୁ ଧରି ପ୍ରଧାନ ଫାଟକ ବାଟେ ଦୌଡ଼ିବାକୁ ଆରମ୍ଭ କଲା ଏବଂ ବାହାରେ ବସିଥିବା ମେଳା ପାର ହୋଇ ଦକ୍ଷିଣ ପଟ ପକା ପୋଖରୀରେ ଯାଇପଡ଼ିଲା ଏବଂ ପହଁରିବାକୁ ଆରମ୍ଭ କଲା । ଛାତ ଉପରୁ ମୁଁ ଏ ମର୍ମନ୍ତୁଦ ଦୃଶ୍ୟ ଦେଖିପାରୁଥାଏ । ମୋର ଛୋଟ ଶରୀରଟି ଯନ୍ତ୍ରଣାରେ ଥରୁଥାଏ । କିଛି ଲୋକ ଠେଙ୍ଗାବାଡ଼ି ଧରି ପଶୁଟିକୁ ଧରି ଆଣି ଅଧାମରା ଅବସ୍ଥାରେ ପୂଜାବେଦୀ ସାମନାରେ ଅତି ନୃଶଂସ ଭାବରେ ହାଣି ପକାଇଲେ । ଏହା ଦେଖି ମୁଁ ଅଚେତ୍ ହୋଇପଡ଼ିଗଲି । ମାମୁ ମୋତେ ଧରିଧରି ତଳକୁ ଆଣି ଘରକୁ ନେଲେ । ଠାକୁରାଣୀ ମଣ୍ଡପରେ ପଶୁବଳି ଏପରି ଭାବରେ ମୋ ଜୀବନରେ ଆଉ କେବେ ଦେଖିନାହିଁ । ଧର୍ମ ନାମରେ ଏ ନୃଶଂସ ପଶୁବଳି ବିରୋଧରେ ମୋର ମନପ୍ରାଣ ବିଦ୍ରୋହ କରି ଉଠିଥିଲା । ମୁଁ ପ୍ରତିଜ୍ଞା କଲି ମନେମନେ ଯେମିତି ହେଲେ ବି ଏ ନାରକୀୟ ପ୍ରଥା ମୁଁ ବନ୍ଦ କରିବି । ଏ ଘଟଣା ମୋର ମନେହୁଏ ୧୯୩୨-୩୩ ଆଡ଼େ ହେବ । ଦୀର୍ଘ ବର୍ଷ ପରେ ୧୯୪୮ ମସିହାରେ ଏହି ନୃଶଂସ ଗଣ ପଶୁବଳି ବନ୍ଦ କରିବାର ସୁଯୋଗ ମୋତେ ମା' ଦୁର୍ଗାଦେବୀ ଦେଲେ, ଲକ୍ଷ୍ମଣନାଥ ମହାଶୟଙ୍କର ଦୁର୍ଗାପୂଜା ସମୟରେ ।

କେଉଁ ଆଦିମ କାଳରୁ ମାତୃପୂଜା ବେଦୀ ସାମନାରେ ଛାଗ, ମହିଷ ଓ କୁକୁଡ଼ା ବଳି ପ୍ରଥା ଚାଲିଆସିଛି ନିର୍ବିବାଦରେ ଅଞ୍ଚଳ ବକ୍ଷରେ । ଏହା ଏକ ପାଶବିକ କୁସଂସ୍କାର ଓ ମାନସିକ ବିକାରର ଫଳ । ଜଗନ୍ମାତାଙ୍କଠାରେ ତାଙ୍କର ସନ୍ତାନମାନଙ୍କର ହତ୍ୟା ଓ ରକ୍ତଦାନ ଦେଇ ପୂଜାର୍ଚ୍ଚନା ଏକ ନାରକୀୟ ବ୍ୟାପାର । ମନ୍ଦିର ଓ ପୂଜା ବେଦୀର ପ୍ରାଙ୍ଗଣକୁ ରାକ୍ଷସୀ ମାୟାରେ ରକ୍ତରଂଜିତ କରି ଗଣ ପଶୁବଳୀ ଦେଇ ପାଶବିକ ଉଲ୍ଲାସ ପାଇ ଆସିଛନ୍ତି ଆମର ପୂର୍ବପୁରୁଷମାନେ ଯୁଗଯୁଗ ଧରି । କେହି ବାଧା ଦେଇନାହିଁ ।

ଏହା ୧୯୪୮ ମସିହାର କଥା । ଦେଶ ସ୍ୱାଧୀନ ହେବାପରେ ଜନମାନସରେ ଚେତନାର ବିକାଶ ହେବା ସଂଗେସଂଗେ ସମାଜ ସଂସ୍କାରକମାନଙ୍କ ମନରେ ବିଦ୍ରୋହ ଦେଖାଦେଲା ସର୍ବତ୍ର । ଏହି ଗଣ ପଶୁବଳି ବିରୋଧରେ ଲୋକ ତେଜି ଉଠିଲେ । ଲକ୍ଷ୍ମଣନାଥ ମହାଶୟଙ୍କ ଘରେ ଦୁର୍ଗୋତ୍ସବ ବେଳେ ଗଣପଶୁବଳୀ ପୁରୁଷାନୁକ୍ରମେ ଚାଲି ଆସୁଥିଲା । କିଛି ସମାଜସେବୀ ଜମିଦାରୀ ବିଲୋପ ପୂର୍ବରୁ ଜନମାନସରେ ଏହି ଅହେତୁକ ପଶୁବଳୀ ବିରୋଧରେ ଉତ୍ତେଜନା ସୃଷ୍ଟିକଲେ । ଜମିଦାର ମହାଶୟ ଏ ପ୍ରଥା ପ୍ରତ୍ୟାହାର କରିବାକୁ ନାରାଜ ହେଲେ । ଦୁର୍ଗା ସପ୍ତମୀ ଦିନ ୭କୋଡ଼ି ଛାଗଳ, ୭ଟି ମହିଷ, ଅଷ୍ଟମୀରେ ୮କୋଡ଼ି ଛାଗ ଓ ୮ଟି ମହିଷ, ନବମୀ ପୂଜାରେ ୯କୋଡ଼ି ଛାଗ ଓ ୯ଟି ମହିଷ ଓ ଦଶମୀରେ ୧୦କୋଡ଼ି ଛାଗ ଓ ୧୦ଟି ମହିଷ ବଳିଦେବାର ବ୍ୟବସ୍ଥା ଥିଲା । ଏହିସବୁ ବଳି ସାମଗ୍ରୀ



Digitized by srujanika@gmail.com

ତାଙ୍କର ସ୍ଥାନୀୟ ପ୍ରଜାମାନଙ୍କଠାରୁ ବେଠି ବାବଦ ସେ ପ୍ରତିବର୍ଷ ଜବରଦସ୍ତ ଆଦାୟ କରି ପୂଜା ଆୟୋଜନ କରୁଥିଲେ । ପ୍ରଥମେ କିଛି ସଂଖ୍ୟକ କଂଗ୍ରେସ କର୍ମୀ, ସ୍ୱାଧୀନତା ସଂଗ୍ରାମୀ ଓ ସଂସ୍କାରଧର୍ମୀ ଗ୍ରାମବାସୀ ଜମିଦାରଙ୍କ ପ୍ରଜାମାନଙ୍କୁ ମତାଇ ସଂଗଠିତ କଲେ । ସେମାନେ ବେଠି ବାବଦ ଛାଗ ମହିଷ ଦେବାକୁ ନାରାଜ ହେଲେ । ଏହାପରେ ମୋ ନେତୃତ୍ୱରେ ସମସ୍ତେ ବିଦ୍ରୋହ କରି ଉଠିଲେ । ଭାଗ୍ୟକୁ ସେହିବର୍ଷ ୧୯୪୮ ମସିହା ଦୁର୍ଗାପୂଜା ଅଷ୍ଟମୀ ତିଥି ଦିନ ଅକ୍ଟୋବର ମାସ ଦୁଇ ତାରିଖ ପଡ଼ିଥାଏ । ଅହିଂସାବତାର ମହାତ୍ମା ଗାନ୍ଧିଙ୍କର ଜନ୍ମତିଥି । ମହାଶୟଙ୍କ ଦୁର୍ଗାପୂଜା ମଣ୍ଡପ ସାମନାରେ ଗାନ୍ଧିଜୟନ୍ତୀ ପାଳନ କରିବାର ସିଦ୍ଧାନ୍ତ ଘୋଷଣା କଲେ କର୍ମୀମାନେ । ସେଥିପାଇଁ ଜୋରସୋର ପ୍ରସ୍ତୁତି ପର୍ବ ଚାଲିଲା । ଜିଲ୍ଲା କଂଗ୍ରେସର ନେତାମାନଙ୍କୁ ଆମନ୍ତ୍ରଣ ପତ୍ର ପଠାଗଲା । ଏପରିକି ତତ୍କାଳୀନ ପ୍ରଦେଶ କଂଗ୍ରେସ ସଭାନେତ୍ରୀ ମାଳତୀ ଚୌଧୁରୀଙ୍କୁ ମଧ୍ୟ ମୁଁ ନିମନ୍ତ୍ରଣ ଜଣାଇଲି । ଜମିଦାର ମଧ୍ୟ ନଛୋଡ଼ବନ୍ଧା । ସେ ପୂଜାମଣ୍ଡପକୁ ଶାଳକାଠ ପୋତ ଘେରରେ ସୁରକ୍ଷିତକରି ଗଢ଼ିଲେ । ପ୍ରଶାସନର ଆଶ୍ରୟ ମଧ୍ୟ ନେଲେ । ୧୪୪ଧାରା ଜାରି ହେଲା । ଅଷ୍ଟମୀ ଦିନ ହଜାର ହଜାର ଲୋକ ଲକ୍ଷ୍ମଣନାଥ ପୂଜା ଦେଖିବାକୁ ଆସି ଜୁଣ୍ଡ ହେଲେ । ଧୁମ୍‌ଧାମ୍‌ରେ ଗାନ୍ଧିଜୟନ୍ତୀ ଉତ୍ସବ ପାଳନ କରାଗଲା । ଗୋଟିଏ ହେଲେ ଛାଗ ବା ମହିଷ ପୂଜାମଣ୍ଡପକୁ ଆସିନଥିଲେ । ଏଣୁ ବଳି ସାମଗ୍ରୀ ଜମିଦାରଙ୍କୁ ମିଳି ନଥିଲା । ମାଳତୀ ଚୌଧୁରୀ ଆସିଥିଲେ । ସେତିକିବେଳେ ନବବାବୁଙ୍କ ମନ୍ତ୍ରୀମଣ୍ଡଳ ଚାଲିଥାଏ । ବିପୁଳ ଜନସମାଗମ ଓ ହର୍ଷଧ୍ୱନି ମଧ୍ୟରେ ଗାନ୍ଧିଜୟନ୍ତୀ ପାଳନ ସଂଗେସଂଗେ ଗଣପଶୁବଳି ଏକ ଘୃଣ୍ୟ ପ୍ରଥା ସମୂଳେ ବନ୍ଦ ହୋଇଗଲା । କଂଗ୍ରେସ ଦଳ ଓ ଜମିଦାରର ପ୍ରଜାମାନଙ୍କ ଏହାଥିଲା ଏକ ଦୁର୍ବାର ବିଜୟ ଏଥିରେ ସନ୍ଦେହ ନାହିଁ । ଏହି ବର୍ବର ପ୍ରଥା ବିରୋଧରେ ସର୍ବତ୍ର ବିଦ୍ରୋହ ଦେଖାଦେଲା । ତା' ପରେପରେ ଜମିଦାରୀ ଉଚ୍ଛେଦ ହେଲା । ସେହି ଦିନଠାରୁ ଲକ୍ଷ୍ମଣନାଥର ସହୃଦୟ ଗ୍ରାମବାସୀମାନେ ସାର୍ବଜନୀନ ଦୁର୍ଗୋତ୍ସବ ଆରମ୍ଭ କଲେ ବିନା ବଳିରେ ।

ଦେବୀ ପୀଠମାନଙ୍କରେ ଜଘନ୍ୟ ପଶୁବଳି ପ୍ରଥା ବିରୋଧରେ ଜନମାନସରେ ରାଜ୍ୟରେ ସର୍ବତ୍ର ବିଦ୍ରୋହ ଦେଖାଦେଇଛି । ବଳି ବନ୍ଦ ହେବାର ଦେଖାଯାଉଛି । ମହତାବଙ୍କ ନେତୃତ୍ୱରେ କଟକ ଚଣ୍ଡିଠାରେ ଗଣ ପଶୁବଳି ପ୍ରଥାର ବିଲୋପ ଘଟିଛି । ତଥାପି ଅନେକ ମନ୍ଦିରରେ ବଳିପ୍ରଥା ବନ୍ଦ ହେବାକୁ ବାକି ଅଛି । ଏ ଦିଗରେ ପ୍ରବଳ ଜନ ସଚେତନତା ଏକାନ୍ତ ଆବଶ୍ୟକ । ହିନ୍ଦୁ ଧର୍ମାଚରଣ ନାମରେ ଏ କଳଙ୍କ ଶୀଘ୍ର ଲୋପ ପାଇବା ଉଚିତ । ଜଗତ ଜନନୀ ମା'ଙ୍କର ପୂଜା ପୀଠମାନ ସଂପୂର୍ଣ୍ଣ ସାତ୍ତ୍ୱିକ ଭାବରେ ମାତୃ ଆରାଧନାରେ ମୁଖରିତ ହୋଇ ଉଠୁ ଏହାହିଁ ଆମର କାମନା ।





Digitized by srujanika@gmail.com

# ବନ୍ଦେ ମାତରମ୍

ପୁରାକାଳରେ ଭାରତର ସନାତନ ବୈଦିକ ସଭ୍ୟତା ଓ ସଂସ୍କୃତିର ମାନଚିତ୍ର ବିଶ୍ୱର ବହୁଳାଂଶକୁ ବ୍ୟାପି ରହିଥିବାର ଜଣାଯାଏ । ବିଶ୍ୱ ସଂସ୍କୃତି ଓ ମାନବସଭ୍ୟତା ଗଢ଼ି ଉଠିବାର ଏହି ପ୍ରାଚୀନତମ ଭାରତୀୟ ସଭ୍ୟତା ଓ ସଂସ୍କୃତିର ସାର୍ବଭୌମ ଅବଦାନର ପ୍ରମାଣ ଆଜି ଜଗତରେ ବିରଳ ନୁହେଁ । ସେ ସମୟରେ ଏହି ଭାରତୀୟ ଧର୍ମ, ସଂସ୍କୃତି ଓ ସଭ୍ୟତା ପଶ୍ଚିମ, ଦକ୍ଷିଣ ଓ ଦକ୍ଷିଣ-ପୂର୍ବ ଏସୀୟ ଭୂଖଣ୍ଡକୁ ପ୍ରସାରି ରହିଥିବାର ପ୍ରମାଣ ମିଳେ । କିନ୍ତୁ ସେ ଯୁଗର ଭାରତର ଭୌଗୋଳିକ ମାନଚିତ୍ର ଆମପାଖରେ ସୁସ୍ପଷ୍ଟ ନୁହେଁ । ଦେଶ ବିଦେଶରେ ପ୍ରଦର୍ଶିତ ପ୍ରତ୍ନତାତ୍ତ୍ୱିକ ଉପାଦାନ ମାନଙ୍କରୁ ପ୍ରତୀୟମାନ ହୁଏ, ଏକଦା ଏହି ଭାରତୀୟ ସଭ୍ୟତା ଦକ୍ଷିଣପୂର୍ବ ଏସିଆର ଜାଭା, ବାଲି, ବୋର୍ଣ୍ଣିଓ, ସୁମାତ୍ରା, ବ୍ରହ୍ମଦେଶ, ଶ୍ୟାମଦେଶ, କାମ୍ବୋଡ଼ିଆ ତଥା ପଶ୍ଚିମ ଏସିଆର ଇରାନିୟାନ୍ ସୀମା ଅତିକ୍ରମ କରି ଭୂମଧ୍ୟସାଗର ଉପକୂଳ ପର୍ଯ୍ୟନ୍ତ ବ୍ୟାପି ରହିଥିଲା । ବୈଦେଶିକ ପରିବ୍ରାଜକ, ଆକ୍ରମଣକାରୀ, ଧର୍ମଯାଜକ ଓ ଆବିଷ୍କାରକଙ୍କର ଚରିତ୍ର ଓ ରଚନା ବିଶ୍ଳେଷଣ କଲେ ଏସବୁର ବହୁଳ ଦୃଷ୍ଟାନ୍ତ ମିଳେ । ସେଥିପାଇଁ ସ୍ୱାମୀ ବିବେକାନନ୍ଦ ଦର୍ଶାଇଥିଲେ - "ଖ୍ରୀଷ୍ଟଧର୍ମ ହେଉଛି, ଭାରତୀୟ ବୌଦ୍ଧଧର୍ମର ଏକ ପ୍ରତିଧ୍ୱନି ଏବଂ ବୌଦ୍ଧଧର୍ମ ସନାତନ ଆର୍ଯ୍ୟଧର୍ମର ଏକ ସଂସ୍କାରବାଦୀ ଅଂଶ ମାତ୍ର ।" ପ୍ରାଚୀନ ଭାରତ ଏବଂ ବର୍ତ୍ତମାନ ଭାରତ ମଧ୍ୟରେ ସହସ୍ର ସହସ୍ର ବର୍ଷ ବିତିଯାଇଛି । ସମୟର ଏହି ଦୀର୍ଘ ବ୍ୟବଧାନ, ଭାରତ ବକ୍ଷରେ ଆଣିଦେଇଛି ତା'ର ଧର୍ମ, ସଂସ୍କୃତି, ଜାତୀୟ ଜୀବନ ଓ ଚରିତ୍ରରେ ବହୁ ବିବର୍ତ୍ତନ ଓ ପରିବର୍ତ୍ତନ ।

ଆଜକୁ ପ୍ରାୟ ଦୁଇହଜାର ବର୍ଷ ପୂର୍ବେ ଭାରତ ଥିଲା ହିନ୍ଦୁ ରାଜାମାନଙ୍କର ସାମ୍ରାଜ୍ୟ । ସେଥିପାଇଁ ପରବର୍ତ୍ତୀ ସମୟରେ ଏହାର ନାମ ହେଲା 'ହିନ୍ଦୁସ୍ଥାନ' । କାଳକ୍ରମେ ପାର୍ସିଆନ୍, ଗ୍ରୀକ୍, ରୋମାନ୍, ମୁସଲମାନ, ମୋଗଲ, ପାଠାନ୍, ଡଚ୍, ଫ୍ରେଞ୍ଚ, ପର୍ତ୍ତୁଗୀଜ ଏବଂ ଇଂରେଜମାନଙ୍କର ଅନୁପ୍ରବେଶ, ଭାରତର ଆକୃତି ଓ ବିସ୍ତୃତିକୁ ଖଣ୍ଡବିଖଣ୍ଡ କରି ମର୍ମାନ୍ତିକ ସଂକୋଚନ ଆଣିଦେଇଛି । ଏହି ସଂକୁଚିତ ଭାରତଖଣ୍ଡକୁ ଘେରି କ୍ଷୁଦ୍ର, ଖର୍ବ ଓ ହେୟ ହୋଇଉଠିଛି ତା'ର ମାନଚିତ୍ର । ଇତିହାସ ତଥାପି ସ୍ଥିର ବା ମୂକ ହୋଇ ରହିପାରିଲା



Digitized by srujanika@gmail.com

ନାହିଁ । ହିନ୍ଦୁ ସନାତନ ସଂସ୍କୃତିର ପ୍ରାଣକେନ୍ଦ୍ର ହିନ୍ଦୁସ୍ଥାନର ବକ୍ଷଦେଶରେ ସମୟର ତରବାରୀ ରକ୍ତାକ୍ତ ହୋଇ ଅତୀବ ନିର୍ମମ ବେଗରେ ବୁଲି ଚାଲିଲା । ଏସୀୟ ଓ ୟୁରୋପୀୟ ଅନୁପ୍ରବେଶକାରୀ ଓ ବ୍ୟବସାୟୀ ମାନଙ୍କର ଘନଘନ ପଦଧ୍ୱନିରେ ହିନ୍ଦୁସ୍ଥାନର ମାଟି ଆନ୍ଦୋଳିତ ହୋଇଉଠିଲା । କ୍ରମେ ତା'ର ଆକାରରେ ବିକାର ଓ ସଂସ୍କୃତି ଉପରେ ଘୋର ଚାପ ସୃଷ୍ଟି ହେଲା । ହିନ୍ଦୁ ସାମ୍ରାଜ୍ୟ ଆସ୍ତେଆସ୍ତେ ଲୋପ ପାଇଗଲା । ହିନ୍ଦୁସ୍ଥାନର ମାନଚିତ୍ର କ୍ରମେ ରକ୍ତବର୍ଣ୍ଣ ଧାରଣ କଲା । ଇଂରେଜ ଜାତି କୌଶଳକ୍ରମେ ସମସ୍ତଙ୍କୁ ହଟାଇ ଦେଇ, ଆପଣାର ଏକାଧିପତ୍ୟ ସମଗ୍ର ଭାରତ ଭୂଖଣ୍ଡରେ ବିସ୍ତାର କଲା ଏବଂ ଭାରତର ରାଜନୀତିକ ମାନଚିତ୍ର, ସଭ୍ୟତା ଓ ସଂସ୍କୃତିକୁ ବିକୃତ କରି ଦୃଢ଼ହସ୍ତରେ ବ୍ରିଟିଶ ଜାତି ରେଖାକାଟି ତାକୁ ସୀମାବଦ୍ଧ କଲା । ପରାହତ ହିନ୍ଦୁସ୍ଥାନ, ଭାରତୀୟ ସଂସ୍କୃତି, ସଭ୍ୟତାର ବିକଳାଙ୍ଗ ବଦନ ଆତ୍ମଗ୍ଲାନିରେ ଜର୍ଜରିତ ହୋଇ ମ୍ଳାନ ଓ ଅବନତ ହେଲା ।





Digitized by srujanika@gmail.com

# ମୁକ୍ତି ସଂଗ୍ରାମର ପୃଷ୍ଠଭୂମି

ଭାରତର ସ୍ୱାଧୀନତାସଂଗ୍ରାମର ଇତିହାସ ହେଉଛି ମୁଖ୍ୟତଃ ଭାରତର ଜାତୀୟ କଂଗ୍ରେସର ଇତିହାସ । ଏଣୁ ଉତ୍ତର ବାଲେଶ୍ୱରର ସ୍ୱାଧୀନତା ସଂଗ୍ରାମର ଇତିହାସ ରଚନା କଲାବେଳେ ଏହି ଭୂଖଣ୍ଡର କଂଗ୍ରେସର ଇତିହାସକୁ ବାଦ୍ ଦେଇ କରିହେବ ନାହିଁ । ମାତ୍ର ସାଢ଼େ ତିନିଶହ ବର୍ଷ ପୂର୍ବେ ଇଂରେଜ ଜାତି ଭାରତ ବକ୍ଷରେ ଅନୁପ୍ରବେଶ କଲେ ବନ୍ଧୁ ରୂପରେ ବଣିକର ବେଶ ଧରି । ଆପଣାର ଜାତିଗତ ଶୃଙ୍ଖଳା ଓ ବ୍ୟାବସାୟିକ ବୁଦ୍ଧିବଳରେ ଅଳ୍ପ କେତେବର୍ଷରେ ଉକ୍ତ ବେଶ ରାଜବେଶ ଧାରଣ କଲା । ଏତିକିବେଳେ ଭାରତବର୍ଷ ପ୍ରଧାନତଃ ହିନ୍ଦୁ ସନାତନଧର୍ମୀ ଓ ଇସ୍‌ଲାମ୍‌ଧର୍ମୀ ମାନଙ୍କର ଦେଶ ହୋଇ ରହିଥିଲା । ପ୍ରାଚ୍ୟ ଦେଶମାଟିରେ ତାତ୍କାଳିକ ହିନ୍ଦୁ-ଇସଲାମ୍ ମିଶ୍ର ସଂସ୍କୃତି ଓ ସଭ୍ୟତା ଉପରେ ବିଦେଶୀ ଇଂରେଜ ଶାସନ, ପାଶ୍ଚାତ୍ୟ ଶାସନ ଓ ସଭ୍ୟତାର ପ୍ରଭାବ କ୍ରମେ ବିସ୍ତାର ଲାଭକଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଭାରତବର୍ଷର ଜନଜୀବନ, ବିଶେଷକରି ବ୍ୟବସାୟ କ୍ଷେତ୍ର ସଂପୂର୍ଣ୍ଣ ଭାବେ ଗୋରାଶାସନର ଅଧୀନତା ସ୍ୱୀକାର କଲା । ସ୍ୱାଧୀନଚେତା ମୁଷ୍ଟିମେୟ କେତେକ ରାଜା, ନବାବ, ଜମିଦାର ଓ ରାଜ କର୍ମଚାରୀ ଏହାର ତୀବ୍ର ପ୍ରତିବାଦ କରି ଉଠିଲେ । ଦେଶପ୍ରେମର ବହ୍ନି ବାରମ୍ବାର ଜଳି ଉଠିଲା । ସେହି ବହ୍ନିରେ ସିରାଜ, ମିରକାଶିମ୍, ଟିପୁ ସୁଲତାନ ପ୍ରମୁଖ ବୀରମାନେ ପ୍ରାଣ ହାରିଲେ । ନନ୍ଦକୁମାରଙ୍କୁ ଫାଶି ଦିଆଗଲା । ରାଣୀ ଲକ୍ଷ୍ମୀବାଇ, ତାନ୍ତିଆଟୋପେ ଓ ନାନାସାହେବ ଆଦି ଯୁଦ୍ଧକରି ଜୀବନ ଦେଲେ । ସିପାହୀ ବିଦ୍ରୋହକୁ ଦୃଢ଼ ହସ୍ତରେ ଦମନ କରାଗଲା । ଇଂରେଜ କାରାଗାରରେ ବୀର ସୁରେନ୍ଦ୍ର ସାଏ ସହିଦ ହେଲେ । ରାଜଗୁରୁ, ବକ୍‌ସି ଜଗବନ୍ଧୁ ବିଦ୍ୟାଧର, ଦଳ ବେହେରା, ବୀର୍‌ସା ମୁଣ୍ଡା ପ୍ରଭୃତି ବୀରମାନେ ବୁକୁର ରକ୍ତ ଦେଇ ମଧ୍ୟ ମାତୃଭୂମିକୁ ଇଂରେଜ ଜାତି କବଳରୁ ରକ୍ଷା କରିପାରିଲେ ନାହିଁ । ଘୁମୁସରର ରାଜା, ସମ୍ବଲପୁରର ରାଜକୁମାର ଉଜ୍ଜ୍ୱଳ ସାଏ, କନ୍ଧନେତା ଦୋରା ବାସାଇ ଏବଂ ଚକ୍ର ବାସାଇ, ଶବରନେତା ରାଧାକୃଷ୍ଣ ଦଣ୍ଡସେନା ସଶସ୍ତ୍ର ବିଦ୍ରୋହ କରି ତିଷ୍ଠି ପାରିଲେ ନାହିଁ ।

ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରୁ ସୁଦୀର୍ଘ ଦେଢ଼ଶହ ବର୍ଷ ବ୍ୟାପି ଏକାଦିକ୍ରମେ ଫିରିଙ୍ଗିଦଳ ଭାରତର ବାଣିଜ୍ୟ, ବ୍ୟବସାୟ, ଶିକ୍ଷା, ଚାକିରି, ଖଣି, ଜଂଗଲ, ଜମିଜମା,



Digitized by srujanika@gmail.com

ରାଜସ୍ୱ, ଡାକ, ରେଳ ଯୋଗାଯୋଗ, ପ୍ରତିରକ୍ଷା ଓ ବିଦେଶ ବ୍ୟାପାର ଆଦି ପ୍ରଶାସନିକ ତଥା ଆର୍ଥନୀତିକ କାର୍ଯ୍ୟକ୍ରମଗୁଡ଼ିକ ନିଜ ଆୟତ୍ତରେ ନିଷ୍ଠୁର ଭାବରେ ରଖିନେଲେ । ଜନ୍ମମାଟିର ସନ୍ତାନମାନଙ୍କର ସେ ସଂପର୍କରେ ସ୍ୱାଧୀନ ମତବ୍ୟକ୍ତ କରିବାର ଅଧିକାର ଆଉ ରହିଲା ନାହିଁ । ବିଦେଶୀ ଶାସକଗୋଷ୍ଠୀ ମାତୃଭାଷା ସଂସ୍କୃତ ଓ ଆଞ୍ଚଳିକ ଭାଷାଶିକ୍ଷା ଲୋପକରି ଇଂରେଜୀ ଭାଷା ମାଧ୍ୟମରେ ଚାକିରି ଭିତ୍ତିକ ଶିକ୍ଷାଦାନ କ୍ରମେ ଆରମ୍ଭ କଲେ । ଭାରତୀୟ ଶିଳ୍ପ ଓ କାରିଗରୀ ବିଦ୍ୟା ଉଚ୍ଛେଦ କରି ଦେଶଜ କଞ୍ଚାମାଲତକ ବିଲାତକୁ ବୋହି ନେଇ, ଗୋରାହାତ ତିଆରି ଅତ୍ୟାବଶ୍ୟକ ଜିନିଷମାନ ଯଥେଷ୍ଟ ଅଧିକ ମୂଲ୍ୟରେ ଭାରତବାସୀଙ୍କୁ କିଣିବାକୁ ବାଧ କରାଗଲା । ଏକମାତ୍ର ଜୀବିକା କୃଷିର ଉନ୍ନତି ଦିଗରେ ଶାସକଗୋଷ୍ଠୀ ଉଦାସୀନ ରହିଲେ ।

ଇଂରେଜମାନେ ବିଭିନ୍ନ ସ୍ୱାଧୀନ ରାଜ୍ୟ ମଧ୍ୟରେ କିପରି ଶତ୍ରୁତା ସୃଷ୍ଟି ହୋଇ ରାଜ୍ୟ ରାଜ୍ୟ ମଧ୍ୟରେ କଳହ ଲାଗି ରହିବ, ମାଲିମକଦ୍ଦମା ଚାଲିବ ତାହା ଖୁବ୍ ଚତୁରତା ସହ କରାଉଥିଲେ । ଯାହାକି ସେମାନଙ୍କର ଶକ୍ତି ଦୁର୍ବଳ ହୋଇ ଏକତା ଭାଂଗିଯିବ । ଫଳରେ ଇଂରେଜମାନଙ୍କ ବିରୁଦ୍ଧରେ କେହି ମୁଣ୍ଡଟେକି ପାରିବେନାହିଁ । ଭାରତର ଦେଶୀୟ ରାଜାମାନେ କି ସାନ କି ବଡ଼, ସମସ୍ତେ ଖୁବ୍ ଶକ୍ତିଶାଳୀ ଥିଲେ । ନିଜର ଜନ୍ମଭୂମିର ମର୍ଯ୍ୟାଦାରେ ଟିକିଏ ଆଞ୍ଚ ଆସିଲେ ଜୀବନ ଦେଇଦେବାକୁ ମଧ୍ୟ ପଛାଉ ନଥିଲେ । ଇଂରେଜମାନେ ନାନା କଳାକୌଶଳ ଅବଲମ୍ବନ କରି ଏମାନଙ୍କ ମଧ୍ୟରୁ ଅଧିକାଂଶ ରାଜ୍ୟକୁ ଅଧିକାର କରିନେଲେ । ଅବଶିଷ୍ଟ ସ୍ୱାଧୀନ ଦେଶୀୟ ରାଜ୍ୟଗୁଡ଼ିକୁ ଅଧିକ ସୁବିଧା ଦେଇ ସାମନ୍ତ କରଦ ରାଜ୍ୟରେ ପରିଣତ କରାଗଲା । ଦେଶବାସୀଙ୍କୁ କୃଷି-ଶ୍ରମିକ ଓ ଅଧିକ ସୁବିଧାବାଦୀ ଏହି ଦୁଇଗୋଷ୍ଠୀରେ ବିଭକ୍ତ କରିଦିଆଗଲା । ଯେକୌଣସି ପ୍ରକାର ଉଚ୍ଚପଦବୀ ବା ଚାକିରିରେ ଭାରତୀୟ ମାନଙ୍କର ଦାବି ରହିଲା ନାହିଁ । ହିନ୍ଦୁ, ମୁସଲମାନ, ଦୁଇ ଧର୍ମୀୟ ଲୋକଙ୍କ ମଧ୍ୟରେ ସନ୍ତର୍ପଣରେ ସାଂପ୍ରଦାୟିକତାର ବୀଜ ବପନ କରାଗଲା । ଏପରିକି ଆପଣା ଦେଶ ମଧ୍ୟରେ ଯାନବାହନରେ ଉଚ୍ଚଶ୍ରେଣୀରେ ଯିବାଆସିବା ନିଷିଦ୍ଧ ଥିଲା । ବହିର୍ଜଗତକୁ ଯିବା ପାଇଁ ପାସ୍‌ପୋର୍ଟ ଉପରେ କଟକଣା ଜାରି କରାଗଲା । ଏମିତିକି ଲୁଣ ଟିକକ ଓ ମୋଟା ଲୁଗାଖଣ୍ଡିକ ନିଜେ ପ୍ରସ୍ତୁତ କରି ବ୍ୟବହାର କରି ହେଲାନାହିଁ । ଦେଶର କଞ୍ଚାମାଲର ଶସ୍ତାମୂଲ୍ୟରେ ଏକଚାଟିଆ ଖରିଦଦାର ସରକାର ରହିଲେ । ଉଚ୍ଚଶିକ୍ଷା କ୍ଷେତ୍ର ବିଲାତରେ ହିଁ ରହିଲା । ଏ ଦେଶର ଆଇନ ଅଦାଲତ ପାଇଁ, ନିଜ ଦେଶର ସ୍ୱାର୍ଥକୁ ସୁହାଇଲା ଭଳି ଆଇନ୍‌ମାନ ଗଢ଼ି ଆମ ଦେଶରେ ଜାରିକଲେ ଏବଂ ସର୍ବୋଚ୍ଚ ଅଦାଲତ ବିଲାତ ପାର୍ଲାମେଣ୍ଟ ହାତରେ ରହିଲା । ପ୍ରଶାସନ ଓ ବିଚାର



Digitized by srujanika@gmail.com

କ୍ଷେତ୍ରରେ କେବଳ ଗୋରାମାନେ ହିଁ ଉଚ୍ଚ ପଦବୀର ଅଧିକାରୀ ହେଲେ । ଭାରତବାସୀଙ୍କର ସଞ୍ଚିତ ଓ ଶ୍ରମଲବ୍ଧ ଅର୍ଥ ଶୋଷଣ କରି ବ୍ରିଟିଶ ରାଜକୋଷ ଫୁଲି ଚାଲିଲା । ବ୍ୟକ୍ତି ସ୍ୱାଧୀନତା ଲୋପପାଇ ବସିଲା । ଏପରିକି ବାକ୍‌ସ୍ୱାଧୀନତା ମଧ୍ୟ ସମସ୍ତେ ହରାଇ ବସିଲେ । ପ୍ରଚଳିତ ଆଇନ୍ ଓ ଶାସନ ବିରୁଦ୍ଧ କ୍ରିୟାକଳାପକୁ ଭାରତ-ରକ୍ଷା ରାଜଦ୍ରୋହ ନାମରେ ଦୃଢ଼ ହସ୍ତରେ ଦମନ କରାଗଲା । ଏକ କିମ୍ଭୁତକିମାକାର ସାମ୍ରାଜ୍ୟବାଦୀ ଅମଲାତନ୍ତ୍ର ଶାସନର ସମସ୍ତେ ଶିକାର ହେଲେ । ଅତୀତ ଭାରତର ତେଜୋଦୀପ୍ତ ସମୁନ୍ନତ ଭାବମୂର୍ତ୍ତି, ପୃଥିବୀର ଦୃଷ୍ଟିପଟରୁ କ୍ରମେ ହଟିଯାଇ ଏକ ନିସ୍ତେଜ, ଅଥର୍ବ, ଭୀତତ୍ରସ୍ତ, ପ୍ରାଣହୀନ ମୂର୍ତ୍ତି ଦେଖାଦେଲା । ସମଗ୍ର ଦେଶ ନିଜର ସ୍ୱାତନ୍ତ୍ର୍ୟ ହରାଇ ବସିଲା ।

କିଛି ସୁବିଧାବାଦୀ ଲୋକ, ଗୋରାଶାସନକୁ ମାନିନେଇ ସରକାରଙ୍କ ହୁକୁମ୍ ଚଲାଇଲେ । ଉପାୟାନ୍ତର ନଦେଖି ବହୁତ ଲୋକ ସହିଗଲେ । ବାକି ଅଳ୍ପ କେତେକ କେବଳ ମନେମନେ ଗୁମୁରି ହେଲେ । ବ୍ରିଟିଶ ଜାତିର ବିଜୟ ବୈଜୟନ୍ତୀ ୟୁନିଅନ୍ ଜ୍ୟାକ୍ ଅବାଧରେ ଭାରତ ବକ୍ଷରେ ସଦର୍ପରେ ସର୍ବତ୍ର ଫର୍‌ଫର୍ ହୋଇ ଉଡ଼ିବାକୁ ଲାଗିଲା । ତାର ସ୍ୱରରେ ଗୀତ ହେବାକୁ ଲାଗିଲା, ଗୋରା ଜାତୀୟ ସଂଗୀତ 'ଲଙ୍ଗ୍ ଲିଭ୍ ଦି କିଙ୍ଗ୍' । ଏହିପରି ପୁରୁଷ ପୁରୁଷ ଧରି ବିଦେଶୀ ଶାସନ ଅଧୀନରେ ରହି ଦେଶର ଅପାରଗ ଜନସାଧାରଣ ସେମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ଏକାବେଳକେ ଭୁଲିଗଲେ । ଫଳରେ ପ୍ରାଚ୍ୟ-ପାଶ୍ଚାତ୍ୟ ବ୍ୟାପି ଇଂରେଜ ସାମ୍ରାଜ୍ୟର ଶକ୍ତି ସାମର୍ଥ୍ୟ ବିରୁଦ୍ଧରେ କିଛି କହିବାକୁ ବା କରିବାକୁ କେହି ସାହସ କଲେନାହିଁ । ମନୀଷୀ, ବୁଦ୍ଧିଜୀବୀ ଓ ପଣ୍ଡିତମାନଙ୍କ ସଂଖ୍ୟା ଭାରତ ମାଟିରୁ କ୍ରମେ ହ୍ରାସ ପାଇବାକୁ ଲାଗିଲା । ବିଷାକ୍ତ, ଅମଲାତନ୍ତ୍ର ଶାସନର ଶକ୍ତି ହାତମୁଠା ଭିତରେ ରହି, ସମଗ୍ର ଜାତି ନିଷ୍ପେଷିତ ହେବାକୁ ଲାଗିଲା । ପୁଣ୍ୟ ଭାରତର ଅନ୍ତରାତ୍ମାରୁ ରୁକ୍ଷ କରୁଣ କୋହ ଉଠିଲା ।

ଗୋରା ଶାସନର କୂଟ-କୌଶଳ କେତେକ ସ୍ୱଦେଶପ୍ରେମୀଙ୍କୁ ଚିନ୍ତିତ କଲା । ଶକ୍ତିମାନ କିଛି ଭାରତ ସନ୍ତାନ ଉଚ୍ଚଶିକ୍ଷା ପାଇଁ ବିଲାତ ଗଲେ । ସେଠାରେ ଭାରତବାସୀଙ୍କ ରକ୍ତ କିପରି ସେ ଜାତିକୁ ପୁଷ୍ଟକରି ଲାଲ କରିଛି, ତାହା ମର୍ମେମର୍ମେ ଅନୁଭବ କରି ସ୍ୱଦେଶକୁ ଫେରି ଆସିଲେ । ସ୍ୱଦେଶପ୍ରେମର ବହ୍ନି ସେମାନଙ୍କ ହୃଦୟରେ କ୍ରମେ ଜଳିବାକୁ ଆରମ୍ଭ କଲା । ଉଗ୍ର ଭାବାପନ୍ନ କେତେକ ସୁଶିକ୍ଷିତ ଯୁବକ ଭିତରେ ଭିତରେ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତ କରି ଅତ୍ୟାଚାରୀ ଶାସକମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଶ୍ରୀ ଅରବିନ୍ଦ ଘୋଷ, ବାରୀନ୍ଦ୍ର ଘୋଷ, ସୂର୍ଯ୍ୟ ସେନ୍, ବାଘାଯତୀନ, ଭଗତ୍ ସିଂ, ଉଦ୍ଧାମ୍ ସିଂ, ବୀର ସଭରକର୍, ମଂଗଳ ପାଣ୍ଡେ, ଚନ୍ଦ୍ରଶେଖର ଆଜାଦ, ଖୁଦିରାମ, ପ୍ରଭୃତି ବୀର



Digitized by srujanika@gmail.com

ମୁକ୍ତିଯୋଦ୍ଧାମାନେ ଏହି ସଶସ୍ତ୍ର ଆନ୍ଦୋଳନର ନେତୃତ୍ୱ ନେଲେ । କିନ୍ତୁ ଇଂରେଜ କାରାଗାର, ବନ୍ଧୁକମୁନ ଓ ଫାଶିଖୁଣ୍ଟ ସେମାନଙ୍କୁ କ୍ଷମା ଦେଲାନାହିଁ ।

୧୮୮୫ ମସିହାରେ ଇଂରେଜ ଶାସକ ଆଲାନ୍ ଆକ୍ଟୋଭିଆନ୍ ହ୍ୟୁମ୍ କେତେକ ବିଶିଷ୍ଟ ବୁଦ୍ଧିଜୀବୀ, ଲବ୍ଧପ୍ରତିଷ୍ଠିତ ଭାରତବାସୀଙ୍କୁ ନେଇ 'ଭାରତୀୟ ଜାତୀୟ କଂଗ୍ରେସ' ନାମରେ ଏକ ମହାସଭା ଗଠନ କଲେ । ଏଥିପୂର୍ବରୁ ୧୮୮୩ ମସିହାରେ 'ଭାରତୀୟ ଏସୋସିଏସନ୍' ସାର୍ ସୁରେନ୍ଦ୍ର ନାଥ ବେନାର୍ଜିଙ୍କ ନେତୃତ୍ୱରେ ଭାରତର ବିଭିନ୍ନ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହଯୋଗରେ ଏକ ସମ୍ମେଳନ କଲିକତାରେ ଅନୁଷ୍ଠିତ ହୋଇଥିଲା ଏବଂ ଏହି ସମ୍ମେଳନ ସମଗ୍ର ଭାରତର ଉନ୍ନତ ବିଚାର ଓ ବୁଝାମଣାର ପରିପକ୍ୱ ଲୋକବାଣୀ ଥିଲା । କଂଗ୍ରେସର ମଞ୍ଜି ଏହି କଲିକତା ସମ୍ମେଳନରେ ୧୮୮୩ରେ ସର୍ବପ୍ରଥମେ ବୁଣାଯାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ପରେପରେ ମାନ୍ଦ୍ରାଜର ମହାଜନ ସଭା ଓ ବମ୍ବେର ଇଣ୍ଡିଆନ୍ ନେସନାଲ୍ ୟୁନିଅନ୍‌ର ସଭା ହେଲା ଏବଂ ସିଦ୍ଧାନ୍ତ ନିଆଗଲା ଯେ, ଏହି ସଂଗଠନର ନାମ ଇଣ୍ଡିଆନ୍ ନେସନାଲ୍ କଂଗ୍ରେସ ହେବ । ୧୮୮୫ରେ ଏ.ଓ.ହ୍ୟୁମଙ୍କ ନେତୃତ୍ୱରେ ଏହି ସଂଗଠନ ଭାରତୀୟ ଜାତୀୟ କଂଗ୍ରେସ ନାମରେ ସର୍ବପ୍ରଥମେ ଆତ୍ମପ୍ରକାଶ କରି ପ୍ରତିଷ୍ଠା ଲାଭ କରିଥିଲା । ଏହି କଂଗ୍ରେସ ବା ଜାତୀୟ ଜନ ଆନ୍ଦୋଳନର ସେତେବେଳେ ଉଦ୍ଦେଶ୍ୟ ଥିଲା, ଗୋରା ସରକାରଙ୍କୁ ଦରଖାସ୍ତ କରି ଭାରତବାସୀଙ୍କ ଅଭାବ ଅସୁବିଧା ଜଣାଇବା । କଂଗ୍ରେସର କଳେବର କ୍ରମେ ବୃଦ୍ଧି ହେବାକୁ ଲାଗିଲା । ଆପତ୍ତି ଓ ଅଭିଯୋଗ କ୍ରମେ ଦାବି ଓ ପ୍ରତିବାଦରେ ରୂପାନ୍ତରିତ ହେଲା ଏବଂ କଂଗ୍ରେସ ତତ୍କାଳୀନ ସ୍ୱଦେଶପ୍ରେମୀ ଓ ସ୍ୱାଧୀନତାକାମୀ ଭାରତବାସୀମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ ହୋଇଉଠିଲା ।

ବିଂଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ଦଶକ ଯାଏ ମୁକ୍ତିକାମୀ ଭାରତବାସୀଙ୍କୁ ଶହଶହ ସଂଖ୍ୟାରେ କଂଗ୍ରେସ ପତାକା ତଳେ ସମବେତ ହେବାର ଦେଖାଯାଇଛି । ଲାଲ-ବାଲ୍-ପାଲ ଏବଂ ଶ୍ରୀ ଅରବିନ୍ଦଙ୍କ ଭଳି ବିଶିଷ୍ଟ ବ୍ୟକ୍ତିମାନେ କଂଗ୍ରେସର ନେତୃତ୍ୱ ନେଲେ । ସାର୍, ସୁରେନ୍ଦ୍ର ନାଥ, ଦେଶବନ୍ଧୁ, ମୋତିଲାଲ ନେହେରୁ ଓ କୁଳବୃଦ୍ଧ ମଧୁସୂଦନ ପ୍ରଭୃତି ନେତାମାନେ ସ୍ୱରାଜ ପାର୍ଟି ଗଢ଼ି ଆଇନ୍ ସଭା ଦଖଲ କରିବାରେ ଉଦ୍‌ଯୋଗୀ ହେଲେ । ମୋଟ ଉପରେ ଦେଶପ୍ରେମର ବନ୍ୟା ଭାରତର ପ୍ରତ୍ୟେକ ସୁଶିକ୍ଷିତ ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ହୃଦୟକୁ ବିଶେଷ ଭାବରେ ଉଦ୍‌ବେଳିତ କଲା । ଏତିକିବେଳେ ବଂଗଭଂଗ ଆନ୍ଦୋଳନ ଜାତୀୟ ଆନ୍ଦୋଳନକୁ ଶକ୍ତିଶାଳୀ କଲା । ଗୋରା ସରକାରଙ୍କର ଶାନ୍ତିର ନିଦ୍ରା କ୍ରମେ ବିଘ୍ନିତ ହେବାକୁ ଲାଗିଲା ।





Digitized by srujanika@gmail.com

# ଅଗ୍ନିଯୁଗ

ବିଂଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ଦଶକ । ଏହି ସମୟ ଭାରତର ସ୍ୱାଧୀନତା ସଂଗ୍ରାମ, ସରକାର ବିରୋଧୀ ସଶସ୍ତ୍ର ଆନ୍ଦୋଳନ ଥିଲା । ବନ୍ଦେମାତରମ୍ ଆନ୍ଦୋଳନ ନାମରେ ଏହାକୁ ନାମିତ କରାଯାଇଛି । ଅଗ୍ନିଯୁଗର ବିପ୍ଳବୀ ଋଷି ଶ୍ରୀ ଅରବିନ୍ଦ କଲିକତାରେ ବନ୍ଦେମାତରମ୍ ନାମରେ ଏକ ଉଗ୍ର ସ୍ୱଦେଶୀ ପତ୍ରିକା ପ୍ରତିଷ୍ଠା କରିଥିଲେ ଏବଂ ସେହି ପତ୍ରିକା ଜରିଆରେ ଏହି ଆନ୍ଦୋଳନକୁ ପ୍ରୋତ୍ସାହନ ଦିଆଯାଇଥିଲା । ଏହି ପତ୍ରିକାକୁ କେନ୍ଦ୍ରକରି ଆନ୍ଦୋଳନ ସଂଗଠିତ ହୋଇଥିଲା । ସର୍ବପ୍ରଥମେ ଭାରତରେ ନାଗା ସନ୍ନ୍ୟାସୀମାନେ ସଶସ୍ତ୍ର ବିଦ୍ରୋହର ସୂତ୍ରପାତ କରିଥିଲେ । ତୀର୍ଥକର ଆଦାୟ ବିରୁଦ୍ଧରେ ସେମାନେ ଇଂରେଜମାନଙ୍କ ବିରୁଦ୍ଧରେ ସଶସ୍ତ୍ର ଯୁଦ୍ଧ କରିଥିଲେ । ପରେ, ଦେଶମାତୃକାର ବୀର ମୁକ୍ତିଯୋଦ୍ଧା ଶ୍ରୀ ଅରବିନ୍ଦ, ବାଘାଯତୀନ୍, ଖୁଦିରାମ, ପ୍ରଫୁଲ୍ଲ ଚାକି ଏବଂ ବାରୀନ୍ଦ୍ର ପ୍ରଭୃତିଙ୍କ ସଶସ୍ତ୍ର ରଣ ସଂଗଠନରେ ବଂଗଦେଶ ଏବଂ ରକ୍ତତୀର୍ଥ ବାଲେଶ୍ୱର ମଧ୍ୟରେ ଭୋଗରାଇ ଉପକୂଳ ଏକ ସଂଯୋଗ ସେତୁରୂପେ କାର୍ଯ୍ୟ କରିଥିଲା । ଫୁଲାଡ଼ି ନିକଟସ୍ଥ 'ଚଷାଖଣ୍ଡ ଯୁଦ୍ଧ' ତାର ପ୍ରମାଣ ଦିଏ । ଏଣୁ ବହୁ ପୂର୍ବରୁ ଏହି ଅଗ୍ନିଯୁଗର ବିପ୍ଳବୀ ବୀର ସହିଦ ମାନଙ୍କର ଏହି ଅଞ୍ଚଳ ବକ୍ଷରେ ଦର୍ପିତ ପଦଧ୍ୱନି ଏଠାରେ ଜନମାନସରେ ଜାଗ୍ରତ କରିଥିଲା ଗଭୀର ଦେଶାତ୍ମବୋଧ ଏବଂ ମୁକ୍ତିର ଆକାଂକ୍ଷା ।

**ସଶସ୍ତ୍ର ବିପ୍ଳବର ସଂକ୍ଷିପ୍ତ ଇତିହାସ :**

୧୯୦୧ ମସିହା, ଜୁଲାଇ ୪ ତାରିଖ; ଆଷାଢ଼ର ଏକ ମେଘମେଦୁର ରଜନୀ । ଉନ୍ନତ ହିମଶୃଙ୍ଗ ମହାଯୋଗୀ ସ୍ୱାମୀ ବିବେକାନନ୍ଦ ଇଚ୍ଛାମୃତ୍ୟୁ ବରଣ କଲେ । ମୃତ୍ୟୁବେଦୀ ଚାରିପଟେ ତାଙ୍କର ଅସଂଖ୍ୟ ଶିଷ୍ୟ ଉଦ୍‌ଗ୍ରୀବ ହୋଇ ବେଢ଼ି ରହିଥାଆନ୍ତି । ଦେହତ୍ୟାଗର ଅବ୍ୟବହିତ ପୂର୍ବରୁ ଭାରତବର୍ଷର ସବୁ ଭାଇଭଉଣୀଙ୍କ ପ୍ରତି ତାଙ୍କର ଅନ୍ତିମ ବାଣୀ ଥିଲା – ଯେଉଁ ଭଗବାନଙ୍କୁ ଆମେ ଖୋଜି ବୁଲୁଛୁ, ସେ କୌଣସି ମନ୍ଦିର, ମସ୍‌ଜିଦ୍ ବା ଗୀର୍ଜା ଭିତରେ ନାହାନ୍ତି । ସେ ଅଛନ୍ତି ଆମ ସମସ୍ତଙ୍କ ଅନ୍ତର ଭିତରେ । ତେତିଶ କୋଟି ପରାଧୀନ ଉତ୍ପୀଡ଼ିତ ଭାରତବାସୀଙ୍କର ଅନ୍ତର ଦେବତାକୁ ପୂଜା କର, ଜାଗ୍ରତ କର । ମନେରଖ,



Digitized by srujanika@gmail.com

ତୁମେ ସମସ୍ତେ ଅମୃତର ସନ୍ତାନ । ତୁମେମାନେ ମୃତ୍ୟୁହୀନ, ଦେହର ପତନ ମୃତ୍ୟୁ ନୁହେଁ । ଈଶ୍ୱର ସମସ୍ତଙ୍କର ମଂଗଳ କରନ୍ତୁ ।

ପ୍ରତ୍ୟୁଷରେ ଏହି ଦାରୁଣ ଦୁଃସମ୍ବାଦ ସ୍ୱାମୀଜୀଙ୍କ ମାନସ କନ୍ୟା ଏବଂ ପଟ୍ଟଶିଷ୍ୟା ଜୀବନ୍ତ ବହ୍ନିଶିଖା ସ୍ୱରୂପିଣୀ ଶ୍ୱେତାଙ୍ଗୀ ତରୁଣୀ ଶ୍ରୀମତୀ ମାର୍ଗାରେଟ୍ ନୋବେଲ୍, ସ୍ୱାମୀଜୀଙ୍କର ଅନୁଜ ଭୂପେନ୍ଦ୍ର ଦତ୍ତଙ୍କଠାରୁ ଶୁଣିଲେ ଏବଂ ବିଶେଷ କାତର ହୋଇପଡ଼ିଲେ । ସ୍ୱାମୀଜୀଙ୍କ ନିର୍ଦ୍ଦେଶରେ ଏହି ବିଦେଶୀ ମହିଳା ଭାରତ ତୀର୍ଥର ବେଦୀମୂଳରେ ନିଜକୁ ସଂପୂର୍ଣ୍ଣ ରୂପେ ସମର୍ପିତା କରିଥିଲେ । ନୂତନ ନାମ ଗ୍ରହଣ କରିଥିଲେ ଭଗିନୀ ନିବେଦିତା । ସେ କେବଳ ସ୍ୱାମୀଜୀଙ୍କ ଆଧ୍ୟାତ୍ମିକ ଶିଷ୍ୟା ନଥିଲେ । ବିଂଶ ଶତାବ୍ଦୀର ପ୍ରଥମ ପ୍ରହରରେ ପରାଧୀନତାର ଶୃଙ୍ଖଳ ଛିନ୍ନ କରିବା ପାଇଁ ଯେଉଁ ସଶସ୍ତ୍ର ବିପ୍ଳବର ନିଆଁ ଜଳି ଉଠିଥିଲା ତାର ପଶ୍ଚାତ୍‌ପଟରେ ଏହି ମହିୟସୀ ଶକ୍ତିରୂପିଣୀ ନାରୀଥିଲେ ଏହି ମହାଯଜ୍ଞର ପ୍ରଧାନ ପୁରୋଧା । ପ୍ରଚଣ୍ଡ ମାନସିକ ଶକ୍ତି ବଳରେ ସେ ସ୍ୱାମୀଜୀଙ୍କର ମୃତ୍ୟୁଜନିତ ଶୋକ ସମ୍ଭାଳି ନେଲେ । ତାଙ୍କ ଆଖିରେ ସେତେବେଳେ ଅଗ୍ନିର ସ୍ଥାନ, ଶୋକାଶ୍ରୁ ନଥିଲା ।

ବହୁଲୋକ ବିଶ୍ୱାସ କରନ୍ତି ଯେ, ଶିକ୍ଷିତ ଭାରତୀୟ ତରୁଣମାନେ ଉଚ୍ଚଶିକ୍ଷା ପାଇଁ ବିଲାତ ଯାଇ ନିଜର ଜାତୀୟ ବ୍ୟକ୍ତିତ୍ୱ, ସ୍ୱାଧୀନ ଚିନ୍ତା ଓ ନୈତିକତା ସଂପୂର୍ଣ୍ଣ ରୂପେ ଜଳାଞ୍ଜଳି ଦେଇ ଉଗ୍ର ସାହେବୀ ମେଜାଜ୍ ନେଇ ବର୍ଣ୍ଣଶଙ୍କର ଭାବରେ ସ୍ୱଦେଶକୁ ଫେରି ଆସୁଥିଲେ । ଏ ବିଶ୍ୱାସ ବହୁଳାଂଶରେ ସତ୍ୟ, କିନ୍ତୁ ସଂପୂର୍ଣ୍ଣ ସତ୍ୟ ନୁହେଁ । ସେମାନେ ବୁଝିପାରିଛନ୍ତି ଯେ, ସେମାନେ ପରାଧୀନ । ଇଂରେଜ ଜାତିର ଗୋଲାମ । ଅନ୍ୟ ସ୍ୱାଧୀନ ଦେଶ ଭଳି ସ୍ୱାଧୀନତା ମଧ୍ୟ ସେମାନଙ୍କର ହକ୍ । ବୁଦ୍ଧି ଏବଂ ଜାତୀୟତାରେ ଭାରତୀୟମାନେ କାହାରିଠାରୁ ଊଣା ନୁହଁନ୍ତି । ଭାରତର ସୁପ୍ତ ଜନଶକ୍ତିର ଜାଗରଣ କେବଳ ମାତ୍ର ଦରକାର, କିନ୍ତୁ ସେଥିପାଇଁ ଦରକାର ନିଷ୍ଠା, ତ୍ୟାଗ, ସଂଗଠନ ଓ ଶକ୍ତିଶାଳୀ ନେତୃତ୍ୱ । ୧୮୫୭ ମସିହାର ସିପାହୀ ବିଦ୍ରୋହର ନିଆଁ ପୂରାପୂରି ଲିଭିଯାଇ ନାହିଁ, ଭିତରେ ଭିତରେ କୁହୁଳୁଛି । ଦେଶର ମୃତ୍ୟୁ ଭୀତିହୀନ ତରୁଣ ସଂପ୍ରଦାୟକୁ ଆଗାମୀ ସଶସ୍ତ୍ର ବିପ୍ଳବ ପାଇଁ ଏହାଥିଲା ଏକ ଆହ୍ୱାନ । ଏମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଶ୍ରୀ ଅରବିନ୍ଦ ଘୋଷ, କେ.ଜି. ଦେଶପାଣ୍ଡେ, ବୀର ସଭରକର୍, ସୁଭାଷ ବୋଷ୍ ପ୍ରମୁଖ ।

ବସ୍ତୁବାଦୀ ଶ୍ୱେତ ସଭ୍ୟତାର ପ୍ରଭାବ ଅରବିନ୍ଦଙ୍କ ଦେହ ମନକୁ କଳୁଷିତ କରିପାରିନଥିଲା । ନିଦାରୁଣ ଶପଥ ନେଇ ସେ ଭାରତକୁ ଫେରିଆସିଲେ କିନ୍ତୁ ଆଜୀବନ ଦେଶବାସୀଙ୍କଠାରୁ ଦୂରରେ ରହିଥିବା ହେତୁ ଦେଶରେ ସେ ସଂପୂର୍ଣ୍ଣ ବିଦେଶୀ ଏବଂ



Digitized by srujanika@gmail.com

ଅପରିଚିତ ଥିଲେ । ପଣ୍ଡିତ ଜବାହାରଲାଲଙ୍କ ପରି ତାଙ୍କୁ ନିଜର ଜନ୍ମଭୂମିକୁ ଆବିଷ୍କାର କରିବାକୁ ପଡ଼ିଲା ।

ସେ ଦୂରରେ ବରୋଦା କଲେଜରେ ସାଧାରଣ ଏକ ଅଧ୍ୟାପକ ନିଯୁକ୍ତି ନେଇ ଗଭୀର ଧ୍ୟାନ ସହ ଯୋଗ ସାଧନାରେ ମଗ୍ନ ରହିଲେ ଏବଂ ଅବରୁଦ୍ଧ ତୋଫାନ ପରି ଦେଶରେ ମୁକ୍ତି ଆନ୍ଦୋଳନର ନିଆଁ ଜଳାଇବାର ସମୟ ସୁଯୋଗ ପ୍ରତୀକ୍ଷାରେ ଥିଲେ । କଲିକତା ଓ ବମ୍ବେରୁ ପ୍ରକାଶିତ କାଗଜମାନଙ୍କରେ ତାଙ୍କର ଅଗ୍ନିମୁଖୀ ଲେଖାମାନ କ୍ରମେ ପ୍ରକାଶ ହେବାକୁ ଲାଗିଲା । ଭଗିନୀ ନିବେଦିତା ସହ ବରୋଦାରେ ତାଙ୍କର ସାକ୍ଷାତ ବାରୁଦ ସ୍ତୂପରେ ଅଗ୍ନିସଂଯୋଗ କଲା । ବିବେକାନନ୍ଦଙ୍କ ରାଜଯୋଗ ଅଧ୍ୟୟନ କରି ସେ ପ୍ରେରଣା ଲାଭ କଲେ । ବାରିଷ୍ଟର ପ୍ରମଥ ମିତ୍ରଙ୍କର ଗଠିତ ଅନୁଶୀଳନ ସମିତି ବିଷୟରେ ସର୍ବଶେଷ ଖବର ମଧ୍ୟ ଶୁଣିଲେ । ତାହାଥିଲା ଏକ ସଂପୂର୍ଣ୍ଣ ବିପ୍ଳବୀ ଅନୁଷ୍ଠାନ । ବଂଗ, ଓଡ଼ିଶା, ମହାରାଷ୍ଟ୍ରର ତରୁଣମାନେ ଏଥିରେ ଯୋଗ ଦେଉଥାଆନ୍ତି ଏବଂ ନିଜ ହାତରେ ଜୀବନପଣର ଶପଥ ସ୍ୱାକ୍ଷର କରୁଥାନ୍ତି । ଅରବିନ୍ଦ ନିବେଦିତାଙ୍କୁ ବିଶ୍ୱାସ କଲେ । ଉଭୟଙ୍କ ମଧ୍ୟରେ ଗୋପନ ସଲାହ ପରାମର୍ଶ ଚାଲିଲା । ଦେଶରେ ସଶସ୍ତ୍ର ବିପ୍ଳବ ପାଇଁ ଲୋଡ଼ା ପ୍ରଚୁର ଅର୍ଥ ଏବଂ ସୁଦୃଢ଼ ଏକ ସଂଗଠନ ଆଉ ଅସ୍ତ୍ରଶସ୍ତ୍ର ।

ବରୋଦାର ସୈନ୍ୟବାହିନୀର ଅଧ୍ୟକ୍ଷ କ୍ୟାପ୍ଟେନ୍ ଯତୀନ୍ଦ୍ରନାଥ ବେନାର୍ଜୀଙ୍କ ଜରିଆରେ ସେ ପ୍ରଚୁର ବନ୍ଧୁକ ଓ ଗୋଳାବାରୁଦ ସଂଗ୍ରହ କଲେ । ନିବେଦିତାଙ୍କ ନିର୍ଦ୍ଦେଶରେ ଐତିହାସିକ ଉଗ୍ର ଜାତୀୟତାବାଦୀ ଅଗ୍ନିବାହୀ ପତ୍ରିକା 'ଯୁଗାନ୍ତର' ଜନ୍ମଲାଭ କଲା । ଶ୍ରୀ ଭୂପେନ୍ଦ୍ରନାଥ ଦତ୍ତ ପ୍ରଥମେ ତାର ଦାୟିତ୍ୱ ନେଲେ । ଏହାର ପରବର୍ତ୍ତୀ କେତୋଟି ବର୍ଷ ହେଉଛି ଭାରତର ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମର ବିରାଟ ପ୍ରସ୍ତୁତି । ଦେଶର ବିଭିନ୍ନ ପ୍ରାନ୍ତରେ ଗୁପ୍ତ ସଂଗଠନମାନ ଗଢ଼ିଉଠିଲା । ଅସଂଖ୍ୟ ଛାତ୍ର ଓ ତରୁଣମାନେ ଏହିସବୁ ସଂଗଠନରେ ଯୋଗଦେଲେ । ନିଜର ରକ୍ତରେ ଶପଥପତ୍ର ସ୍ୱାକ୍ଷର କଲେ । ମନ୍ତ୍ରର ସାଧନ କିମ୍ବା ଶରୀର ପତନ ।

ମହାରାଷ୍ଟ୍ରର ମହାବିପ୍ଳବୀ ଦୁଇ ଭାଇ, ଦାମୋଦର ଏବଂ ରାମକୃଷ୍ଣହରି ଚାପେକାର କଲିକତା କେନ୍ଦ୍ର ସହ ସଂଯୋଗ ରକ୍ଷାକଲେ । ଜୀବନର ଉଚ୍ଚାଭିଳାଷ ଛାଡ଼ି ଧନୀ ଏବଂ ଉଚ୍ଚ ରାଜ କର୍ମଚାରୀମାନଙ୍କର ସନ୍ତାନମାନେ ଏହି ମରଣ ଯଜ୍ଞରେ ସମିଧ ହେବାପାଇଁ ଧାଇଁ ଆସିଲେ । ପଞ୍ଜାବର ତରୁଣମାନେ ଗର୍ଜି ଉଠିଲେ । ବିପ୍ଳବୀ ଭଗତ୍ ସିଂହ, କର୍ତ୍ତାର ସିଂହ, ଜଗତ୍ ସିଂହ, ଦିପେନ୍ ସିଂହ, ଶରଣ ସିଂହ ଓ ହରନାମ ସିଂହ ପ୍ରମୁଖ ଜାଗି



Digitized by srujanika@gmail.com

ଉଠିଲେ ଦେଶମାତାର ଆହ୍ୱାନରେ । ଲାହୋର, ଆମ୍ବାଲା, ଅମୃତସର ଓ ଦିଲ୍ଲୀ ପ୍ରଭୃତିରେ ଦୁର୍ଦ୍ଧର୍ଷ ବିପ୍ଳବୀ କେନ୍ଦ୍ରମାନ ଗଢ଼ିଉଠିଲା । ଆମେରିକା, ଚୀନ, ଜାପାନ ଓ ବ୍ରହ୍ମଦେଶରୁ ଅସ୍ତ୍ରଶସ୍ତ୍ରମାନ ଗୋପନରେ ଆମଦାନୀ ହେବାକୁ ଲାଗିଲା । କ୍ୟାପ୍‌ଟେନ୍ ଯତୀନ ବାନାର୍ଜୀଙ୍କ ଚେଷ୍ଟାରେ ବରୋଦାରୁ ମଧ୍ୟ ବହୁ ଅସ୍ତ୍ର ମିଳିଲା । କେତେକ ତରୁଣ ପ୍ୟାରିସ ଏବଂ ଟୋକିଓ ଯାଇ ହାତବୋମା ତିଆରି ଶିଖି ଆସିଲେ । ଦେଶୀ ପିସ୍ତଲ ଓ ଛୁରି ଅଜସ୍ର ତିଆରି ହେବାକୁ ଲାଗିଲା । ଦକ୍ଷିଣ ଓ ପଶ୍ଚିମ ଭାରତ ମଧ୍ୟ ଚେଇଁ ଉଠିଲା । ପଶ୍ଚିମବଂଗର ରୁଦ୍ର ସନ୍ନ୍ୟାସୀ ସୂର୍ଯ୍ୟସେନ୍ (ମାଷ୍ଟର ଦା')ଙ୍କ ଆହ୍ୱାନରେ ଶତଶତ ତରୁଣ ତରୁଣୀ ମରଣପଣ ଶପଥ ସ୍ୱାକ୍ଷର କଲେ ।

କାନ୍ଥିର ଜନନାୟକ ହେମଚନ୍ଦ୍ର କାନୁନଗୋ ଏବଂ ପ୍ରତାପ ମାଇତି ନିରବ ରହିଲେ ନାହିଁ । ବାଘାଯତୀନ (ଶ୍ରୀ ଯତୀନ୍ଦ୍ର ନାଥ ମୁଖୋପାଧ୍ୟାୟ) ପ୍ରମୁଖ ଦଳେ ବିପ୍ଳବୀଙ୍କୁ ବାଲେଶ୍ୱର ଏବଂ ମୟୂରଭଞ୍ଜକୁ ପଠାଗଲା । ବାଲେଶ୍ୱର, ଭୋଗରାଇ ଏବଂ କପ୍ତିପଦାର ତରୁଣମାନେ ସେମାନଙ୍କ ସହ ଯୋଗଦେଲେ । ହେମଚନ୍ଦ୍ରଙ୍କ ଆହ୍ୱାନରେ ମେଦିନୀପୁରର ତରୁଣ ବିପ୍ଳବୀ ଖୁଦିରାମ ବସୁ ଓ ପ୍ରଫୁଲ୍ଲ ଚାକି ମରଣ ବରଣ କରିବାକୁ ଧାଇଁ ଆସିଲେ । ଏ ସମସ୍ତଙ୍କୁ ଉଦ୍‌ବୋଧନ ଦେଲେ ରବୀନ୍ଦ୍ରନାଥ, ସାର୍ ଜଗଦୀଶ ଚନ୍ଦ୍ର ଏବଂ ବାଲ ଗଂଗାଧର ପ୍ରମୁଖ ପୁରୁଷ ସିଂହମାନେ ।

ଅଗ୍ନିବର୍ଷୀ 'ଯୁଗାନ୍ତର' ପତ୍ରିକାରେ ନିବେଦିତା, ଅରବିନ୍ଦ, ବାରୀନ୍ଦ୍ର ଓ ବାରିଷ୍ଟର ପ୍ରମଥ ମିତ୍ରଙ୍କ ଭଳି ବପ୍ଳବୀ ନାୟକମାନେ ଲେଖିବାକୁ ଆରମ୍ଭ କଲେ । ସାରା ଦେଶରେ ସଶସ୍ତ୍ର ସ୍ୱାଧୀନତା ବିପ୍ଳବର ନିଆଁ ଜଳିବାକୁ ଲାଗିଲା । ଶ୍ରୀ ଅରବିନ୍ଦ ଯଥା ସମୟରେ ବରୋଦାରୁ କଲିକତାକୁ ଫେରି ଆସିଲେ । ତାଙ୍କ ସହିତ କ୍ୟାପଟେନ୍ ଯତୀନ୍ ବାନାର୍ଜୀ ଏବଂ କଲେଜର ୫୦ଜଣ ବିପ୍ଳବୀ ଛାତ୍ର । ଏମାନଙ୍କୁ ଅରବିନ୍ଦ ନିଜ ହାତରେ ତିଆରି କରିଥିଲେ - ମୃତ୍ୟୁଞ୍ଜୟୀ ଦୁର୍ବାର ତରୁଣ ଦଳ ।

ଭାରତର ସର୍ବତ୍ର ସନ୍ତ୍ରାସବାଦୀମାନଙ୍କର ଗୁପ୍ତ ସଂଗଠନମାନ ଗଢ଼ି ଉଠିଲା । ଅଜସ୍ର ହାତବୋମା ଏବଂ ପିସ୍ତଲମାନ ଗୁପ୍ତ ଅସ୍ତ୍ରାଗାରମାନଙ୍କରେ ପ୍ରସ୍ତୁତ ହେବାକୁ ଲାଗିଲା । ତାପରେ ୧୯୦୨ଠାରୁ ୧୯୧୨ ପର୍ଯ୍ୟନ୍ତ ଦେଶ ତମାମ ଅଗ୍ନି ଉତ୍ସବର ବିରାଟ ପ୍ରସ୍ତୁତି ପର୍ବ ଚାଲିଲା । ନେତୃତ୍ୱ ନେଲେ ବାଲ୍ ଗଂଗାଧର, ଅରବିନ୍ଦ, ବାରିଷ୍ଟର ପ୍ରମଥ ମିତ୍ର ଏବଂ ଭାରତ ବାନ୍ଧବୀ ନିବେଦିତା, ମହାବିପ୍ଳବୀ ଚାପେକାର ଭ୍ରାତୃଦ୍ୱୟ, ହେମଚନ୍ଦ୍ର କାନୁନ୍‌ଗୋ ଏବଂ ସୂର୍ଯ୍ୟ ସେନ୍ । ସମସ୍ତେ ସବୁ ଦିଗରୁ ପ୍ରସ୍ତୁତ । କେବଳ



Digitized by srujanika@gmail.com

ସୁଯୋଗର ଅପେକ୍ଷା । ସେତେବେଳେ ଲର୍ଡ଼କର୍ଜନ ଭାରତର ଶାସକ । ସେ ଅତିଶୟ ଅତ୍ୟାଚାରୀ ଓ ଆତ୍ମଗର୍ବୀ ଥିଲେ । ଭାରତରେ ଅନ୍ୟାୟ, ଅତ୍ୟାଚାର ଏବଂ ପାଶବିକତାର ରାଜ ଚାଲିଥାଏ । ୧୯୦୫ ସାଲ ଜୁଲାଇ ମାସରେ ବିଲାତ ପାର୍ଲାମେଣ୍ଟ ଲର୍ଡ଼ କର୍ଜନଙ୍କର ବଂଗଦେଶକୁ ଦ୍ୱିଖଣ୍ଡିତ କରିବାର ପ୍ରସ୍ତାବ ଅନୁମୋଦନ କଲେ । ତତ୍କାଳୀନ ବଂଗଦେଶରୁ ବିହାର ଏବଂ ଓଡ଼ିଶାକୁ ଅଲଗା କରିଦିଆଗଲା । ଏହି ଘଟଣାକୁ କେନ୍ଦ୍ରକରି ସମଗ୍ର ବଂଗ ଦେଶରେ ଘୋର ଆନ୍ଦୋଳନ ଜାଗି ଉଠିଲା । ଏହାହିଁ ଇତିହାସ ପ୍ରସିଦ୍ଧ ବଂଗଭଂଗ ଆନ୍ଦୋଳନ । ବିପ୍ଳବୀମାନେ ଏହିପରି ଏକ ସୁଯୋଗ ଖୋଜୁଥିଲେ । ତାପରେ ସମଗ୍ର ବଂଗ ଦେଶ (ବିହାର, ଓଡ଼ିଶା ଓ ବଂଗ)ରେ ସନ୍ତ୍ରାସବାଦର ନିଆଁ ଜଳି ଉଠିଲା ।

୧୯୦୫ ସାଲ ଡିସେମ୍ବର ମାସରେ ବନାରସଠାରେ ନିଖିଳ ଭାରତ ଜାତୀୟ କଂଗ୍ରେସର ବୈଠକ ବସିଲା । ଶ୍ରୀଯୁକ୍ତ ଗୋପାଳକୃଷ୍ଣ ଗୋଖଲେ ସେ ଜାତୀୟ ମହାସଭାର ସଭାପତି ହୋଇଥାନ୍ତି । ରବିନ୍ଦ୍ର ନାଥ, ସାର ଜଗଦୀଶ ଚନ୍ଦ୍ର ଏବଂ ନିବେଦିତା କଂଗ୍ରେସର ଏହି ଅଧିବେଶନରେ ଯୋଗଦେଇଥିଲେ । ସେମାନଙ୍କ ଚେଷ୍ଟାରେ କଂଗ୍ରେସ ଉକ୍ତ ବୈଠକରେ ସରକାରଙ୍କର ବଂଗଭଂଗର ତୀବ୍ର ସମାଲୋଚନା କରିଥିଲେ । କିନ୍ତୁ ବଂଗଭଂଗ ହେଲା । ଶାସନର ସୁବିଧା ଦୃଷ୍ଟିରୁ ବିହାର ଏବଂ ଓଡ଼ିଶାକୁ ଅଲଗା କରି ଦିଆଗଲା । ତାହାହିଁ ହେଲା ସଶସ୍ତ୍ର ଗଣ ଆନ୍ଦୋଳନର ମୂଳଭିତ୍ତି ।

କଲିକତାର ଚିଫ୍ ପ୍ରେସିଡେନ୍‌ସି ମାଜିଷ୍ଟ୍ରେଟ୍ କିଙ୍ଗସ୍‌ଫୋର୍ଡ଼ ସାହେବ ଅତିମାତ୍ରାରେ ମଦ୍ୟପ, ସ୍ୱେଚ୍ଛାଚାରୀ ଏବଂ ବେପରବାୟ ଥିଲେ ଏବଂ ସ୍ୱରାଜ ଆନ୍ଦୋଳନକାରୀମାନଙ୍କର ପରମ ଶତ୍ରୁଥିଲେ । କଲିକତାର ଅତ୍ୟାଚାରୀ ଡେପୁଟି ପୁଲିସ୍ କମିଶନର ଖଲିଲ ଅହମ୍ମଦଙ୍କ ମୃତ୍ୟୁ ସନ୍ତ୍ରାସବାଦୀଙ୍କ ଗୁଳିରେ ଘଟିଲା । ତାପରେ ଚାଲିଲା କିଙ୍ଗସ୍‌ଫୋର୍ଡ଼ର ନିର୍ମମ ବ୍ୟାପକ ଅତ୍ୟାଚାର କଲିକତା ବକ୍ଷରେ । ସମଗ୍ର କଲିକତା ତେଜି ଉଠିଲା । 'ଯୁଗାନ୍ତର' ପତ୍ରିକାର ସଂପାଦକ ମହାବିପ୍ଳବୀ ଭୂପେନ୍ଦ୍ର ଦତ୍ତଙ୍କୁ କିଙ୍ଗସ୍‌ଫୋର୍ଡ଼ ସାହେବ ପଦାଘାତ କଲେ । ସବୁ ସମ୍ବାଦପତ୍ରରେ ଘଟଣାର ତୀବ୍ର ପ୍ରତିବାଦ ବାହାରିଲା । ଷ୍ଟେଟସ୍‌ମେନ ରାଟିକ୍ଲିଫ୍ ପ୍ରମୁଖ ଇଂରାଜୀ ପତ୍ରିକାମାନଙ୍କରେ ଇଂରେଜ ସଂପାଦକମାନଙ୍କ ପରମବନ୍ଧୁ କଲିକତା ହାଇକୋର୍ଟର ବାରିଷ୍ଟର କ୍ୟାନାଡି ସାହେବ ମଧ୍ୟ ନିନ୍ଦାରେ ମୁଖର ହୋଇଉଠିଲେ ।

ବିପ୍ଳବୀମାନଙ୍କ କାଉନ୍‌ସିଲ୍‌ରେ କିଙ୍ଗସ୍‌ଫୋର୍ଡ଼ଙ୍କୁ ହତ୍ୟା କରିବାର ସିଦ୍ଧାନ୍ତ ଗୃହୀତ ହେଲା । ମେଦିନୀପୁରର କିଶୋର ବିପ୍ଳବୀ ଖୁଦିରାମ ଏବଂ ପ୍ରଫୁଲ୍ଲ ଚାକି ଅରବିନ୍ଦଙ୍କ ପାଦଛୁଇଁ ଏହି ମାରଣ ଯଜ୍ଞର ହୋତା ଭାବରେ ଶପଥ ଗ୍ରହଣ କଲେ ।



Digitized by srujanika@gmail.com

୧୯୦୫ ସାଲର ବହୁ ପୂର୍ବର କଥା । ପ୍ରାୟ ୧୮୮୦ ଆଡ଼େ ହେବ, ଭୋଗରାଇ ତଥା ଜୟନ୍ତପୁର ଓ ନରସିଂହପୁର ପ୍ରଭୃତି ଗ୍ରାମ ସେ ସମୟରେ ସମୁଦ୍ରର ନିକଟବର୍ତ୍ତୀ ରହିଥିଲା । ସମୁଦ୍ରକୂଳ ବାଲିଆଡ଼ିଆ ଉପରେ ଇଂରେଜ ସାହେବ କେତେଜଣ ତମ୍ବୁ ପକାଇ ରହିଥିଲେ । ସେମାନେ ମଗରମାଛ ସମୁଦ୍ରରୁ ଧରି ସେଥିରୁ ତେଲ ବାହାର କରି (shark lever oil) ବିଦେଶକୁ ପଠାଉଥିଲେ । ଏମାନେ ଥିଲେ ଅତିମାତ୍ରାରେ ମଦ୍ୟପ ଏବଂ ଦୁଷ୍ଟଚରିତ୍ର । ସେମାନଙ୍କ ଅତ୍ୟାଚାରରେ ଆଖପାଖ ଗ୍ରାମର ଝିଅବୋହୂମାନେ ବାହାରକୁ ବାହାରି ପାରୁନଥିଲେ । ଜୟନ୍ତପୁର ଗ୍ରାମ ଉତ୍କଳ-ବଂଗ ସୀମାନ୍ତରେଖା ଉପରେ ଅବସ୍ଥିତ ଥିଲା (ଅଧୁନା କିଶୋରପୁର ବା ଗଣେଶ୍ୱରପୁର ବୋଲି ଜଣାପଡ଼େ) । ଅଦୂରରେ ନରସିଂହପୁର ଆଡ଼ିଆ । ଅରଣ୍ୟ ପରିବୃତ୍ତ ଦୀର୍ଘ ଏକ ବାଲିପାହାଡ଼ । ଅତି ଦୁର୍ଗମ ଓ ନିଘଞ୍ଚ । ଏହି ଜୟନ୍ତପୁର ଗ୍ରାମର ପ୍ରତାପୀ ଜମିଦାର ଶ୍ରୀକାନ୍ତ ଜେନାଙ୍କ ଯୁବତୀ ପୁତ୍ରବଧୂ ସୁରମାଙ୍କ ଉପରେ ଲୋଲୁପ ଦୃଷ୍ଟି ପକାଇ ଦିନେ ୨ଜଣ ସାହେବ ଆକ୍ରମଣ କଲେ । ଏହା ଜାଣିପାରି, ପୁତ୍ର ହରପ୍ରସାଦ ସେମାନଙ୍କୁ ବନ୍ଧୁକରେ ଗୁଳିକରି ହତ୍ୟାକଲେ ଏବଂ ଫେରାର ହୋଇଗଲେ । ମିଥ୍ୟା ବିଚାରରେ ଶ୍ରୀକାନ୍ତ ଜେନାଙ୍କୁ ୨୫ବର୍ଷ କଳାପାଣି ଦଣ୍ଡାଦେଶ ହେଲା । ଦୀର୍ଘ ୨୫ବର୍ଷ ପରେ ବୃଦ୍ଧ ଶ୍ରୀକାନ୍ତ ଘରକୁ ଫେରି ଦେଖନ୍ତି ତ ସମଗ୍ର ଗ୍ରାମ ଓ ଘର ଶ୍ମଶାନରେ ପରିଣତ ହୋଇଛି, ମହାମାରୀ କବଳରେ ପଡ଼ି । କୋଠାବାଡ଼ି ଭାଂଗିରୁଜି ପରିତ୍ୟକ୍ତ ହୋଇପଡ଼ିଛି । ନିଜ କପାଳକୁ ଆଦରି, ବୃଦ୍ଧ ଜମିଦାର ସେହି ଭଂଗାକୋଠା କିଛି ପରିମାଣରେ ମରାମତି କରିନେଇ ରହିଥାଆନ୍ତି । ତାର କିଛିଦିନ ପରେ କାନ୍ଥିର ହେମଚନ୍ଦ୍ର କାନୁନ୍‌ଗୋ ଜୟନ୍ତପୁର ଆସି ଶ୍ରୀକାନ୍ତ ଜେନାଙ୍କୁ ଭେଟି ଗୋପନ ପରାମର୍ଶ କଲେ । ତାର ଅଳ୍ପଦିନ ମଧ୍ୟରେ ନିର୍ଜନ 'ଶ୍ରୀକାନ୍ତ ନିବାସ' ତରୁଣ ବିପ୍ଳବୀମାନଙ୍କର ପ୍ରଶିକ୍ଷଣ ଆଡ୍ଡା ହୋଇଉଠିଲା । କିଶୋର ବିପ୍ଳବୀ ଖୁଦିରାମ ବସୁ ଏହି ଘରେ ରହି ପ୍ରଶିକ୍ଷଣ ଲାଭ କରିଥିଲେ ଏବଂ ମ୍ୟାଲେରିଆ ଜ୍ୱରଗ୍ରସ୍ତ ଅବସ୍ଥାରେ କିଙ୍ଗସ୍‌ଫୋର୍ଡ଼ ସାହେବଙ୍କୁ ହତ୍ୟା କରିବାର ନିର୍ଦ୍ଦେଶ ତାଙ୍କୁ ମିଳିଥିଲା ।

ଇତି ମଧ୍ୟରେ କିଙ୍ଗସ୍‌ଫୋର୍ଡ଼ ସାହେବ କଲିକତାରୁ ମୋଜାଫରପୁରକୁ ବଦଳି ହୋଇ ଯାଇଥିଲେ । ଖୁଦିରାମ ଓ ପ୍ରଫୁଲ୍ଲ ୧୯୦୮ ଏପ୍ରିଲ୍ ମାସ ୩୦ ତାରିଖରେ ଏକ ନୈଶଭୋଜିରୁ ଫେରୁଥିବାବେଳେ କିଙ୍ଗସ୍‌ଫୋର୍ଡ଼ଙ୍କ ଗାଡ଼ି ଉପରକୁ ଲୁଚିରହି ଶକ୍ତିଶାଳୀ ହାତବୋମା ନିକ୍ଷେପ କଲେ । କିନ୍ତୁ ହାୟ, ଭୁଲକ୍ରମେ ଉକ୍ତ ବୋମା କିଙ୍ଗସ୍‌ଫୋର୍ଡ଼ଙ୍କ ବଦଳରେ ଏକ ଇଂରେଜ ରମଣୀ ଏବଂ ତାର ସନ୍ତାନର ପ୍ରାଣ ହରଣ କଲା । ବୋମା



Digitized by srujanika@gmail.com

ବିସ୍ଫୋରଣ ପରେ କିଶୋର ବିପ୍ଳବୀ ଦୁଇଜଣ ଆଉ ପଛକୁ ନ ଅନାଇ ରାତ୍ରିର ନୀରନ୍ଧ୍ର ଅନ୍ଧକାର ମଧ୍ୟରେ ଚାଲିଚାଲି ଦୀର୍ଘପଥ ଅତିକ୍ରମ କଲେ । କିନ୍ତୁ ଅସୁସ୍ଥ ଖୁଦିରାମ ଆଉ ଚାଲି ନପାରି ବିହାରର ଓୟାଇନି ରେଳଷ୍ଟେସନରେ ଗିରଫ ହେଲେ । ପୁଲିସ ହାଜତରେ ଅକଥନୀୟ ଅତ୍ୟାଚାର ସହି ମଧ୍ୟ ଖୁଦିରାମଙ୍କଠାରୁ ବିପ୍ଳବୀଦଳ ବିଷୟରେ କୌଣସି ସମ୍ବାଦ ମିଳିଲା ନାହିଁ । ଅବଶେଷରେ ଶ୍ୱେତାଙ୍ଗ ଆଇ.ସି.ଏସ୍. ଜର୍ଜ କର୍ଣ୍ଣଡଫ୍ ସାହେବଙ୍କ ଇଜଲାସରେ ବିଚାରରେ ବାଳକ ଖୁଦିରାମକୁ ପ୍ରାଣଦଣ୍ଡ ହୁକୁମ ହେଲା । ୧୯୦୮ ସାଲ ଅଗଷ୍ଟ ମାସ ୧୧ ତାରିଖ, ହସିହସି ଖୁଦିରାମ ଫାଶି ଖୁଣ୍ଟରେ ଝୁଲିପଡ଼ିଲେ ବନ୍ଦେ ମାତରମ୍ ଧ୍ୱନି ଉଚ୍ଚାରଣ କରି । ଜେଲ ହାଜତରେ ଏହି ବୀର ସହିଦ ଖୁଦିରାମଙ୍କୁ ଦର୍ଶନ କରିବାପାଇଁ ସ୍ୱୟଂ ଆଚାର୍ଯ୍ୟ ଜଗଦୀଶ ଚନ୍ଦ୍ର ଏବଂ ବିଶ୍ୱକବି ରବୀନ୍ଦ୍ର ନାଥ ଆସିଥିଲେ । ଭାବବିହ୍ୱଳ ବିଶ୍ୱକବିଙ୍କ କଲମରୁ ଝରିପଡ଼ିଲା ଦୁଇଟି ପଙ୍‌କ୍ତି -

ଏସେଛେରେ ସେହିଦିନ୍
ଜୀବନ ମ୍ରିତ୍ୟୁ ପାୟେର ଭ୍ରିତ୍ୟ - ଚିତ୍ତ ଭାବନାହୀନ୍ ।

ଆଉ ପ୍ରଫୁଲ୍ଲ ଚାକି ? ପ୍ରଫୁଲ୍ଲ ଚାଲିଚାଲି ସମସ୍ତିପୁର ପର୍ଯ୍ୟନ୍ତ ଆସିଲେ । ଆଉ ପାଦ ଚାଲିଲା ନାହିଁ । ଭୋକ ଉପାସରେ ସଂଜ୍ଞାହୀନ ହୋଇ ପଡ଼ିଗଲେ । ସମସ୍ତିପୁରର ରାଜଭକ୍ତ ଜମିଦାର କନ୍ୟା ବିପ୍ଳବିନୀ ଲୀଳାବତୀଙ୍କର ସେବା ଶୁଶ୍ରୂଷାରେ କିଛିଦିନ ପରେ ଟିକିଏ ସୁସ୍ଥ ହୋଇ କଲିକତା ଯିବା ଉଦ୍ଦେଶ୍ୟରେ ମୁକାମ୍ମାଘାଟ ରେଳଷ୍ଟେସନରେ କେତେକ ପୁଲିସଙ୍କ କବଳରେ ପଡ଼ି ଉପାୟାନ୍ତର ହୋଇ ନିଜର ରିଭଲଭର ସାହାଯ୍ୟରେ ଆତ୍ମହତ୍ୟା କଲେ । ବିପ୍ଳବୀ ବାଳକ ଖୁଦିରାମ ଓ ତରୁଣ ପ୍ରଫୁଲ୍ଲଙ୍କ ଜୟଗାନରେ ସାରାଦେଶ ମୁଖରିତ ହୋଇଉଠିଲା ।

୧୯୦୩ରୁ ୧୯୦୮ ଯାଏଁ ସର୍ବତ୍ର ବିପ୍ଳବର କ୍ଷେତ୍ର ପ୍ରସ୍ତୁତ ହେଉଥିଲା । ତିଳକ, ଚପେକାର, ଅରବିନ୍ଦ ଓ ନିବେଦିତା, ଦେଶର ତରୁଣ ସଂପ୍ରଦାୟକୁ ଅଭିନବ ଅଗ୍ନିମନ୍ତ୍ରରେ ଦୀକ୍ଷା ଦେବାକୁ ଲାଗିଲେ ।

ବ୍ରିଟିଶ ଶାସକମାନେ ଅତ୍ୟାଚାରର ସୀମା ଲଙ୍ଘନ କଲେ । ଅରବିନ୍ଦଙ୍କ ବନ୍ଦେମାତରମ୍ ପତ୍ରିକା ଲେଖାରେ ଅଗ୍ନିବର୍ଷଣ ହେବାକୁ ଲାଗିଲା । ସେ ତରୁଣମାନଙ୍କ ଉଦ୍ଦେଶ୍ୟରେ ଲେଖିଲେ -

"ଅଗ୍ନିସ୍ନାନ ଏବଂ ରକ୍ତସ୍ନାନ କରି ପବିତ୍ର ହୁଅ । ତାପରେ ଆତ୍ମାହୁତି ପାଇଁ ଯୋଗ୍ୟ ହେବ ।" ରବୀନ୍ଦ୍ରନାଥ ଅଗ୍ନିବର୍ଷୀ ସଂଗୀତ ରଚନା କଲେ - ଦକ୍ଷିନ୍ କରେ



Digitized by srujanika@gmail.com

ଝଲକେ ଖଡ଼୍ଗ, ଲଲାଟ ନେତ୍ରେ ବହ୍ନି ବରନ୍ । ବିରାଟ ଜନସଭାରେ ନିବେଦିତା ଚିତ୍କାର କରି କହିଲେ - ଆହୁରି ଅନ୍ୟାୟ, ଆହୁରି ଅତ୍ୟାଚାର ଲୋଡ଼ା । ତେବେ ଯାଇ ଜାତିର ଅନ୍ତରାତ୍ମା ଜାଗି ଉଠିବ । ଏହା ଐତିହାସିକ ସତ୍ୟ ।

ମୋଜାଫରପୁର ଘଟଣାକୁ କେନ୍ଦ୍ରକରି ପୁଲିସ ଅତ୍ୟାଚାରର ସୀମାଲଙ୍ଘନ କଲା । ଦେଶସାରା ଗିରଫଦାରୀର ସୁଅ ଛୁଟିଲା । ଅରବିନ୍ଦଙ୍କୁ ମଧ୍ୟ ପୁଲିସ୍ ଗିରଫ କଲେ । ତାଙ୍କ ଛଡ଼ା ବାରୀନ୍ଦ୍ର ଘୋଷ, ହେମଚନ୍ଦ୍ର ଦାସ, ନରେନ୍ଦ୍ର ଗୋସ୍ୱାମୀ, ଭୂପେନ୍ଦ୍ର ଦତ୍ତ ଓ କାନାଇଲାଲ ଦତ୍ତ ପ୍ରମୁଖ ଗିରଫ ହେଲେ ।

ଆଲିପୁର ଜେଲର ଗୋଟିଏ ସେଲ୍ ଭିତରେ ଅରବିନ୍ଦଙ୍କୁ ରଖାଯାଇଥାଏ । ହଠାତ୍ ତାଙ୍କର ଅଦ୍ଭୁତ ପରିବର୍ତ୍ତନ ଦେଖାଗଲା । ମଧ୍ୟରାତ୍ରିରେ ଆକାଶମାର୍ଗରୁ ଏକ ବିରାଟ ଜ୍ୟୋତି ଅବତରଣ କରି ଅରବିନ୍ଦଙ୍କ ଦେହ ଭିତରେ ପ୍ରବେଶ କଲା । ଜେଲ ଭିତରେ ଅନେକେ ତାହା ସ୍ୱଚକ୍ଷୁରେ ଦେଖିପାରିଲେ । ତାପରେ ମହାବିପ୍ଳବୀ ଅରବିନ୍ଦଙ୍କ ସ୍ଥାନରେ ଦେଖାଦେଲେ ମହାଯୋଗୀ ଶ୍ରୀ ଅରବିନ୍ଦ ।

ଜେଲଖାନା ଭିତରେ ପୁଲିସର ନାନା ପ୍ରଲୋଭନରେ ପଡ଼ି ବିପ୍ଳବୀ ନରେନ୍ ଗୋସ୍ୱାମୀ ରାଜସାକ୍ଷୀ ପାଲଟିଗଲେ । ତାଙ୍କ ସାହାଯ୍ୟରେ ବାହାରେ ଥିବା ବିପ୍ଳବୀମାନଙ୍କର ସନ୍ଧାନ ପୁଲିସ୍ ଜାଣିପାରିଲେ । ଦଳଦଳ ହୋଇ ସେମାନେ କାରାଗାରକୁ ଗିରଫ ହୋଇ ଆସିବାକୁ ଲାଗିଲେ । ଆସିଲେ - ଚନ୍ଦନନଗର କଲେଜର ଅଧ୍ୟାପକ ଚାରୁଚନ୍ଦ୍ର ରାୟ, କାନ୍ଥିର ହେମଚନ୍ଦ୍ର କାନୁନ୍‌ଗୋ, ଓଡ଼ିଶାର ବିପ୍ଳବୀ ନେତା ରବୀନ୍ଦ୍ର ମହାପାତ୍ର (ବାଲେଶ୍ୱରର ତତ୍‌କାଳୀନ ପୁଲିସ୍ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ରଙ୍କର ପୁତ୍ର) । ସେ କଲିକତାରେ ଏମ୍.ଏ. ପଢୁଥିଲେ । ଗୋରା ସରକାରଙ୍କ ଚାପରେ ଶ୍ରୀକୃଷ୍ଣ ମହାପାତ୍ର ସ୍ୱୟଂ ତାଙ୍କର ପୁତ୍ରକୁ ଗିରଫ କରିବାପାଇଁ କଲିକତା ଯାଇଥିଲେ । ସେ ରବୀନ୍ଦ୍ରଙ୍କ ବସାଘରୁ ବହୁ ଆପତ୍ତିଜନକ କାଗଜପତ୍ର, ହାତବୋମା ପାଇଲେ । ପିସ୍ତଲ ଗୁଳିରେ ତାଙ୍କ ପୁତ୍ର ଆତ୍ମହତ୍ୟା କରିଥିଲେ । ପୁତ୍ରହନ୍ତା ଶ୍ରୀ ମହାପାତ୍ରଙ୍କ କାର୍ଯ୍ୟରେ ଖୁସି ହୋଇ ବ୍ରିଟିଶ ସରକାର ରାୟ ବାହାଦୁର ପଦବୀରେ ତାଙ୍କୁ ଭୂଷିତ କରିଥିଲେ । ସେ କଟକ ଜଗତ୍‌ସିଂହପୁର ଅଞ୍ଚଳର ଲୋକ ଥିଲେ ।

ପରବର୍ତ୍ତୀ ଘଟଣା ପ୍ରବାହ - ଇଂରେଜ ସରକାରଙ୍କର ସୁରକ୍ଷିତ ଜେଲଖାନା ଭିତରେ ତରୁଣ ବିପ୍ଳବୀମାନେ ଅସମ୍ଭବକୁ ସମ୍ଭବ କରିପାରିଲେ । ପୃଥିବୀ ଇତିହାସରେ ତାର ପଟାନ୍ତର ନାହିଁ । ବିଶ୍ୱାସଘାତକ ନରେନ୍ ଗୋସ୍ୱାମୀଙ୍କୁ ଯମାଳୟକୁ ପଠାଇବାର



Digitized by srujanika@gmail.com

ସିଦ୍ଧାନ୍ତ ବିପ୍ଳବୀମାନେ ଗ୍ରହଣ କଲେ । ବିଜ୍ଞାନରେ ସେରା ଡିଗ୍ରୀଧାରୀ ସତ୍ୟେନ ବୋଷ ଯକ୍ଷ୍ମାରୋଗରେ ଆକ୍ରାନ୍ତ ହୋଇ ଦିନ ଗଣୁଥାଆନ୍ତି । ସେ ଏହି ବିଶ୍ୱାସଘାତକ ହତ୍ୟାଯଜ୍ଞର ଦାୟିତ୍ୱ ନେଲେ । ଆଉ ନେଲେ କାନାଇଲାଲ ଦତ୍ତ । ଅନୁଶୀଳନ ସମିତିର ସଭ୍ୟ ଉକ୍ତ ଜେଲର କର୍ମଚାରୀ ଜଣଙ୍କ ଜରିଆରେ ଗୋପନରେ ଠିକ୍ ସମୟରେ ଜେଲ ଭିତରକୁ ଗୁଳିଭର୍ତ୍ତି ରିଭଲଭର ଆସି ପହଞ୍ଚିଲା ।

ରାଜସାକ୍ଷୀ ହେବା ବାହାନାରେ ସତ୍ୟେନ ବୋଷ ଥିବା ସେଲ ଭିତରକୁ ନରେନ୍ ଗୋସ୍ୱାମୀଙ୍କୁ ଅଣାଗଲା ସାକ୍ଷାତ୍କାର ଏବଂ ପରାମର୍ଶ ପାଇଁ । ସେହିଠାରେ ସତ୍ୟେନ ଏବଂ କାନାଇଲାଲ ହଠାତ୍ ଗୁଳି କରି ନରେନ୍ ଗୋସ୍ୱାମୀଙ୍କୁ ରାସ୍ତାର କୁକୁର ପରି ହତ୍ୟା କଲେ ।

ମିଥ୍ୟା ପ୍ରମାଣ ଯୋଗାଡ଼ କରି ବହୁ ଆସାମୀଙ୍କୁ ଦୀର୍ଘକାଳ କାରାଦଣ୍ଡର ଆଦେଶ ହେଲା । ବାରୀନ୍ଦ୍ର ଘୋଷ, ଭୂପେନ ଦତ୍ତ ଏବଂ ଆହୁରି ନଅଜଣ ବିପ୍ଳବୀଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଗଲା । କିନ୍ତୁ ମୁକ୍ତି ପାଇଲେ ଶ୍ରୀ ଅରବିନ୍ଦ । ସେ ଆଉ ବିପ୍ଳବୀ ଅରବିନ୍ଦ ନୁହଁନ୍ତି । ମହାଜ୍ୟୋତିର୍ମୟ ପୁରୁଷ ଋଷି ଅରବିନ୍ଦ ତା'ପରେ ବାହାରେ ଥିବା ଅବଶିଷ୍ଟ ସଂଗ୍ରାମୀମାନଙ୍କୁ ନେଇ ବିପ୍ଳବୀ ଶ୍ରୀ ଶଚିନ୍ଦ୍ର ପାଲ କଲିକତାଠାରେ ଏକ ଗୁପ୍ତ ବୈଠକରେ ବସିଲେ । ଖୁଲନା ଜିଲ୍ଲାର ଜଣେ ଜମିଦାରଙ୍କର ପୁତ୍ର ଚାରୁଚନ୍ଦ୍ର ବସୁ ଉକ୍ତ ବୈଠକରେ ଯୋଗଦେଲେ । ସରକାରୀ ଓକିଲ ଆଶୁତୋଷ ବିଶ୍ୱାସ ଏବଂ ଗୁଇନ୍ଦା ଡି.ଏସ୍.ପି. ସାମୁଏଲ୍ ଆଲାମ ବିପ୍ଳବୀମାନଙ୍କର ବହୁ ଅନିଷ୍ଟ କରିଛନ୍ତି, ସେମାନଙ୍କୁ ମରିବାକୁ ହେବ, ବିଶ୍ୱାସଘାତକମାନଙ୍କୁ ବଞ୍ଚିବାକୁ ଦିଆଯିବ ନାହିଁ, ଏହି ସିଦ୍ଧାନ୍ତ ବୈଠକରେ ନିଆଗଲା । ଚାରୁଚନ୍ଦ୍ର ବସୁ ନନ୍ଦଲାଲ ଛଦ୍ମନାମ ନେଇ କଲିକତାର ସୁବାରବର୍ଣ୍ଣ ପୁଲିସ୍ କୋର୍ଟରେ ଆଶୁତୋଷ ବିଶ୍ୱାସଙ୍କୁ ନିଷ୍ଠୁର ଭାବରେ ହତ୍ୟାକଲେ ଏବଂ ସେହିଠାରେ ଧରାପଡ଼ି ଫାଶୀ ପାଇଲେ । କଲିକତା ହାଇକୋର୍ଟରେ ବିଚାରପତି ହେରିଙ୍ଗଟନ୍ଙ୍କ ଇଜଲାସରେ ବିପ୍ଳବୀ ବୀରେନ୍ଦ୍ର ଦତ୍ତଙ୍କ ଗୁଳିରେ ଗୁଇନ୍ଦା ପୁଲିସ୍ ସାମୁଏଲ୍ ଆଲାମ ପ୍ରାଣ ହରାଇଲେ ।

ଏହିପରି ସମଗ୍ର ବଂଗଦେଶରେ ଗୁପ୍ତ ହତ୍ୟାର ସୁଅ ଛୁଟିଲା । ଅସଂଖ୍ୟ ଅତ୍ୟାଚାରୀ ପୁଲିସ୍ ଅଫିସରଙ୍କୁ ବିପ୍ଳବୀମାନେ ନିର୍ମମ ଭାବରେ ହତ୍ୟାକଲେ । ବିପ୍ଳବୀମାନେ ବହୁ ଡକାୟତି ଏବଂ ଲୁଣ୍ଠନ ମଧ କଲେ । ବହୁ ବିପ୍ଳବୀ ଧରାପଡ଼ି ଫାଶୀଖୁଣ୍ଟରେ ପ୍ରାଣଦେଲେ ବା ଦୀର୍ଘକାଳ ପାଇଁ କାରାଗାରରେ ନିକ୍ଷିପ୍ତ ହେଲେ । ଏ ପ୍ରକାର ବେପରବାୟ ନରହତ୍ୟା ଏବଂ ଲୁଣ୍ଠନ ପାଇଁ ବିପ୍ଳବୀମାନେ କ୍ରମେ ଦେଶବାସୀଙ୍କର ସମ୍ମାନ ଏବଂ ସହାନୁଭୂତି



Digitized by srujanika@gmail.com

ପରିବର୍ତ୍ତେ ଘୃଣାର ପାତ୍ର ହୋଇଉଠିଲେ । ଗୁପ୍ତହତ୍ୟା ଜନମତ ହରାଇଲା । କିନ୍ତୁ ବିପ୍ଳବ ବା ସ୍ୱାଧୀନତାସଂଗ୍ରାମ ଅକ୍ଷୁର୍ଣ୍ଣ ରହିଲା ଜନତା ପ୍ରାଣରେ ।

ରବୀନ୍ଦ୍ରନାଥ ଦିନେ ଏହି ବିପ୍ଳବୀମାନଙ୍କୁ ଲକ୍ଷ୍ୟକରି କହିଥିଲେ - 'ହତ୍ୟାନୁହେଁ, ସତ୍ୟାଗ୍ରହ, ଶକ୍ତିର ଉଦ୍‌ବୋଧନ' । ଦୀର୍ଘଦିନ ପରେ ନିବେଦିତା ସ୍ୱଦେଶରୁ ଫେରି ଆସିଲେ । ତାଙ୍କ କଣ୍ଠରେ ମଧ ହତାଶା ଫୁଟି ଉଠିଲା । ତାଙ୍କ ଭାଷାରେ - ସେମାନେ ପ୍ରଦୀପ ଜାଳି ଆସିଥିଲେ ଘୋର ଅନ୍ଧକାର ଭିତରେ ପଥ ଦେଖାଇବା ପାଇଁ । ସେହି ପ୍ରଦୀପ ଶିଖାରେ ସେମାନେ ଘର ଜଳାଇ ଦେଲେ । ନିବେଦିତାଙ୍କୁ ପାଇ ଅରବିନ୍ଦ ଏବଂ ରବୀନ୍ଦ୍ରନାଥ ଖୁସିହେଲେ । କିନ୍ତୁ ସବୁ ଦେଖି ଶୁଣି ରଣରଂଗିନୀ ତାଙ୍କର ପ୍ରହରଣ ଓହ୍ଲାଇ ରଖିଲେ । ୧୯୧୧ ସାଲରେ ଶ୍ରୀ ଅରବିନ୍ଦ ପଣ୍ଡିଚେରୀ ଚାଲିଗଲେ । ନିବେଦିତା ନିଜକୁ ଏକା ଅତି ଅସହାୟ ମନେକଲେ । ୧୯୧୧ ସାଲ ନଭେମ୍ବର ୧୩ ତାରିଖରେ ଭାରତ ବାନ୍ଧବୀ ନିବେଦିତା ଇହଲୋକ ଛାଡ଼ି ଦିବ୍ୟଲୋକକୁ ଚାଲିଗଲେ ଦାର୍ଜିଲିଂରେ ।

ମୃତ୍ୟୁ ସମୟରେ ସାର ଜଗଦୀଶଙ୍କ ସହ ତାଙ୍କ ଶେଷ କଥା ହୋଇଥିଲା - ଦେଶରେ ସଂଗ୍ରାମର ମୃତ୍ୟୁ ହୋଇନାହିଁ । ଆଗାମୀ ରକ୍ତାକ୍ତ ବିପ୍ଳବ ଆସନ୍ନ ପ୍ରାୟ । ମୋର ପ୍ରିୟ ଭାରତବର୍ଷର ସବୁ ସନ୍ତାନ ସୁଖୀ ହୁଅନ୍ତୁ । ଈଶ୍ୱର ସମସ୍ତଙ୍କର ମଂଗଳ କରନ୍ତୁ ।

**ମହାବିପ୍ଳବୀ ଯତୀନ୍ଦ୍ର ନାଥ :**

ଶ୍ରୀ ଯତୀନ୍ଦ୍ର ନାଥ ମୁଖୋପାଧ୍ୟାୟ ୧୮୭୯ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ, ଆଠ ତାରିଖରେ ଯଶୋହର ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । ସେ ଶୈଶବରୁ ପିତୃହୀନ ହୋଇ ମା'ଙ୍କ ସହ ମାତୁଳାଳୟରେ ଆଶ୍ରୟ ନେଇ ମଣିଷ ହୋଇଥିଲେ । ପିଲାଦିନରୁ ସେ ଶରୀର ଚର୍ଚ୍ଚାରେ ଲିପ୍ତ ରହି ବଳିଷ୍ଠ ସୁନ୍ଦର ସ୍ୱାସ୍ଥ୍ୟ, ଅସୀମ ବଳ ଓ ସାହସର ଅଧିକାରୀ ହୋଇଥିଲେ । ତରୁଣ ବୟସରେ ସେ ଏକ ମଣିଷଖିଆ ବାଘକୁ ଏକାକୀ ମାତ୍ର ଖଣ୍ଡିଏ ଛୁରା ସାହାଯ୍ୟରେ ଲଢ଼ି ହତ୍ୟା କରିବାକୁ ସମର୍ଥ ଥିବାରୁ ତାଙ୍କୁ ସମସ୍ତେ 'ବାଘାଯତୀନ' ବୋଲି ଡାକୁଥିଲେ । ସେହି ନାମରେ ସେ ସାରା ଭାରତରେ ସୁପରିଚିତ । ଏହି ବାଘାଯତୀନ କଲିକତାରେ ଏମ୍.ଏ. ପଢ଼ିବା ସମୟରେ ଶ୍ରୀ ଅରବିନ୍ଦଙ୍କ ସାନ୍ନିଧ ଲାଭ କରିବାର ସୌଭାଗ୍ୟ ତାଙ୍କ ଜୀବନରେ ଘଟିଥିଲା । ଏହି ସୁଯୋଗରେ ୧୯୦୦ରୁ ୧୯୧୫ ଖ୍ରୀଷ୍ଟାବ୍ଦ ମଧରେ ସଂଘଠିତ ଭାରତର ସଶସ୍ତ୍ର ସଂଗ୍ରାମର ମହାନାୟକମାନଙ୍କ ସାହଚର୍ଯ୍ୟରେ ଆସି ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ସନ୍ତ୍ରାସବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ଜୀବନକୁ ଉତ୍ସର୍ଗ କରିଥିଲେ । ତାଙ୍କର ଅମିତ ଶରୀର ଓ ମନୋବଳ,



Digitized by srujanika@gmail.com

ଦୁଃସାହସ କର୍ମନିଷ୍ଠା ବଳରେ, ୧୯୦୮ ଖ୍ରୀଷ୍ଟାବ୍ଦରେ ଶ୍ରୀ ଅରବିନ୍ଦ ଗିରଫ ହୋଇଗଲା ପରେ ଯତୀନ୍ଦ୍ରନାଥ, ଝିନାଇଦହ, ଯଶୋର, କୟା ଓ ନଦିୟା ଜିଲ୍ଲାର ବିଭିନ୍ନ ବିଭିନ୍ନ ସ୍ଥାନରେ ନିଜର ଦଳ ଗଠନ କରିଥିଲେ ଏବଂ କଲିକତାସ୍ଥ ସଶସ୍ତ୍ର ବିପ୍ଳବର ନେତୃତ୍ୱ ଏକ ସମୟରେ ନେବାକୁ ସମର୍ଥ ହୋଇଥିଲେ । ରିଭଲଭରରୁ ଗୁଳି ଚାଳନାରେ ସେ ଅତିଶୟ କ୍ଷିପ୍ରହସ୍ତ ଥିଲେ । ଗୁପ୍ତହତ୍ୟା, ଡକାୟତି ପ୍ରଭୃତି ବିଶୃଙ୍ଖଳ ନୃଶଂସ କାର୍ଯ୍ୟମାନ ବିପ୍ଳବୀମାନଙ୍କ ଦ୍ୱାରା କଲିକତା ବକ୍ଷରେ ବ୍ୟାପକ ଭାବରେ ଅନୁଷ୍ଠିତ ହେବାରୁ କଲିକତାରେ ଗୋପନାଚାରୀ ହୋଇ ରହି କାର୍ଯ୍ୟ କରିବା ତାଙ୍କ ପକ୍ଷରେ ଅସମ୍ଭବ ହେଲା । ସଦା ପୁଲିସର ନଜର ତାଙ୍କର ଉପରେ ରହିଥିଲା । ତେଣୁ ଯତୀନ୍ଦ୍ରନାଥ ୧୯୧୦ ଖ୍ରୀଷ୍ଟାବ୍ଦ ଆଡ଼େ ଢାକାର ଅନୁଶୀଳନ ସମିତିର ନେତା ଶ୍ରୀ ପୂର୍ଣ୍ଣ ଦାସଙ୍କ ପରାମର୍ଶ କ୍ରମେ ଗୋପନରେ ବାଲେଶ୍ୱର ପଳାଇ ଆସି ତାଙ୍କର ଅନ୍ତରଂଗ ମୟୂରଭଞ୍ଜ ଜିଲ୍ଲାର କପ୍ତିପଦା ନିକଟସ୍ଥ ମହୁଲଡିହା ଗ୍ରାମର ଶ୍ରୀ ମନିନ୍ଦ୍ରନାଥ ଚକ୍ରବର୍ତ୍ତୀଙ୍କ ଘରେ ଆଶ୍ରୟ ନେଲେ । ତାଙ୍କ ସହିତ ତାଙ୍କର ଅତି ବିଶ୍ୱସ୍ତ ସଂଗୀ ରୂପେ ରୁଦ୍ର ବିପ୍ଳବୀ ଶ୍ରୀ ଚିତ୍ତପ୍ରିୟ ରାୟ ଚୌଧୁରୀ, ନୀରେନ୍ଦ୍ର ନାଥ ଦାସଗୁପ୍ତ, ମନୋରଂଜନ ସେନଗୁପ୍ତ ଓ ଜ୍ୟୋତିଷ ଚନ୍ଦ୍ର ପାଳ ମଧ୍ୟ ଆସିଥିଲେ । ଯତୀନ୍ଦ୍ର ନାଥଙ୍କର ଯୋଜନା ଥିଲା, ପୂର୍ବ ଚୁକ୍ତି ଅନୁସାରେ ବାଲେଶ୍ୱରର ପୂର୍ବ ଉପକୂଳରେ ଜର୍ମାନୀ ଜାହାଜରୁ ଯୁଦ୍ଧ ସାମଗ୍ରୀ ଗ୍ରହଣ କରି ଦକ୍ଷିଣପଥ ରେଳଲାଇନ୍ ଧ୍ୱଂସ କରି ପୁଣି ବଂଗଳାକୁ ଫେରିଯିବେ । ଏହି ପଞ୍ଚସଖା ସମସ୍ତେ ସଶସ୍ତ୍ର ବିପ୍ଳବର ଜଣେଜଣେ ସୁଦକ୍ଷ ଅଧିନାୟକ ଥିଲେ । ସେମାନଙ୍କ ଦେହ ଓ ମନରେ ଅମିତ ବଳ, ତୀକ୍ଷ୍ଣ ବୁଦ୍ଧି, ଦୁଃସାହସ ଓ ଜୀବନପଣ ସଂକଳ୍ପ ଭରି ରହିଥିଲା । ଆଉ ଥିଲା ଶ୍ୱେତାଙ୍ଗ ସରକାର ବିରୁଦ୍ଧରେ ତୀବ୍ର ଘୃଣା ଏବଂ ଜିଘାଂସା । ପରାଧୀନ ମାତୃଭୂମିକୁ ଶୃଙ୍ଖଳମୁକ୍ତ କରିବାର ଦୁର୍ବାର ଆକାଂକ୍ଷା ସେମାନଙ୍କୁ ପାଗଳ କରି ପକାଉଥାଏ ।

ମହୁଲଡିହା ନିକଟସ୍ଥ ବାଳଡିହା ମଧ୍ୟ ସେମାନଙ୍କର ଗୁପ୍ତ ଆଡ୍ଡା ଥିଲା । ବାଲେଶ୍ୱର ସହରର ମୋତିଗଞ୍ଜ ବଜାରରେ ଗୋଟିଏ ସାଇକେଲ ଦୋକାନରେ ଗୋପନରେ ସେମାନେ ଆଡ୍ଡା ଜମାଇ ବସିଥିଲେ । କଲିକତାର 'ହ୍ୟାରୀ ଏଣ୍ଡ ସନ୍ସ' ପରିଚାଳିତ 'ୟୁନିଭର୍ସାଲ ଏମ୍ପରିଅମ୍' ନାମ ଥିଲା ଏହି ସାଇକେଲ୍ ଦୋକାନୀଟିର । ନଳିନୀ କର, ଓରଫ୍ ଗୋପାଳ ଥିଲେ ଏହି ଦୋକାନ ଦାୟିତ୍ୱରେ ଏବଂ କଲିକତା ଗୁପ୍ତ ଆଡ୍ଡାମାନଙ୍କ ସହ ଏହି ଗୋପାଳ ଥିଲେ ଯୋଗସୂତ୍ର । କିଣା ଓରଫ କିଣାରାମ ଥିଲେ ସାଇକେଲର ମିସ୍ତ୍ରୀ । ଏହି ଏମ୍ପରିଅମ୍ ଜରିଆରେ କଲିକତାରୁ ତାଙ୍କର ଚିଠିପତ୍ର ଓ ଅନ୍ୟାନ୍ୟ ଦ୍ରବ୍ୟର



Digitized by srujanika@gmail.com

ପାର୍ସଲମାନ ତାକ ଯୋଗେ ଆସୁଥିଲା । ଏହି ୟୁନିଭର୍ସାଲ ଏମ୍ପରିଅମ୍‌ର ସାମନା ଭାଗଥିଲା ସାଇକେଲ୍ ଦୋକାନ, ଭିତର ଅଂଶରେ ବିପ୍ଳବୀମାନେ ଗୁଳିଗୋଳା, ପିସ୍ତଲ, ବନ୍ଧୁକ ଓ ଛୁରି ତିଆରି ସହିତ ଶରୀର ଚର୍ଚ୍ଚା ମଧ୍ୟ କରୁଥିଲେ ।

ଦ୍ୱିତୀୟ ବିଶ୍ୱ ମହାଯୁଦ୍ଧ ବେଳେ ରାସବିହାରୀ ବୋଷଙ୍କ ନେତୃତ୍ୱରେ ୧୯୧୫ ଖ୍ରୀଷ୍ଟାବ୍ଦର ଭାରତବ୍ୟାପୀ ମହାବିପ୍ଳବର ଯୋଜନା ବିଶ୍ୱାସଘାତକ ମାନଙ୍କର ଚକ୍ରାନ୍ତ କ୍ରମେ ପ୍ରକାଶ ପାଇଯିବାରୁ ଅସ୍ତ୍ରଶସ୍ତ୍ରପୂର୍ଣ୍ଣ ଜର୍ମାନୀ ଜାହାଜର ଆଗମନ ବିଷୟ ମଧ୍ୟ ପ୍ରକାଶ ପାଇଗଲା ଏବଂ ସେଥିସହ ଯତୀନ୍ଦ୍ରନାଥ ପ୍ରଭୃତିଙ୍କ ଅଜ୍ଞାତବାସ ଏବଂ କଳକୌଶଳର ଇତିବୃତ୍ତ ମଧ୍ୟ ପ୍ରକାଶ ପାଇଗଲା । ଗୋପନ ସୂତ୍ରଧରି, କଲିକତାର ପୁଲିସ୍ କମିଶନର ଚାର୍ଲସ ଟେର୍ଗାଟ ବିପୁଳ ପୁଲିସ ବାହିନୀ ସହ ବାଲେଶ୍ୱରରେ ଉପସ୍ଥିତ ହେଲେ । ୧୯୧୫ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୮ ତାରିଖରେ ବାଲେଶ୍ୱର ମୋତିଗଞ୍ଜ ବଜାରସ୍ଥ ୟୁନିଭର୍ସାଲ ଏମ୍ପରିଅମ୍ ଉପରେ ପ୍ରଥମେ, ଜିଲ୍ଲାପାଳ ମି. କିଲଭି ଓ ଚାନ୍ଦିପୁର ଉପକୂଳର ସାମରିକ ବାଟାଲିଅନର କମାଣ୍ଡର ମି ରାଦାରଫୋର୍ଡ୍ ସହିତ ମିଳିତ ହୋଇ ମି. ଟେର୍ଗାଟ୍ ଚଢ଼ଉ କଲେ । ନଳିନୀ କର ବା କିଣା ମିସ୍ତ୍ରୀ ଦୋକାନରେ ନଥିଲେ । କେତେକ ଆପତ୍ତିଜନକ କାଗଜପତ୍ର ଏବଂ ଆଗ୍ନେୟାସ୍ତ୍ର ତିଆରି କରିବାର ମସଲା ଏବଂ ଯନ୍ତ୍ରାଂଶ ଛଡ଼ା ଆଉ କିଛି ସେମାନେ ପାଇନଥିଲେ । ସେତେବେଳ ବାଘାଯତୀନ ସହ ପଞ୍ଚସଖା ମହୁଲଡିହା ଏବଂ ତାଳଡିହାରେ ଆତ୍ମଗୋପନ କରିଥାଆନ୍ତି । ସାଇକେଲ ଦୋକାନ ତଲାସି ସମ୍ବାଦ ପାଇ ଯତୀନ୍ଦ୍ରନାଥ ମଣୀ ଚକ୍ରବର୍ତ୍ତୀଙ୍କ ଠାରୁ ମାତ୍ର ପଚାଶ ଟଙ୍କା ଧରି ରାତାରାତି ପଦବ୍ରଜରେ ପଳାଇ ଆସି ସହର ଉପକଣ୍ଠରେ ୯ ତାରିଖ ସକାଳେ ପହଞ୍ଚିଲେ । ହାତରେ ସେମାନଙ୍କର ଗୋଟିଏ କରି ସୁଟକେଶ୍ ରହିଥାଏ । ସେଥିରେ ଗୁଳିଗୋଳା ସ୍ୱୟଂକ୍ରିୟ ବନ୍ଧୁକ ଓ ପିସ୍ତଲ ଆଦି ରହିଥିଲା । ସେତେବେଳକୁ ପୁଲିସ୍‌ର ତନାଘନା ଓ ବିଭିନ୍ନ ସ୍ଥାନରେ ଖାନତଲାସୀ ହେତୁ ସାରା ସହରରେ ଚାଞ୍ଚଲ୍ୟ ଖେଳି ଯାଇଥାଏ । ଉପବାସୀ ବିପ୍ଳବୀମାନେ ଏକ ଜଳଖିଆ ଦୋକାନରେ ପହଞ୍ଚିଲା କ୍ଷଣି ତାଙ୍କର ହାବଭାବ ଦେଖି ଲୋକେ ସନ୍ଦେହ କଲେ ଏବଂ ଗଣ୍ଡଗୋଳ ଉପସ୍ଥିତ ହେଲା । ଉପାୟାନ୍ତର ନ ଦେଖି ସେମାନେ ମୁଖ୍ୟ ରାସ୍ତାଧରି ନଯାଇ ପାଣି କାଦୁଅ ଓ ଧାନଗଛ ପୂର୍ଣ୍ଣ ବିଲ ଓ ବଣବୁଦା ମଧ୍ୟଦେଇ ଫୁଲାଡ଼ି ନିକଟସ୍ଥ ବଳଙ୍ଗ ନଦୀ କୂଳରେ ଯାଇ ପହଞ୍ଚିଲେ । ଅଶିଣ ମାସ, ଭରାନଦୀ । ଘାଟରେ ନୌକା ନପାଇ ବିପ୍ଳବୀମାନେ ଏକ ହାତରେ ସୁଟକେଶ୍‌ମାନ ମୁଣ୍ଡରେ ଧରି, ଅନ୍ୟହାତରେ ନଦୀ ପହଁରି ପାରି ହୋଇଗଲେ । ବଂଗଳା ଆଡ଼କୁ କ୍ରମେ ସେମାନେ ପଳାଇବାରେ



Digitized by srujanika@gmail.com

ଲାଗିଥାନ୍ତି । ଉପବାସ ଓ ପରିଶ୍ରାନ୍ତି ହେତୁ ସେମାନେ ଥକି ଯାଇଥିଲେ । ସେଦିନ ସକାଳ ୮ଘଣ୍ଟାରେ ନଦୀ ରାସ୍ତାରେ ଆସି ଦୋମଦୀ ଗ୍ରାମର ଭେଡ଼ିବନ୍ଧ ଉପରେ ପହଞ୍ଚି ଲୋକଚକ୍ଷୁରେ ଜୀବନର ଶେଷଥର ପାଇଁ ସେମାନେ ଦେଖା ଦେଇଥିଲେ ।

ଏଣେ ୯ ତାରିଖ ସକାଳେ, ପୁଲିସ୍ ବାହିନୀ ମହୁଲଡିହା ଓ ତାଳଡିହା ଗ୍ରାମ ଘେରାଉ କରି ଆକ୍ରମଣ କଲେ । ମଣୀ ଚକ୍ରବର୍ତ୍ତୀଙ୍କ ଠାରୁ ଆପତ୍ତିଜନକ କିଛି ମିଳି ନଥିଲା । ତାଙ୍କୁ ନଜରବନ୍ଦୀ ରଖି ପୁଲିସ ବାଲେଶ୍ୱର ଫେରିଆସିଲେ ।

**ଐତିହାସିକ ଚଷାଖଣ୍ଡ ଯୁଦ୍ଧ :**

(ପ୍ରତ୍ୟକ୍ଷଦର୍ଶୀ ଜଣେ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଗଦାଧର ସେନାପତି, ନିଜାମପୁରଙ୍କ ଠାରୁ ପ୍ରାପ୍ତ ବିବରଣୀ)

୧୯୧୫ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୯ ତାରିଖ; ସେଦିନ ସକାଳ ୮/୧୦ଘଣ୍ଟା ସମୟରେ ଦୋମଦା ଅଞ୍ଚଳରେ ଶୁଣାଗଲା ଯେ, ଚାରିପାଞ୍ଚ ଜଣ ବଂଗାଳୀ ଯୁବକ ବଳଙ୍ଗ ନଦୀ ପହଁରି ଭେଡ଼ିବନ୍ଧ ଉପରେ ଆସି ବସିଛନ୍ତି । ଗାଁ ଲୋକେ ଦେଖି ଆସି ସେଠାରେ ଠୁଳ ହେବାରେ ଲାଗିଲେ । କ୍ଷୁଧାର୍ତ୍ତ ଯୁବକମାନେ ଗ୍ରାମର ସୁଦାମ ଗିରି ନାମକ ବ୍ୟକ୍ତିଙ୍କୁ ଚୁଡ଼ା, ମୁଢ଼ି ଆଣିବାପାଇଁ ବରାଦ କରନ୍ତେ, ସେ ଯାଇ ଗାଁ ଚୌକିଦାରଙ୍କୁ ଡାକି ଆଣିଲା । ଚୌକିଦାର ଆସି ସେମାନଙ୍କର ପରିଚୟ ପଚାରନ୍ତେ, ବିପ୍ଳବୀମାନେ ବେଖାତିର କରି ଚୌକିଦାରଙ୍କୁ ତୁଛ ଭାଷା ପ୍ରୟୋଗ କଲେ । ଚୌକିଦାର ସେମାନଙ୍କଠାରେ ବନ୍ଧୁକ ଦେଖି ସେମାନଙ୍କୁ ଡକାୟତ ବୋଲି କହନ୍ତେ, ସେମାନେ ଚୌକିଦାରକୁ ତତ୍‌କ୍ଷଣାତ୍ ଗୁଳିକରି ମାରିଦେଲେ । ତାପରେ ସୁଦାମ ଗିରି ଚୁଡ଼ା ମୁଢ଼ି ପରିବର୍ତ୍ତେ ଚୌକିଦାରକୁ ଡାକି ଆଣିଥିବାରୁ ତାକୁ ମଧ୍ୟ ଗୁଳି କଲେ । ସୌଭାଗ୍ୟକ୍ରମେ ଗୁଳି ସୁଦାମ ଗିରିର ଗୋଡ଼ରେ ବାଜିବାରୁ ସେ ପଳାଇ ବଞ୍ଚିଗଲା । ଗ୍ରାମର ସମସ୍ତେ ଭୟଭୀତ ହୋଇଗଲେ ।

ଏହି ଘଟଣା ପରେ, ଯୁବକମାନେ ସେଠାରୁ ଉଠିଯାଇ ନିଜାମପୁରକୁ ଲାଗି ସାଉପଡ଼ା ଗ୍ରାମର ପୂର୍ବପଟ ଧାନବିଲ ମଧ୍ୟରେ ଥିବା ଏକ ଉଚ୍ଚ ଟିକିରା ମୂଳରେ ଯାଇ ବସିଲେ । ଦିନ ୧୨ଟା ବେଳକୁ ସେମାନେ ସଡ଼କ ଉପରୁ ସ୍ପଷ୍ଟ ଦେଖାଯାଉଥାନ୍ତି । ସଡ଼କ ଉପରୁ ଲୋକେ ତାଙ୍କୁ ଲକ୍ଷ୍ୟ କରୁଥିବାର ଦେଖି ସେମାନେ ବିଲେବିଲେ ରେଳଲାଇନ୍ ଆଡ଼କୁ ଗତି କଲେ । କିଛିକ୍ଷଣ ପରେ ଜଣାଗଲା, ସେମାନେ ଫୁଲାଡ଼ି ଚଟାଣର ଅନତି ଦୂରରେ ଦେଶୁଆଁ ନାମକ ଏକ ଦଳ ପୋଖରୀ ଆଡ଼ିରେ ବସିଛନ୍ତି । ଟେର୍ଗାଟ ସାହେବ ଏତିକିବେଳେ ସଦଳବଳେ ସଡ଼କ ଉପରେ ପହଞ୍ଚିଲେ । ଦେଶୁଆଁ



Digitized by srujanika@gmail.com

ପୋଖରୀ ଆଡ଼ି ସଡ଼କକୁ ବେଶି ଦୂର ହେଲେ ମଧ୍ୟ ଦେଖା ପଡୁଥାଏ । ତରୁଣ ପ୍ରତ୍ୟକ୍ଷଦର୍ଶୀ ଶ୍ରୀ ସେନାପତି ଅଧୀର ହୋଇ ଏକ ତେନ୍ତୁଳି ଗଛ ଉପରକୁ ଚଢ଼ି ସବୁ ଦେଖୁଥାନ୍ତି । କ୍ରମେ ଦିନ ସରିସରି ଆସୁଥାଏ । ପ୍ରାୟ ସୂର୍ଯ୍ୟାସ୍ତ ସମୟ ଆସି ଯାଇଥାଏ । ଧଳାଘୋଡ଼ା ଟଣା ବଗି ଏକ ଫୁଲାଡ଼ି ଚଟାଣ ପର୍ଯ୍ୟନ୍ତ ଯିବାର ଦେଖାଗଲା । ତା'ପରେ ସାୟଂକାଳର କ୍ଷୀଣ ଅନ୍ଧକାର ମଧ୍ୟରେ ନିରେଖି ଚାହିଁ ଜଣାଗଲା, ବାଜି ଫଟକା ଫାଟିଲା ଭଳି ଆଲୁଅ ଏବଂ ଘନଘନ ଫୁଟ୍‌ଫୁଟ୍ ଶବ୍ଦ । ତାହା ଉଭୟ ପକ୍ଷ ମଧ୍ୟରେ ବନ୍ଧୁକ ଓ ପିସ୍ତଲର ଗୁଳି ବିନିମୟ ଜନିତ ଆଲୋକ ଏବଂ ଶବ୍ଦ ଥିଲା କ୍ରମେ ଆଗେଇଯିବାରେ ଜଣାଗଲା, ଏକ ପକ୍ଷରେ ଯତୀନ ବାବୁଙ୍କର ପଞ୍ଚସଖା, ଅନ୍ୟ ପକ୍ଷରେ ଟେର୍ଗାଟ, କିଲ୍‌ଭି ଓ ରାଦାରଫୋର୍ଡ଼ ପରିଚାଳିତ ବିପୁଳ ସୈନ୍ୟବାହିନୀ । ଭୟଙ୍କର ରକ୍ତାକ୍ତ ସଂଘର୍ଷ । କରୁଣ ଆର୍ତ୍ତନାଦ ମଧ୍ୟ କାନରେ ବାଜୁଥିଲା । ଦୁର୍ଦ୍ଧର୍ଷ ପଞ୍ଚସଖା ନଛୋଡ଼ବନ୍ଧା । ପୁଲିସ ବାହିନୀ ନାକେଦମ୍ । ହଠାତ୍ ପ୍ରବୀଣ ଟେଗାର୍ଟଙ୍କ ମନକୁ ଏକ କୌଶଳ ଦେଖାଗଲା । ସେ ବେଣାଗଛ କିଛି କାଟି, ବିଡ଼ା ବାନ୍ଧି, ତା' ଉପରେ ନିଜର ଟୋପି ଟଙ୍ଗାଇ ଛିଡ଼ା କରିଦେଲେ ତାଙ୍କ ସୈନ୍ୟବାହିନୀ ସାମନାରେ । ନିଜେ ଧାନବିଲ ହିଡ଼ କଡ଼େକଡ଼େ ସନ୍ତର୍ପଣରେ ଆଣ୍ଠେଇ ଆଣ୍ଠେଇ ବିପ୍ଳବୀମାନଙ୍କ ପଛପଟକୁ ଯାଇ ବାରମ୍ବାର ଗୁଳି ଚଳାଇଲେ । ବିପ୍ଳବୀମାନଙ୍କର ମଧ୍ୟରୁ ଜଣେ ଟଳିପଡ଼ି ତଳେ ପଡ଼ିଗଲେ । ସେ ଥିଲେ ଚିତ୍ତପ୍ରିୟ । ଅନ୍ୟ ଦୁଇଜଣ ଗୁରୁତର ଭାବେ ଆହତ ହୋଇ ପଡ଼ିବାର ଦେଖାଗଲା । ସେମାନେ ହେଲେ ଯତୀନ୍ଦ୍ରନାଥ ଓ ଜ୍ୟୋତିଷ । ଜ୍ୟୋତିଷ ମୁଣ୍ଡରେ ଗୁରୁତର ଆଘାତ ପାଇଥିଲେ । ଦୁଇଦିନ ଧରି ଅନାହାର, ଅକ୍ଳାନ୍ତ ପରିଶ୍ରମ ଓ ଯୁଦ୍ଧ କରିକରି ସେମାନେ ସମସ୍ତେ ଅଧୀର ଓ ନିସ୍ତେଜ ହୋଇପଡ଼ିଥାନ୍ତି । ଅଳ୍ପ ଆହତ ଅନ୍ୟ ଦୁଇଜଣ ନୀରେନ୍ ଓ ମନୋରଂଜନ, ଯତୀନ୍ଦ୍ର ନାଥଙ୍କ ନିର୍ଦ୍ଦେଶରେ ହାତଟେକି ଆତ୍ମସମର୍ପଣ କରିବାର ଦେଖାଗଲା । ବନ୍ଧୁକ ଓ ପିସ୍ତଲରୁ ଗୁଳି ସରିଯିବାରୁ ସେମାନେ ଆତ୍ମସମର୍ପଣ କରିଥିଲେ ।

ଯୁଦ୍ଧ କ୍ଷେତ୍ରରେ କ୍ରମଶଃ ଗ୍ରାମବାସୀମାନେ ସେଠାରେ ଗୁଣ୍ଡ ହେବାକୁ ଲାଗିଲେ । ଜଣେ ଦୟାଳୁ ଗ୍ରାମବାସୀ, ବିପ୍ଳବୀମାନଙ୍କର ଅସହାୟ ସଂକଟାପନ୍ନ ଅବସ୍ଥା ଦେଖି କିଛି କ୍ଷୀର ଅଣାଇ ଦିଅନ୍ତେ, ବାଘାଯତୀନ ଦଳ ସେମାନଙ୍କୁ ଦୁଷମନ୍ ଓ ଦେଶଦ୍ରୋହୀ କହି ରାଗରେ ଗାଳି ଦେଲେ ଏବଂ କ୍ଷୀରତକ ଫୋପାଡ଼ି ଦେଲେ । କି ଉତ୍କଟ ଓ ଅପୂର୍ବ ଦେଶପ୍ରେମର ବହ୍ନି ସେମାନଙ୍କର ହୃଦୟରେ ଜଳୁଥିଲା ? ଜୀବନଦୀପ ଲିଭିବା ଅବସ୍ଥାରେ ବି କ୍ଷୀର ଟିକିଏ ପିଇବାକୁ ମଧ୍ୟ ସେମାନେ ନାରାଜ ଥିଲେ ।

× × ×



Digitized by srujanika@gmail.com

ଉଭୟ ପଟର ହତାହତ ସମସ୍ତଙ୍କୁ ଖଟିଆରେ ପକାଇ ବାରବାଟି ଡାକ୍ତରଖାନାକୁ ପୁଲିସ୍ ବୋହି ନେଇ ଯାଇଥିଲେ ଚିକିତ୍ସା ପାଇଁ । ପୁଲିସ୍ ପକ୍ଷରୁ ବହୁ ସୈନ୍ୟ ମୃତାହତ ହୋଇଥିଲେ । ଏହି ରକ୍ତାକ୍ତ ରଣାଙ୍ଗନର ନାମଥିଲା 'ଚଷାଖଣ୍ଡ' । ଘଟଣାକ୍ରମେ ଏହି ଚଷାଖଣ୍ଡ ଆଜି ରକ୍ତତୀର୍ଥରେ ପରିଣତ ହୋଇଛି ଭାରତର ସ୍ୱାଧୀନତାସଂଗ୍ରାମର ଇତିହାସରେ । ବହ୍ନିମାନ ଚଷାଖଣ୍ଡ ପଛକୁ ଇରମ୍, ତୁଡ଼ିଗଡ଼ିଆ, ଲୁଣିଆ ଓ ଲକ୍ଷ୍ମଣନାଥ ପ୍ରଚୁର ପରିମାଣରେ ଶୀତଳରକ୍ତ ବୁହାଇ ସମଗ୍ର ବାଲେଶ୍ୱରକୁ ରକ୍ତତୀର୍ଥରେ ପରିଣତ କରିଛି ।

୯ ତାରିଖ ରାତ୍ରି ଶେଷଭାଗରେ ଯତୀନ୍ଦ୍ରନାଥ ଆପଣାର ଗଭୀର କ୍ଷତ ସ୍ଥାନମାନଙ୍କରୁ ବେଣ୍ଡେଜ କନାମାନ ହଠାତ୍ ଛିଣ୍ଡାଇ ଫୋପାଡ଼ି ଦେଲେ । ଶରୀରରୁ ପ୍ରଚୁର ରକ୍ତକ୍ଷରଣ ଫଳରେ ତାଙ୍କର ମୃତ୍ୟୁ ଘଟିଲା । ସେ ସ୍ୱେଚ୍ଛାରେ ତାଙ୍କର ପ୍ରାଣ ତ୍ୟାଗକଲେ, ମୁହଁରେ 'ବନ୍ଦେ ମାତରମ୍' ଚିତ୍କାର କରୁକରୁ ।

ଇଂରେଜ ସରକାର ତାଙ୍କ ହାତତିଆରି ଫାଶୀଖୁଣ୍ଟରେ ଏହି ଅହଂକାରୀ, ସ୍ୱଦେଶପ୍ରାଣ ରୁଦ୍ର ବିପ୍ଳବୀଙ୍କୁ ଝୁଲାଇ ମାରିବାର ସୁଯୋଗ ପାଇଲେ ନାହିଁ । ପରଦିନ ସକାଳେ ମି.ଟେଗାର୍ଟ ଯତୀନ୍ଦ୍ରନାଥଙ୍କ ଉଗ୍ର ସ୍ୱଦେଶପ୍ରେମ ଓ ଦୁଃସାହସିକ ମୃତ୍ୟୁ ଦେଖି ବିଚଳିତ ହୋଇଗଲେ ଏବଂ ତାଙ୍କର ମରଦେହ ପାଖକୁ ସମ୍ଭ୍ରମରେ ଘୁଞ୍ଚିଆସି ମୁଣ୍ଡରୁ ଟୋପି ଖୋଲି ତାଙ୍କୁ ସେଲୁଟ୍ କରି ଗଭୀର ସମ୍ମାନ ପ୍ରଦର୍ଶନ କରିଥିଲେ ।

କେତେମାସ ପରେ ଯୁଗାନ୍ତକାରୀ ଏହି ବିପ୍ଳବୀମାନଙ୍କର ମକଦ୍ଦମା ଲଢ଼ିବାକୁ ବାଲେଶ୍ୱର କୋର୍ଟର ଓକିଲମାନଙ୍କ ମଧ୍ୟରେ ଦ୍ୱିମତ ଦେଖାଦେଲା । ଓଡ଼ିଆ ଓକିଲମାନେ ସରକାରଙ୍କର କାଳେ ଅପ୍ରିୟ ହୋଇ କୋପ ଦୃଷ୍ଟିରେ ପଡ଼ିବେ, ଏହି ଭୟରେ କରଛଡ଼ା ଦେଲେ । ସେ ସମୟର ତେଜସ୍ୱୀ ଉଦୀୟମାନ ଓକିଲ ଶ୍ରୀଯୁକ୍ତ ନରେନ୍ଦ୍ର ନାଥ ସରକାର ଏବଂ ଶ୍ରୀଯୁକ୍ତ ଉପେନ୍ଦ୍ର ନାଥ ଘୋଷ ମକଦ୍ଦମା ଲଢ଼ିବାକୁ ସାହସର ସହ ଆଗେଇ ଆସିଥିଲେ । ବିପ୍ଳବୀମାନଙ୍କର ବିଚାର ବେଳେ କ୍ରମେ ଯତୀନ୍ଦ୍ରନାଥ ଏବଂ ତାଙ୍କର ସାଥୀମାନଙ୍କର ତଥା ବନ୍ଦେ ମାତରମ୍ ଦଳର ସନ୍ତ୍ରାସବାଦୀ କାର୍ଯ୍ୟକଳାପମାନ ସାଧାରଣରେ ପ୍ରକାଶିତ ହେଲା ।

ବିଚାରରେ ମନୋରଞ୍ଜନ ଓ ନୀରେନ୍‌ଙ୍କୁ ଫାଶୀର ହୁକୁମ ହେଲା । ସେହିବର୍ଷ ଡିସେମ୍ବର ମାସ ୩ ତାରିଖରେ ବାଲେଶ୍ୱର ଜେଲ ମଧ୍ୟରେ ସେମାନଙ୍କୁ ଫାଶୀଖୁଣ୍ଟରେ ଝୁଲାଇ ଦିଆଗଲା । ମସ୍ତିଷ୍କରେ ଆଘାତ ପାଇ ଜ୍ୟୋତିଷ ପାଲ ଜେଲଖାନାରେ ପାଗଳ



Digitized by srujanika@gmail.com

ହୋଇ ଯାଇଥାନ୍ତି । ତାଙ୍କୁ ବଂଗଳାର ବରହମପୁର ପାଗଳଖାନାକୁ ସ୍ଥାନାନ୍ତରିତ କରାଗଲା । ସେଠାରେ ସେ ୧୯୨୪ ମସିହା ଡିସେମ୍ବର ମାସ ୬ ତାରିଖରେ ପ୍ରାଣତ୍ୟାଗ କଲେ ।

ଏହିପରି ବାଘାଯତୀନ ପରିଚାଳିତ ବୀର୍ଯ୍ୟବାନ୍ ବିପ୍ଳବ ଯୁଗର ଅବସାନ ଘଟିଲା, ସମସ୍ତଙ୍କର ଅଲକ୍ଷ୍ୟରେ ଏବଂ ଅନାଦରରେ ।

× × ×

ଏହିପରି ବହୁ ଅଶ୍ରୁ, ବହୁ ତ୍ୟାଗ, ବହୁ ରକ୍ତଦେଇ ଯେଉଁ ବିପ୍ଳବର କ୍ଷେତ୍ର ପ୍ରସ୍ତୁତ ହୋଇଥିଲା, ତାହା ସମଗ୍ର ପୃଥିବୀ ଇତିହାସରେ ଅତୁଳନୀୟ ।

ଭାରତ ଇତିହାସରେ ଯେପରି ବହୁ ବୀର ସାଧକ ଓ ମନୀଷୀମାନଙ୍କର ସାହସ, ଶୌର୍ଯ୍ୟ, ଆତ୍ମତ୍ୟାଗ ଓ ଦେଶପ୍ରେମର ଉଲ୍ଲେଖ ରହିଛି, ସେପରି କାଳେକାଳେ ବହୁ ଦେଶଦ୍ରୋହୀ ବିଶ୍ୱାସଘାତମାନଙ୍କର ଅସୂଚୀ, କ୍ଲେଦାକ୍ତ କାହାଣୀ ମଧ୍ୟ ରହିଛି ।

୧୯୧୪ ସାଲରେ ସାରା ବିଶ୍ୱର ଅନ୍ତର କମ୍ପାଇ ପ୍ରଥମ ବିଶ୍ୱଯୁଦ୍ଧର ଦୁନ୍ଦୁଭି ବାଜି ଉଠିଲା । ପାଶ୍ଚାତ୍ୟର ରଣଦେବତା ଜର୍ମାନୀର କାଇନଲ ପୃଥିବୀ ବକ୍ଷରୁ ସିଂହ ଲାଞ୍ଛିତ ବ୍ରିଟିଶ ପତାକାକୁ ନିଶ୍ଚିହ୍ନ କରିଦେବାକୁ ଶପଥ ନେଇ ଆଗେଇ ଆସିଲେ । ଇଂରେଜ ଜାତିର ହୃତ୍‌କମ୍ପ ହେଲା । ତାହାହିଁ ହେଲା ଭାରତୀୟ ନେତାମାନଙ୍କର ସୁବର୍ଣ୍ଣ ସୁଯୋଗ । ୧୯୪୭ ସାଲ, ସ୍ୱାଧୀନତାପ୍ରାପ୍ତିର ବହୁବର୍ଷ ପୂର୍ବରୁ ୧୯୧୫ ସାଲ ଫେବୃଆରୀ ୨୫ ତାରିଖରେ ଦେଶବ୍ୟାପୀ ଯେଉଁ ମହାସଶସ୍ତ୍ର ବିପ୍ଳବର ଯୋଜନା ଓ ଆୟୋଜନ କରାଯାଇଥିଲା, ତାହା ସଂଗଠିତ ହୋଇ ପାରିଥିଲେ ମୁଷ୍ଟିମେୟ ଇଂରେଜ ଭାରତ ମାଟିରୁ ଏକାବେଳକେ ନିଶ୍ଚିହ୍ନ ହୋଇଯାଇଥାନ୍ତେ । ଆଜିପରି ଏଇ ପବିତ୍ର ଦେଶ ବିକଳାଙ୍ଗ ବା ଦ୍ୱିଖଣ୍ଡିତ ହୋଇନଥାନ୍ତା ।

ନୀଚମତି ଅର୍ଥଲୋଭୀ ସର୍ଦ୍ଦାର କୃପାଳ ସିଂହଙ୍କର ହୀନଚକ୍ରାନ୍ତ ଯୋଗୁଁ ସବୁ ମସୁଧା ବିଫଳ ହୋଇଗଲା । କିନ୍ତୁ ବିଶ୍ୱାସଘାତକ କୃପାଳ ସିଂହ ରକ୍ଷା ପାଇ ନଥିଲା । ବେଇମାନି କରି ସେ ବା କ'ଣ ପାଇଲା ? ପ୍ରାଣଭୟରେ ଦେଶତମାମ ଛଦ୍ମବେଶରେ ସାରା ଜୀବନ ଆତ୍ମରକ୍ଷା କରି ବୁଲିଲା । ଶେଷରେ ଦୀର୍ଘ ୨୫ବର୍ଷ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥିବା ସମୟରେ ଅବନତ ବୃଦ୍ଧ ବୟସରେ ବିପ୍ଳବୀ ସର୍ଦ୍ଦାର ହରନାମ ସିଂହଙ୍କର ଗୁଳିରେ ପ୍ରକାଶ୍ୟ ଦିଲ୍ଲୀ ରାଜପଥରେ କୃପାଳ ସିଂହଙ୍କ ଜୀବନ ଦୀପ ଲିଭିଗଲା ।

୧୯୧୫ ମସିହାରେ ସଶସ୍ତ୍ର ବିପ୍ଳବର ଯୋଜନା ଯେ କେତେ ବ୍ୟାପକ ଓ ସୁଚିନ୍ତିତ ଥିଲା, ବର୍ଣ୍ଣନା କରି ହେବନି । ପିଙ୍ଗଲେ, କର୍ତ୍ତାର ସିଂହ, ଜଗତ ସିଂହ, କେଦାର



Digitized by srujanika@gmail.com

ସିଂହ, ମୋହନ ସିଂହ ପ୍ରଭୃତି ଦୁର୍ଦ୍ଧର୍ଷ ବିପ୍ଳବୀମାନେ ସେ ଗୁପ୍ତ ଯୋଜନା ପ୍ରସ୍ତୁତ କରିଥିଲେ । ସେମାନଙ୍କର ନେତା ଥିଲେ ମହାନାୟକ ରାସବିହାରୀ ବୋଷ, ବର୍ଲିନରେ ରାଜା ମହେନ୍ଦ୍ର ପ୍ରତାପ, ଅଜିତ ସିଂହ ସୁଫି ଆମ୍ବାପ୍ରସାଦ ପ୍ରମୁଖ ମହାନ ଦେଶପ୍ରେମୀମାନେ ସେମାନଙ୍କ ସହ ଗୋପନରେ ସଂଯୋଗ ସ୍ଥାପନ କଲେ । ଜର୍ମାନ ସରକାରଠାରୁ ଭାରତର ସ୍ୱାଧୀନତା ପାଇଁ ସର୍ବପ୍ରକାର ସାହାଯ୍ୟର ପ୍ରତିଶ୍ରୁତି ଏମାନେ ପାଇଥିଲେ । ପ୍ରଚୁର ଅସ୍ତ୍ରଶସ୍ତ୍ର ଧରି ଜର୍ମାନ ସାହାଯ୍ୟରେ ସେମାନେ ତୁରସ୍କ ଓ କାବୁଲ ଦେଇ ଭାରତ ଅଭିମୁଖେ ଯାତ୍ରା କଲେ । ପଞ୍ଜାବର ଅନ୍ୟତମ ବୀର ସନ୍ତାନ କର୍ତ୍ତାର ସିଂହଙ୍କ ନେତୃତ୍ୱରେ ତିନିହଜାର ଉତ୍ସାହୀ ଭାରତୀୟ ଯୁବକ ପ୍ରଚୁର ଅର୍ଥ ଓ ଅସ୍ତ୍ରଶସ୍ତ୍ର ନେଇ ଆମେରିକାରୁ ସ୍ୱଦେଶ ଅଭିମୁଖେ ଯାତ୍ରା କରିଥାନ୍ତି । ଏହା ଏକଦିନର କଥା ନୁହେଁ । ୧୯୧୧ ଠାରୁ ୧୫ ସାଲ ଯାଏ ଏହି ପ୍ରସ୍ତୁତି ପର୍ବ ଚାଲିଥିଲା ।

ସାରାଦେଶର ବିପ୍ଳବର ପୁରୋଧା ରାସବିହାରୀ ବୋଷ ବ୍ରିଟିଶ ସରକାରଙ୍କ ଜଣେ ବିଶ୍ୱସ୍ତ ଏବଂ ଅନୁଗତ କର୍ମଚାରୀ ଥିଲେ । ଅଭୁତ ପ୍ରତିଭା ଏବଂ ଶକ୍ତିର ଅଧିକାରୀ ଥିଲେ ସେ । ଦେଶର ସବୁ ଭାଷାରେ ସେ ସୁପଣ୍ଡିତ ଥିଲେ । ଇଂରାଜୀ ଉଚ୍ଚାରଣ ତାଙ୍କର ଇଂରେଜମାନଙ୍କ ପରି ଥିଲା । ସେ ଥିଲେ ଜଣେ ଅସାଧାରଣ ଅଭିନେତା ଏବଂ ବେହେଲା ବାଦକ । ଭାଇସରୟଙ୍କର ମିଲିଟାରୀ ସେକ୍ରେଟାରୀଙ୍କ ଗୃହଶିକ୍ଷକ ଥିଲେ ସେ । ସାହେବ ତାଙ୍କୁ ବିଶ୍ୱାସ କରୁଥିଲେ । ଅଭିନେତା ରାସବିହାରୀଙ୍କ ମୁଖ୍ୟ ବିପ୍ଳବୀମାନଙ୍କର କ୍ରିୟାକଳାପ ଉପରେ ଘୃଣାରେ ବିକୃତ ହୋଇ ଉଠୁଥାଏ । ବିପ୍ଳବୀମାନଙ୍କ ଉପରେ ଆହୁରି ଅତ୍ୟାଚାର କରିବାପାଇଁ ସେ ସଦାସର୍ବଦା ସରକାରଙ୍କୁ ମତାଉଥିଲେ । ଏହିପରି ଅଭିନୟ କରି ସରକାରଙ୍କ ସବୁ କର୍ମଚାରୀମାନଙ୍କର ବିଶ୍ୱାସଭାଜନ ହୋଇପାରିଥିଲେ । ଜଣେ ସୁଦକ୍ଷ ଅଭିନେତା ଭାବରେ ଜୀବନ ରଂଗମଞ୍ଚରେ ବହୁ ଭୂମିକାରେ ସେ ଅଭିନୟ କରୁଥିଲେ ସୁଦ୍ଧା ତାଙ୍କର ଅନ୍ତରର ଅନ୍ତଃସ୍ଥଳରେ ସେ ଥିଲେ ଏକାନ୍ତ ଦେଶପ୍ରେମୀ ଏବଂ ସନ୍ତ୍ରାସବାଦୀ ସଶସ୍ତ୍ର ବିପ୍ଳବର ମହାନାୟକ । ପରବର୍ତ୍ତୀ କାଳରେ ନିଜକୁ ଲୁଚାଇ ରଖିବା ପାଇଁ ବହୁ ଛଦ୍ମବେଶରେ ବହୁ ସ୍ଥାନରେ ବୁଲିଛନ୍ତି ।

୧୯୧୨ ସାଲ ଡିସେମ୍ବର ମାସ, ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀ ସ୍ଥାନାନ୍ତରିତ ହେଲା । ଲର୍ଡ଼ ହାର୍ଡ଼ିଞ୍ଜ ଭାରତର ଶାସନ ଦାୟିତ୍ୱ ନୂଆକରି ଗ୍ରହଣ କରିଥାନ୍ତି । ଡିସେମ୍ବର ୨୩ତାରିଖରେ ରାଜଧାନୀ ଦିଲ୍ଲୀ ସହରରେ ତାଙ୍କର ଅଭିଷେକ ଉତ୍ସବ ପାଳନ ପାଇଁ ଲକ୍ଷଲୋକର ବର୍ଣ୍ଣାଢ୍ୟ ଏକ ବିରାଟ ଶୋଭାଯାତ୍ରା ବାହାରିଥାଏ । ଭାଇସରୟ



Digitized by srujanika@gmail.com

ଦମ୍ପତି ଆଲୋକ ତୋରଣ ଓ ୟୁନିୟନଜ୍ୟାକର ମାଳା ମଧ୍ୟ ଦେଇ ବିଶାଳ ସୁସଜ୍ଜିତ ହାତୀ ଉପରେ ଆରୂଢ଼ ହୋଇ ଶୋଭାଯାତ୍ରା ମଧ୍ୟରେ ଶୋଭା ପାଉଥାନ୍ତି । ଶୋଭାଯାତ୍ରା ଖୁସି ମନରେ ଆଗେଇ ଚାଲିଥାଏ । ସେ ଥିଲା ବିରାଟ ସୌନ୍ଦର୍ଯ୍ୟ ଏବଂ ରଂଗର ଏକ ପ୍ରବାହ ସଦୃଶ । ଦୂରରୁ ଶୋଭାଯାତ୍ରାର ଶବ୍ଦ ତରଙ୍ଗ ସମୁଦ୍ର ଗର୍ଜନ ପରି ଶୁଭୁଥାଏ । ଲର୍ଡ଼ ହାଡ଼ିଞ୍ଜଙ୍କ ହାତୀ ଆଗେଇ ଆସିବାରୁ ସମସ୍ତୀପୁର ଜମିଦାର ଧରମବୀର ସିଂହଙ୍କର ଅଲିଅଳି ଝିଅ ଦୁର୍ଦ୍ଧର୍ଷ ବିପ୍ଳବିନୀ ଲୀଳାବତୀ ଏବଂ ଅସୀମ ସାହସୀ ବିପ୍ଳବୀ ସର୍ଦ୍ଦାର କୃପାଳ ସିଂ, ପ୍ରତ୍ୟେକେ ଗୋଟିଏ ଗୋଟିଏ କରି ଶକ୍ତିଶାଳୀ ଆଲୁମିନିୟମ୍ ବୋମା ହାତୀକୁ ଲକ୍ଷ୍ୟକରି ଜନତା ମଧ୍ୟରୁ ହଠାତ୍ ନିକ୍ଷେପ କଲେ । ପ୍ରଚଣ୍ଡ ବିସ୍ଫୋରଣରେ ରାଜପଥ କମ୍ପି ଉଠିଲା । ଧୂଆଁରେ ଚାରିଆଡ଼େ ଅନ୍ଧକାର ଘୋଟିଗଲା । ସର୍ବତ୍ର ଚରମ ବିଶୃଙ୍ଖଳା, ଆର୍ତ୍ତନାଦ ଏବଂ ମୃତ୍ୟୁ ଯନ୍ତ୍ରଣା ଲକ୍ଷ୍ୟ କରାଗଲା । ବଡ଼ଲାଟ ଦମ୍ପତି ପ୍ରଚଣ୍ଡ ଆଘାତରେ ଗୁରୁତର ଆହତ ହୋଇ ମୂର୍ଚ୍ଛାଗଲେ । ଭୀତତ୍ରସ୍ତ ମତ୍ତହସ୍ତୀମାନଙ୍କର ପାଦ ତଳେ ଦଳି ଚକଟି ବହୁତ ଲୋକ ମଲେ । ସେ ଏକ ଅଲୌକିକ ଏବଂ ବିସ୍ମୟକର ଐତିହାସିକ ଘଟଣା ଥିଲା ସମଗ୍ର ପୃଥିବୀରେ । ବ୍ରିଟିଶ ରାଜଶକ୍ତି ଉପରେ ସନ୍ତ୍ରାସବାଦୀ ବିପ୍ଳବୀମାନଙ୍କର ଏହାଥିଲା ସର୍ବଶେଷ ଆକ୍ରମଣ । ଏ ଦାରୁଣ ସମ୍ବାଦ ପୃଥିବୀ ତମାମ ଚହଳ ପକାଇ ଦେଲା । ଗୋରା ଶାସକ ସଂପ୍ରଦାୟ ନିଦାରୁଣ ବିକ୍ଷୋଭରେ ଫାଟି ପଡ଼ିଲେ । ଏହି ସନ୍ତ୍ରାସବାଦୀ ଯୋଦ୍ଧା ଦୁଇଜଣ ଥିଲେ, ରାସବିହାରୀଙ୍କର ଏକାନ୍ତ ଶିଷ୍ୟା ଏବଂ ଶିଷ୍ୟ । ଏହି ଦୁର୍ଘଟଣାରେ କିନ୍ତୁ ସବୁଠାରୁ ଅଧିକ ବିସ୍ମୟ ଓ ବିକ୍ଷୋଭ ପ୍ରକାଶ କଲେ ସ୍ୱୟଂ ରାସବିହାରୀ, ଭାରତର ତତ୍କାଳୀନ ରାଜନୀତିକ ମଞ୍ଚର ସୁଦକ୍ଷ ଅଭିନେତା । ସାରା ଦେଶରେ କର୍ତ୍ତବ୍ୟକର୍ମୀ ପୁଲିସ୍ ଅଫିସରମାନେ ଏ ଷଡ଼ଯନ୍ତ୍ରର ରହସ୍ୟ ଉଦ୍‌ଘାଟନ କରିବାକୁ ଲାଗି ପଡ଼ିଲେ । ପରିଶେଷରେ ଯାହା ଜଣାପଡ଼ିଲା, ତାହା ଯେପରି ପରମାଶ୍ଚର୍ଯ୍ୟ, ସେହିପରି ଅବିଶ୍ୱାସ୍ୟ । ରାଜଭକ୍ତ ରାସବିହାରୀ ବୋଷ ଏହି ମହାଯଜ୍ଞର ପୁରୋଧା ।

ନିମିଷକେ ରାସବିହାରୀ ଅନ୍ତର୍ଦ୍ଧାନ ହୋଇଗଲେ । ଲକ୍ଷଲକ୍ଷ ଟଙ୍କା ପୁରସ୍କାର ଘୋଷଣା କରାଗଲା ବିପ୍ଳବୀମାନଙ୍କ ସଂପର୍କରେ ଜାଣିବାପାଇଁ । କିନ୍ତୁ କି ଦୁର୍ଭାଗ୍ୟ, ଏହି ବିପୁଳ ଅର୍ଥଲୋଭରେ ସ୍ୱୟଂ କୃପାଳ ସିଂହ ଓ ଦଳର ଆଉ କେତେକ ବିଶ୍ୱାସଘାତକ ଧୀରେଧୀରେ ଆଗେଇ ଆସିଲେ । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର ରକ୍ତକ୍ଷୟୀ ସ୍ୱାଧୀନତା ସଂଗ୍ରାମ ଇତିହାସରେ ସେ ଏକ ଘୃଣ୍ୟ ନାରକୀୟ ଅଧ୍ୟାୟ । ସେଥିପାଇଁ ଦେଶବାସୀଙ୍କୁ କେତେ ରକ୍ତ, କେତେ ଅଶ୍ରୁକୁହିତ ଲୋଭର ମହାସୁଲ ଭାବରେ ଦେବାକୁ ପଡ଼ିଛି ।



Digitized by srujanika@gmail.com

ବଡ଼ଲାଟ ଏବଂ ତାଙ୍କ ସ୍ତ୍ରୀ କିଛିଦିନ ପରେ ଅବଶ୍ୟ ଆରୋଗ୍ୟ ଲାଭକଲେ । କିନ୍ତୁ କାହାନ୍ତି ରାସବିହାରୀ ?

ଦୁଇବର୍ଷ ଧରି ଦେହଛପା ଦେଇ ବହୁରୂପୀ ସାଜି ରାସବିହାରୀ ଦେଶତମାମ ବୁଲି ସମସ୍ତ ଗୁପ୍ତ ସଶସ୍ତ୍ର ଆଡ୍ଡା ସହ ସଂଯୋଗ ସ୍ଥାପନ କରିବାରେ ବ୍ୟସ୍ତ ହୋଇପଡ଼ିଲେ । ଠିକଣାବେଳେ ୧୯୧୪ ସାଲରେ ପ୍ରଥମ ବିଶ୍ୱଯୁଦ୍ଧର ରଣଦୁନ୍ଦୁଭି ପୁଣି ବାଜି ଉଠିଲା । ଦୁର୍ବାର ଜର୍ମାନୀର ସେନାମାନେ ବିଶ୍ୱର ମାନଚିତ୍ରରୁ ନାଲିରଂଗ ସଂପୂର୍ଣ୍ଣ ପୋଛି ପକାଇବାର ଶପଥ ନେଲେ ଏବଂ ଆଗେଇ ଆସିଲେ । ଘର ସମ୍ଭାଳିବା ସକାଶେ ଇଂରେଜମାନେ ବ୍ୟସ୍ତ ରହିଲେ । ଭାରତରେ ବିପ୍ଳବୀମାନଙ୍କ ଉପରେ କଟକଣା କ୍ରମେ କୋହଳ ହୋଇଆସିଲା । ଏ ସୁବର୍ଣ୍ଣ ସୁଯୋଗ ହରାଇଲେ ଚଳିବ ନାହିଁ । ଚରମ ବିପଦବେଳେ ଭାରତୀୟ ସୈନ୍ୟବାହିନୀ ଇଂରେଜମାନଙ୍କ ୀ ସାହାଭରସା । ସେହିମାନଙ୍କୁ ଏହି ବିପ୍ଳବର ଅଗ୍ରଦୂତ କରିପାରିଲେ ବିପ୍ଳବ ସାର୍ଥକ ହେବ । ମହାନାୟକ ପିଙ୍ଗଲେ, ଦିଲ୍ଲୀର ସିଂହ, ପ୍ରିୟନାଥ ଓ ରାସବିହାରୀ ଦୃଢ଼ ଆଶା ପୋଷଣ କଲେ । କେବଳ ମୃତ୍ୟୁଞ୍ଜୟୀ କେତେ ସହସ୍ର ତରୁଣମାନଙ୍କୁ ନେଇ ଏତେବଡ଼ ମୁକ୍ତିସଂଗ୍ରାମ ଚଳାଇ ହେବନାହିଁ । ସେଥିପାଇଁ ଯେଉଁ ପ୍ରଚୁର ଅସ୍ତ୍ରଶସ୍ତ୍ର ଲୋଡ଼ା ତା' କେବଳ ସୈନ୍ୟବାହିନୀ ନିକଟରେ ରହିଛି । ସେ କାରଣରୁ ଭାରତୀୟ ସୈନ୍ୟବାହିନୀର ସହଯୋଗ ଅପରିହାର୍ଯ୍ୟ । ବର୍ଲିନ ଛଡ଼ା ବ୍ରହ୍ମଦେଶ ଓ ସିଙ୍ଗାପୁର ବାଟେ ଜାପାନରୁ ଅସ୍ତ୍ରଶସ୍ତ୍ର ଆମଦାନୀ କରାହୋଇଛି । କିନ୍ତୁ ଆହୁରି ଅସ୍ତ୍ରଶସ୍ତ୍ର ଦରକାର । ଏହା ହେବ ଦ୍ୱିତୀୟ ସିପାହୀ ବିଦ୍ରୋହ ।

ବିପ୍ଳବୀ ସେନାବାହିନୀ ଏବଂ ନିଜସ୍ୱ ପତାକା ବାହିନୀର ପୋଷାକ ସବୁ ପ୍ରସ୍ତୁତ ହେବାକୁ ଲାଗିଲା । ଲକ୍ଷଲକ୍ଷ ପ୍ରଚାରପତ୍ର ଏବଂ ପାମ୍ପଲେଟ ମଧ ଛପା ହୋଇ ରହିଲା, ସେନାବାହିନୀକୁ ମାତୃଭୂମିର ଆହ୍ୱାନ ଜଣାଇବାକୁ ହେବ ।

ଏହ୍ଲାବାଦ କ୍ୟାଣ୍ଟନମେଣ୍ଟର ଦାୟିତ୍ୱ ନେଲେ ଦାମୋଦର ସ୍ୱରୂପ । ରାମନଗର ସିଂହ କ୍ରୋଳର ଭାର ନେଲେ ବିଶ୍ୱନାଥ ପାଣ୍ଡେ ଆଉ ମଙ୍ଗଳ ପାଣ୍ଡେ ଏବଂ ଦିଲ୍ଲୀର ସିଂହ ଆଦି ଅଦ୍ଭୁତ କର୍ମୀ ଦୁଃସାହସୀ ତରୁଣମାନେ । ଜବଲପୁରର ଦାୟିତ୍ୱ ନେଲେ ଅଧ୍ୟାପକ ନଳିନୀ ମୁଖାର୍ଜୀ । କର୍ତ୍ତାର ସିଂହ ଏବଂ ପିଙ୍ଗଲେ ଭାର ନେଲେ ଫିରୋଜପୁର, ଅମ୍ବାଲା, ରାଓଲପିଣ୍ଡି ଓ ମିରଟ କ୍ୟାଣ୍ଟନମେଣ୍ଟର । ଇଂରେଜ ସେନାବାହିନୀ ପୋଷାକ ପିନ୍ଧି ସେମାନେ ସୈନ୍ୟ ଛାଉଣିରେ ନିର୍ଭୟରେ ବୁଲିବାକୁ ଲାଗିଲେ । ସେଣ୍ଟ୍ରାଲ କମାଣ୍ଡ ହେଡକ୍ୱାଟର ହେଲା ଲାହୋରରେ । ସେଠାରେ ଦାୟିତ୍ୱରେ ରହିଲେ ବିନାୟକ ରାଓ କାପ୍ଲାର । ରାସବିହାରୀ ବିରାଟ ଏକ ସାନ୍ତାଳ ବାହିନୀ ସଂଗଠିତ କଲେ ଏବଂ ଢାକାର



Digitized by srujanika@gmail.com

ଶିଖ୍‌ବାହିନୀକୁ ବିପ୍ଲବର ମନ୍ତ୍ର ଦାନକଲେ । ବର୍ମା, ସିଙ୍ଗାପୁର ଏବଂ ମାଳୟଠାରେ ଅବସ୍ଥିତ ଭାରତୀୟ ବାହିନୀ ମଧ୍ୟ ଏ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ସ୍ୱୀକୃତି ଜଣାଇଲେ । ଲଗ୍ନ ଧାର୍ଯ୍ୟ ହେଲା, ୧୯୧୫ ସାଲର ଫେବୃଆରୀ ୨୧ ତାରିଖ ରାତ୍ରି ୧୨ଟା । Zeero hour for action ଠିକ୍ ସମୟରେ ନିଆଁ ଜଳି ଉଠିବ । ସମଗ୍ର ଦେଶରେ ସବୁ ଇଂରେଜମାନଙ୍କୁ ବନ୍ଦୀ କରାହେବ । ଥାନା, କଚେରି, ଲାଟ ଭବନ ଏବଂ ବଡ଼ଲାଟ ଭବନ ଏକାବେଳକେ ଆକ୍ରମଣ କରିବାକୁ ହେବ । ପ୍ରୟୋଜନ ହେଲେ ରକ୍ତ ଦେବାକୁ ବା ନେବାକୁ କେହି ପଛାଇବେ ନାହିଁ ।

ଏହି ମହାଲଗ୍ନ ଆସନ୍ନ ବେଳେ କୃପାଳ ସିଂହ ଦଳର ବିଶ୍ୱାସଘାତକତା ଚରମ ଆଘାତ କଲା । ଏ ଗୋପନ ମହାଷଡ଼୍ୟନ୍ତ୍ରର ସମସ୍ତ କଥା ସେ ସରକାରଙ୍କୁ ଜଣାଇଦେଲେ । ତାର ପରବର୍ତ୍ତୀ ଘଟଣାବଳୀ, ଏ ମହାଜାତିର ଇତିହାସରେ ଅତୀବ ଲଜ୍ଜାକର ଏବଂ କ୍ଳେଦାକ୍ତ । ପ୍ରତିଶୋଧର ରକ୍ତବନ୍ୟା ଭାରତବକ୍ଷରେ ବହିଗଲା । ହଜାର ହଜାର ଭାରତୀୟ ସୈନ୍ୟଙ୍କୁ ଗିରଫ କରାଗଲା ଏବଂ ସେମାନେ ଫାୟାରିଂ ସ୍କ୍ୱାଡ୍ ଦ୍ୱାରା ନିହତ ହେଲେ । ବିପ୍ଲବର ହେଡକ୍ୱାଟର ଲାହୋର ସହରକୁ ଇଂରେଜ ସେନାପତି ମାଇକେଲ ଏବଂ ଡାୟାର ଅବରୋଧ କଲେ । ବିପୁଳ ପରିମାଣ ଅସ୍ତ୍ରଶସ୍ତ୍ରମାନ ଜବତ ହେଲା । ହଜାର ହଜାର ନରନାରୀ ଗିରଫ ହେଲେ । ଇଂରେଜ ସୈନ୍ୟମାନେ ସ୍ତ୍ରୀ ଲୋକଙ୍କ ଉପରେ ବର୍ବରୋଚିତ ଅତ୍ୟାଚାର ଚଳାଇଲେ । ସାରା ଭାରତରେ ନିପୀଡ଼ନ ଓ ନିର୍ଯାତନାର ସୁଅ ଛୁଟିଲା । ହଜାର ହଜାର ବିପ୍ଲବୀ ଗିରଫ ହେଲେ । କିନ୍ତୁ ଇଂରେଜମାନେ ମହାନାୟକ ପିଙ୍ଗଲେ ଆଉ ରାସବିହାରୀଙ୍କୁ ଖୋଜି ପାଇଲେ ନାହିଁ ।

ରାସବିହାରୀଙ୍କୁ ମୃତ ବା ଜୀବିତ ଧରି ଆଣିବାପାଇଁ ପୁରସ୍କାରର ଅଙ୍କ କ୍ରମାଗତ ବଢ଼ି ଚାଲିଲା । ଶୁଭାନୁଧ୍ୟାୟୀମାନେ ଦେଶ ତ୍ୟାଗକରି ରାସବିହାରୀଙ୍କୁ ଚାଲିଯିବାକୁ ଅନୁରୋଧ କଲେ । ୧୯୧୫ ସାଲ ମେ' ମାସ ୧୨ ତାରିଖରେ ଏହି ମହାନାୟକ ତାଙ୍କର ଅତି ପ୍ରିୟ ପବିତ୍ର ମାତୃଭୂମି ଭାରତବର୍ଷକୁ ଛାଡ଼ି ଛଦ୍ମବେଶରେ ଚିରଦିନ ପାଇଁ ଜାପାନ ଚାଲିଗଲେ । ଏହିଠାରେ ଭାରତରେ ରକ୍ତାକ୍ତ ସଶସ୍ତ୍ର ବିପ୍ଲବର ଯବନିକା ପଡ଼ିନାହିଁ । ଜାପାନ ଯାଇ ପ୍ରବାସୀ ଭାରତୀୟମାନଙ୍କୁ ସଂଗଠିତ କରି ସେ ଆଜାଦ୍‌ହିନ୍ଦ୍ ଫୌଜର ଜନ୍ମଦାନ କଲେ । ଭାରତର ସ୍ୱାଧୀନତା ପାଇଁ ସମୂହ ଗଣ ସଂଗ୍ରାମ ସାଂଗକୁ ଏହି ଆଜାଦ୍ ହିନ୍ଦ୍ ଫୌଜର ଦିଲ୍ଲୀ ଚଲ୍ଲୋ ଧ୍ୱନି ଯେ କେତେଦୂର ସାହାଯ୍ୟ କରିପାରିଛି, ତାହା ଆଜି ଏ ଜାତି ମର୍ମେମର୍ମେ ଜାଣିଛନ୍ତି । ପରବର୍ତ୍ତୀ କାଳରେ, ଜାତିର ଅମର ସେନାପତି ନେତାଜୀ ସୁଭାଷ ଚନ୍ଦ୍ର ଏହି ଆଜାଦ୍ ହିନ୍ଦ୍ ଫୌଜର ନେତୃତ୍ୱ ନେଇଥିଲେ ।



Digitized by srujanika@gmail.com

ଆଜାଦ୍ ହିନ୍ଦ୍ ଫୌଜର ମାର୍ଚ୍ଚିଂ ସଂଗୀତ ଥିଲା -

କଦମ୍ କଦମ୍ ବଢ଼ାୟେ ଯା'-
ଖୁସି କେ ଗୀତ ଗାୟେ ଯା',
ଏ ଜିନ୍ଦେଗୀ ହେ ପ୍ୟାର କି
ତୁ ପ୍ୟାର ପେ ଲୁଟାଏ ଯା ।
କଦମ୍ କଦମ୍....

ଚଲୋ ଦିଲ୍ଲୀ ପୁକାର କେ
କୌମୀ ନୀଶାଣ ସମାଲକେ,
ଲାଲକିଲ୍ଲେ ତୋ' ଗାଡ଼କେ,
ଲହରାୟେ ଯା' 'ଲହରାୟେ ଯା' ।
କଦମ୍ କଦମ୍...

ସୁଭାଷ ହାମାରା ହାଜୀ ହାୟ,
ରାସବିହାରୀ ସାଥୀ ହେ,
ଫିର କୈସା ଖତରା ବାକି ହେ,
ହୁକୁମତ୍ ହାମରା ସାଥୀ ହେ ।
କଦମ୍ କଦମ୍....

ଆଜାଦ୍ ହିନ୍ଦ୍ ଜିନ୍ଦାବାଦ୍
ଜୟହିନ୍ଦ୍ ।





Digitized by srujanika@gmail.com

# ଗାନ୍ଧିଯୁଗ

ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷଭାଗରେ ଶ୍ରୀ ମୋହନ ଦାସ କରମଚାନ୍ଦ ଗାନ୍ଧି ଦକ୍ଷିଣ ଆଫ୍ରିକାରୁ ଫେରି ଭାରତୀୟ ଜାତୀୟ କଂଗ୍ରେସରେ ପ୍ରବେଶ କଲେ । ତାଙ୍କରି ନେତୃତ୍ୱରେ କଂଗ୍ରେସ ମୁକ୍ତିକାମୀ ଭାରତର କୋଟିକୋଟି ସନ୍ତାନସନ୍ତତି ମାନଙ୍କର ସାହା ଭରସାର ଆଧାର ହୋଇଉଠିଲା । ମୁକ୍ତିର ମନ୍ତ୍ର ସତ୍ୟ, ଅହିଂସା ଓ ଅସହଯୋଗର ଦୀକ୍ଷା ଭାରତବାସୀ ନୂତନ ଭାବେ ଗ୍ରହଣ କଲେ । ବନ୍ଦେ ମାତରମ୍, ଭାରତ ମାତାକି ଜୟଧ୍ୱନିରେ ଭାରତର ଗଗନ ପବନ, ପାହାଡ଼ ପର୍ବତ ଓ ଜଳରାଶି ପ୍ରତିଧ୍ୱନିତ ହେବାକୁ ଲାଗିଲା । ସର୍ବପ୍ରଥମେ ଉତ୍କଳମଣି ଓ ମହତାବ୍‌ଜୀ, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ, ଡାକ୍ତର ଅଟଳବିହାରୀ ପ୍ରଭୃତି ନେତାମାନେ ଆମ ଉତ୍କଳଖଣ୍ଡରେ ଏହି ମୁକ୍ତି ଓ ଅହିଂସା ମନ୍ତ୍ରରେ ଦୀକ୍ଷିତ ହେଲେ । କିନ୍ତୁ ସେ ସମୟରେ ଯାତାୟତର ବିଶେଷ ସୁବିଧା ନଥିବାରୁ ଦକ୍ଷିଣ ପଟୁ ଭୋଗରାଇ ଅଞ୍ଚଳକୁ ସଂଗ୍ରାମର ସ୍ରୋତ ସେତେ ଜୋର ପ୍ରବେଶ କରିପାରି ନଥିଲା । କିନ୍ତୁ ଅହିଂସା ଆନ୍ଦୋଳନର ଅନ୍ୟତମ ନେତା ବଂଗଳାର କଳାକ୍ଷଣ୍ଡ ଶ୍ରୀ ବୀରେନ୍ ସାସମଲ୍, ଅଦୂର ମେଦିନୀପୁର ଜିଲ୍ଲାରେ ଗ୍ରାମେଗ୍ରାମେ ବୁଲି ବିପ୍ଳବର ସୂତ୍ରପାତ କଲେ । ତା'ର ପ୍ରଭାବ ଖର ବେଗରେ ଭୋଗରାଇ ମାଟିରେ ସଂଚରିତ ହେଲା ଏବଂ ଭୋଗରାଇର ସମସ୍ତଙ୍କୁ ଉଦ୍‌ବେଳିତ କରି ପକାଇଲା । ତଥାପି ଉପଯୁକ୍ତ ସ୍ଥାନୀୟ ନେତୃତ୍ୱ ଅଭାବରୁ ଭୋଗରାଇବାସୀ ୧୯୨୧ ମସିହାର ଆଇନ୍ ଅମାନ୍ୟ, ସ୍ୱଦେଶୀ ଆନ୍ଦୋଳନରେ ସିଧାସଳଖ ଅଂଶଗ୍ରହଣ କରିପାରି ନଥିଲେ । କିନ୍ତୁ ଦୁଇ ରାଜ୍ୟ ମଝିରେ ଥାଇ ଭୋଗରାଇର ଜନତା ପ୍ରାଣରେ ବିପ୍ଳବର କ୍ଷେତ୍ର ପୂର୍ଣ୍ଣ ପ୍ରସ୍ତୁତି ଲାଭକରି ସ୍ୱାଧୀନତାର ବୀଜବପନକୁ ଅଧୀର ଆଗ୍ରହରେ ଅପେକ୍ଷା କରି ରହିଥିଲା । ସ୍ୱଦେଶୀ ଆନ୍ଦୋଳନର ଅର୍ଥ, ବିଦେଶୀ ବର୍ଜନ ଓ ପ୍ରଚଳିତ ଆଇନ୍ ଅମାନ୍ୟ ଏବଂ ଅସହଯୋଗ ଆନ୍ଦୋଳନ । ଜାତୀୟ କଂଗ୍ରେସ ଭାରତବାସୀଙ୍କୁ ନିଜ ହାତ ତିଆରି ଜିନିଷ ଛଡ଼ା ବିଦେଶୀ ଦ୍ରବ୍ୟ ବ୍ୟବହାର କରିବାକୁ ମନା କରିଦେଲେ । ଖଜଣା ଟିକସ ସରକାରଙ୍କୁ ଦିଆଯିବ ନାହିଁ, ଏଭଳି ଦୃଢ଼ ସଂକଳ୍ପ ଘୋଷଣାରେ ସରକାର ପାଗଳ ପ୍ରାୟ ହୋଇଉଠିଲେ ଏବଂ ଆନ୍ଦୋଳନକାରୀଙ୍କ ଉପରେ ନାନାବିଧ ବର୍ବର ଅତ୍ୟାଚାର ଆରମ୍ଭ କଲେ । ଫଳରେ



Digitized by srujanika@gmail.com

ତୀବ୍ର ପ୍ରତିବାଦ ସଭା ଓ ଶୋଭାଯାତ୍ରା ଭାରତର ଗ୍ରାମେଗ୍ରାମେ ଆରମ୍ଭ ହେଲା । ଏଥିରେ ହଜାର ହଜାର ଯୁବକ ସ୍କୁଲ କଲେଜ ଛାଡ଼ି ସ୍ୱେଚ୍ଛାସେବୀ ହୋଇ ଆନ୍ଦୋଳନରେ ଝାସ ଦେଲେ । ପୁଲିସର ଦମନଲୀଳା ବରଂ ଆନ୍ଦୋଳକୁ ଅଧିକ ଅଗ୍ରସର କରିବାରେ ସାହାଯ୍ୟ କରିବାର ଦେଖାଦେଲା । 'ଖାଅ ଭାତ ମୁଠି, ଘର ଢିଙ୍କି କୁଟା, ପିନ୍ଧ ଲୁଗା ଖଣ୍ଡି ହାତ କଟା ସୂତା' । ହାତରେ ତକଲି ଓ ଅରଟ ଘରେଘରେ ପ୍ରବଳ ବେଗରେ ଘୂରିଚାଲିଲା । ମୁହଁରେ 'ବନ୍ଦେମାତରମ୍', 'ମହାତ୍ମାଗାନ୍ଧି କି ଜୟ' ନାରା । ସମାଜରେ ଦୁର୍ବଳ ଶ୍ରେଣୀର ଉନ୍ନତି, ନାରୀ ଜାଗରଣ, ଅସ୍ପୃଶ୍ୟତା ଦୂରୀକରଣ ଆଦି ସତ୍ୟାଗ୍ରହର ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ କଂଗ୍ରେସ ସାରା ଭାରତର ହୃଦୟରେ ଆପଣାର ସ୍ଥାନ କରିନେବାକୁ ସକ୍ଷମ ହୋଇଉଠିଲା ।

ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସଭାପତିତ୍ୱରେ ୧୯୨୯ ମସିହା ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବ କଂଗ୍ରେସ ଗ୍ରହଣ କଲା । ଭାରତର ପୂର୍ଣ୍ଣ ସ୍ୱାଧୀନତା ହିଁ କଂଗ୍ରେସର ଲକ୍ଷ୍ୟ ବୋଲି କଂଗ୍ରେସ ଘୋଷଣା କଲା । ୧୯୩୦-୩୧ ଏବଂ ୧୯୩୨-୩୪ରେ ସବିନୟ ଆଇନ ଅମାନ୍ୟ ଆନ୍ଦୋଳନ କଂଗ୍ରେସ ଆରମ୍ଭ କଲା । ୧୯୩୩-୩୪ରେ ଜବାବହାରଲାଲଙ୍କ ନେତୃତ୍ୱରେ କଂଗ୍ରେସର ରାଷ୍ଟ୍ରୀୟ ବିଚାରଧାରା ଉପରେ ସମାଜବାଦ ପ୍ରଭାବ ବିସ୍ତାର କଲା । ସେହିବର୍ଷ ଗାନ୍ଧିଜୀ ଜେଲଖାନାରୁ ଫେରି ହରିଜନ ମୁକ୍ତିପାଇଁ ସାରା ଦେଶ ଗସ୍ତ ଆରମ୍ଭ କଲେ । ଦେଶର ଜାତୀୟତାବାଦୀ ଆନ୍ଦୋଳନ ସହ କୋଟିକୋଟି ଦଳିତ ଓ ଶୋଷିତ ଶ୍ରେଣୀକୁ ସମ୍ପୃକ୍ତ କରାଗଲା ।

୧୯୨୨ରେ ବାଲେଶ୍ୱରର କଂଗ୍ରେସ ନେତାମାନେ ସର୍ବପ୍ରଥମେ ଭୋଗରାଇ ମାଟିରେ ପଦାର୍ପଣ କଲେ । ୧୯୨୨ରୁ ୧୯୩୪ଯାଏ ମହତାବ ବାବୁ, ନୀଳାମ୍ବର ବାବୁ, କରୁଣାକର ବାବୁ, ରାଣୀ ସୁଭଦ୍ରାଦେବୀ, ସର୍ଦ୍ଦାର ସୁରେନ୍ଦ୍ର, ରବିବାବୁ ଏବଂ ଗୌରବାବୁ ପ୍ରମୁଖ ଯୁବ ସତ୍ୟାଗ୍ରହୀମାନେ ବିପ୍ଳବର ମଶାଲ ଧରି ଭୋଗରାଇର ଘରେଘରେ ବୁଲି ଚାଲିଲେ । ପ୍ରଥମେ ଗ୍ରାମର ଓ ସ୍କୁଲର କିଶୋର ବାଳକମାନଙ୍କୁ ସେମାନେ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ କଲେ । ଏମାନଙ୍କ ଅର୍ଦ୍ଧାବୃତ ତ୍ୟାଗପୁତ ବଦନରୁ ସତେ ଯେପରି ଦେଶପ୍ରେମର ଆଲୋକ ସହସ୍ରଧାରାରେ ବିଚ୍ଛୁରିତ ହୋଇ ଶତସହସ୍ର ପ୍ରାଣକୁ ଆଲୋକିତ କରି ପକାଉଥାଏ । କିଶୋର ବୟସର ବାଳକମାନେ ବାନରସେନା ଗଠନ କରି ଗାନ୍ଧିଟୋପି ପିନ୍ଧି ଦଳଦଳ ହୋଇ ଗାଁ ଗାଁ ବୁଲି ପ୍ରଚାର କଲେ । ମିଲ୍ ଲୁଗା, ମୋଟା ତେଲ ଓ କାଚ ଦ୍ରବ୍ୟ ଆଦି ବିଦେଶୀ ଜିନିଷ ବୋଲି ଧରାଯାଉଥାଏ । ସେତେବେଳେ ବାନରସେନାମାନଙ୍କର କିଶୋର କୋମଳ ମୁଖରୁ କରୁଣ ସ୍ୱରରେ ସ୍ୱଦେଶୀ ଗୀତର ମୂର୍ଚ୍ଛନା କୋଟି ହୃଦୟକୁ କାଉଁରୀକାଠି ଭଳି ଛୁଇଁ ଯାଉଥିଲା ।



Digitized by srujanika@gmail.com

"ଭଉଣୀ ଗୋ ମାତା ଖୁଡ଼ୀ.... ନ ପିନ୍ଧ ଏ କାଚ ଚୁଡ଼ି
....... ନ ପିନ୍ଧ ବିଲାତି ଶାଢ଼ି ।
କାନ୍ଦି କହେ ବୁଢ଼ା ଗାନ୍ଧି.... ତୁମଲାଗି ମୁଁ ହେଲି ବନ୍ଦୀ
କାଟ ସୂତା ଯନ୍ତ କରି.... ଭଉଣୀ ଗୋ ମାତା ଖୁଡ଼ୀ ।"

ଏହି ଗୀତ ଶୁଣି, ମାଆ ଖୁଡ଼ୀମାନେ କାନ୍ଦିକାନ୍ଦି ବାନରସେନାମାନଙ୍କୁ କୋଳକରି ପକାଉଥିଲେ । ହାତର କାଚ ନିଜେ ଭାଂଗି ପକାଉଥିଲେ । ମିଲ୍ ଶାଢ଼ି ପିଙ୍ଗି ଦେଉଥିଲେ । ଗାନ୍ଧି ପିଲାମାନେ ସେ ସବୁକୁ ଗୋଟେଇ ନେଇ ପୋଡ଼ି ପକାଉଥିଲେ । ଗାନ୍ଧିଙ୍କର ସ୍ୱଦେଶୀ ବାର୍ତ୍ତା ଏହିପରି ଭାବରେ ଅତି କଠୋର, ଭୀତ ଓ ସ୍ୱାର୍ଥପର ଲୋକଙ୍କୁ ମଧ ଅଥୟ କରି ପକାଉଥିଲା ।

ବାଲିଆପାଳର ଗଗନ ଭଞ୍ଜ, ଶ୍ରୀନାଥ ରାଜ, ଶ୍ରୀକାନ୍ତ ପାଳ, ଭଗବାନ ଦତ୍ତ ଓ ରାଧାମାଧବ ଗିରି, ଜଳେଶ୍ୱରର ଗଂଗାନାରାୟଣ ଦାସ, ହରେନ୍ଦ୍ର ଘୋଷ, ଯୋଗେନ୍ଦ୍ର ଦାସ, ରମାକାନ୍ତ ପତି, ଶିତିକଣ୍ଠ ହୋତା, ପଦ୍ମନାଭ କାଷ୍ଠ, ସଚୀନ୍ଦ୍ର ଡଗର, ଅବନି ବସୁ ଏବଂ ଭୋଗରାଇର ନରେନ୍ଦ୍ର ଜେନା, ଜଟୀ ପାତ୍ର, ପ୍ୟାରୀମୋହନ, ରଜନୀ, ବିଜୟ, ରାଧାଶ୍ୟାମ, ହାଡ଼ିବନ୍ଧୁ ଓ ବର ବେହେରା ଏବଂ ସିଂଲା ଓ ବସ୍ତାର ରଘୁନାଥ ମଣ୍ଡଳ, ବଟକୃଷ୍ଣ ସେନାପତି, ନରେନ୍ଦ୍ର ଆଇଚ ଏବଂ ଫକୀର ଦାଶ ପ୍ରଭୃତି ଅଗ୍ରଣୀ ଭୂମିକା ନେଲେ । ୧୯୩୦-୩୩ ମସିହା ଆଇନ ଅମାନ୍ୟ ଆନ୍ଦୋଳନ ଏବଂ ୧୯୩୦-୩୧ ଲବଣ ସତ୍ୟାଗ୍ରହରେ ଭୋଗରାଇର ଗରିବ ନିରକ୍ଷର ଜନତା ସାହସର ସହ ଝାସ ଦେବାକୁ ସଂପୂର୍ଣ୍ଣ ପ୍ରସ୍ତୁତ ଥିଲେ । ବାଲେଶ୍ୱର ନେତାମାନଙ୍କ ନାମରେ ଗିରଫ ପରୱାନା ବାହାରିଥାଏ । ସେମାନେ ଛପିଯାଇ ଭୋଗରାଇ ଅଞ୍ଚଳକୁ ଆଶ୍ରୟ କରି ଶାଢ଼ିପିନ୍ଧି ଛଦ୍ମବେଶରେ ରାତିରେ ବାହାରି ସଂଗଠନ କଲେ । ମାସମାସ, ବର୍ଷବର୍ଷ ଧରି ଭୁଜା, ପଖାଳ ଖାଇ, ବାଡ଼ି କଡ଼ରେ ଶୋଇ, ଅମାର ମଧରେ, କୋଠା ଉପରେ ଲୁଚି ରହିଛନ୍ତି, କେହି ତାଙ୍କର ହଦିସ୍ ଜାଣିପାରିନାହାନ୍ତି ।

ଏହିପରି ଭାରତର ତେତ୍ରିଶ କୋଟି ଲୋକଙ୍କ ପ୍ରାଣରେ ଅହିଂସା ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଆନ୍ଦୋଳନର ତଡ଼ିତ୍ ପ୍ରବାହ ଗଭୀର ଓ ବ୍ୟାପକ ଭାବରେ ବହିଚାଲିଲା । ବ୍ରିଟିଶ ସରକାର ଛାନିଆ ହୋଇଗଲେ ଓ ପ୍ରମାଦ ଗଣିଲେ ।





Digitized by srujanika@gmail.com

# ମହାନାୟକ ଗାନ୍ଧିଜୀ

ମହାତ୍ମାଗାନ୍ଧି ଜଣେ ଚତୁର ଏବଂ ଅଦ୍ଭୁତକର୍ମା ରାଜନୀତିଜ୍ଞ ଥିଲେ । ସମଗ୍ର ବିଶ୍ୱ ତାଙ୍କୁ ଅନ୍ୟତମ ଶ୍ରେଷ୍ଠ ରାଜନୀତିଜ୍ଞର ଆସନ ଦେଇଆସିଛି । ସେ ଯେତିକି କୁଶଳୀ, ସେତିକି ଉଦାର ମଧ୍ୟ ଥିଲେ । ନିଜର କର୍ମନିଷ୍ଠା, ଚିତ୍ତର ଦୃଢ଼ତା, ସତ୍‌ସାହସ, ସତ୍ୟ ଓ ଅହିଂସା ପ୍ରତି ଅତୀବ ଆଗ୍ରହ ଏବଂ ଉଚ୍ଚକୋଟିର ଚରିତ୍ରବତ୍ତା ବଳରେ ସେ ଯାହା ଚାହୁଁଥିଲେ ତାହା କରିପାରୁଥିଲେ । ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ ଏହି ମହାପୁରୁଷ, ବାରମ୍ବାର ଆମରଣ ଅନଶନ କରି ଅସାଧ୍ୟ କର୍ମ ସାଧନ କରିପାରୁଥିଲେ । ଏଭଳି ଏକ ନୈତିକ ପ୍ରଭାବର ଦୃଷ୍ଟାନ୍ତ ଏ ଯୁଗରେ କେବେ କାହିଁ କାହାଠାରେ ଦେଖାଯାଇ ନାହିଁ । ସେ କେବଳ ବସିରହି ସବୁବେଳେ ଅରଟରେ ସୂତା କାଟୁନଥିଲେ କି ଲାଠି ଖଣ୍ଡିଏ ଧରି ଅଧାଲୁଗା ପିନ୍ଧି ଭାରତର ଏମୁଣ୍ଡରୁ ସେମୁଣ୍ଡ ଗସ୍ତ କରୁନଥିଲେ । ଠିକ୍ କେଉଁ ସମୟରେ କେଉଁ କାର୍ଯ୍ୟ କେଉଁ ଉପାୟରେ କରିବାକୁ ହେବ ତାଙ୍କୁ ବେଶ୍ ଜଣାଥିଲା । ଉପଯୁକ୍ତ ସାଂଗସାଥୀ, ବନ୍ଧୁ, ନେତା ଓ ଚେଲା ନିର୍ବାଚନରେ ସେ କେବେ ଭୁଲ କରିନାହାନ୍ତି । ତାଙ୍କର ଯଥେଷ୍ଟ ସମୟ ଜ୍ଞାନ । ଯେକୌଣସି କାର୍ଯ୍ୟ ପାଇଁ ଅପରକୁ ନିର୍ଦ୍ଦେଶ ଦେବା ଅପେକ୍ଷା ନିଜେ କରି ଦେଖାଇବା ତାଙ୍କର ଧର୍ମ ଥିଲା । ବିଶ୍ୱମାନବ ସମାଜର କଲ୍ୟାଣ, ଶାନ୍ତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଯୁଦ୍ଧ ବିଗ୍ରହରୁ ମୁକ୍ତି ତାଙ୍କର ଏକମାତ୍ର ଧ୍ୟେୟ ଥିଲା । ସ୍ୱାଧୀନତା ମନୁଷ୍ୟର ଜନ୍ମଗତ ଅଧିକାର । ସେଥିପାଇଁ ହିଂସା ଯୁଦ୍ଧର ଆବଶ୍ୟକତା ନାହିଁ । ଏହି ଜ୍ୱଳନ୍ତ ଦୃଷ୍ଟାନ୍ତ ସେ ସମଗ୍ର ବିଶ୍ୱ ସମକ୍ଷରେ ପ୍ରଥମଥର ପାଇଁ ରଖି ଯାଇଛନ୍ତି । ସତ୍ୟ, ଧର୍ମ, ଅହିଂସା ଓ ଶାନ୍ତିରେ ସେ ଆଜୀବନ ବିଶ୍ୱାସୀ ଥିଲେ । ସତ୍ୟ ଏବଂ ଅହିଂସା ମାର୍ଗରେ ଜନତା ମଧ୍ୟରେ ଏକ ବିରାଟ ଦୃଢ଼ ନୈତିକ ପ୍ରତିରୋଧ ଏବଂ ଅସହଯୋଗ ଆନ୍ଦୋଳନ ଗଢ଼ି ଭାରତ ଭଳି ଏକ ବିଭିନ୍ନ ଧର୍ମ, ଜାତି, ଭାଷା ଓ ସଂପ୍ରଦାୟଭୁକ୍ତ ବିରାଟ ଦେଶର କୋଟିକୋଟି ଆପାମର ଜନତାକୁ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ କରି ବିଶ୍ୱର ସବୁ ଦେଶର ସଖ୍ୟତା ସହାନୁଭୂତି ଏବଂ ବିଶ୍ୱାସ ଅର୍ଜନ କରିବାକୁ ସମର୍ଥ ହୋଇଥିଲେ ଏବଂ ହିଂସାରେ ବିଶ୍ୱାସୀ ପରାକ୍ରାନ୍ତ



Digitized by srujanika@gmail.com

ଇଂରେଜ ଶକ୍ତିକୁ ହଟାଇ ଦେଇଥିଲେ । ପୁରାଣ କିମ୍ବା ଇତିହାସରେ ଏଭଳି ଦୃଷ୍ଟାନ୍ତ ଏକାବେଳକେ ବିରଳ । ଅଣୁମାତ୍ର କିମ୍ବା ପର୍ବତ ପ୍ରମାଣ ଭୁଲ କଲେ ମଧ୍ୟ ସେ ଅଚିରେ ଅକପଟରେ ସ୍ୱୀକାର କରୁଥିଲେ । ତାଙ୍କଠାରେ ଏକାଧାରାରେ ଯେତିକି ଚେତନା, ମନୋବଳ, ବୁଦ୍ଧି, କୌଶଳ, ସତ୍ସାହସ, ବ୍ୟକ୍ତିତ୍ୱ, ଆଧ୍ୟାତ୍ମବଳ ଓ ତପସ୍ୟା ଥିଲା, ପୃଥିବୀର ଅନ୍ୟ କୌଣସି ମନୀଷୀ ବା ନେତାଠାରେ ସେତିକି ଦେଖାଯାଏ ନାହିଁ । ସେଥିପାଇଁ ସେ ମହାତ୍ମା ହୋଇପାରିଥିଲେ । ସ୍ୱଦେଶ ଏବଂ ବିଦେଶରେ ବହୁ ରାଜନୀତିବିଦ୍ ବିଶ୍ୱାସ କରନ୍ତି ଯେ, ୧୯୪୨ରେ ଅନ୍ତିମ ସଂଗ୍ରାମ ଆରମ୍ଭ କଲା ପୂର୍ବରୁ ସେ ଏକ ଯୁଦ୍ଧ କୌଶଳ ହିସାବରେ ଚିନ୍ତାକରି, ଶ୍ରୀଯୁକ୍ତ ସୁଭାଷଚନ୍ଦ୍ର ବୋଷ ଓ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଭଳି ବଡ଼ ସାନ ବହୁ ଯୋଗ୍ୟ ସଂଗ୍ରାମୀ ବୀରମାନଙ୍କୁ ଉପଯୁକ୍ତ ପରାମର୍ଶ ସହ ଭାରତର ସ୍ୱାଧୀନତା ବାର୍ତ୍ତା ଓ ଦାବି ଟେକି ଧରିବାକୁ ପୃଥିବୀର ବିଭିନ୍ନ ଦେଶକୁ ପଠାଇଥିଲେ । ତାଙ୍କ ପକ୍ଷରେ ଅସମ୍ଭବ ସମ୍ଭବ ଥିଲା । ସେଥିପାଇଁ ତାଙ୍କୁ ବହୁ ଅଖ୍ୟାତି ଏବଂ ଅପବାଦ ଶୁଣିବାକୁ ପଡ଼ିଥିଲା ।

ହିଂସାରେ ଉନ୍ମତ୍ତ ପୃଥିବୀର ଉତ୍ତର ପୁରୁଷମାନେ କେବେ କେହି ବିଶ୍ୱାସ କରିପାରିବେ ନାହିଁ ଗାନ୍ଧିଜୀଙ୍କ ଭଳି ଏକ ମହାମାନବର ରକ୍ତ, ମାଂସ, ଶରୀର ଅସ୍ତିତ୍ୱରେ ସନାତନ ହିନ୍ଦୁ ସଂସ୍କୃତିର ମୂର୍ତ୍ତି ପ୍ରତୀକ ଭାବରେ ଭାରତବାସୀଙ୍କ ଆତ୍ମା ସହ ତାଙ୍କର ଆତ୍ମା ମିଶି ଏକାକାର ହୋଇ ଯାଇଥିଲା । ତେଣୁ ତାଙ୍କୁ ଦେଖିଲେ ଏବଂ ତାଙ୍କ ବାଣୀ ଶୁଣିଲେ କୋଟି ପ୍ରାଣରେ ସ୍ୱତଃ ସ୍ପନ୍ଦନ ଓ ଶିହରଣ ଜାଗି ଉଠୁଥିଲା । କେବଳ ତାଙ୍କୁ ଥରେ ଆଖିରେ ଦେଖିବାକୁ ସାରା ଦେଶ ଭାଂଗିପଡୁଥିଲା । ପ୍ରକୃତରେ ତାଙ୍କୁ ଆଖିରେ ନ ଦେଖିଲେ ତାଙ୍କର ସୁମହାନ ବ୍ୟକ୍ତିତ୍ୱର କଳନା କରି ହେବନାହିଁ ।

ଦୂରଦ୍ରଷ୍ଟା ଗାନ୍ଧିଜୀ ତାଙ୍କ ଅନ୍ତେ ଭାରତ ଏବଂ ବିଶ୍ୱକୁ ଶାନ୍ତି ମୁକ୍ତି ଏବଂ ପ୍ରଗତିର ପଥ ନିର୍ଦ୍ଦେଶ କରିବାପାଇଁ ଉପଯୁକ୍ତ ନେତୃତ୍ୱମଧ୍ୟ ଗଢ଼ି ଯାଇଥିଲେ । ଭାରତ ତଥା ମାନବ ଜାତିର ମୁକ୍ତି ଓ କଲ୍ୟାଣ ପାଇଁ ସେ ଜୀବନସାରା ତପସ୍ୟା କରିଯାଇଛନ୍ତି । କିନ୍ତୁ ଅତୀବ ସାଧାରଣ ଥିଲା ତାଙ୍କର ଦୈନନ୍ଦିନ ଜୀବନଧାରା । ବହୁ ମନୀଷୀଙ୍କୁ ଜନ୍ମ ଦେବା ପରେ ଭାରତ ଯେଉଁ ଜଣେ ମାତ୍ର ମହାତ୍ମାଙ୍କୁ ଜନ୍ମ ଦେଇଛି, ସେ ହେଲେ ମହାତ୍ମାଗାନ୍ଧି । ମଣିଷ ମଧ୍ୟରେ ଅତି ମାନବତା ଦେଖାଦେଲେ ତାଙ୍କୁ ମହାତ୍ମା ଓ ଅବତାର କୁହାଯାଏ । ମହାତ୍ମା ଗାନ୍ଧି ହିଁ ତାର ଜୀବନ୍ତ ଓ ଜ୍ୱଳନ୍ତ ପ୍ରମାଣ ।



Digitized by srujanika@gmail.com

ସମାଜର ସମସ୍ତ ଆବର୍ଜନାକୁ ଜୀବନ ଉପଯୋଗୀ କରିବା, ଅତି ସାଧାରଣ ଜିନିଷରୁ ସଂପତ୍ତି ସୃଷ୍ଟି କରିବା ଥିଲା ସେହି ମହାପୁରୁଷଙ୍କ ଅଭିନବ ଅବଦାନ । ମାନବସମାଜ ମଧ୍ୟରେ ପ୍ରାକୃତିକ ଓ ସାଂସ୍କୃତିକ ମୂଲ୍ୟବୋଧର ପୁନଃ ଜାଗୃତି ପାଇଁ ସ୍ୱାଧୀନତା ଆନ୍ଦୋଳନ ଯୁଗରେ ଆମର ଭାରତ ମାଟିକୁ ଭିତ୍ତିକରି ସେ ବିଭିନ୍ନ ଗଠନମୂଳକ ରଚନାତ୍ମକ କାର୍ଯ୍ୟକ୍ରମ (ଅଠରଦଫା କାର୍ଯ୍ୟକ୍ରମ) ପ୍ରବର୍ତ୍ତନ କରିଥିଲେ । ମଣିଷ ଜୀବନକୁ ସୁନ୍ଦର ସରସ ଏବଂ ସମ୍ବେଦନଶୀଳ କରି ଗଢ଼ି ତୋଳିବାକୁ ତାଙ୍କର ଶେଷ କାର୍ଯ୍ୟକ୍ରମ ଥିଲା 'ମୌଳିକ ଶିକ୍ଷା' (Basic Education) । ଶିକ୍ଷାରେ ଅହିଂସା ବିପ୍ଳବ । ଯେଉଁଥିରେ ଲୋକମାନଙ୍କୁ ଆଗାମୀ କାଲି ପାଇଁ ପ୍ରସ୍ତୁତ କରିବା ଏବଂ ରାଷ୍ଟ୍ରରେ କେବଳ ଅଧିକାର ଛଡ଼ା କର୍ତ୍ତବ୍ୟ ପ୍ରତି ମଧ୍ୟ ସଚେତନ କରିବାର ଚିନ୍ତାଧାରା ଜାଗ୍ରତ କରିବାର ଉଦ୍ଦେଶ୍ୟ ଥିଲା । ଏହି ନୂତନ ଯୋଜନାର ଆଧାର ଥିଲା ଉତ୍ପାଦନ ମୂଳକ ଶିକ୍ଷା, ଯଦ୍ୱାରା ପ୍ରଶିକ୍ଷଣ ଓ ତାଲିମ ପରେ ସ୍ୱାବଲମ୍ବୀ ଜୀବନଯାପନ ପାଇଁ ସହାୟତା ମିଳିବ । ମୌଳିକ ଶିକ୍ଷାର ଅସ୍ତ୍ରଦ୍ୱାରା ପରିବେଶ ବିକୃତିରୁ ଧରିତ୍ରୀ ମାତା ଓ ତାର କୋଟିକୋଟି ସନ୍ତାନ ତଥା ଜୀବଜଗତର ଉଦ୍ଧାର ପାଇଁ ସେ ଯୁଗାବତାର ଏକ ଅହିଂସାତ୍ମକ ବିପ୍ଳବର ସୂତ୍ରପାତ କରିଥିଲେ ଏବଂ ସ୍ୱାଧୀନତାର ଶକ୍ତିଶାଳୀ ଆନ୍ଦୋଳନ ହିଁ ଥିଲା ସେ ବିପ୍ଳବର ମାଧ୍ୟମ ।

ଏଭଳି ଏକ ବିଶ୍ୱବନ୍ଦିତ ମହାମାନବଙ୍କୁ ଗୋରା କାରାଗାରର ସଂକୀର୍ଣ୍ଣ ପାଚେରି ବେଶିଦିନ ଧରି ରଖିପାରିଲା ନାହିଁ । ଠିକଣା ବେଳରେ ସେ ଅନ୍ତିମ ଅଗଷ୍ଟ ବିପ୍ଳବ ଆରମ୍ଭ କରିଥିଲେ । ସେତେବେଳକୁ ସମଗ୍ର ପୃଥିବୀ ଦୁଇ ବୃହତ୍ ଶକ୍ତି ଗୋଷ୍ଠୀରେ ବିଭକ୍ତ ହୋଇ ପରସ୍ପର ମୁହାଁମୁହିଁ ଛିଡ଼ା ହୋଇ ସାରିଥିଲେ । ତେଣୁ ଅଗଷ୍ଟ ବିପ୍ଳବ ସାରା ଦୁନିଆରେ ଅଭୁତପୂର୍ବ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିଶ୍ୱବାସୀ ଇଂରେଜ ଶକ୍ତିର ତୀବ୍ର ଅପନିନ୍ଦାରେ ମୁଖରିତ ହୋଇଉଠିଲେ । ସବୁ ରାଷ୍ଟ୍ର ମୁହଁରେ ଗାନ୍ଧିଜୀଙ୍କ ମୁକ୍ତି ଓ ଭାରତର ସ୍ୱାଧୀନତା ଦାବି ଶୁଣାଗଲା । ଅତ୍ୟାଚାରୀ ଇଂରେଜ ଦ୍ୱିତୀୟ ବିଶ୍ୱ-ମହାଯୁଦ୍ଧରେ ଜୟୀ ହେଲେ ସତ, କିନ୍ତୁ ବିଶ୍ୱ ଦରବାରରେ ଭାରତର ସ୍ୱାଧୀନତା ପ୍ରଶ୍ନ ଏବଂ ଭାରତବାସୀଙ୍କ ଉପରେ ବର୍ବରୋଚିତ ଅତ୍ୟାଚାର ଘେନି ତାଙ୍କର ଇଜ୍ଜତ ଅବନମିତ ହେଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେପରେ ସୁଯୋଗ କ୍ରମେ ବ୍ରିଟିଶ ସାମ୍ରାଜ୍ୟର ରକ୍ଷଣଶୀଳ ଜାଠ ମନ୍ତ୍ରୀମଣ୍ଡଳ ଗାଦିଚ୍ୟୁତ ହୋଇ ଅପେକ୍ଷାକୃତ ଉଦାର ଓ ସମ୍ବେଦନଶୀଳ ଶ୍ରମିକଦଳ



Digitized by srujanika@gmail.com

ଶାସନ ଗାଦିକୁ ଆସି ଯାଇଥିଲେ । ଲଣ୍ଡାରେ ୧୯୪୫ ସାଲ ଅଗଷ୍ଟ ମାସରେ ଶ୍ରମିକ ସରକାର ବାଧ ହୋଇ ଗାନ୍ଧିଜୀ ଏବଂ କଂଗ୍ରେସକୁ ମୁକ୍ତି ଦେଲେ । ସମସ୍ତଙ୍କର ଅଦମ୍ୟ ଚେଷ୍ଟା ସତ୍ତ୍ୱେ, ଦୁରଭିସନ୍ଧି ନେଇ ରୋଷ ଏବଂ ଅଭିମାନରେ ସରକାର ଏକପ୍ରକାର ବାଧକରି ଅଖଣ୍ଡ ଭାରତକୁ ଦ୍ୱିଖଣ୍ଡିତ କରିଦେଇଗଲେ । ପରିଶେଷରେ ୧୯୪୭ ଅଗଷ୍ଟ ମାସ ୧୫ ତାରିଖ ରାତିରେ ଶାସନ କ୍ଷମତା ଓ ଭାରତମାଟି ଛାଡ଼ି ଚାଲିଗଲେ । ଦୀର୍ଘ ଦେଢ଼ଶହ ବର୍ଷର ଭୂମି ଭାରତ ମାଟିରେ ତାଙ୍କର ହୋଇ କେହି ଆଉ ରହିଲେ ନାହିଁ ।





Digitized by srujanika@gmail.com

# ଲବଣ ସତ୍ୟାଗ୍ରହ

ଆବହମାନ କାଳରୁ ଭାରତବାସୀ ସମୁଦ୍ରପାଣିରୁ ଲୁଣମାରି ବ୍ୟବହାର କରୁଥିଲେ । ବିଦେଶୀ ସରକାର ତାଙ୍କ ଦେଶର ଲୁଣ କିଣି ଖାଇବାକୁ ବାଧ କଲେ ଏବଂ ଆଇନ କରି ସମୁଦ୍ରରୁ ଲୁଣମରା ବନ୍ଦ କଲେ । ଭାରତବାସୀଙ୍କର ଏହି ସାଧାରଣ ମୌଳିକ ଅଧିକାର ହରଣର ତୀବ୍ର ପ୍ରତିବାଦ ତତ୍‌କ୍ଷଣାତ୍ କଂଗ୍ରେସ ଓ ଗାନ୍ଧିଜୀ କଲେ ଏବଂ ଅହିଂସା ଉପାୟରେ ଦୃଢ଼ ଭାବରେ ଏହି ଅନ୍ୟାୟ ଆଦେଶର ମୁକାବିଲା କରିବାକୁ ଲୁଣ ମାରିବାପାଇଁ ଦେଶବାସୀଙ୍କୁ ପରାମର୍ଶ ଦେଲେ । ଆରମ୍ଭ ହେଲା କଂଗ୍ରେସ ନେତୃତ୍ୱରେ ସହସ୍ର ସହସ୍ର ମାଇଲ ବ୍ୟାପି ଭାରତର ସମୁଦ୍ର ଉପକୂଳରେ ଲବଣ ସତ୍ୟାଗ୍ରହ ବା ଲୁଣମରା ଆନ୍ଦୋଳନ । ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ ଓ ସରୋଜିନୀ ନାଇଡୁ ପ୍ରମୁଖ ନେତାଙ୍କୁ ସାଂଗରେ ଧରି ଗାନ୍ଧିଜୀ ପ୍ରଥମେ ଗୁଜୁରାଟର ଦାଣ୍ଡିଠାରେ ଲୁଣ ମାରି କାରାବରଣ କଲେ । ଓଡ଼ିଶା ଉପକୂଳରେ ମଧ ଉତ୍କଳମଣି ଗୋପବନ୍ଧୁ ଦାଶ, ଆଚାର୍ଯ୍ୟ ହରିହର, ଡା.ଅଟଳ ବିହାରୀ ଓ ମହତାବ ଜୀ ପ୍ରଭୃତିଙ୍କ ନେତୃତ୍ୱରେ ତେଜି ଉଠିଲା । ଲବଣ ଆଇନକୁ କେନ୍ଦ୍ରକରି ଚାନ୍ଦିପୁର ପାଖ-ଇଞ୍ଚୁଡ଼ି, ସୁନ୍ଦରୀ ଓ ଶ୍ରୀଜଂଗଠାରେ ସେମାନେ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ସର୍ଦ୍ଦାର ସୁରେନ୍ଦ୍ର, ନୀଳାମ୍ବରବାବୁ, କରୁଣାକରବାବୁ, ନୀଳମଣିବାବୁ, ନନ୍ଦବାବୁ ଓ ଗୌରବାବୁ ଆଦିଙ୍କ ସହିତ ଲୁଣମରା ପର୍ବ ଆରମ୍ଭ କଲେ । ଚାନ୍ଦିପୁର ଉପକୂଳ ଗୋରାମାନଙ୍କ ଆୟତ୍ତରେ ଥିଲା । ଗୋରା ଫଉଜ ସେ ଅଞ୍ଚଳକୁ ଧ୍ୱସ୍ତ-ବିଧ୍ୱସ୍ତ କରି ପକାଇଲେ । ଏପରି ମାଡ଼ ଓ ଅତ୍ୟାଚାର ଇଞ୍ଚୁଡ଼ି ଓ ଶ୍ରୀଜଂଗ ମାଟିରେ ହେଲା ଯେ, ତାହା ଭାଷାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ସହିଦ ପୀଠ ଇଞ୍ଚୁଡ଼ି ଓ ଶ୍ରୀଜଂଗ ଶ୍ମଶାନରେ ପରିଣତ ହେଲା । ବର୍ବର ଗୋରା ସରକାର ପ୍ୟୁନିଟି ଟିକସ୍ ବସାଇ ଅତି ନିର୍ଦ୍ଦୟ ଭାବରେ ଆଦାୟ କଲେ । ଲବଣ ସତ୍ୟାଗ୍ରହର ସେ ଏକ ଭୟାବହ ସକରୁଣ ଇତିହାସ ।

ମହତାବବାବୁ ପ୍ରଭୃତି ନେତାମାନେ ଇଞ୍ଚୁଡ଼ିର ଉତ୍ତେଜନାକୁ ଭୋଗରାଇ ତଥା ଉତ୍ତର ବାଲେଶ୍ୱର ମାଟିକୁ ଟାଣି ଆଣିଲେ । ନୀଳାମ୍ବର ବାବୁ ଉତ୍ତର ବାଲେଶ୍ୱର ତଥା ଭୋଗରାଇ ଅଞ୍ଚଳର ଦାୟିତ୍ୱରେ ଥିଲେ । ପୁଲିସ୍ ସବୁବେଳେ ତାଙ୍କ ପିଛା ଧରିଥାଏ । କିନ୍ତୁ ଛଦ୍ମବେଶରେ ସେ ଚରଖି ପରି ଚାରିଆଡ଼େ ଘୂରି ସଂଗଠନ କରୁଥିଲେ । ଭୋଗରାଇ



Digitized by srujanika@gmail.com

ଉପକୂଳରେ ପ୍ରତିଦିନ ଶତଶତ ସ୍ତ୍ରୀ ପୁରୁଷ ଜବରଦସ୍ତ ଲୁଣ ମାରିବାକୁ ଆରମ୍ଭ କଲେ । ମକରସଂକ୍ରାନ୍ତି ଦିନ ସମୁଦ୍ରର ବେଳାଭୂମିରେ ଯେପରି ସ୍ନାନାର୍ଥୀମାନଙ୍କର ଭିଡ଼ ଦେଖାଯାଏ, ଲବଣ ସତ୍ୟାଗ୍ରହ ସମୟରେ ଭୋଗରାଇର ପୁଅ ଓ କୁଳ ଭୁଆସୁଣିମାନେ ଘରଦ୍ୱାର ଛାଡ଼ି ଯାତ୍ରା ଲାଗିଲା ଭଳି ପ୍ରତିଦିନ ସମୁଦ୍ର ଉପକୂଳରେ ଜମା ହେବାକୁ ଲାଗିଲେ । ଦିବାରାତ୍ର ସହସ୍ର କଣ୍ଠର ଉଚ୍ଛ୍ୱଳ ଜୟଧ୍ୱନି, ବନ୍ଦେମାତରମ୍, ଇନ୍‌କିଲାବ୍ ଜିନ୍ଦାବାଦ୍ ଧ୍ୱନିରେ ଭୋଗରାଇ ମାଟି ରନ୍ଧ୍ରେ ରନ୍ଧ୍ରେ ଉଦ୍‌ବେଳିତ ହୋଇଉଠିଲା । ପୁଲିସ୍ ଲାଠିପିଟି ଶହଶହ ସତ୍ୟାଗ୍ରହୀଙ୍କୁ ଗିରଫ କରି ଜେଲ ଜୋରିମାନା କରି ଘରଭାଂଗି ସର୍ବସ୍ୱ ନିଲାମ କରି ମଧ୍ୟ ଲୋକଙ୍କର ସତ୍ୟାଗ୍ରହ ବନ୍ଦ କରିପାରିଲେ ନାହିଁ । ଜେଲଖାନାରେ ସ୍ଥାନାଭାବ ଦେଖାଦେଲା । ତଥାପି ଆନ୍ଦୋଳନ ବନ୍ଦ ହେଲାନାହିଁ । ଶେଷରେ ସତ୍ୟାଗ୍ରହୀମାନଙ୍କୁ ବାନ୍ଧି, ସପ୍ତାହ ସପ୍ତାହ ଧରି ଅନାହାରରେ ଖରା କାକରରେ ପକାଇ ରଖାଗଲା ଏବଂ ନିଷ୍ଠୁର ମାଡ଼ ଦିଆଗଲା । 'ଲବଣ ସତ୍ୟାଗ୍ରହ' କିନ୍ତୁ ଦବିବାର ଦେଖାଗଲା ନାହିଁ । ଜଟି ପାତ୍ର, ପ୍ୟାରିମୋହନ, ଦର ବେହେରା, ରାଧାଶ୍ୟାମ, ହାଡ଼ିବନ୍ଧୁ, ବିଜୟ ଜେନା, ଭାଇ ନରେନ୍ଦ୍ର, ନିରଞ୍ଜନ, ନରହରି, ସୀତାନାଥ, ଗୌରାଙ୍ଗ, ରବି, ସୁରେନ୍ଦ୍ର, ବୈକୁଣ୍ଠ, ଭରତ, ରଜନୀ, ସର୍ବେଶ୍ୱର, ପରମେଶ୍ୱର, ନିତ୍ୟାନନ୍ଦ, ଦେବେନ୍ଦ୍ର, ବନମାଳି, ପ୍ରିୟ, ରାମଚନ୍ଦ୍ର, ଦ୍ୱାରି, ଭୂପେନ୍ଦ୍ର ପ୍ରଭୃତି ଶହଶହ ଯୁବକଙ୍କୁ ଦୀର୍ଘମିଆଦି ଜେଲଦଣ୍ଡ ଦେଇ ପାଟଣା ଓ ହଜାରିବାଗ ଜେଲକୁ ପଠାଇ ଦିଆଗଲା । ନାରୀ ସତ୍ୟାଗ୍ରହୀ ଚମ୍ପାମଣି, ଦୁର୍ଗାମଣି, ଚୂଡ଼ାମଣି, ବିଷ୍ଣୁପ୍ରିୟା ଓ ଶୈଳବାଳା ପ୍ରମୁଖଙ୍କୁ ମଧ୍ୟ ଦୀର୍ଘଦିନ ଜେଲ ମଧ୍ୟରେ ବନ୍ଦୀ କରି ରଖାଗଲା । କଂଗ୍ରେସ ନେତାମାନଙ୍କୁ ଲୁଚାଇ ଆଶ୍ରୟ ଦେବା ଅପରାଧରେ ଗୁନାଇବସାଣର ଗଜେନ୍ଦ୍ର ଜେନାଙ୍କ ପକ୍କାଘର ଭାଂଗି ଖଣ୍ଡଖଣ୍ଡ କରିଦିଆଗଲା । ସର୍ବସ୍ୱ ଲୁଟି ନିଆଗଲା । ପରିବାରର ସମସ୍ତଙ୍କୁ ବେଦମ ମାଡ଼ ଦିଆଗଲା । ଦୁଇ ପୁଅ ମହେନ୍ଦ୍ର ଓ ଯୋଗେନ୍ଦ୍ରଙ୍କୁ ବାନ୍ଧି ନେଇ ଜେଲ୍ ଦେଲେ । ଦ୍ୱାରି ପାତ୍ର, ଗ୍ରାମର ପ୍ରଭାକର ଦାସ ସହ ପରିବାରର ସମସ୍ତଙ୍କୁ ଗିରଫ କରି ଜେଲ ଦିଆଗଲା । ପୁଟିଣା ଗ୍ରାମର ସୀତାନାଥ ଆଚାର୍ଯ୍ୟଙ୍କ ଘର ପୁଲିସ୍ ଲୁଟ କଲେ । ୨୧ଟି ଗୋରୁକୁ ୯ ପଇସାରେ ନିଲାମ କରି କେହି ନ ନେବାରୁ ଶେଷରେ ଗ୍ରାମର ଚୌକିଦାରକୁ ୩ ପଇସାରେ ଦିଆଗଲା ।

ଲୁଣମରା ସାଂଗକୁ ବିଦେଶୀ ବର୍ଜନ ଏବଂ ଆଇନ ଅମାନ୍ୟ ଆନ୍ଦୋଳନ ମଧ୍ୟ ଚାଲିଥାଏ । ନୀଳାମ୍ବର ବାବୁଙ୍କ ପ୍ରେରଣାରେ ପ୍ୟାରିମୋହନ, ଗୌରାଙ୍ଗ, ମୃତ୍ୟୁଞ୍ଜୟ, ଗଜେନ୍ଦ୍ର ଓ ସୀତାନାଥ ପ୍ରଭୃତି ସୀମାନ୍ତ ଗ୍ରାମମାନଙ୍କରେ ପ୍ରବଳ ଆନ୍ଦୋଳନ ସୃଷ୍ଟି କଲେ ।



Digitized by srujanika@gmail.com

ନିକଟବର୍ତ୍ତୀ ହାଟମାନଙ୍କରେ ବିଲାତି ଲୁଣ, ଲୁଗା, କିରାସିନି ଆଦି ବିକ୍ରୟ ହୋଇପାରିଲା ନାହିଁ । ଗଞ୍ଜା, ଅଫିମ ଓ ମଦ ଦୋକାନ ଆଗରେ ପିକେଟିଂ ପ୍ରବଳ ହେଲା । ବେତମାଡ଼, ବୁଟ ଜୋତା ମାଡ଼ଖାଇ ମଧ୍ୟ ସେମାନେ ଦବିଲେ ନାହିଁ । ପ୍ୟାରୀମୋହନଙ୍କ ବାପା ଶେଷରେ ତାଙ୍କୁ ଘରେ ପୂରାଇ ତାଲା ବନ୍ଦ କରିଦେଲେ । କିନ୍ତୁ ସତ୍ୟାଗ୍ରହୀଙ୍କୁ କିଏ ଘରେ ବନ୍ଦ କରି ରଖିପାରିବ ? ରାତିରେ ଘରଚାଳ କାଟି ତରୁଣ ପ୍ୟାରୀମୋହନ ବାହାରି ଲୁଚି ପଳାଇଗଲେ । ୧୯୩୩ ସାଲରେ ଜେଲରୁ ଫେରି ସେ ଆଉ ଘରକୁ ନ ଆସି ବାଲେଶ୍ୱରରେ ସଂଗଠନ ମଧ୍ୟରେ ରହିଗଲେ । ଦକ୍ଷିଣ ବାରବାଟିଆ ଗ୍ରାମର ଉମେଶ ଚନ୍ଦ୍ର ପାତ୍ର (ଜଟି ପାତ୍ର)ଙ୍କ ଘରେ ପୁଲିସ୍ ପଶି ଅସ୍ଥାବର ସବୁ ସଂପତ୍ତି ଲୁଟି ନେଇଗଲେ ଏବଂ ଘରଦ୍ୱାର ଭାଂଗିରୁଜି ଦେଇଗଲେ ।

ଦୁଡ଼ପଳ ଗ୍ରାମର ସତ୍ୟାଗ୍ରହୀମାନଙ୍କୁ ଜବଦ କରିବାପାଇଁ ଥାନା ଦାରୋଗା ସୂର୍ଯ୍ୟମଣି, ଧ୍ରୁବ ଜେନା ଘରେ ପଶି ବେଦମ୍ ଅତ୍ୟାଚାର ଆରମ୍ଭ କଲେ । ଯୁବକ ନରେନ୍ଦ୍ର ନାଥ ସହି ନପାରି ପୁଲିସ୍‌କୁ କୌଶଳରେ ଘର ଭିତରେ ବନ୍ଦୀକରି ଦେଇ ନିସ୍ତୁକ ପ୍ରହାର କଲେ । ସେତେବେଳେ ଗାଁଗହଳିରେ ସେ ଏକ ଅଭିନବ ଓ ଚମକପ୍ରଦ ଘଟଣା ଥିଲା । ସାହେବ ସରକାର ମୁଣ୍ଡକୁ ରକ୍ତ ଉଠିଗଲା । ଚାଲିଲା ପୁଲିସ୍ ରାଜ । ଗାଁ ଯାକ ଲୋକେ ଘରଦ୍ୱାର ଛାଡ଼ି ପଳାଇଗଲେ । ଅସ୍ଥାବର ସଂପତ୍ତି ସବୁ ବାଜ୍ୟାପ୍ତ ହେଲା । ଘରଦ୍ୱାର ଭାଂଗିରୁଜି ପଦା କରିଦେଲେ । ପୂରା ଏକବର୍ଷ କାଳ ପୁଲିସ ଭୟରେ ଲୋକେ ଗାଁକୁ ଫେରିନାହାନ୍ତି । ଶେଷରେ ମହତାବବାବୁ, ନନ୍ଦବାବୁ ପ୍ରଭୃତି ନେତାମାନେ ଜେଲରୁ ଫେରିଆସି ସମସ୍ୟାର ସମାଧାନ କଲେ । କିନ୍ତୁ ଜେନା ପରିବାର ଗୋଟିକ ସଂପୂର୍ଣ୍ଣ ଉଚ୍ଛନ୍ନ ହୋଇ ବାଲିଆପାଳର ଡଗରା ଗ୍ରାମକୁ ପଳାଇ ଯାଇ ସେଠାରେ ବସତି କଲେ । ଦୁଡ଼ପଳ ଗ୍ରାମର ସତ୍ୟାଗ୍ରହ ଓ ପୁଲିସ୍ ଅତ୍ୟାଚାରର ଇତିହାସ ଏକ ଜ୍ୱାଳାମୟୀ ଇତିହାସ । ଦୁଡ଼ପଳର ନିର୍ମମ ପୁଲିସ ଉତ୍ପୀଡ଼ନର କାହାଣୀ ସମଗ୍ର ଉତ୍ତର ବାଲେଶ୍ୱରକୁ ଉଦ୍‌ବୁଦ୍ଧ କରିଛି । ଗୋରା ସରକାରର ଅତ୍ୟାଚ୍ୟର ମାତ୍ରା ଯେଉଁଠି ଯେତେ ବଢ଼ିଛି, ଆନ୍ଦୋଳନ ସେଇଠି ସେତେ ତେଜିଛି । ଏହି ବ୍ୟାପକ ଆନ୍ଦୋଳନ ବେଳେ ଭୋଗରାଇର ଶତାଧିକ ତରୁଣ ତରୁଣୀ କାରାବରଣ କରିଛନ୍ତି । ଅନ୍ୟମାନେ ହାଡ଼ଭଂଗା ମାଡ଼ ଖାଇ ଡାହୁଣିରେ ବନ୍ଧା ଅବସ୍ଥାରେ ଖରାକାକରରେ ଭୋକ ଉପାସରେ ସପ୍ତାହ ସପ୍ତାହ କାଳ କଟାଇ ଦେଇଥିଲେ । ତଥାପି ସେମାନଙ୍କ ହୃଦୟର ନୈତିକବଳ ଭାଂଗିନାହିଁ । କଂଗ୍ରେସ ନେତାମାନଙ୍କୁ ସେତେବେଳେ ଯେଉଁ ପରିବାର ଆଶ୍ରୟ ଦେଉଥିଲା ସେ ଘର ଉଚ୍ଛନ୍ନ ହୋଇଯାଉଥିଲା ।



Digitized by srujanika@gmail.com

ଏହିପରି ଅନେକ ଚୋଖାଚୋଖା କର୍ମୀ ଜିଲ୍ଲାର ଅନ୍ୟତ୍ର ସଂଗଠନ କାର୍ଯ୍ୟରେ ଲିପ୍ତ ରହି ବିପ୍ଳବକୁ ବଢ଼ାଇ ଦୀର୍ଘଜୀବୀ କରିବାରେ ମଧ୍ୟ ସାହାଯ୍ୟ କରିଛନ୍ତି । ୧୯୩୦-୩୩ ସାଲ ଯାଏ ଭାରତର ସର୍ବତ୍ର ଲବଣ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଆନ୍ଦୋଳନ ଜାରିଥାଏ । ଗାନ୍ଧି-ଇରଉଇନ୍‌ଙ୍କ କଥାବାର୍ତ୍ତା ମଧ୍ୟ ଚାଲିଥାଏ । ପରେ 'ଗାନ୍ଧି-ଇରଉଇନ୍ ଚୁକ୍ତି' ସ୍ୱାକ୍ଷରିତ ହେଲା । ଶେଷରେ ୧୯୩୧ ମାର୍ଚ୍ଚ ମାସରେ ସରକାର ଲୁଣମରା ଉପରୁ କଟକଣା ଉଠାଇ ନେଲେ । ଲବଣ ସତ୍ୟାଗ୍ରହୀମାନେ ଜେଲରୁ ମୁକ୍ତି ପାଇଲେ । କଂଗ୍ରେସ ଲବଣ ସତ୍ୟାଗ୍ରହ ଆନ୍ଦୋଳନ ପ୍ରତ୍ୟାହାର କରିନେଲେ । କିନ୍ତୁ ୧୯୩୪ ସାଲ ଯାଏ ସବିନୟ ଆଇନ ଅମାନ୍ୟ ଦେଶର ସର୍ବତ୍ର ପୂରା ଦମ୍‌ରେ ଚାଲୁ ରହିଲା ।





Digitized by srujanika@gmail.com

# ବ୍ୟକ୍ତିଗତ ସତ୍ୟାଗ୍ରହ

୧୯୩୫ ଭାରତ ଶାସନ ଆଇନ ଅନୁସାରେ ଭାରତକୁ ସ୍ୱାୟତ୍ତ ଶାସନ କ୍ଷମତା ମିଳିଲା । ୧୯୩୭ ସାଲରେ ଶ୍ରୀ ବିଶ୍ୱନାଥ ଦାଶ, ଓଡ଼ିଶାର ପ୍ରଧାନମନ୍ତ୍ରୀ ନିର୍ବାଚିତ ହେଲେ । ୧୯୩୯ ସାଲରେ ଦ୍ୱିତୀୟ ବିଶ୍ୱମହାସମର ଦୁନ୍ଦୁଭି ବାଜି ଉଠିଲା । ବ୍ରିଟିଶ ଶକ୍ତି ନାଜି ଓ ଫାସିଷ୍ଟ ଶକ୍ତି ବିରୁଦ୍ଧରେ ମିତ୍ରଶକ୍ତିଚକ୍ର ସହ ଯୋଗଦେଲେ । ଏହି ମହାଯୁଦ୍ଧରେ ଭାରତ ମଧ୍ୟ ମିତ୍ରଶକ୍ତିଚକ୍ର ସହ ଯୋଗଦେଲା ବୋଲି ଘୋଷଣା କରାଗଲା । ଗାନ୍ଧିଜୀ ରୁଖି ଛିଡ଼ା ହେଲେ । ବଜ୍ରକଣ୍ଠରେ କଂଗ୍ରେସ ଗର୍ଜି ଉଠିଲା । ଭାରତବାସୀଙ୍କର ବିନାନୁମତିରେ ଭାରତପକ୍ଷରୁ ଯୁଦ୍ଧ ଘୋଷଣା କରିବା ଗୋରା ସରକାରର ଅଧିକାର ନାହିଁ ।

ସମୂହ ଯୁଦ୍ଧରେ ଅଯଥା ରକ୍ତପାତ, ଲୋକକ୍ଷୟ ଏବଂ କ୍ଷୟକ୍ଷତି ବିରୁଦ୍ଧରେ ତୀବ୍ର ପ୍ରତିବାଦ ଗାନ୍ଧିଜୀ ବିଶ୍ୱ ଦରବାରର ଆଗରେ ଜଣାଇଲେ । ଯୁଦ୍ଧ ନିରପେକ୍ଷତା କଂଗ୍ରେସର ଗୃହୀତ ନୀତି ଥିଲା । ଦେଶବାସୀଙ୍କ ଇଚ୍ଛା ବିରୁଦ୍ଧରେ ଜୋରଜବରଦସ୍ତ ଯୁଦ୍ଧ ନିଆଁ ଭିତରକୁ ଭାରତକୁ ଟାଣିନେବା ସଂପୂର୍ଣ୍ଣ ବେଆଇନ୍ ଏବଂ ଘୋର ଅତ୍ୟାଚାର ତଥା ଅନ୍ୟାୟ ଏବଂ ଅନଧିକାର ବୋଲି କଂଗ୍ରେସ ମୁକ୍ତକଣ୍ଠରେ ଦୃଢ଼ ଘୋଷଣା କଲେ । ସେ ଏକ ତୁମୁଳକାଣ୍ଡ । ଜାତୀୟ କଂଗ୍ରେସର ସ୍ୱର ସହ ଭାରତବାସୀ ବିପୁଳ ସଂଖ୍ୟାରେ ସ୍ୱର ମିଳାଇଲେ । ଯୁଦ୍ଧବେଳେ ଦେଶ ମଧ୍ୟରେ ଏଭଳି ଅସନ୍ତୋଷ ଏବଂ ବିଶୃଙ୍ଖଳା ଗୋରା ସରକାରଙ୍କର ଯୁଦ୍ଧ ପ୍ରସ୍ତୁତି ଏବଂ ପରିଚାଳନାରେ ବିଶେଷ ବାଧା ସୃଷ୍ଟି କଲା । ସରକାର ଚିନ୍ତିତ ଏବଂ ଶଙ୍କିତ ହୋଇଉଠିଲେ ।

ପରିଶେଷରେ ୧୯୪୧ ସାଲରେ କଂଗ୍ରେସ ଯୁଦ୍ଧ ବିରୋଧୀ ପ୍ରଚାର ଆରମ୍ଭ କଲା । ପ୍ରଥମେ ଜଣେ ଜଣେ କରି କଂଗ୍ରେସ କର୍ମୀ ସର୍ବତ୍ର ବ୍ୟକ୍ତିଗତ ଭାବରେ ସଭା କରିଆରେ ପ୍ରଚାର କଲେ । ଆଚାର୍ଯ୍ୟ ବିନୋବା ଭାବେ ସର୍ବପ୍ରଥମେ ଏହାର ଅଗ୍ରଣୀ ଥିଲେ । ଆମ ଭୋଗରାଇ ଅଞ୍ଚଳରୁ ସେବର୍ଷ ସର୍ବଶ୍ରୀ ଭଜହରି ଦାସ, ବିଜୟକୃଷ୍ଣ ମହାନ୍ତି, ଜଟି ପାତ୍ର ଏବଂ ଦର ବେହେରା ପ୍ରଭୃତି ସତ୍ୟାଗ୍ରହ କରି ତିନିମାସ ଲେଖାଏଁ ଜେଲ ବରଣ କରିଥିଲେ । ଏହି ସତ୍ୟାଗ୍ରହକୁ କଂଗ୍ରେସର ଯୁଦ୍ଧ ବିରୋଧୀ ପ୍ରଚାର ବା ବ୍ୟକ୍ତିଗତ ସତ୍ୟାଗ୍ରହ ବୋଲି କୁହାଯାଏ ।



Digitized by srujanika@gmail.com

ଶକ୍ତ କଟକଣା ସତ୍ତ୍ୱେ କଂଗ୍ରେସ ସମାଚାର ପ୍ରଜାତନ୍ତ୍ର ଓ ରଣଭେରୀ ଭଳି ଛୋଟଛୋଟ ଖବରକାଗଜରେ ଯୁଦ୍ଧ ବିରୋଧୀ ଲେଖା ସବୁ ଛପାଯାଇ ଚାରିଆଡ଼େ ପ୍ରଚାରିତ ହେଲା । କମ୍ୟୁନିଷ୍ଟ ଋଷିଆ ମିତ୍ରଶକ୍ତି ଚକ୍ରରେ ଯୋଗଦେବାରୁ କଂଗ୍ରେସ ମଧ୍ୟରୁ କମ୍ୟୁନିଷ୍ଟ ଭାବାପନ୍ନ କେତେକ ଲୋକ ବାହାରି ଏହି ଯୁଦ୍ଧକୁ ଜନଯୁଦ୍ଧ ବୋଲି ଘୋଷଣା କଲେ । ଠିକ୍ ଏତିକି ବେଳେ ପ୍ରବଳ ପରାକ୍ରମୀ କଂଗ୍ରେସ ନେତା ଓ ପରେ ଫରୱାର୍ଡ଼ ବ୍ଲକ୍‌ର ପ୍ରତିଷ୍ଠାତା ଭାରତୀୟ ମୁକ୍ତି ସଂଗ୍ରାମର ଅମର ସେନାପତି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସମୟ ସୁଯୋଗ ଉଣ୍ଡି ଛଦ୍ମବେଶରେ ଭାରତରୁ ପଳାଇ ଯାଇ ନାଜି ଜର୍ମାନୀ ଏବଂ ଫାସିଷ୍ଟ ଇଟାଲି, ସ୍ପେନ, ବର୍ମା, ଫିଲିପାଇନ୍ସ ଓ ଜାପାନ ସହଯୋଗରେ ଦକ୍ଷିଣପୂର୍ବ ଏସିଆରେ ହଜାର ହଜାର ବିଜିତ ଭାରତୀୟ ସୈନ୍ୟ ଏବଂ ପ୍ରବାସୀ ଭାରତୀୟମାନଙ୍କୁ ସଂଗଠିତ କରି 'ଆଜାଦ ହିନ୍ଦ୍ ଫଉଜ' ନାମରେ ଏକ ଶକ୍ତିଶାଳୀ ସେନାବାହିନୀ ଗଠନ କରି ଗୋରା ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ବିପ୍ଳବୀ ରାସବିହାରୀ ବୋଷ ତାଙ୍କ ସହ ଯୋଗଦେଇଥିଲେ । ତାର ପ୍ରଭାବ ଭାରତୀୟ ପୁଲିସ୍ ବାହିନୀ ଏବଂ ସୈନ୍ୟବାହିନୀ ଉପରେ ପ୍ରବଳ ଭାବରେ ପଡ଼ିଲା । ଉଭୟ ଶକ୍ତି ଗୋଷ୍ଠୀ ମଧ୍ୟରେ ତୁମୁଳ ଯୁଦ୍ଧ ଭାରତର ଉଭୟ ପଟେ ଲାଗିଥାଏ । ୧୯୪୨ ସାଲ ଅଗଷ୍ଟ ବେଳକୁ ସମଗ୍ର ବିଶ୍ୱ ଦୁଇଟି ପକ୍ଷରେ ବିଭକ୍ତ ହୋଇଥାନ୍ତି । ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ସାରା ଆମେରିକା ବୁଲି ସଭାକଲେ । ଗୋରା ସରକାର କଂଗ୍ରେସର ନିରପେକ୍ଷ ବୈଦେଶିକ ରାଷ୍ଟ୍ରନୀତି ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କଲା । କ୍ରମେ ପୂର୍ବପଟରୁ ଜାପାନ ମାଡ଼ିମାଡ଼ି ଚାଲିଥାଏ । ନେତାଜୀଙ୍କର ଆଜାଦ ହିନ୍ଦ୍ ଫୌଜର ରଣହୁଙ୍କାର ବ୍ରହ୍ମଦେଶ ଏବଂ ଆସାମ ସୀମା ଟପି ମଣିପୁର ମାଟିରେ ଭୟାବହ ସନ୍ତ୍ରାସ ସୃଷ୍ଟି କରିବାକୁ ଲାଗିଲା । ଗାନ୍ଧିଜୀ ଏବଂ କଂଗ୍ରେସ ନିରପେକ୍ଷ ବୈଦେଶିକ ରାଷ୍ଟ୍ରନୀତି ଉପରେ ଅଟଳ ରହିଥାଆନ୍ତି ।





Digitized by srujanika@gmail.com

# ଅଗଷ୍ଟ ବିପ୍ଳବ

ଦ୍ୱିତୀୟ ବିଶ୍ୱ ମହାଯୁଦ୍ଧର ଏହି ଘଡ଼ିସନ୍ଧି ବେଳେ, ୧୯୪୨ ସାଲ ଅଗଷ୍ଟ ୮ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ଜରୁରି ବୈଠକ ଗାନ୍ଧିଜୀଙ୍କ ନେତୃତ୍ୱରେ ବମ୍ବେଠାରେ ବସିଲା । Britania Quit India, ବର୍ତ୍ତାନିଆ ଭାରତ ସେ ହଟ୍‌ଯାଓ, ଇଂରେଜ ଭାରତଛାଡ଼, ଏହି ଐତିହାସିକ ପ୍ରସ୍ତାବ ବୈଠକରେ କଂଗ୍ରେସ ଗ୍ରହଣ କଲେ । ଜାତିର ଜନକ ମହାତ୍ମାଗାନ୍ଧି ଗର୍ଜିଉଠି କହିଲେ, ବ୍ରିଟିଶ ଜାତି ଭାରତ ମାଟିରୁ ବିଦାୟ ନିଅ । ଅନ୍ୟଥା, ହମ୍ କରେଙ୍ଗେ ୟା ମରେଙ୍ଗେ । ଗାନ୍ଧିଜୀଙ୍କର ସେଦିନର ଡାକରା - କର ବା ମର, ବ୍ରିଟିଶ ସରକାର ବିରୁଦ୍ଧରେ ଶେଷ ସଂଗ୍ରାମ ବିଚାର କରି ସର୍ବସ୍ୱ ତ୍ୟାଗପାଇଁ ପ୍ରସ୍ତୁତ ରହିବାକୁ ଦେଶବାସୀଙ୍କୁ ଏକ ଆହ୍ୱାନ ଥିଲା । ସ୍ୱାଧୀନତା ପ୍ରାପ୍ତି ପାଇଁ ଦେଶବାସୀଙ୍କ ମନରେ ଏକ ଦୁର୍ବାର ଆତ୍ମପ୍ରତ୍ୟୟ ଆଣିଦେବା ଦୃଷ୍ଟିରୁ ଗାନ୍ଧିଜୀ ଯେ ଏକ ଗଣ ଆନ୍ଦୋଳନ ପାଇଁ ପ୍ରସ୍ତୁତ, ସେତେବେଳେ ଏ ସଂପର୍କରେ କାହାରି ମନରେ ସନ୍ଦେହର ଅବକାଶ ନଥିଲା । ସେ ଏବଂ ବମ୍ବେର କଂଗ୍ରେସ ଅଧିବେଶନ ବ୍ରିଟିଶ ସରକାରଙ୍କୁ ତୁରନ୍ତ ଭାରତଛାଡ଼ି ଯିବାପାଇଁ ଚରମ ଆହ୍ୱାନ ଦେଲେ । କଂଗ୍ରେସ ଏବଂ ଗାନ୍ଧିଜୀଙ୍କ ବଜ୍ର ଗମ୍ଭୀର ନାଦରେ ଇଂରେଜ ଜାତି ସ୍ତମ୍ଭିତ ହୋଇ ପ୍ରମାଦ ଗଣିଲେ । ଭାରତର ଧମନୀରେ ବିଜୁଳି ଖେଳିଗଲା । ନିରାପତ୍ତା ସକାଶେ ତତ୍‌କ୍ଷଣାତ୍ ଗାନ୍ଧିଜୀ ଏବଂ ଆମ ମହତାବବାବୁଙ୍କ ସମେତ ସମସ୍ତ ତୁଙ୍ଗ କଂଗ୍ରେସ ନେତାଙ୍କୁ ଉକ୍ତ ବୈଠକରେ ଗିରଫ କରି ଆମେଦନଗର ଫୋର୍ଟରେ ଅଟକାଇ ଦିଆଗଲା । ସରକାର ସଂଗେସଂଗେ ଜାତୀୟ କଂଗ୍ରେସକୁ ବେଆଇନ୍ ଘୋଷଣା କଲେ । ରାଜ୍ୟ ଏବଂ ଜିଲ୍ଲାସ୍ତରୀୟ କଂଗ୍ରେସ ନେତା ଓ ମୁଖ୍ୟକର୍ମୀମାନଙ୍କୁ ମଧ୍ୟ ନିରାପତ୍ତା ଆଇନ ବଳରେ ଧରିନେଇ ଜେଲରେ ଅଟକ କଲେ । କିନ୍ତୁ ଆନ୍ଦୋଳନ ଚାଲୁ ରହିଲା । ଖବର ପାଇ କେତେକ ନେତା ଆତ୍ମଗୋପନ କରିଥିଲେ । ଶ୍ରୀ ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ରାମନନ୍ଦନ ମିଶ୍ର, ଅଶୋକ ମେହେଟା ଓ ଅରୁଣା ଆସଫ୍ ଅଲ୍ଲୀ ପ୍ରମୁଖ ତରୁଣ ନେତାମାନେ ଭୂମିଗତ ରହି ଏହି ଆନ୍ଦୋଳନର ନେତୃତ୍ୱ ନେଲେ । ସେମାନଙ୍କର ଅଦ୍ଭୁତ ସଂଗଠନ ଶକ୍ତି ଯୋଗୁଁ ୪୨ର ଅନ୍ତିମ ମୁକ୍ତିସଂଗ୍ରାମ ଏକ ବିରାଟ ଗଣ ଆନ୍ଦୋଳନ ଏବଂ ସନ୍ତ୍ରାସର ରୂପ ନେଲା । ଏମାନେ ସମସ୍ତେ ଭୂମିଗତ



Digitized by srujanika@gmail.com

ରହି, ଆଜାଦ ରେଡିଓ ନାମରେ ଏକ ସମାନ୍ତରାଳ ରେଡିଓ ଷ୍ଟେସନ ଗୋପନରେ ପ୍ରତିଷ୍ଠା କରିପାରିଥିଲେ ଏବଂ ତା ମାଧ୍ୟମରେ ଗଣ ଆନ୍ଦୋଳନ ପରିଚାଳନା କରୁଥିଲେ । ସେମାନଙ୍କ ନେତୃତ୍ୱରେ ମହାରାଷ୍ଟ୍ରର ସତାରା ଏବଂ ଉତ୍ତର ପ୍ରଦେଶର ବାଲିଆ ଭଳି ଅଞ୍ଚଳରେ ସ୍ୱାଧୀନ ସମାନ୍ତରାଳ ସରକାର ଗଠିତ ହୋଇପାରିଥିଲା । ଆମ ରାଜ୍ୟରେ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଭୈରବ ମହାନ୍ତି, ନିଶାମଣି ଖୁଣ୍ଟିଆ, ବାଙ୍କ ବିହାରୀ ଦାସ, ପ୍ୟାରିମୋହନ ଦାସ ଏବଂ ଗୌରଚନ୍ଦ୍ର ଦାସ ପ୍ରମୁଖ ତରୁଣ ବିପ୍ଳବୀମାନେ ସେମାନଙ୍କ ସହିତ ଯୋଗସୂତ୍ର ରଖି ଆନ୍ଦୋଳନ କରିଥିଲେ । ଏହାଦ୍ୱାରା ବ୍ରିଟିଶ ସାମ୍ରାଜ୍ୟବାଦର ମୂଳଦୂଆ ଦୋହଲି ଯାଇଥିଲା ।

କଂଗ୍ରେସର ଆହ୍ୱାନରେ ସାରା ଦେଶରେ ନିଆଁ ଜଳିବାକୁ ଆରମ୍ଭ କଲା । ଜାତିର ଏ ସର୍ବଶେଷ ସମରରେ ଜନ୍ମମାଟିର ଆପାମର ଜନତାର ହାର୍ଦ୍ଦିକ ସମର୍ଥନ ବିପୁଳ ମାତ୍ରାରେ ପ୍ରକାଶ ପାଇଲା । ଫଳରେ ନେତାମାନଙ୍କର ଅନ୍ୟାୟ ଗିରଫଦାରୀ ପ୍ରତିବାଦ କରି, ସବୁ ସରକାରୀ ଏବଂ ବେସରକାରୀ ଅଫିସ, ସ୍କୁଲ, କଲେଜ, ବ୍ୟବସାୟ କେନ୍ଦ୍ର, ହାଟବଜାର, ରେଳ ଚଳାଚଳ, ଯୋଗାଯୋଗର ବ୍ୟବସ୍ଥା, ଯାନବାହାନ ପ୍ରାୟ ବନ୍ଦ ହୋଇଗଲା । ଭାରତର ଜନତା ସର୍ବତ୍ର ଗର୍ଜିବାକୁ ଲାଗିଲେ । ଉତ୍ୟକ୍ତ ଜନତା ସରକାରୀ ଅଫିସ୍, ପୁଲିସ୍ ଥାନା, ପୋଷ୍ଟଅଫିସ୍ ଓ କୋର୍ଟ କଚେରିମାନ ପୋଡ଼ି ପକାଇଲେ । ରେଳଲାଇନ୍ ଟାଣି ଫୋପାଡ଼ି ଦେଲେ । ଟେଲିଗ୍ରାଫ୍ ଏବଂ ଫୋନ୍ ତାରମାନ କାଟିଦେଲେ । ଯାନବାହାନରେ ନିଆଁ ଲଗାଇ ପୋଡ଼ି ଦେଲେ । ସରକାରୀ କଳ ତଥା ସାଧାରଣ ଜୀବନଯାତ୍ରା ଅଚଳ ହୋଇପଡ଼ିଲା । ଇଂରେଜ ସରକାର ମଧ୍ୟ ନଛୋଡ଼ବନ୍ଧା । ଭାରତରେ ଯୁଦ୍ଧରତ ଗୋରା ଓ ଆମେରିକୀୟ ସୈନ୍ୟବାହିନୀ ତଥା ପୁଲିସ୍ ବାହିନୀକୁ ବିପ୍ଳବ ଦମନ କରିବାପାଇଁ ମୁତୟନ କରାଗଲା । ଅବିଶ୍ରାନ୍ତ ଲାଠି ଓ ଗୁଳି ଜନତା ମୁଣ୍ଡରେ ବର୍ଷିବାକୁ ଲାଗିଲା । ନିର୍ବିଚାରରେ କେତେ ଯେ ମଲେ ଏବଂ ଖଣ୍ଡିଆ ଖାବରା ହେଲେ ତାର ସଂଖ୍ୟା ନାହିଁ । ମେଳିର ନେତାମାନଙ୍କୁ ଧରିଆଣି, ଫାଶୀ, ଦ୍ୱୀପାନ୍ତର ଓ ଯାବତ୍‌ଜୀବନ କାରାଦଣ୍ଡ ଦିଆଗଲା । କୋର୍ଟ କଚେରି କେବଳ ବିପ୍ଳବୀମାନଙ୍କର ବିଚାର ପାଇଁ ଖୋଲା ରହିଲା । ବିଶ୍ୱଯୁଦ୍ଧ ସାଂଗକୁ ୧୯୪୨ରୁ ୪୫ଯାଏ ଭାରତର ଏହି ଐତିହାସିକ ଅଗଷ୍ଟ ବିପ୍ଳବ ଓ ସ୍ୱାଧୀନତା ସଂଗ୍ରାମ ପୂରାଦମ୍‌ରେ ଦେଶର ସର୍ବତ୍ର ଚାଲୁ ରହିଲା । ଶେଷ ଯୁଦ୍ଧରେ ଶେଷ ରକ୍ଷା ନିମିତ୍ତ ଉଭୟ ଶକ୍ତି ନିଷ୍ଠୁର ଭାବରେ ବଦ୍ଧପରିକର ଦେଖାଗଲେ । କୋରାପୁଟର ଆଦିବାସୀ ନେତା ଲକ୍ଷ୍ମଣ ନାୟକଙ୍କୁ ମିଥ୍ୟା ହତ୍ୟା ଅପରାଧରେ ଅଭିଯୁକ୍ତ କରି ଅନ୍ୟାୟ ବିଚାରରେ ଫାଶୀ ଦିଆଗଲା ।



Digitized by srujanika@gmail.com

ଏତିକିବେଳେ ଆମ ଜିଲ୍ଲାର ସହର ଏବଂ ମଫସଲ, ସବୁଠାରେ ଅଭୂତପୂର୍ବ ଜନଜାଗରଣ ସୃଷ୍ଟି ହୋଇଥାଏ । ଧୁଷୁରୀ ଏବଂ ଲୁଣିଆରେ ସ୍ୱରାଜ୍ୟ ପ୍ରତିଷ୍ଠା, ଇରମ୍‌ରେ ଜାଲିଆନାୱାଲାବାଗ୍‌ର ପୁନରାବୃତ୍ତି ଓ ଖଇରାରେ ଥାନାପୋଡ଼ି ଆଦି ଅବିସ୍ମରଣୀୟ ଘଟଣାମାନ ଘଟି ଜିଲ୍ଲା ତମାମ ଚହଲ ପକାଇଥାଏ । ମୁରଲୀ ପଣ୍ଡା, ମୁରଲୀ ଜେନା, କମଳା କର, ବୈଷ୍ଣବ ନାୟକ ଓ ବୈଦ୍ୟନାଥ ରାଉତ ପ୍ରମୁଖ ବିପ୍ଳବୀ ବୀରମାନଙ୍କ ନେତୃତ୍ୱରେ ଉତ୍ୟକ୍ତ ମେଳି ଓ ପୁଲିସ୍‌ର ନିର୍ମମ ଗୁଳିକାଣ୍ଡ ଓ ଅତ୍ୟାଚାର ଅଗଷ୍ଟ ବିପ୍ଳବ ଇତିହାସରେ ରକ୍ତାକ୍ଷରରେ ଲିପିବଦ୍ଧ ହୋଇ ରହିଛି ।

ବାଲେଶ୍ୱର ଜିଲ୍ଲାରେ ଦେହଢଙ୍କା ଦେଇ ଶେଷଯାଏ ଯେଉଁ କେତେକ କର୍ମୀ ଲୁଚିରହି ଯୁଦ୍ଧ ସଂଗଠନ କରୁଥାଆନ୍ତି । ସେମାନଙ୍କ ମଧ୍ୟରେ ଶ୍ରୀ ଗୌରଚନ୍ଦ୍ର ଦାସ, ପ୍ୟାରୀମୋହନ ଦାସ, ଦୁଃଖୀଶ୍ୟାମ ପାଢ଼ୀ, ରମାକାନ୍ତ ଦାଶ, ତ୍ରିଲୋଚନ ସେନାପତି ଏବଂ ଏହି ଲେଖକ ପ୍ରମୁଖ ପ୍ରଧାନ ଥିଲେ ।

× × ×

ଅଗଷ୍ଟ ବିପ୍ଳବର ଡାକରାରେ ଭୋଗରାଇ ମାଟିରେ ତୁମୁଳ ସଂଗ୍ରାମ ଆରମ୍ଭ ହେଲା । ପ୍ରଥମ ପର୍ଯ୍ୟାୟରେ ଛାତ୍ର ହରତାଳ କରି ଏହି ଲେଖକ ବାଲେଶ୍ୱରରେ ଗିରଫ ହୋଇ ତିନିମାସ କାରାଦଣ୍ଡ ପାଇ ଜେଲ୍ ଗଲା । ସେପ୍ଟେମ୍ବର ମାସରେ ତରୁଣ ଛାତ୍ର ନେତା ଶ୍ରୀ ସୁଧାଂଶୁ ପଟ୍ଟନାୟକଙ୍କ ନେତୃତ୍ୱରେ ରାଧାଶ୍ୟାମ, ହାଡ଼ିବନ୍ଧୁ, ଭଗବାନ, ବିଜୟ, ଭାସ୍କର, ନାରାୟଣ, ନୀଳାମ୍ବର, ଜଗନ୍ନାଥ, ସୀତାନାଥ, ଭବଶଙ୍କର, ବୃନ୍ଦାବନ, ଅର୍ଜୁନ, କରୁଣାକର, ରାମଚନ୍ଦ୍ର, ଯୁଧିଷ୍ଠିର ଓ ଦରଭାଇ ପ୍ରଭୃତି ସ୍ଥାନୀୟ କଂଗ୍ରେସ କର୍ମୀ, ଛାତ୍ର ଓ ଯୁବକମାନେ ଲକ୍ଷ୍ମୀପାଟଣା ଗ୍ରାମର ସଂଗ୍ରାମୀ ଭାଇମାନଙ୍କ ସହ ମିଶି ପ୍ରାୟ ଦୁଇହଜାର ଲୋକର ଏକ ବିରାଟ ପଟୁଆର ବାହାରକରି ଭୋଗରାଇ ହାଟରେ ହରତାଳ କଲେ । ହାଟରେ ସ୍ଥାନୀୟ ପୁଲିସ୍ ସହ ସେମାନଙ୍କର ଘୋର ସଂଘର୍ଷ ଉପୁଜିଥିଲା । ବାଲିଆପାଳରୁ ଶ୍ରୀକାନ୍ତ ପାଳ, ଝଡ଼ିନାଥ ଦେ ଏବଂ ବୈକୁଣ୍ଠ ପ୍ରଧାନ ଆସି ଏମାନଙ୍କ ସହ ଯୋଗ ଦେଇଥାଆନ୍ତି । ପଟୁଆର ଥାନା ପୋଡ଼ିବାକୁ ବାହାରିଲେ । ରସଲପୁର ବାଟେ ଭୂଆବନ୍ଧ ଉପର ଦେଇ ବୁଲି ଲକ୍ଷ୍ମୀପାଟଣା ଗ୍ରାମ ହୋଇ ଥାନା ଆଡ଼େ ପଟୁଆର ଅଗ୍ରସର ହୁଅନ୍ତେ, ପୁଲିସ୍ ବାହିନୀ ସେମାନଙ୍କୁ ବାଧାଦେଲା ଏବଂ ରାତ୍ରିର ଘନ ଅନ୍ଧକାର ମଧ୍ୟରେ ପୁଲିସ୍ ଲାଠିପିଟି ପଟୁଆରକୁ ଛତ୍ରଭଂଗ କରିଦେଇଥିଲା । ଛାତ୍ରନେତା ଓ କଂଗ୍ରେସ କର୍ମୀମାନଙ୍କୁ ଲକ୍ଷ୍ମୀପାଟଣାସ୍ଥିତ ଥାନାକୁ ଧରିନେଇ ବେଦମ୍ ପ୍ରହାର ଦିଆଗଲା । ଦାରୁଣ ପ୍ରହାର ଖାଇ ସୁଧାଂଶୁ ମୂର୍ଚ୍ଛାଗଲେ । ଭାସ୍କର ଗୋଡ଼ ଓ ମୁଣ୍ଡରେ ଭୀଷଣ ଆଘାତ ପାଇ ମୁମୂର୍ଷୁ ହୋଇ



Digitized by srujanika@gmail.com

ପଡ଼ି ରହିଲେ । ନିଷ୍ଠୁର ପୁଲିସ୍ ଭଗବାନ ଦେ ଉପରେ ବୁଟ ଜୋତା ଏପରି ମାଡ଼ି ଛେଚି ଚାଲିଲା ଯେ, ରକ୍ତ ଏବଂ ବିଷ୍ଠା ତାଙ୍କର ମୁହଁବାଟେ ବାନ୍ତି ହେଲା ଏବଂ ଡାକ୍ତରଖାନାରେ ତାଙ୍କର ପ୍ରାଣଗଲା । ଏହା ଜାଣିପାରି ଶ୍ରୀ ଯୋଗେନ୍ଦ୍ର ନାରାୟଣ ଚନ୍ଦ୍ର, ଚତୁର୍ଭୁଜ ମହାନ୍ତି ଏବଂ ଦ୍ୱାରକାନାଥ ଦେ ପ୍ରମୁଖ ପ୍ରଭାବଶାଳୀ ବ୍ୟକ୍ତି ଅନ୍ୟାନ୍ୟ ଗ୍ରାମବାସୀମାନଙ୍କ ସାହାଯ୍ୟରେ ଥାନା ଘେରାଉ କରିବାକୁ ଉଦ୍ୟତ ହୁଅନ୍ତେ ବିପ୍ଳବୀମାନଙ୍କୁ ଛାଡ଼ି ଦିଆଗଲା । ପ୍ରାୟ ଦୁଇଶହ ଶୋଭାଯାତ୍ରାକାରୀଙ୍କୁ ଧରିନେଇ ଜେଲ ଦିଆଗଲା । ଉତ୍ତର ବାରବାଟିଆ ଗ୍ରାମର ଶ୍ରୀ ରାମକୃଷ୍ଣ ଜେନା ଏହି ବିପ୍ଳବୀମାନଙ୍କୁ ଆଶ୍ରୟ ଦେବାରୁ ତାଙ୍କୁ ଗିରଫ କରି ଜେଲରେ ଅଟକବନ୍ଦୀ ଭାବେ ରଖାଗଲା । ଦଳେ ଶୋଭାଯାତ୍ରାକାରୀ ପଳାଇ ଯାଇ ପୁଣି ସଂଗଠନ ଆରମ୍ଭ କଲେ । ତାଙ୍କୁ ଧରିବା ପାଇଁ ବ୍ୟାପକ ଖାନତଲାସ ଚାଲିଲା । ସନ୍ଦେହଯୁକ୍ତ ସମସ୍ତଙ୍କୁ ପୁଲିସ୍ ଗିରଫ କରି ଚାଲାଣ କଲା । କିନ୍ତୁ ସୁଧାଂଶୁ, ରାଧାଶ୍ୟାମ ଏବଂ ହାଡ଼ିବନ୍ଧୁ ପ୍ରଭୃତି କେତେକେ ପୁଲିସ୍ ହାତରୁ ଖସି ପଳାଇଗଲେ । କିଛିଦିନ ପରେ ସେମାନେ ଲୁଚି ପଳାଇ ଯାଉଥିବାବେଳେ ବାଲିଆପାଳ ପୁଲିସ୍ ଦ୍ୱାରା ଗିରଫ ହେଲେ ।





Digitized by srujanika@gmail.com

# ମୋ ମାଟିର ବୀର ସଂଗ୍ରାମୀ

ଜାତୀୟ ମୁକ୍ତି ସଂଗ୍ରାମ ସେନାନୀ କଂଗ୍ରେସ ସଂଗଠନ ଆତ୍ମତ୍ୟାଗ ଓ ଜନସେବା ଉପରେ ଆଧାରିତ ଥିଲା । ଉଚ୍ଛଳ ଯୌବନ ବିକଶିତ, ସୁନ୍ଦର ଓ ଅସାଧାରଣ ବ୍ୟକ୍ତିତ୍ୱ ସଂପନ୍ନ, ଦୀର୍ଘକାୟ ଅପରପଡ଼ାର ରାଜା ଶ୍ରୀ ହରେକୃଷ୍ଣ ମହତାବ ଓ ରାଣୀ ସୁଭଦ୍ରା ବିବିଙ୍କର ସଫଳ ନେତୃତ୍ୱ ଜିଲ୍ଲାବାସୀଙ୍କୁ ମୋହିତ କରି ଦେଇଥିଲା । ଅସୀମ ସାହସୀ ସର୍ଦ୍ଦାର ସୁରେନ୍ଦ୍ର, ଖର୍ବକାୟ କର୍ମବୀର ଶ୍ରୀ ନୀଳାମ୍ବର ଦାସ ଓ ଶ୍ରୀ କରୁଣାକର ପାଣିଗ୍ରାହୀ, ସୌମ୍ୟଦର୍ଶନ ବିପ୍ଳବୀ ଗୌରଚନ୍ଦ୍ର ଦାସ, ରବୀନ୍ଦ୍ର ମୋହନ ଦାସ, ଶ୍ରୀ ସତ୍ୟନାରାୟଣ ଦାସ ଏବଂ ମୌଲବୀ ମହମ୍ମଦ ହନିଫ୍, ଉଚ୍ଚ ଶିକ୍ଷିତ ମୁକ୍ତିଯୋଦ୍ଧା- ଶ୍ରୀ ନନ୍ଦକିଶୋର ଦାସ, ଶ୍ରୀ ଭାଗବତ ସାହୁ ପ୍ରମୁଖ ସଂଗ୍ରାମୀ ମାନଙ୍କର ଅଜେୟ ସଂଗଠନ ଶକ୍ତି ଓ ନିର୍ଭୀକ ମଧୁର ଆଚରଣ ଓ ନିଷ୍ଠା ପାଖରେ ଜିଲ୍ଲାବାସୀ ନତ ସ୍ୱୀକାର କରିଥିଲେ । ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ମହାନ୍ତି, ହାଡ଼ିବନ୍ଧୁ ରାଜ୍ ଓ ବନମାଳୀ ଦାସଙ୍କ ନେତୃତ୍ୱରେ ନୀଳଗିରିର ପ୍ରଜାମଣ୍ଡଳ ଆନ୍ଦୋଳନଠାରେ ସ୍ଥାନୀୟ ରାଜତନ୍ତ୍ର ଅସ୍ଥିର ଓ କ୍ଷତବିକ୍ଷତ ହୋଇ ଉଠିଥିଲା । ଜେନାମଣି ନରେନ୍ଦ୍ର ଓ ତାଙ୍କ ପରିବାରର ଦୁଃସାହସିକତା ଏବଂ ଦେଶପାଇଁ ଯଥା ସର୍ବସ୍ୱ ପଣର ଦୃଷ୍ଟାନ୍ତ ଇତିହାସରେ ବିରଳ । ଏସବୁର ଫଳଶ୍ରୁତି ସ୍ୱରୂପ, ମୁକ୍ତି ସଂଗ୍ରାମର ଶେଷ ପର୍ଯ୍ୟାୟରେ ସମଗ୍ର ଜିଲ୍ଲାରେ ଶ୍ରୀ ମୁରଲୀଧର ଜେନା, ମୁରଲୀଧର ପଣ୍ଡା, ବୈଦ୍ୟନାଥ ରାଉତ, କମଳାକାନ୍ତ କର, ବୈଷ୍ଣବଚରଣ ନାୟକ, ତ୍ରିଲୋଚନ ସେନାପତି, ସୁବାସ ମହାପାତ୍ର, ପିତାମ୍ବର ପାଣି ଓ ମୋ ପରି ଶିକ୍ଷିତ ଯୁବକମାନେ ଆପେଆପେ ବାହାରି ସ୍ୱ ସ୍ୱ ଅଞ୍ଚଳ ନେତୃତ୍ୱ ନେବାକୁ ସକ୍ଷମ ହୋଇପାରିଥିଲେ ଏବଂ ଜିଲ୍ଲାବାସୀଙ୍କୁ ମଧ୍ୟ ନେତୃତ୍ୱ ଦେଇପାରିଥିଲେ ।

ସେ ବେଳର ଯୁବକମାନଙ୍କର ନିଚ୍ଛକ ଶୃଙ୍ଖଳା ଏବଂ ଦେଶାତ୍ମବୋଧ, ତ୍ୟାଗ, ସେବା, ବଳିଦାନ, ଅପରିସୀମ ଧୈର୍ଯ୍ୟ ଓ ଦାୟିତ୍ୱବୋଧର ଦୃଷ୍ଟାନ୍ତ ଆଜିର ସମାଜରେ ଏକାବେଳକେ ବିରଳ କହିଲେ ଚଳେ । ଏ ଯୁଗର ଯୁବସମାଜ ଯେବେ ଉଚ୍ଛୃଙ୍ଖଳତା, ଆତ୍ମାଭିମାନ ଏବଂ ଅସୁନ୍ଦର ଆଚରଣ ପରିହାର କରି ଏହି ଯୁଗାନ୍ତକାରୀ ସ୍ୱତନ୍ତ୍ରତା ସେନାନୀମାନଙ୍କର ଆଦର୍ଶ ଓ ଚରିତ୍ରରୁ କାଣିଚାଏ ମାତ୍ର ଅନୁସରଣ କରି ଚାଲନ୍ତେ,



Digitized by srujanika@gmail.com

ଦେଶ ତଥା ସମାଜ ସଂଗଠନ ମଜବୁତ ହୋଇପାରନ୍ତା । ଯୁବକମାନଙ୍କର ଶୃଙ୍ଖଳା ଜ୍ଞାନ, ସମୟାନୁବର୍ତ୍ତିତା ଓ ନିୟମାନୁବର୍ତ୍ତିତା ନ ରହିଲେ ଦେଶର କୌଣସି ପ୍ରଗତି ସମ୍ଭବ ନୁହେଁ । ସମୟ ଗଡ଼ି ଚାଲଛି । ସମୟଠାରୁ ବଳବାନ୍ କେହିନାହିଁ । ତାକୁ ଅବହେଳା କଲେ ମଣିଷ ଜୀବନସାରା ଅବହେଳିତ ହୋଇ ପଡ଼ିରହିବ ।

ଦେଶ ଓ ଜାତିକୁ ଯେଉଳି ଭାବରେ ଗଢ଼ିବାକୁ ଯେଉଁମାନେ ଲହୁଲୁହ ଢାଳିଥିଲେ, ଅକଥନୀୟ ନିର୍ଯାତନା ଓ ତ୍ୟାଗ ବରଣ କରିଥିଲେ, ଜୀବନକୁ ତୁଚ୍ଛ କରି ଦେଇଥିଲେ, ସେମାନଙ୍କ ମଧ୍ୟରେ ଭୋଗରାଇ ମାଟିର ସନ୍ତାନରୂପେ ଶ୍ରୀ ପ୍ୟାରୀମୋହନ ଦାସ ସମସ୍ତଙ୍କ ଅପେକ୍ଷା ଅଧିକ ତ୍ୟାଗ ସାହସ ଓ ସଂଗଠନ ଶକ୍ତିର ପରିଚୟ ଦେଇଛନ୍ତି । ସେ ପାଞ୍ଚବର୍ଷରୁ ଅଧିକ କାଳ କାରାବାସର କଷ୍ଟ ଓ ଯନ୍ତ୍ରଣା ସହ୍ୟ କରିଛନ୍ତି । ୰ସୁଦର୍ଶନ ବେହେରା, ଉମେଶ ଚନ୍ଦ୍ର ପାତ୍ର, ସୀତାନାଥ ଆଚାର୍ଯ୍ୟ ଓ ରାଧାଶ୍ୟାମ ଦାସ ଏବଂ ସର୍ବଶ୍ରୀ ହାଡ଼ିବନ୍ଧୁ ଜେନା, ସୁଧାଂଶୁ ପଟ୍ଟନାୟକ, ବିଜୟକୃଷ୍ଣ ମହାନ୍ତି, ରବିନ୍ଦ୍ର ନାଥ ପ୍ରଧାନ, ନିରଞ୍ଜନ ଜେନା ଏବଂ ନରହରି ଜେନା ପ୍ରମୁଖ ସତ୍ୟାଗ୍ରହୀମାନଙ୍କର ଅପରାଜେୟ ନିଷ୍ଠା ଓ ତ୍ୟାଗ, ବିପ୍ଳବକୁ ଆଗେଇ ନେଇ ବିସ୍ତୀର୍ଣ୍ଣ ଓ ଦୀର୍ଘାୟୁ କରିଛି । ଦୀଘା ନିକଟବର୍ତ୍ତୀ ଖେଡ଼ସାହି ଗ୍ରାମର 'ଚୌକିଦାରୀ ଟିକସ ବନ୍ଦ' ମେଳିରେ ଯୋଗଦେଇ ବାଜିତପୁରର ସ୍ୱର୍ଗତଃ ଯଜ୍ଞେଶ୍ୱର ଦାସ ମହାପାତ୍ର ପୁଲିସ୍ ଗୁଳିରେ ଗୁରୁତର ଆହତ ହୋଇ ଶେଷରେ ମୃତ୍ୟୁବରଣ କରିଛନ୍ତି । ୰ଚମ୍ପାମଣି ଜେନା, ଚୂଡ଼ାମଣି ଜେନା, ଦୁର୍ଗାମଣି ମହାନ୍ତି ଏବଂ ବିଷ୍ଣୁପ୍ରିୟା ପାତ୍ର ପ୍ରମୁଖ ମହିଳାମାନେ ସତ୍ୟାଗ୍ରହ କରି ଦୀର୍ଘଦିନ କାରାଦଣ୍ଡ ଭୋଗ କରିଥିଲେ । ଶ୍ରୀମତୀ ଶୈଳବାଳା ଚନ୍ଦ ମେଦିନୀପୁରର ଖାନସିଂ ମାଠ, ସାଁକାରି ଓ ଖଡ଼ଗପୁରଠାରେ ଲବଣ ଆନ୍ଦୋଳନ ବେଳେ ଆଇନ ଅମାନ୍ୟ ସତ୍ୟାଗ୍ରହ କରି ହିଜଲି କେମ୍ପ ଜେଲରେ ତିନିମାସ ସଶ୍ରମ କାରାଦଣ୍ଡ ପାଇଥିଲେ । ୰ଭଗବାନ ଚନ୍ଦ୍ର ଦେ ପୁଲିସର ଅମାନୁଷିକ ଅତ୍ୟାଚାର ସହି ନପାରି ଡାକ୍ତରଖାନାରେ ସହିଦ ହେଲେ । ତାଙ୍କରି ଗ୍ରାମର (ଦକ୍ଷିଣ ବାରବାଟିଆ) ୰ଭାସ୍କର ଚନ୍ଦ୍ର ଜେନା ସାରାଜୀବନ ପାଇଁ ପୁଲିସ ମାଡ଼ରେ ଛୋଟା ଓ ପାଗଳ ହୋଇଯାଇଥିଲେ । ୰ସୁଦର୍ଶନ ବେହେରା ଜେଲଖାନାରେ ପ୍ରବଳ ପ୍ରହାର ଖାଇ ରୋଗଗ୍ରସ୍ତ ହୋଇ ଘରକୁ ଫେରି ଦେଶପାଇଁ ପ୍ରାଣ ଦେଲେ । ଶ୍ରଦ୍ଧାପୁର ଗ୍ରାମର ଶ୍ରୀ ଗିରିଧାରୀ ନାୟକଙ୍କ ପୁତ୍ର ପ୍ରଫୁଲ୍ଲ ନାୟକ କିଶୋର ବୟସରେ ୧୯୩୨ ସାଲରେ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେଇ ପୁଲିସ୍ ଦ୍ୱାରା ଗିରଫ ହୋଇ ତାଙ୍କର ନିର୍ଦ୍ଦୟ ଶାସନରେ ମୃତ୍ୟୁବରଣ କରିଥିଲେ ।



Digitized by srujanika@gmail.com

ଂରାଜେନ୍ଦ୍ର ନାରାୟଣ ଜେନା, ସୀତାନାଥ ଆଚାର୍ଯ୍ୟ, ଉମେଶ ଚନ୍ଦ୍ର ପାତ୍ର, କେଶବ ଚନ୍ଦ୍ର ଜେନା ଏବଂ ନରେନ୍ଦ୍ର ନାଥ ଜେନାଙ୍କର ସର୍ବସ୍ୱ ଲୁଣ୍ଠନ କରି ନିଲାମ କରାଯାଇଥିଲା । ଦୁଡ଼ପଳ, ସୁହୁରିଆ, ଦ୍ୱାରିପାତ୍ର ଉତ୍ତର ଏବଂ ଦକ୍ଷିଣ ବାରବାଟିଆ, ଖରିଦ୍‌ଚକ, କୁକୁଡ଼ିଆ ଏବଂ ସର୍ବୋପରି ଲକ୍ଷ୍ମୀପାଟଣା ଗ୍ରାମର ଅଧିକାଂଶ ଲୋକ ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ସକ୍ରିୟ ଅଂଶଗ୍ରହଣ କରି କାରାଦଣ୍ଡ ସହ ନାନା ଦୁଃଖ କଷ୍ଟ ଓ କ୍ଷୟକ୍ଷତିର ଶିକାର ହୋଇଥିଲେ । ଂମଧୁସୂଦନ ଦାସ, ପ୍ରଭାକର ଦାସ, ସେବକରାମ ଜେନା ଏବଂ ତାଙ୍କ ପୁତ୍ର ରାମକୃଷ୍ଣ ଜେନା, ମଦନମୋହନ ମହାନ୍ତି, କବିରାଜ ଲକ୍ଷ୍ମୀନାରାୟଣ ଦାଶ, ଭଗବାନ ଚନ୍ଦ୍ର ଜେନା, ନିରଦ ଭୂଷଣ ଘୋଷାଲ, ଗୋପେନ୍ଦ୍ର ନନ୍ଦନ କାନୁନ୍‌ଗୋ, ଡାକ୍ତର ସେଖ ହନିଫ୍, ସେଖ୍ ଦଫିରୁଦ୍ଦିନ, ସେଖ୍ ରହିମ୍, ପଦ୍ମଲୋଚନ ସାମଲ, ମହେନ୍ଦ୍ର ନାରାୟଣ ପ୍ରଧାନ, କୃତ୍ତିବାସ ମହାନ୍ତି, ହରପ୍ରସାଦ ପାଳ, ଶ୍ରୀକାନ୍ତ ଜେନା, କାର୍ତ୍ତିକ ଚନ୍ଦ୍ର ଜେନା, ତ୍ରୈଲୋକ୍ୟନାଥ ଜେନା, ନେତ୍ରାନନ୍ଦ ପରିଡ଼ା, ହରପ୍ରସାଦ ନାୟକ, ବଙ୍କିମ ଚନ୍ଦ୍ର ଭଞ୍ଜ, ସେଖ୍ ଅବଦୁସ ସୋଭାନ, ସୁରେନ୍ଦ୍ର ଜେନା, ଲକ୍ଷ୍ମଣ ସେନାପତି, ମଧୁସୂଦନ ପାଣିଗ୍ରାହୀ, ଶ୍ରୀନାଥ ଚନ୍ଦ୍ର ରାଉତ, ସେଖ୍ ଫାଜଲ, ପ୍ରତାପ ଚନ୍ଦ୍ର ଘୋଷ, ଦିଗାମ୍ବର ଜେନା, ଯୋଗେନ୍ଦ୍ର ନାରାୟଣ ଚନ୍ଦ, ଚତୁର୍ଭୁଜ ମହାନ୍ତି, ଶଚିନ୍ଦ୍ର ପରିଡ଼ା, କାଳୀଚରଣ ଦେ, ବ୍ରଜେନ୍ଦ୍ର ଜେନା ଏବଂ ଦୁର୍ଗାମଣି ଗିରି (ରସଲପୁର) ଏବଂ ସର୍ବଶ୍ରୀ ଗୋପାଳଚନ୍ଦ୍ର ଦାସ, ଅବନୀଭୂଷଣ ଘୋଷାଲ, ରାଧାଶ୍ୟାମ ନାଏକ, ଗୌରମୋହନ ସାହୁ, ଶ୍ୟାମାଚରଣ ପ୍ରଧାନ, ଗୋବିନ୍ଦ ପ୍ରସାଦ ଚନ୍ଦ, ଶଶୀକାନ୍ତ ଭଞ୍ଜ, ସୁରେନ୍ଦ୍ର ନାଥ ପ୍ରଧାନ, ହେରମ୍ବ ନାଥ ଭୂୟାଁ ପ୍ରମୁଖ ବହୁ ଭୋଗରାଇବାସୀ ଆତ୍ମଗୋପନକାରୀ ସଂଗ୍ରାମୀମାନଙ୍କୁ ଆଶ୍ରୟଦେବା ସଂଗେସଂଗେ ନାନାପ୍ରକାର ସ୍ୱାଧୀନତା ଆନ୍ଦୋଳନକୁ ଆଗେଇ ନେବାରେ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ସେମାନଙ୍କର ପୃଷ୍ଠପୋଷକତା କରିଥିଲେ ।

ଜାତୀୟ କଂଗ୍ରେସର ବୀର ଯୋଦ୍ଧାମାନଙ୍କ ମଧ୍ୟରୁ ଯେଉଁମାନେ ସେ ସମୟରେ ଉତ୍କଳର ବିଭିନ୍ନ ସ୍ଥାନରୁ ଆସି ଦେଶପ୍ରେମ ଓ ମୁକ୍ତିସଂଗ୍ରାମର ବୀଜ ଭୋଗରାଇ ମାଟିରେ ବପନ କରି ତାହାକୁ ବଢ଼ାଇ ବ୍ୟାପକ ଏବଂ ଦୃଢ଼ କରିଥିଲେ ତଥା ଗାନ୍ଧିଜୀଙ୍କର ରଚନାତ୍ମକ କାର୍ଯ୍ୟକ୍ରମମାନ ଅଞ୍ଚଳର ବିଭିନ୍ନ ଗ୍ରାମରେ ପ୍ରବର୍ତ୍ତନ କରିଥିଲେ, ସେମାନଙ୍କ ମଧ୍ୟରୁ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ, ରାଣୀ ସୁଭଦ୍ରା ବିବି, ନୀଳାମ୍ବର ଦାସ, ଗୌରଚନ୍ଦ୍ର ଦାସ, କରୁଣାକର ପାଣିଗ୍ରାହୀ, ସର୍ଦ୍ଦାର ସୁରେନ୍ଦ୍ର, ନନ୍ଦକିଶୋର ଦାସ,



Digitized by srujanika@gmail.com

ରବୀନ୍ଦ୍ରମୋହନ ଦାସ, ଲୋକନାଥ ସେନାପତି, ତ୍ରିଲୋଚନ ସେନାପତି, ନିରଞ୍ଜନ ମହାନ୍ତି, ମନୋରଞ୍ଜନ ଭୂୟାଁ, ମହେନ୍ଦ୍ର ନାରାୟଣ ଜେନା, କମରୁଲ ହୋଦା, ଆଜାଦ୍, ସେଖ ଅହମ୍ମଦ, ଗଗନ ବିହାରୀ ଭଞ୍ଜ, ଶ୍ରୀନାଥ ଚନ୍ଦ୍ର ରାଜ, ଗଂଗାନାରାୟଣ ଦାସ, ଧନେଶ୍ୱର ଦାସ, ପରମାନନ୍ଦ ପଟ୍ଟନାୟକ, ଈଶ୍ୱରଲାଲ ବ୍ୟାସ, ଠକ୍କୁର ବାପ୍‌ପା, ବଳାଇଲାଲ ଦାସ ମହାପାତ୍ର, ପୁଲିନ ବିହାରୀ ଚୌଧୁରୀ, ଦେବେନ୍ଦ୍ର ନାଥ ପଣ୍ଡା ଓ ତ୍ରୈଲୋକ୍ୟନାଥ ପ୍ରଧାନ ପ୍ରମୁଖ ଅନ୍ୟତମ ଅଟନ୍ତି ।

ଶ୍ରୀ ଗଂଗା ନାରାୟଣ ଦାସଙ୍କ ପ୍ରତିଷ୍ଠିତ ଓ ପରିଚାଳିତ ଝାଡ଼ପିପ୍‌ଲ 'ଗାନ୍ଧି କର୍ମ ମନ୍ଦିର', ଶ୍ରୀ ଗୋପାଳଚନ୍ଦ୍ର ଦାସ, ଶ୍ରୀ ଧନେଶ୍ୱର ଦାସ ଓ ପରମାନନ୍ଦ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ପରିଚାଳିତ ତଥା ଈଶ୍ୱରଲାଲ ବ୍ୟାସ ଓ ଶଶୀକାନ୍ତ ଭଞ୍ଜଙ୍କ ଦ୍ୱାରା ପ୍ରତିଷ୍ଠିତ 'ଗୋଛିଦା ଖଦି କେନ୍ଦ୍ର', ଶ୍ରୀ ନରେନ୍ଦ୍ର ନାଥ ଜେନା ଓ ମହେନ୍ଦ୍ର ନାଥ ମହାନ୍ତିଙ୍କ ପରିଚାଳିତ 'ଆମ୍ବଚୁଆ ରିଲିଫ କେନ୍ଦ୍ର', ଉତ୍ତର ବାଲେଶ୍ୱର ତଥା ଭୋଗରାଇର ସଂଗ୍ରାମରତ ବୀରମାନଙ୍କୁ ଦୀର୍ଘଦିନ ଧରି ଆଶ୍ରୟ ଦେଇଆସିଛି । ମୁକ୍ତିସଂଗ୍ରାମରେ ଏହି ଗଠନମୂଳକ କର୍ମ କେନ୍ଦ୍ରମାନଙ୍କର ଅବଦାନ କିଛି କମ୍ ନୁହେଁ । ଭୋଗରାଇର ଯେଉଁ ଭାଇଭଉଣୀମାନେ ୧୯୨୯ ଠାରୁ ଆରମ୍ଭ କରି ୧୯୪୪ ମସିହା ମଧ୍ୟରେ ବିଦେଶୀ ବର୍ଜନ, ଆଇନ ଅମାନ୍ୟ, ଲବଣ ସତ୍ୟାଗ୍ରହ, ରଚନାତ୍ମକ କାର୍ଯ୍ୟକ୍ରମ ପ୍ରବର୍ତ୍ତନ ଓ ପ୍ରସାର, ହରିଜନ ସେବକ ସଂଘ, ହିନ୍ଦୁସ୍ଥାନୀ ତାଲିମ ସଂଘ, ଗାନ୍ଧି ସେବା ସଂଘ, ଚରଖା ସଂଘ, ଖଦି କେନ୍ଦ୍ର ଏବଂ ଗ୍ରାମପଞ୍ଚାୟତ ଆଦିର ପ୍ରତିଷ୍ଠା, ବ୍ୟକ୍ତିଗତ ସତ୍ୟାଗ୍ରହ, ଅଗଷ୍ଟ ବିପ୍ଳବ ଆଦି ଜାତୀୟ ମୁକ୍ତି ଆନ୍ଦୋଳନରେ ଝାସ ଦେଇ ଗୁଳି, ବୁଟ୍, ଲାଠି, ଜେଲ ଜୋରିମାନା ଏବଂ ସର୍ବସ୍ୱାନ୍ତ ପ୍ରଭୃତି ଦଣ୍ଡ ଭୋଗିଥିଲେ, ପୁଲିସ ହାଜତରେ ଭୋକ ଉପାସରେ ରହି ଅକଥନୀୟ ନିର୍ଯାତନା ଓ ଅତ୍ୟାଚାର ସହିଥିଲେ; ସେମାନଙ୍କର ଅଭୁଲା ସ୍ମୃତି ଇତିହାସ ପୃଷ୍ଠାରେ ଆଜି ଧାଡ଼ିବାନ୍ଧି ଛିଡ଼ା ହୋଇଯାଏ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଇହଜଗତ ଛାଡ଼ି ଚାଲିଗଲେଣି । ଦେଶବାସୀ ତାଙ୍କୁ ଭୁଲିଗଲେଣି । ଯେଉଁ ଅଳ୍ପ କେତେଜଣ ସଂଗ୍ରାମୀ ଆଜିସୁଦ୍ଧା ଜୀବିତ ରହିଛନ୍ତି, ସେମାନଙ୍କ ଅବସ୍ଥା କହିଲେ ନସରେ । କିନ୍ତୁ ଇତିହାସ ତାଙ୍କୁ ଭୁଲିପାରିବ ନାହିଁ । ସେମାନେ ହେଲେ ୰ ସୁଦର୍ଶନ ବେହେରା, ଯାଦବେନ୍ଦ୍ର ଦଳାଇ, ନୀଳାମ୍ବର ତରାଇ, ମହେନ୍ଦ୍ର ମିର୍ଦ୍ଧା, ଯୁଧିଷ୍ଠିର ମିର୍ଦ୍ଧା, କାଙ୍ଗାଳୀ ମାଝି (ଲକ୍ଷ୍ମୀପାଟଣା), ରାମକୃଷ୍ଣ ଜେନା, ଭଗବାନ ଚନ୍ଦ୍ର ଦେ, ଭାସ୍କର ଚନ୍ଦ୍ର ଜେନା, ଚମ୍ପାମଣି ଜେନା, ଚୂଡ଼ାମଣି ଜେନା (ଉତ୍ତର ବାରବାଟିଆ), ଦିବାକର



Digitized by srujanika@gmail.com

ଦାସ, ନିରଞ୍ଜନ ଦାସ, ଶ୍ରୀକାନ୍ତ ଦାସ (ଦ୍ୱାରିପାତ୍ର), ମହେନ୍ଦ୍ର ନାରାୟଣ ଜେନା, ଯୋଗେନ୍ଦ୍ର ନାରାୟଣ ଜେନା (ଗୁନାଇବସାଣ), ଉପେନ୍ଦ୍ର ନାଥ ଗିରି (ସୁନ୍ଦରାଡ଼ି), ଜୟନାରାୟଣ ଗିରି (ପାଲୁସିଆ), ଶ୍ରୀକାନ୍ତ ସାମଲ (ଜୟରାମପୁର), ରମେଶ ଚନ୍ଦ୍ର ଦାସ ମହାପାତ୍ର (କାଳାହାଟୀ), ଯଜ୍ଞେଶ୍ୱର ଦାସ ମହାପାତ୍ର (ବାଜିପୁର), ରାମଚନ୍ଦ୍ର ଗିରି (ଚାକୁଆ), ଭୂପେନ୍ଦ୍ର ନାଥ ଜେନା, ନାରାୟଣ ବାରିକ, ଈଶ୍ୱରଚନ୍ଦ୍ର ଗିରି (ଦେଉଳା), ରାଧାଶ୍ୟାମ ଦାସ (ମହମ୍ମଦ ପୁର), ଦୁର୍ଗାମଣି ମହାନ୍ତି (କିଆର୍ଦ୍ଧା), ଜୟନାରାୟଣ ଦେ (ବାଡ଼ସରିଷା), ନିରଞ୍ଜନ ଜେନା, ନରହରି ଜେନା, ମଧୁସୂଦନ ଜେନା, ଗଜେନ୍ଦ୍ର ନାଥ ପଣ୍ଡା, ମଧୁସୂଦନ ମହାପାତ୍ର ଓ ରମାନାଥ ପଣ୍ଡା (ଦୁଡ଼ପଲ), ବଂଶୀଧର କର (ଈଶ୍ୱରପୁର), ବସନ୍ତ ପଣ୍ଡା (ବିଚିତ୍ରପୁର), ଉମେଶ ଚନ୍ଦ୍ର ପାତ୍ର (ଜଟି ପାତ୍ର) ଏବଂ ବିଷ୍ଣୁପ୍ରିୟା ପାତ୍ର (ଦକ୍ଷିଣ ବାରବାଟିଆ), ସର୍ବେଶ୍ୱର ମହାନ୍ତି, ଶ୍ୟାମସୁନ୍ଦର ଚନ୍ଦ (ଫୁଲବଣି), ପ୍ରସନ୍ନ କୁମାର ମାହାନା, ରଘୁନାଥ ବେହେରା, ଲକ୍ଷ୍ମୀକାନ୍ତ ତ୍ରିପାଠୀ (ସୁହୁରିଆ), ନିତ୍ୟାନନ୍ଦ ମଣ୍ଡଳ, ଦେବେନ୍ଦ୍ର ନାଥ ମଣ୍ଡଳ (କୁକୁଡ଼ିଆ), ପ୍ରସନ୍ନ କୁମାର ଦାସ (କଣ୍ଟାବଣିଆ), ପୀତାମ୍ବର ମହାନ୍ତି (ବନାବସାଣ), ଚୈତନ୍ୟ ପ୍ରଧାନ (କାନ୍ଥିଭଉଁରୀ), ଚୈତନ୍ୟ ଦେ (ଦାଉଦପୁର), ସୃଷ୍ଟିଧର ଦଳାଇ (ପଥରଘଟା), ଉଦୟ ମାଝୀ (ପଁତେଇ), କାହ୍ନୁ ପରିଡ଼ା; ରାଧାକୃଷ୍ଣ ପ୍ରଧାନ (କୁଚିଲାଡାଙ୍ଗ), ନୀଳକଣ୍ଠ ମହାନ୍ତି, (ବାସୁଦେବପୁର), ମୃତ୍ୟୁଞ୍ଜୟ ପଟ୍ଟନାୟକ (ତଲାଡ଼ି), ସୀତାନାଥ ଆଚାର୍ଯ୍ୟ, କାଳିଚରଣ ଆଚାର୍ଯ୍ୟ (ପୁଟିଣା) ।

ଏବଂ ସର୍ବଶ୍ରୀ ପ୍ୟାରୀମୋହନ ଦାସ, ଭଜହରି ଦାସ, ଦୁର୍ଗା ଶଙ୍କର ଦାସ, (ତଲାଡ଼ି), ସୁଧାଂଶୁ ଶେଖର ପଟ୍ଟନାୟକ, ଭବଶଙ୍କର ପଟ୍ଟନାୟକ (ବଡ଼ମନ୍ଦାରୁଣୀ), ରାମଚନ୍ଦ୍ର ପଣ୍ଡା (ଜଳସୁହୁରିଆ), ଅର୍ଜୁନ ବେହେରା, ପ୍ରଫୁଲ୍ଲ ପ୍ରଧାନ, ବନମାଳୀ ତ୍ରିପାଠୀ, ପ୍ରିୟନାଥ ତ୍ରିପାଠୀ (ସୁହୁରିଆ), ନାରାୟଣ ଦାସ ଗୋସ୍ୱାମୀ, କେଦାରନାଥ ଦାସ (ଦେଉଳା), କାର୍ତ୍ତିକ ଚନ୍ଦ୍ର ଦାସ (ମନ୍ଦାର ସାହି), ଜଗନ୍ନାଥ ବଢ଼ାଇ, କ୍ଷୀର ତରାଇ (ଲକ୍ଷ୍ମୀପାଟଣା), ଦିବାକର ଜେନା (ଉତ୍ତର ବାରବାଟିଆ), ହାଡ଼ିବନ୍ଧୁ ଜେନା (ଖରିଦଚକ), ବିଜୟ କୃଷ୍ଣ ମହାନ୍ତି (ଦାଉଦପୁର), କରୁଣାକର ପ୍ରଧାନ, ରବୀନ୍ଦ୍ର ନାଥ ପ୍ରଧାନ, ଧୀରେନ୍ଦ୍ର ଦାସ ମହାପାତ୍ର, (ପ୍ରହରାଜପୁର), ଲଛମନ ଖଟୁଆ (ଗବଗାଁ), ମଧୁସୂଦନ ଜେନା, ସୁରେନ୍ଦ୍ର ନାଥ ଦାସ (ବାଇତପୁର), ରଜନୀକାନ୍ତ ପଟ୍ଟନାୟକ (ଖାଣ୍ଡିଆଡ଼ିଆ), ବନମାଳୀ ଜେନା (କୁଚିଲାଡାଙ୍ଗ), ଗଜେନ୍ଦ୍ର ନାଥ ବେଜ



Digitized by srujanika@gmail.com

(ବଲହାରପୁର), ରାମଚନ୍ଦ୍ର ଜେନା (ଶ୍ରଦ୍ଧାପୁର), ବୈକୁଣ୍ଠନାଥ ପାଳ (ଦାମୋଦରପୁର), ନିତ୍ୟାନନ୍ଦ ଭୂୟାଁ (ଜୟରାମପୁର), ଲକ୍ଷ୍ମଣ ମହାନା (ହରିପୁର), ସର୍ବେଶ୍ୱର ପଣ୍ଡା, ପରମେଶ୍ୱର ପଣ୍ଡା (କଣ୍ଡାବଣିଆ), କୈଳାସ ଚନ୍ଦ୍ର ପ୍ରଧାନ (ନସ୍କରପୁର), ଗଂଗାଧର ଦାସ, ଖୁଦିରାମ ଦାସ (ମହମ୍ମଦ ପୁର), ଶୈଳବାଳା ଚନ୍ଦ (ଫୁଲବଣି), ଭରତ ଚନ୍ଦ୍ର ଢେନା (ବାଡ଼ସରିଷା), ବୈକୁଣ୍ଠ ନାଥ ନାୟକ, ସୁରେନ୍ଦ୍ର ନାଥ ଦତ୍ତ, ପରମାଣିକ (ଚମ୍ପାବଣି ପାଟଣା), ନରେନ୍ଦ୍ର ନାଥ ଜେନା (ଦୁଡ଼ପଲ), ଜୟନାରାୟଣ ମହାନ୍ତି (ପୁରୁଷୋତ୍ତମପୁର), ସୁରେନ୍ଦ୍ର ନାଥ ଜେନା (ମନୁନଗର), ଗଦାଧର ନନ୍ଦୀ (ମଲାଗୁଆଁ), ନରୋତ୍ତମ ଦାସ (ଚାନ୍ଦ କୁସୁମୀ), ବାଞ୍ଛାନିଧି ଦଳାଇ (ପଁତେଇ), ଶ୍ରୀକାନ୍ତ ମହାନ୍ତି (ଗୀତଖଳା), ଭାସ୍କର ଚନ୍ଦ୍ର ଦେ, ଦେବେନ୍ଦ୍ର ନାଥ ଦେ (ଚିରକୁଲା), କୃଷ୍ଣପ୍ରସାଦ ସାହୁ (ବାସୁଦେବପୁର), ଲକ୍ଷ୍ମୀକାନ୍ତ ପାଳ (ଦ୍ୱାରିପାତ୍ର), ତ୍ରିଲୋଚନ ମହାନ୍ତି (ଉଲାସପୁର), ରାଧାନାଥ ପାତ୍ର (ବିଚିତ୍ରପୁର), ଗୌରାଙ୍ଗ ସୁର (ସାଁତଡ଼ା), ସୀତାନାଥ କର, ଗଜେନ୍ଦ୍ର ନାରାୟଣ ଚନ୍ଦ (ନାରାଦଣ୍ଡା) ଏବଂ ଆହୁରି ଅନେକେ ।





Digitized by srujanika@gmail.com

# ଅହିଂସ ସଂଗ୍ରାମୀ ନୀଳାମ୍ବର ଦାସ

ସୋର ଅଞ୍ଚଳରେ ଗଣ୍ଡିବେଢ଼ ଗ୍ରାମର ନୀଳାମ୍ବର ଦାସ ଗୋପବନ୍ଧୁଙ୍କ ନେତୃତ୍ୱରେ ୧୯୧୯ ମସିହାରେ କଂଗ୍ରେସର ଅହିଂସା ଓ ସ୍ୱଦେଶୀ ଆନ୍ଦୋଳନରେ ସ୍କୁଲଛାଡ଼ି ଯୋଗ ଦେଇଥାନ୍ତି । ସେତିକିବେଳେ ମହତାବ ବାବୁ ଏବଂ କରୁଣାକରବାବୁ କଲେଜ ଛାଡ଼ି ଆସି ଜିଲ୍ଲାର କଂଗ୍ରେସ ସଂଗଠନର ଦାୟିତ୍ୱରେ ଥାଆନ୍ତି । ବିଦେଶୀ ବର୍ଜନ, ପ୍ରଚଳିତ ଆଇନ୍ ଅମାନ୍ୟ ଓ ଟିକସ ବନ୍ଦ, ଆଦି ଅସହଯୋଗ ଆନ୍ଦୋଳନ ସହିତ ସୂତାକଟା ପ୍ରଚାର ଜିଲ୍ଲା ତମାମ ଜୋରସୋରରେ ଚାଲିଥାଏ । ଯୁବକ ନୀଳାମ୍ବର ସମଗ୍ର ଉତ୍ତର ବାଲେଶ୍ୱର ଦାୟିତ୍ୱରେ ରହିଥିଲେ । ସେ ସମୟରେ ବନ୍ୟା, ବାତ୍ୟା ଓ ମରୁଡ଼ି ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ କ୍ଷେତ୍ରରେ ଭିକ୍ଷା ସଂଗ୍ରହ କରି ଦୁର୍ଗତ ଲୋକଙ୍କୁ ସାହାଯ୍ୟ କରିବା କଂଗ୍ରେସ କର୍ମୀମାନଙ୍କର ଏକ ପ୍ରଧାନ କାର୍ଯ୍ୟ ଥାଏ । ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ସହିତ ନିଜକୁ ତଥା କଂଗ୍ରେସକୁ ସାମିଲ କରିବା ହିଁ ଏହାର ଲକ୍ଷ୍ୟ ଥିଲା । ନୀଳାମ୍ବର ବାବୁଙ୍କ ସମେତ ଜିଲ୍ଲାର କଂଗ୍ରେସ ନେତାମାନେ ଏ ଦିଗରେ ବିଶେଷ ତତ୍ପର ଦେଖାଯାଉ ଥାଆନ୍ତି । ଏସବୁ ଜନକଲ୍ୟାଣକର କାର୍ଯ୍ୟକ୍ରମ ମାଧ୍ୟମରେ ସେମାନେ କ୍ରମେ ଉତ୍ତର ବାଲେଶ୍ୱର ଜନଜୀବନରେ ପ୍ରବେଶ କରିବାକୁ ଲାଗିଲେ । ୧୯୨୨ ମସିହାରେ ସର୍ବପ୍ରଥମେ, ମହତାବ ବାବୁ, ନୀଳାମ୍ବର ବାବୁ ଓ କରୁଣାକରବାବୁ ସଂଗଠନ କାର୍ଯ୍ୟରେ ଭୋଗରାଇ ଗସ୍ତରେ ଆସି ଦେଉଳାଠାରେ ସତୀର୍ଥ ମଦନ ମୋହନ ମହାନ୍ତି ଏବଂ ଗ୍ରାମର ପ୍ରମୁଖ ବ୍ୟକ୍ତିମାନଙ୍କ ସହ ସଂପର୍କ ସ୍ଥାପନ କରିଥିଲେ । ସେହିବର୍ଷ ରାଜଘାଟ ସଂଲଗ୍ନ ସୁବର୍ଣ୍ଣରେଖା କୂଳବର୍ତ୍ତୀ ଦାରୁବୁଢ଼ୀ ବନ୍ଧ ବନ୍ୟାରେ ଭାଂଗି ଶୋଚନୀୟ ଅବସ୍ଥା ସୃଷ୍ଟି କରିଥାଏ । ନିଜେ ଉତ୍କଳମଣି ସମସ୍ତ କଂଗ୍ରେସକର୍ମୀଙ୍କୁ ଧରି ରିଲିଫ୍ କାର୍ଯ୍ୟ ଚଳାଇ ବିପୁଳ ଲୋକଙ୍କୁ ସାହାଯ୍ୟ କରିଥିଲେ । ତା'ପରେ କଇଁନଗରୀ (ସିଂଲା)ଠାରେ ପ୍ରଥମକରି ନୀଳାମ୍ବର ବାବୁ ଏକ ସୂତାକଟା କେନ୍ଦ୍ର ପ୍ରତିଷ୍ଠା କଲେ । ମାସରେ ଦଶ ମହଣରୁ ଅଧିକ ହାତକଟା ସୂତା ଏହି କେନ୍ଦ୍ରରୁ ଉତ୍ପାଦନ ହେଉଥାଏ । ଦରିଦ୍ର ଲୋକ ଦୈନିକ ମଜୁରି ପାଇ ସ୍ୱନିର୍ଭର ହେବାର ଏହା ଏକ ଅଭିନବ ପନ୍ଥା କଂଗ୍ରେସର ଥିଲା । ୧୯୩୦ ଲବଣ ସତ୍ୟାଗ୍ରହର ବହୁ ପୂର୍ବରୁ ୧୯୨୨-୨୩ବେଳେ ବୋଲଂଗ୍ରାମରେ ଗ୍ରାମବାସୀମାନେ ଲୁଚାଇ ଲୁଣମାରି



Digitized by srujanika@gmail.com

ଚୋରାଇ ବିକୁଥିଲେ । ଏହି ଲୁଣ ପ୍ରକାଶ୍ୟରେ ହାଟରେ ବିକିବାକୁ ନୀଳାମ୍ବର ବାବୁ ଲୋକଙ୍କୁ ପ୍ରରୋଚିତ କଲେ । ଫଳସ୍ୱରୂପ ଶହେଭାର ଲୁଣ ବୋଳଂଗୁ ସିଂଳା ହାଟକୁ ବୁହାଗଲା । କିନ୍ତୁ ସ୍ଥାନୀୟ ପୁଲିସ୍ ହାଟରେ ଲୁଣ ବିକିବାକୁ ଦେଲେନାହିଁ । ଜୋର ଜବରଦସ୍ତ ସବୁତକ ଲୁଣ ବୁଣି ନଷ୍ଟ କରିଦେଲେ ଏବଂ ସମସ୍ତଙ୍କୁ ଗୋଡ଼େଇ ବାନ୍ଧି ଚାଲାଣ କଲେ । ନୀଳାମ୍ବରବାବୁ ଖସି ପଳାଇଯାଇ ଖଡ଼ିକାପଦାରେ ଆତ୍ମଗୋପନ କଲେ ।

୧୯୨୩ରେ କଂଗ୍ରେସ ପ୍ରଚାର ସକାଶେ ବସ୍ତାଠାରେ ଶ୍ରୀ ରାଜକୃଷ୍ଣ ବୋଷଙ୍କ ସଭାପତିତ୍ୱରେ ବାଲେଶ୍ୱର ଜିଲ୍ଲାର କଂଗ୍ରେସ ସମ୍ମେଳନର ଆୟୋଜନ କରାଯାଇଥିଲା । ଜଳେଶ୍ୱରର କାଦରାୟାଁ ମୁସଲମାନ ବସ୍ତିକୁ କେନ୍ଦ୍ରକରି ସେ ବର୍ଷ ଏକ ମାରାତ୍ମକ ହିନ୍ଦୁ ମୁସଲମାନ ସାଂପ୍ରଦାୟିକ ବିବାଦ ହୋଇଥିଲା । ନିଜ ଜୀବନକୁ ବିପନ୍ନ କରି ନୀଳାମ୍ବରବାବୁ ସାହସର ସହ ଗଣ୍ଡଗୋଳର ମୁକାବିଲା କରିଥିଲେ ଏବଂ ସୁମୀମାଂସା କରି ଶାନ୍ତି ସ୍ଥାପନ କରିଥିଲେ । ୧୯୨୪ରେ ପୁଣି ଜଳେଶ୍ୱରଠାରେ ଜିଲ୍ଲା ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ବଂଗଳାର ବିଖ୍ୟାତ ଅହିଂସା ସଂଗ୍ରାମୀ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ ଏଥିରେ ସଭାପତିତ୍ୱ କରିଥିଲେ । ଶ୍ରୀଯୁକ୍ତ ଗୋପବନ୍ଧୁ ଦାଶ, ପଣ୍ଡିତ ନୀଳକଣ୍ଠ ଦାସ ଏବଂ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ପ୍ରମୁଖ ନେତାମାନେ ଆସି ଜିଲ୍ଲା ନେତାମାନଙ୍କ ସହ ସମ୍ମେଳନରେ ଯୋଗ ଦେଇଥିଲେ । ସମଗ୍ର ଉତ୍ତର ବାଲେଶ୍ୱରରେ ପଦଯାତ୍ରା କରି ଅହିଂସା ଅସହଯୋଗ ଆନ୍ଦୋଳନ ପ୍ରଚାର କରିବାର ସିଦ୍ଧାନ୍ତ ଉକ୍ତ ସମ୍ମିଳନୀରେ ଗୃହୀତ ହୋଇଥିଲା । ଫଳରେ ମହତାବବାବୁ, କରୁଣାକରବାବୁ, ଅଭିରାମ ନନ୍ଦ ଏବଂ ନୀଳାମ୍ବର ବାବୁ ଇଡ଼ଦା, କଇଁନଗରୀ, ଲଂଗଳେଶ୍ୱର ହୋଇ ନାଇକୁଡ଼ିଠାରେ ଜନସଭା କରିଥିଲେ । ଏହି ସଭାରେ ନୀଳାମ୍ବରବାବୁଙ୍କୁ ପୁଲିସ୍ ହାତରୁ ଖସି ପଳାଇ ଯାଇଥିବା ଅପରାଧରେ ଗିରଫ କରି ଜେଲ ଦିଆଯାଇଥିଲା ।

୧୯୨୨ରେ ସୁବର୍ଣ୍ଣରେଖାର ପ୍ରବଳ ବନ୍ୟାରେ ଭୂଆପାଣ୍ଡୁର ତେନ୍ତୁଳି ଠାରେ ଭୂଆବନ୍ଧ ଭାଂଗି ସମଗ୍ର ଅଞ୍ଚଳ ଭାସିଗଲା । ଜିଲ୍ଲା କଂଗ୍ରେସ ଦଳ ତତ୍‌କ୍ଷଣାତ୍ ରିଲିଫ୍ କାର୍ଯ୍ୟ ହାତକୁ ନେଇଥିଲେ । ସୁବର୍ଣ୍ଣରେଖାର ବନ୍ୟା ନିୟନ୍ତ୍ରଣ ପାଇଁ ଭାରତ ସରକାରଙ୍କର ତଦାନୀନ୍ତନ ବନ୍ୟା ବିଶାରଦ ସାର୍ ବିଶ୍ୱେସରିଆଙ୍କୁ ସେମାନେ ଆବେଦନ କରିଥିଲେ । ସୌଭାଗ୍ୟକ୍ରମେ ସାର୍ ବିଶ୍ୱେସରିଆ ଉକ୍ତ ବନ୍ୟା ସମୟରେ ଭୋଗରାଇ-ଲକ୍ ଠାରେ ଉପସ୍ଥିତ ହୋଇଥିଲେ । ଅନ୍ୟମାନଙ୍କ ସହ ମହତାବବାବୁ, ସର୍ଦ୍ଦାର ସୁରେନ୍ଦ୍ର, କରୁଣାକରବାବୁ ଓ ନୀଳାମ୍ବରବାବୁ ଉକ୍ତ ଯନ୍ତ୍ରୀଙ୍କ ସହ ବନ୍ୟା ସମସ୍ୟା ଆଲୋଚନାରେ ଅଂଶଗ୍ରହଣ କରିଥିଲେ । କେତେକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ମଧ୍ୟ ଗ୍ରହଣ କରାଯାଇଥିଲା ।



Digitized by srujanika@gmail.com

ସେ ସମସ୍ତ ସୁବର୍ଣ୍ଣରେଖା ବନ୍ୟା ନିୟନ୍ତ୍ରଣ ଦିଗରେ ସର୍ବପ୍ରଥମ ପଦକ୍ଷେପ ଅଟେ । ଚିତେଇ ନଦୀ ସଳଖିକରଣ, ନଦୀମୁହାଣ ପରିଷ୍କରଣ, ଖାଲଯୋଡ଼ି ଗୋଛିଦାନଈ ପରିଷ୍କରଣ ଆଦି ଏସବୁ ପଦକ୍ଷେପର ଅନ୍ତର୍ଭୁକ୍ତ ଥିଲା ।

୧୯୩୦ରେ ନୀଳାମ୍ବରବାବୁ ସାର୍ଥୀଠାରେ ଲୁଣମରା ଆନ୍ଦୋଳନ ସଂଗଠନ କରି ଜେଲ ଗଲେ । ୧୯୩୨ରେ ଜେଲରୁ ଫେରି ମହତାବବାବୁ, ନୀଳାମ୍ବରବାବୁ, ରାଣୀ ସୁଭଦ୍ରା ଦେବୀ ପ୍ରମୁଖ ନେତା ଆତ୍ମଗୋପନ କରି ଭୋଗରାଈର ସର୍ବତ୍ର ବୁଲି ଆଇନ ଅମାନ୍ୟ ଅସହଯୋଗ ଆନ୍ଦୋଳନ ସଂଗଠନ କରିଥିଲେ ଏବଂ ଆମ ଲୋକଙ୍କୁ ଜାତୀୟ ସଂଗ୍ରାମ ସ୍ରୋତାଭିମୁଖୀ କରିବାପାଇଁ ଉଦ୍ୟମ କରିଥିଲେ ।





Digitized by srujanika@gmail.com

# ସର୍ଦ୍ଦାର ସୁରେନ୍ଦ୍ର

ବାଲେଶ୍ୱର ତଥା ଜିଲ୍ଲାର ସ୍ୱଦେଶୀ ଆନ୍ଦୋଳନରେ ସର୍ଦ୍ଦାର ସୁରେନ୍ଦ୍ର ଏକ ଅବିସ୍ମରଣୀୟ ଚରିତ୍ର । ତାଙ୍କର ଦୁଃସାହସିକ ଭୂମିକା ସ୍ୱାଧୀନତାସଂଗ୍ରାମ ଇତିହାସରେ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଆଲେଖ୍ୟ ହୋଇ ରହିଛି । ଭୀମପୁର ଗ୍ରାମର ଶ୍ରୀ ସୁରେନ୍ଦ୍ର ନାଥ ଦାସ ବାଲେଶ୍ୱର ସଦରଥାନାର ପୁଲିସ୍ ଅଫିସର ଭାବେ କାର୍ଯ୍ୟ କରୁଥିଲେ । ସହରର ଲାଲବଜାରରେ ମଦ, ଗଞ୍ଜା, ଅଫିମ ଦୋକାନ ସମ୍ମୁଖରେ ପିକେଟିଂ ମହତାବଜୀ ପ୍ରମୁଖ ନେତାମାନେ କରୁଥାନ୍ତି । ଏମାନଙ୍କୁ ନିବର୍ତ୍ତାଇବା ସକାଶେ ସୁରେନ୍ଦ୍ର ପ୍ରଭୃତିଙ୍କୁ ନିଯୁକ୍ତ କରାଯାଇଥାଏ । ପୁଲିସ୍ ସ୍ଥାନୀୟ ବେଶ୍ୟାମାନଙ୍କୁ ମତାଇ ସତ୍ୟାଗ୍ରହୀମାନଙ୍କ ଉପରେ ମୂତ୍ର ଓ ନର୍ଦ୍ଦମାର ପଙ୍କ ଫୋପାଡୁଥାନ୍ତି ଏବଂ ନର୍ଦ୍ଦମା ଉପରେ ସେମାନଙ୍କୁ ନିର୍ଦ୍ଦୟ ଓ ଜଘନ୍ୟ ଭାବରେ ଟଣାଘୋଷରା କରୁଥାଆନ୍ତି । ପୁଲିସ୍ ଅଫିସର ସୁରେନ୍ଦ୍ର ଏପ୍ରକାର ହୀନ ମର୍ମାନ୍ତିକ ଦୃଶ୍ୟ ଆଉ ଦେଖିପାରିଲେ ନାହିଁ । ସତ୍ୟାଗ୍ରହୀମାନଙ୍କର ଟାଣପଣ ଏବଂ ଶୋଚନୀୟ ଅବସ୍ଥା ତାଙ୍କ ହୃଦୟକୁ ଏକାବେଳକେ ଦୋହଲାଇ ଦେଲା । କ୍ରୋଧ ଏବଂ ସହାନୁଭୂତିରେ ତାଙ୍କର ଆଖି ଦୁଇଟା ରକ୍ତବର୍ଣ୍ଣ ଏବଂ ଅଶ୍ରୁଳ ହୋଇଉଠିଲା । ଉଚ୍ଚସ୍ୱରରେ ବନ୍ଦେ ମାତରମ୍ ଚିତ୍କାର କରି ସେ ପୁଲିସ୍ ପୋଷାକ ଏବଂ ଟୋପି ନର୍ଦ୍ଦମାକୁ ଫିଙ୍ଗିଦେଲେ ଏବଂ ଲମ୍ଫପ୍ରଦାନ କରି ସତ୍ୟାଗ୍ରହୀ ଦଳରେ ଯୋଗଦେଇ ସତ୍ୟାଗ୍ରହ ଆରମ୍ଭ କରିଦେଲେ । ବିଜୁଳି ଭଳି ଏ ସମ୍ବାଦ ସହରରେ ଖେଳିଗଲା । ଗୋରାଫୌଜ ମାରଣମୁଖୀ ହୋଇଉଠିଲା । ଲାଲାବଜାର ଜଳିବାକୁ ଆରମ୍ଭ କଲା । ଶେଷରେ ସୁରେନ୍ଦ୍ର ସମେତ ସତ୍ୟାଗ୍ରହୀମାନଙ୍କର ରକ୍ତାକ୍ତ ଶରୀର ଜେଲ ଭିତରକୁ ବୁହାଗଲା ।

ପାଟଣା ଜେଲରେ ସତ୍ୟାଗ୍ରହୀମାନଙ୍କର ସେବା କରିବାରେ ଏବଂ ତରୁଣ ସତ୍ୟାଗ୍ରହୀମାନଙ୍କୁ ତାଲିମ ଦେବାରେ ଅଗ୍ରଣୀ ଥିଲେ ବୋଲି ସୁରେନ୍ଦ୍ରଙ୍କୁ ସମସ୍ତେ ସର୍ଦ୍ଦାରଜୀ ବୋଲି ଡାକୁଥିଲେ । ଏହି ସର୍ଦ୍ଦାର କିଛିଦିନ ପରେ ଜେଲରୁ ମୁକୁଳି ସିଧା ଫରାସୀ ଅଧିକୃତ ଫରାସୀଡିଙ୍ଗା (ପୁରୁଣା ବାଲେଶ୍ୱର)ଯାଇ ସେଠାରେ ଆସ୍ଥାନ ଗଢ଼ି ବସିଲେ । ଏହି ଫରାସୀଡିଙ୍ଗା ତାଙ୍କର ନେତୃତ୍ୱରେ ଅହିଂସା ଯୁଦ୍ଧ 'ସାହସୀ ସୈନିକ ପ୍ରଶିକ୍ଷଣ କେନ୍ଦ୍ର' ରୂପେ କାର୍ଯ୍ୟ କରୁଥିଲା । ଜିଲ୍ଲାର ତରୁଣ ସତ୍ୟାଗ୍ରହୀମାନେ ତାଲିକାଭୁକ୍ତ ହେଲା ଉତ୍ତାରୁ



Digitized by srujanika@gmail.com

ଉପଯୁକ୍ତ ତାଲିମ ସକାଶେ ଫରାସୀଡିଙ୍ଗାକୁ ପଠାଯାଉଥିଲେ । ଏହା ସେମାନଙ୍କ ପାଇଁ ଏକ ନିରାପଦ ସ୍ଥାନ ଥିଲା । କେବଳ ସେତିକି ନୁହେଁ, ସତ୍ୟାଗ୍ରହର ଧାରାବିବରଣୀ ଓ ନିର୍ଦ୍ଦେଶମାନ ଏକ ବୁଲେଟିନ 'ରଣଭେରୀ' ନାମରେ ଲିଥୋ କରି ପ୍ରତି ସପ୍ତାହରେ ନିୟମିତ ପ୍ରକାଶ କରାଯାଇ ଜିଲ୍ଲାର ସର୍ବତ୍ର ଗୋପନରେ ପ୍ରେରଣ କରିବାର ଦାୟିତ୍ୱ ସର୍ଦ୍ଦାର ନିଜେ ବିଶେଷ ଭାବରେ ବହନ କରିଥିଲେ । ସମୁଦ୍ର କୂଳେକୂଳେ କଂଗ୍ରେସ ଡାକ ବୋହିବା ପାଇଁ ସେ ଏକ ଗୁପ୍ତ ଡାକ ସେନାବାହିନୀ ମଧ୍ୟ ଗଠନ କରିଥିଲେ । ସେ ସମୟରେ ଭୋଗରାଇର ପ୍ରାୟ ସମସ୍ତ ସତ୍ୟାଗ୍ରହୀ ଗୋରା ଅତ୍ୟାଚାର ବିରୁଦ୍ଧରେ ସାହସ ଓ ପ୍ରତିରୋଧ ଶକ୍ତି ସଞ୍ଚୟ ସକାଶେ ତାଲିମ ତାଙ୍କଠାରୁ ପାଇଥିଲେ ବୋଲି ଆନ୍ଦୋଳନ ସଫଳ ଓ ଦୀର୍ଘଜୀବୀ ହୋଇ ପାରିଥିଲା ।

ସ୍ମରଣରେ ଆସିଲେ ଆଜିବି ଲୋମ ଟାଙ୍କୁରି ଉଠେ ଶତଶତ ବୀର ସଂଗ୍ରାମୀମାନଙ୍କ କଣ୍ଠରେ ସେଦିନ ସେହି ଜ୍ୱାଳାମୟୀ ସ୍ୱଦେଶୀ ଗୀତ –

ଆଓ ପ୍ୟାରେ ଭାଇଓଁ ଆଓ କ୍ରାନ୍ତିକାରିଓଁ
ଆଓ ସର୍ବେ ମାତୃଭୂମିକି ବନ୍ଧ ମୁକ୍ତି କେ ଲିୟେ
ନହିଁ ଡରେଙ୍ଗେ ହମ୍ କିସିସେ ଆବେ ଘୋର ଆପଦା,
ଧର୍ମଯୁଦ୍ଧ କରନେବାଲେ ହମ୍ ତୋ ନିଡର ହେ ସଦା ।

ସର୍ଦ୍ଦାରଜୀ ପୁରୋଭାଗରେ ଗାଇ ଚାଲିଥାନ୍ତି ଗୋରା ପୁଲିସବ୍ୟୂହ ଭେଦକରି । ଏକ ଅନାଗତ ଜୀବନର ଅନିଶ୍ଚିତ ପରିଣତି ପାଇଁ ଆମେ ମଧ୍ୟ ପଛେପଛେ ମାର୍ଚ୍ଚ କରି ବୀରଦର୍ପରେ ଆଗେଇ ଚାଲିଥାଉ । ଜେଲରୁ ମୁକ୍ତ ହେଲାପରେ ଭୋଗରାଇର ଏହି ତାଲିମପ୍ରାପ୍ତ କର୍ମୀମାନଙ୍କୁ ସଂଗଠନ ସକାଶେ ଗାଁକୁ ପଠାଇ ଦିଆଗଲା । ଗାଁରେ ସେମାନେ ଗଠନମୂଳକ କାମ ଆରମ୍ଭ କଲେ । ନିଶା ନିବାରଣ, ଅସ୍ପୃଶ୍ୟତା ବର୍ଜନ, ସାଂପ୍ରଦାୟିକତା ଦୂରୀକରଣ, ସୂତାକଟା ଲୁଗାବୁଣା କେନ୍ଦ୍ର ଓ ଗାନ୍ଧି ସେବାସଂଘ ପ୍ରତିଷ୍ଠା ଏବଂ ଗ୍ରାମପଞ୍ଚାୟତ ପ୍ରତିଷ୍ଠା ପ୍ରଭୃତି ରଚନାତ୍ମକ କାର୍ଯ୍ୟକ୍ରମ ସେମାନେ ହାତକୁ ନେଲେ । କଂଗ୍ରେସ ସଂଗଠନକୁ ଏହିପରି ଭାବରେ ଗାଁ ଗହଳିରେ ମଜବୁତ କରିବାକୁ ଯୋଜନା ନିଆଗଲା । ଭୋଗରାଇ ଅଞ୍ଚଳରେ ଜେଲ ଫେରନ୍ତା ତାଲିମପ୍ରାପ୍ତ କର୍ମୀମାନେ ଆଲୋକବର୍ତ୍ତିକା ଭଳି ଗ୍ରାମେଗ୍ରାମେ ପ୍ରତିଦିନ ଘୂରି ବୁଲିଲେ । ସ୍ୱଦେଶ ଓ କଂଗ୍ରେସ ପ୍ରୀତିରେ ଭୋଗରାଇ ସିକ୍ତ, ଚର୍ଚ୍ଚିତ ଏବଂ ଉର୍ବର ହୋଇଉଠିଲା ।





Digitized by srujanika@gmail.com

# ରୁଦ୍ରବିପ୍ଳବୀ ପ୍ୟାରୀମୋହନ

ଏହି ପ୍ୟାରୀମୋହନଙ୍କ ଜନ୍ମ ୧୯୧୪ ମସିହାରେ । ୧୯୨୬ରେ କଖଡ଼ା ସ୍କୁଲରେ ମାଇନର ପାସ୍‌କରି ୧୯୨୭ରେ ୧୨ବର୍ଷ ବୟସରେ କଲିକତା ସହରକୁ ମାଟ୍ରିକ୍ ପଢ଼ିବାକୁ ଯାଇଥିଲେ । ସେଠାରେ 'ଅଭୟା ଆଶ୍ରମ'ରେ ଶ୍ରୀ ସତୀଶ ଚନ୍ଦ୍ର ଦାସଗୁପ୍ତଙ୍କ ସହ ତାଙ୍କର ପରିଚୟ ହୁଏ । ସ୍ୱଦେଶପ୍ରେମର ବୀଜମନ୍ତ୍ର ଏବଂ ସୂତାକଟା ଶିକ୍ଷା ତାଙ୍କଠାରୁ ସେ କରନ୍ତି । ପିଲାଦିନରୁ ପ୍ୟାରୀମୋହନ ଖୁବ୍ ତେଜିଆନ୍, ସାହସୀ ଓ ବେପରବାୟ ଥିଲେ । ସ୍କୁଲକୁ ଯିବା ଆସିବା ସମୟରେ ତକଲିରେ ସୂତାକଟା ତାଙ୍କର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ଥରେ ଜଣେ ଘୋଡ଼ା ସବାର ଗୋରା ସର୍ଜେଣ୍ଟ, ରାସ୍ତାରେ ତାଙ୍କୁ ସୂତା କାଟିକାଟି ଯାଉଥିବାର ଦେଖି ରାଗରେ ତାଙ୍କ କାନ୍ଧରେ ବ୍ୟାଟନ ଦ୍ୱାରା ସଜୋରେ ଆଘାତ କରିବାରୁ ତରୁଣ ପ୍ୟାରୀମୋହନ ବୁଲିପଡ଼ି ତାଙ୍କୁ ନନ୍‌ସେନ୍‌ସ ବୋଲି ଗାଳିଦେଲେ । ଫଳରେ ସର୍ଜେଣ୍ଟ ଜଣକ ଉତ୍ୟକ୍ତ ହୋଇ ପ୍ୟାରୀମୋହନଙ୍କୁ ବାନ୍ଧି ସେଣ୍ଟ ଜେମସ୍ ସ୍କୋୟାର ଥାନାରେ ଅଟକାଇ ବେଦମ ପ୍ରହାର କଲେ । ପ୍ୟାରୀମୋହନ ସେସବୁ ଅନ୍ୟାୟ ଅତ୍ୟାଚାର ଦାନ୍ତକାମୁଡ଼ି ସହିଗଲେ । ଗୋରା ଜାତି ବିରୁଦ୍ଧରେ ତାଙ୍କର ଆଖି ଦୁଇଟା ପ୍ରତିହିଂସାରେ ଜଳି ଉଠିଥିଲା । ଗୋରା ସାହେବ ତାଙ୍କର ସହିଷ୍ଣୁତା ଓ ତେଜ ଦେଖି ଆଚମ୍ୱିତ ହୋଇଗଲେ ।

୧୯୨୯ରେ ପ୍ୟାରୀମୋହନ କଲିକତା ଛାଡ଼ି ମେଦିନୀପୁରର ଏଗ୍ରା ହାଇସ୍କୁଲରେ ଆସି ନାମ ଲେଖାଇଥିଲେ । ୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେବାରୁ ସେ ପିଛାବଣୀଠାରେ ଉକ୍ତ ଆନ୍ଦୋଳନର ବୀର ନବୀନ ରାଧାମୋହନ କର ମହାପାତ୍ର, ସୁଧୀର ଚନ୍ଦ୍ର ଦାସ ଓ ରାସବିହାରୀ ପାଳଙ୍କ ସହ ଝାସ ଦେଇଥିଲେ । ବିଦ୍ୟାଳୟରେ ତାଙ୍କର ସରକାର ବିପକ୍ଷ କାର୍ଯ୍ୟକଳାପ ଦେଖି ପଞ୍ଚେଟଗଡ଼ ଠାରେ ତାଙ୍କୁ ଅନ୍ତରୀଣ ବନ୍ଦୀଭାବରେ ଏକମାସ କାଳ ରଖାଯାଇଥିଲା । ସେଠାରୁ ମୁକ୍ତିପାଇ ସେ କୁଣପୁଟଠାରେ ଜବରଦସ୍ତ ଲୁଣମାରି ହିଜିଳି କ୍ୟାମ୍ପ ଜେଲରେ ଅଢ଼େଇମାସ କାଳ ରହି କାରାଦଣ୍ଡ ଭୋଗ କରିଥିଲେ । ଉକ୍ତ ଜେଲରୁ ମୁକ୍ତିପାଇଲା ପରେ ୧୯୩୧ରେ ପ୍ୟାରୀମୋହନ ଘରକୁ ଫେରି ଆସିଥିଲେ ।



Digitized by srujanika@gmail.com

ତାଙ୍କ ନେତୃତ୍ୱରେ ସୀମାନ୍ତ ଗ୍ରାମମାନଙ୍କରେ ଅସହଯୋଗ ଆନ୍ଦୋଳନ ତେଜି ଉଠିଲା । ତାଙ୍କ ବାପା ତାଙ୍କୁ ଆକଟ କରିବାରୁ ବିପ୍ଳବୀ ନୀଳାମ୍ବର ଦାସଙ୍କ ପରାମର୍ଶରେ ସେ ଘରୁ ପଳାଇ ଯାଇ ଇଞ୍ଚୁଡ଼ିଠାରେ ଲୁଣମରା ଆନ୍ଦୋଳନରେ ଯୋଗଦେଲେ ଏବଂ ବର୍ଷାଧିକ କାଳ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ । ୧୯୩୨ରେ ଆଇନ ଅମାନ୍ୟ କରି ରେମୁଣାଠାରେ ଗିରଫ ହୋଇ ମାସାଧିକ କାଳ ଜେଲ ଯାଇଥିଲେ । ତା ଉତ୍ତାରୁ ଜଳେଶ୍ୱର ବଜାରରେ ନିଷିଦ୍ଧ କଂଗ୍ରେସ ପ୍ରଚାରପତ୍ର ବାଣ୍ଟିବା ଅପରାଧରେ ତାଙ୍କୁ ଚାରିମାସ ପାଇଁ ସଶ୍ରମ କାରାଦଣ୍ଡର ଆଦେଶ ହୋଇଥିଲା ଏବଂ ତାଙ୍କୁ ପାଟଣା ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା । ଗୋରା ଜାତି ବିରୁଦ୍ଧରେ ତରୁଣ ପ୍ୟାରୀମୋହନଙ୍କ ଛାତ୍ର ଜୀବନରୁ ମନଟା ବିଷେଇ ଯାଇଥିଲା । କ୍ରୋଧରେ ସେ ଫାଟି ପଡୁଥିଲେ ।

ଆମ ଜିଲ୍ଲାରେ ୧୯୩୪ରେ ନିଶା ନିବାରଣ ଓ ହରିଜନ ମୁକ୍ତି ଆନ୍ଦୋଳନ ଜୋରସୋରରେ ଚାଲିଥିଲା । ପ୍ୟାରୀମୋହନ ଭୋଗରାଇର ଦଫୀର ମିଆଁ ଓ ସୋଭାନ ମିଆଁ ସହିତ ଏହି ଆନ୍ଦୋଳନରେ ଟାଣପଣ ସହ ଲାଗିଥିଲେ । ରାତିଦିନ ତାଙ୍କୁ ସମାନ ଜଣା ପଡୁଥିଲା । ସେହିବର୍ଷ ଗାନ୍ଧିଜୀ ପଦଯାତ୍ରା କରି ଓଡ଼ିଶା ଗସ୍ତରେ ଆସିଥିଲେ । ଭଦ୍ରକଠାରୁ ବାଲେଶ୍ୱର ଯାଏ ପ୍ୟାରୀମୋହନ ତାଙ୍କୁ ସଂଗଦେଇ ପ୍ରବଳ ଉତ୍ସାହ ଓ ସଂଗଠନ ଶକ୍ତିର ପରିଚୟ ଦେଇଥିଲେ ।

ପ୍ୟାରୀବାବୁ ସ୍ୱଭାବତଃ ଉଗ୍ର, ଚରମପନ୍ଥୀ ଏବଂ ଦୁଃସାହସୀ ଥିଲେ । ୧୯୪୨ ସାଲ ଅଗଷ୍ଟ ମାସରେ ବ୍ରିଟିଶ ସରକାର ଆଖିରେ ଧୂଳିଦେଇ ସେ ଅନ୍ତରାଳକୁ ଚାଲିଗଲେ । ଭୂମିଗତ ରହି ବଂଗ ଓଡ଼ିଶାର ବିପ୍ଳବୀ ବୀର ସଂଗ୍ରାମୀମାନଙ୍କ ସହ ସଂଯୋଗ ସ୍ଥାପନ କରି ରଣ ସଂଗଠନ ଆରମ୍ଭ କଲେ । ଗୋରା ଚିଫ୍ ସେକ୍ରେଟେରୀ ବାଉଷ୍ଟେଡ ସାହେବ ଅତୀବ ଅତ୍ୟାଚାରୀ ଏବଂ କ୍ରୁର ପ୍ରକୃତିର ଲୋକ ଥିଲେ । କଂଗ୍ରେସୀ ସତ୍ୟାଗ୍ରହୀମାନଙ୍କୁ ସେ ଆଖିରେ ଦେଖୁନଥିଲେ । ତାଙ୍କୁ ଗୁପ୍ତ ହତ୍ୟା କରିବା ଷଡ଼ଯନ୍ତ୍ରରେ ପ୍ୟାରୀବାବୁ ଲିପ୍ତ ହେଲେ । ଫୁଲାଡ଼ିଠାରେ ରେଲପୋଲ ଡିନାମାଇଟ୍ ସାହାଯ୍ୟରେ ଉଡ଼ାଇ ଦେବା ସକାଶେ ସେ ପାଟଣା ସହରରୁ ଡିନାମାଇଟ୍ ଆଣି ପୋଲ ଦେହରେ ଖଞ୍ଜିଥିଲେ । ଏସବୁ ଖବର ଏବଂ ନଥିପତ୍ରମାନ ହଠାତ୍ ପ୍ରକାଶ ପାଇଯିବାରୁ ତାଙ୍କ ଦଳର ସମସ୍ତେ ଧରା ହୋଇଗଲେ । ଅତି ମାରାତ୍ମକ ମକଦ୍ଦମାମାନ ତାଙ୍କ ନାମରେ ହାଇକୋର୍ଟରେ ଚାଲିଲା । ସମସ୍ତେ ବିଶ୍ୱାସ କଲେ ଏମାନଙ୍କୁ ନିଶ୍ଚୟ ଫାଶୀ ଦଣ୍ଡ ହେବ । ଓଡ଼ିଶାର କଂଗ୍ରେସ



Digitized by srujanika@gmail.com

ନେତାମାନେ ଜେଲରେ ବନ୍ଦୀଥାଇ ଗାନ୍ଧିଜୀଙ୍କ ସାହାଯ୍ୟ ଗୋପନରେ ଭିକ୍ଷା କଲେ ସେମାନଙ୍କର ପ୍ରାଣରକ୍ଷା ପାଇଁ । ସୌଭାଗ୍ୟକ୍ରମେ ଗାନ୍ଧିଜୀଙ୍କର ଆବେଦନ ହାଇକୋର୍ଟ ମଞ୍ଜୁର କଲେ ଏବଂ ଫାଶୀ ବଦଳରେ ସେମାନଙ୍କୁ ଚାରିବର୍ଷ ସଶ୍ରମ କାରାଦଣ୍ଡର ଆଦେଶ ହେଲା । ୧୯୪୫ ଶେଷଭାଗରେ ପ୍ୟାରୀବାବୁ ଜେଲରୁ ଖଲାସ ହେଲେ । ୧୯୪୭ରେ ସେ କଂଗ୍ରେସ ଛାଡ଼ି ପ୍ରଜାସୋସାଲିଷ୍ଟ ଦଳରେ ଯୋଗଦେଲେ । ୧୯୬୧ ଠାରୁ ୭୨ ଯାଏଁ ଉକ୍ତ ଦଳ ତରଫରୁ ପ୍ୟାରୀବାବୁ ଭୋଗରାଇରୁ ବିଧାନସଭାକୁ ପ୍ରତିନିଧିତ୍ୱ କରିଥିଲେ ।





Digitized by srujanika@gmail.com

# ଚୌଧୁରୀ ଅକ୍ଷୟ ନାରାୟଣ

ଇଡ଼ଦାଗଡ଼ର ଚୌଧୁରୀ ଅକ୍ଷୟ ନାରାୟଣ ପ୍ରହରାଜଙ୍କ ସ୍ମୃତି ସମଗ୍ର ବାଲେଶ୍ୱର ଜିଲ୍ଲା ଏବଂ ବିଶେଷ ଭାବରେ ଉତ୍ତର ବାଲେଶ୍ୱର ଅଞ୍ଚଳର ସ୍ୱାଧୀନତାସଂଗ୍ରାମ ତଥା ସମାଜସେବା କ୍ଷେତ୍ରରେ ଅକ୍ଷୟ ହୋଇରହିଛି । ପ୍ରତାପଶାଳୀ ସମ୍ଭ୍ରାନ୍ତ ଏକ ବ୍ରାହ୍ମଣ ଜମିଦାର ପରିବାରରେ ୧୯୧୫ ସାଲରେ ତାଙ୍କର ଜନ୍ମ । ତାଙ୍କର ଛାତ୍ର ଅବସ୍ଥାରେ ତାଙ୍କ ପିତା ଶ୍ରୀ ଗୋଲକ ନାରାୟଣ ପ୍ରହରାଜ ଅତ୍ୟଧିକ ଲୋଭର ବଶବର୍ତ୍ତୀ ହୋଇ ଏକ ନୃଶଂସ ହତ୍ୟାକାଣ୍ଡ ସହ ଜଡ଼ିତ ହୋଇପଡ଼ିବାରୁ ପ୍ରହରାଜ ବଂଶର ସୁନାମ ଏବଂ ପ୍ରତିପତ୍ତିରେ ଅଧଃପତନ ଦେଖାଦେଲା । ଅକ୍ଷୟବାବୁ ସେତେବେଳେ ନିଜକୁ ଘରଠାରୁ ଦୂରରେ ରଖି, ବାଲେଶ୍ୱର ଜିଲ୍ଲାର ବିଶିଷ୍ଟ ସଂଗ୍ରାମୀମାନଙ୍କ ଗହଣରେ ସଂଗଠନ ଏବଂ ରଚନାତ୍ମକ କାର୍ଯ୍ୟରେ ମାତିଥାଆନ୍ତି । ତାଙ୍କର ମଧୁର ବ୍ୟବହାର, ଅସୀମ ଧୈର୍ଯ୍ୟ ଏବଂ ସର୍ବୋପରି ନିଷ୍ପାପର ସେବା ସମସ୍ତଙ୍କୁ ମୁଗ୍ଧ କରି ରଖିଥାଏ । ଜନସେବା କ୍ଷେତ୍ରରେ ଶତାବ୍ଦୀର ତୃତୀୟ ଦଶକ ବ୍ୟାପି ତାଙ୍କର କାର୍ଯ୍ୟକଳାପ ବଳରେ ସେ ସମୟରେ ଜିଲ୍ଲାର ସାନବଡ଼ ସମସ୍ତ ସଂଗ୍ରାମୀମାନଙ୍କ ମଧ୍ୟରେ ଆପଣା ପାଇଁ ଆସନ କରି ନେଇଥିଲେ । ଆର୍ତ୍ତ ପୀଡ଼ିତ, ଶୋଷିତ ଏବଂ ନିଗୃହୀତ ଜନତାର ସେବା ଓ ପୃଷ୍ଠପୋଷକତା କରିବାରେ ସେ ଅଦ୍ୱିତୀୟ ଥିଲେ । ଏହିସବୁ ସ୍ୱର୍ଗୀୟ ଗୁଣର ଅଧିକାରୀ ସେ ଜନ୍ମରୁ ଥିବାର ଜଣାଯାଏ । ଜନସେବା ରୂପକ କଳା ଧରି ସେ ଯେପରି ମାଟି ମା' କୋଳରେ ଜନ୍ମଲାଭ କରିଥିଲେ । ତାଙ୍କର ନିଷ୍ପାପ, ସୁନ୍ଦର, ସୌମ୍ୟକାନ୍ତ, ଭୁବନଭୁଲା ମଧୁର ହସହସ ବିନମ୍ର ବଦନ, ସଦାଳାପ, ବିନୟ ଏବଂ ସ୍ୱେଚ୍ଛାକୃତ ଅକପଟ ବିନିଦ୍ର ସେବାବ୍ରତ ଯିଏ ଦେଖିଛି ଏବଂ ଅଂଗେ ଲିଭାଇଛି, ସେ ମୋହିତ ହୋଇଛି ତଥା ତା ଜୀବନରେ ଭୁଲିପାରିନାହିଁ । ଏ ଦିଗରେ ସେ ସମସ୍ତଙ୍କର ଅଗ୍ରଣୀ ଏବଂ ଆଦର୍ଶ ଥିଲେ । ବିପଦରେ ଅନ୍ୟର ସାହାଯ୍ୟ ସହାନୁଭୂତି ଓ ସେବା କରିବାପାଇଁ ତାଙ୍କୁ କିଛି କହିବା ବା ଅନୁରୋଧ କରିବାର ଆବଶ୍ୟକତା ନଥିଲା । ସେ ଆପଣାଛାଏଁ ତାଙ୍କର ପବିତ୍ର କର୍ତ୍ତବ୍ୟ ସ୍ୱତଃ ନିଜେ ଜାଣିପାରୁଥିଲେ ଏବଂ ନିଜକୁ ସେଥିରେ ମଜାଇ ଦେଉଥିଲେ ।



Digitized by srujanika@gmail.com

ଯେତେବେଳେ ଯେଉଁଠାରେ ସେ ରହୁଥିଲେ ନିର୍ବିଚାରରେ ସେଠାରେ ଛୁଆପିଲା, ରୋଗୀ, ଭୋଗୀ, ଗୁରୁ, ଲଘୁ, ସ୍ତ୍ରୀ, ପୁରୁଷ, ସମସ୍ତଙ୍କର ସେବା ନିରଳସ ଭାବରେ କରୁଥିଲେ । ସେଥିରେ ତାଙ୍କର କୌଣସି ଲଜ୍ଜା ବା ଆତ୍ମଶ୍ଳାଘା ଅନୁଭବ ନଥିଲା । ସବୁ ସ୍ତ୍ରୀଲୋକଙ୍କୁ ସେ ନିଜ ମା' ଭଉଣୀ ରୂପେ ଦେଖୁଥିଲେ । କଥାବାର୍ତ୍ତାରେ ମଧ୍ୟ ବେଶ୍ ରସିକ ଥିଲେ । ନିଜେ ଦୁଃଖ ସହି ଅପରକୁ ଆନନ୍ଦ ଦେବା ଯେପରି ତାଙ୍କର ଧର୍ମ ଥିଲା । ସମସ୍ତଙ୍କର ମନର ବେଦନା ବୁଝି ତାର ଆଶୁ ବ୍ୟବସ୍ଥା ନେବାରେ ଧୁରନ୍ଧର ଥିଲେ । ଲବଣ ସତ୍ୟାଗ୍ରହ, ଆଇନ୍ ଅମାନ୍ୟ ଆନ୍ଦୋଳନ, ବ୍ୟକ୍ତିଗତ ସତ୍ୟାଗ୍ରହ ଏବଂ ଅଗଷ୍ଟ ବିପ୍ଳବ ଆଦି ଜାତୀୟ ମୁକ୍ତି ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟ ସହିତ ସେ ପ୍ରତ୍ୟକ୍ଷ ଏବଂ ପରୋକ୍ଷରେ ବିଶେଷ ଭାବରେ ଜଡ଼ିତ ଥିଲେ ।

ଜଣେ ପିତୃଭକ୍ତ ସନ୍ତାନ ଭାବରେ ସେ ଅଞ୍ଚଳରେ ଖ୍ୟାତି ଅର୍ଜନ କରି ଯାଇଛନ୍ତି । ଆଶ୍ରିତ ଲୋକଙ୍କ ପ୍ରତି ତାଙ୍କର କରୁଣାର ଅନ୍ତ ନଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଆପଣା ଅଞ୍ଚଳ ବସ୍ତା ତଥା ସିଂଲାର ଜନ ପ୍ରତିନିଧି ରୂପେ ସେ ବିଭିନ୍ନ ଉନ୍ନୟନ ଯୋଜନା, ଶିକ୍ଷାନୁଷ୍ଠାନ ଗଠନ ଏବଂ ଜନସେବା କାର୍ଯ୍ୟରେ ନିଜକୁ ଭସାଇ ଦେଇ ସବୁ ଲୋକଙ୍କର ଶ୍ରଦ୍ଧା, ଭକ୍ତି, ସ୍ନେହଭାଜନ ହୋଇପାରିଥିଲେ । ତାଙ୍କର ପ୍ରଚେଷ୍ଟାରେ ଇଡ଼ଦାଠାରେ ଏକ ଦାତବ୍ୟ ଚିକିତ୍ସାଳୟ ଏବଂ ହାଇସ୍କୁଲ, ଜାମଶୁଳୀଠାରେ ଏକ ମହାବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠା ଲାଭ କରିଛି । ଭୋଗରାଇର ବାଲିମ ଅଞ୍ଚଳ ଏହି ପ୍ରହରାଜ ପରିବାର ଇଲାକାଭୁକ୍ତ ରହିଥିଲା । ବାଲିମ ହାଇସ୍କୁଲର ସେ ମଧ୍ୟ ଜଣେ ପ୍ରତିଷ୍ଠାତା ଅଟନ୍ତି ।

ଦୈତ୍ୟକୁଳର ପ୍ରହ୍ଲାଦ ଭଳି ଆପଣାର ସମସ୍ତ ସତ୍‌ଗୁଣ, ବ୍ୟକ୍ତିତ୍ୱ ଏବଂ ନିର୍ମଳ ସେବା ବଳରେ ନିଜ ବଂଶର କଳଙ୍କ କାଳିମା ଧୋଇପୋଛି ସେ ମୋଚନ କରିବାକୁ ସମର୍ଥ ହୋଇଥିଲେ । କହିବାକୁ ଗଲେ ଅକ୍ଷୟବାବୁଙ୍କର ସେପରି କେହି ଶତ୍ରୁ ନଥିଲେ । ଯଦି କେବେ କେହି ତାଙ୍କ ପ୍ରତି କୌଣସି ଅସୂୟା ଭାବ ପ୍ରକାଶ କରୁଥିଲା, ସେ ତାଙ୍କୁ ଦେଖିଲେ ହସି କୁଣ୍ଢାଇ ପକାଉଥିଲେ ଏବଂ ଦୋଷ ମାନି ନେଉଥିଲେ । ନିର୍ବାଚନରେ ପରାସ୍ତ ହେଲାପରେ ପ୍ରତିପକ୍ଷକୁ ରସଗୋଲା ଖୁଆଇବା ଭଳି ଉଦାର ଏବଂ ବିଶାଳ ହୃଦୟ ତାଙ୍କର ଥିଲା । ଅର୍ଥ ବା ପଦପଦବୀର ମୋହ ତାଙ୍କୁ କେବେ ପ୍ରଭାବିତ କରିପାରି ନାହିଁ । ଏକାଧାରରେ ସେ ଏତେଗୁଡ଼ିଏ ସତ୍‌ଗୁଣର ଅଧିକାରୀ ଥିଲେ ଯେ, ବର୍ତ୍ତମାନ ସମୟର ସମାଜରେ ତାହା କଳ୍ପନା କରିହେବ ନାହିଁ । ସେଥିପାଇଁ ଉତ୍କଳକେଶରୀ



Digitized by srujanika@gmail.com

ଡ.ହରେକୃଷ୍ଣ ମହତାବ ଜିଲ୍ଲାର ଏକ ମନୋଜ୍ଞ ଅନୁଷ୍ଠାନରେ ଅକ୍ଷୟବାବୁଙ୍କୁ 'ବାଲେଶ୍ୱର ରତ୍ନ' ଉପାଧିରେ ଭୂଷିତ କରି ତାଙ୍କର ଭୂୟସୀ ପ୍ରଶଂସା କରିଥିଲେ । ତାଙ୍କ ପାଇଁ ଜିଲ୍ଲାବାସୀ ଆମେ ସମସ୍ତେ ଗୌରବାନ୍ୱିତ ଅଟୁ । ଏହି ଦେବତୁଲ୍ୟ ମହାପୁରୁଷ ୧୯୭୮ ମସିହାରେ କର୍କଟ ରୋଗରେ ଆକ୍ରାନ୍ତ ହୋଇ ପରଲୋକ ଗମନ କରିଛନ୍ତି, କିନ୍ତୁ ତାଙ୍କର ନିଷ୍ପାପର ଜୀବନ, ଆଦର୍ଶ ଚରିତ୍ରବତ୍ତା ଏବଂ ଅକୃତ୍ରିମ ସେବାବ୍ରତର ସ୍ମୃତି ପ୍ରେରଣାର ଉତ୍ସ ରୂପେ ସମଗ୍ର ଜିଲ୍ଲାରେ ଅକ୍ଷୟ ହୋଇ ରହିଛି ।





Digitized by srujanika@gmail.com

# ଆଜୀବନ ସଂଗ୍ରାମୀ ରବୀନ୍ଦ୍ରମୋହନ

ମହାନ୍ ସ୍ୱାଧୀନତାସଂଗ୍ରାମୀ, ଗାନ୍ଧିବାଦୀ ନେତା, ସୁବିଖ୍ୟାତ ସମାଜସେବୀ ଡ.ରବୀନ୍ଦ୍ର ମୋହନ ଦାସଙ୍କୁ ୧୯୩୮ ମସିହାଠାରୁ ଜାଣିବାର ସୌଭାଗ୍ୟ ମୁଁ ଲାଭ କରିଛି । ସେତିକିବେଳେ ବାଲେଶ୍ୱର ଜିଲ୍ଲାସ୍କୁଲର ଛାତ୍ର ମୁଁ ଥାଏ ଏବଂ ରବିବାବୁଙ୍କ ବାସଭବନର ଅନତିଦୂରରେ ଗୋପାଳଗାଁର ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତଃ ପ୍ରିୟନାଥ ସରକାରଙ୍କ ବାସଭବନରେ ମୋର ବଡ଼ଭାଇ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତଃ ପ୍ୟାରୀମୋହନ ଦାସଙ୍କ ସହ ରହୁଥାଏ । ରବିବାବୁ ସଦାବେଳେ ଆମ ବସାକୁ ଯିବା ଆସିବା କରୁଥାନ୍ତି । ପ୍ରିୟବାବୁଙ୍କ ଘରେ ସେତେବେଳେ ବାଲେଶ୍ୱରର ଅଧିକାଂଶ ସଂଗ୍ରାମୀଙ୍କର ଭିଡ଼ ଲାଗି ରହିଥାଏ । ସୁରେନ୍ଦ୍ର ସର୍ଦ୍ଦାର, କରୁଣାକର ବାବୁ, ଗୌରବାବୁ, ତୁଳସୀବାବୁ ଏପରିକି ମହତାବ ବାବୁ ପର୍ଯ୍ୟନ୍ତ ସରକାର ବାସଭବନକୁ ଆସୁଥାନ୍ତି ବିଚାର ଆଲୋଚନା ସକାଶେ । ରବିବାବୁଙ୍କ ସମେତ ଏହିସବୁ ମହାନ୍ ନେତାଙ୍କର ସଂଗ ସାହଚର୍ଯ୍ୟ ଓ ସଂସର୍ଗ ମୋତେ କିଶୋର ଜୀବନରୁ ମିଳିଥାଏ । ରବିବାବୁ ସ୍ୱଭାବତଃ ମିଷ୍ଟଭାଷୀ ଓ ସ୍ନେହୀ ମଣିଷଟିଏ । ତାଙ୍କର ଅପାର ସ୍ନେହାଶିଷ ମୋ ଉପରେ ଅଜାଡ଼ି ପକାଉଥାନ୍ତି ।

ତାପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ, ବ୍ୟକ୍ତିଗତ ସତ୍ୟାଗ୍ରହ ଓ ଭାରତଛାଡ଼ ଆନ୍ଦୋଳନ ଭାରତମାଟିକୁ ହଲଚଲ କରି ପକାଇଲା । ମୋର କିଶୋର ପ୍ରାଣରେ ରବିବାବୁ ଓ ପ୍ୟାରୀଭାଇଙ୍କର ଇଂରେଜ ବିରୋଧୀ କାର୍ଯ୍ୟକଳାପର ପ୍ରଭାବ ମୋତେ ଅଥୟ କରିଦେଲା । ୧୯୪୧ରେ ମୁଁ ଏନ୍‌ଟ୍ରାନ୍ସ ଶେଷ ପରୀକ୍ଷା ଦେଲି । ୪୨ ଅଗଷ୍ଟରେ ସମସ୍ତେ ଜେଲ୍ ଗଲେ ଧରାହୋଇ । ମୁଁ ମଧ ବାହାରେ ରହିପାରିଲି ନାହିଁ । ତହିଁ ପୂର୍ବରୁ ୪୧ରେ ଏ ଜାତିର ଅମର ସେନାପତି ନେତାଜୀ ସୁଭାଷ ବୋଷ ଶେଷଥର ସକାଶେ ଓଡ଼ିଶା ଗସ୍ତରେ ଆସି ବାଲେଶ୍ୱରରେ ସରକାର ବାସଭବନରେ ଆମକୁ ଦର୍ଶନ ଦେଲେ । ବାଲେଶ୍ୱର ଟାଉନ୍‌ହଲ୍‌ରେ ତାଙ୍କର ଓଜସ୍ୱିନୀ ବକ୍ତୃତା ଶୁଣି ଆମ ରକ୍ତରେ ନିଆଁ ଲାଗିଗଲା । ୪୨ଅଗଷ୍ଟରେ ମୁଁ ଛାତ୍ର ଆନ୍ଦୋଳନ କରି ବାଲେଶ୍ୱର ଜେଲ୍‌ରେ ଯାଇ ପଶିଲି । ରବିଭାଇ ଓ ଆମ୍ଭେମାନେ ସେଠା ଜେଲ୍‌ରୁ ବରହମ୍ପୁର ସର୍କଲ ଜେଲ୍‌କୁ ବଦଳି ହେଲୁ ।



Digitized by srujanika@gmail.com

୧୯୪୨ ଅକ୍ଟୋବରର ମହାବାତ୍ୟା, ୪୩ର ଜିଲ୍ଲାବ୍ୟାପି ପ୍ରଳୟଙ୍କରୀ ବନ୍ୟା ଆମ ଉତ୍ତର ବାଲେଶ୍ୱର ଅଞ୍ଚଳକୁ ଧ୍ୱସ୍ତବିଧ୍ୱସ୍ତ କରି ପକାଇଲା । ତାହାପରେ ଉତ୍ତର ବାଲେଶ୍ୱର ଓ ସମଗ୍ର ବଂଗ ଦେଶରେ ଭୟଙ୍କର ଦୁର୍ଭିକ୍ଷ ଦେଖାଦେଲା । ଡିସେମ୍ବର ମାସ ଶେଷରେ ମୁଁ ଏବଂ ମୋର ଅନ୍ୟ କେତେକ ବନ୍ଧୁ ଜେଲରୁ ମୁକ୍ତ ହେଲୁ । ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ରବିଭାଇ ଇତ୍ୟାଦି ଆମକୁ ଦୁର୍ଭିକ୍ଷ ପୀଡ଼ିତ ଲୋକମାନଙ୍କର ସେବା କରିବାର ପରାମର୍ଶ ଦେଲେ । ଆନ୍ଦୋଳନ ଛାଡ଼ି ବହୁତ ଶ୍ରମ ଓ କଷ୍ଟକରି ଆମେ ପ୍ରାୟ ତିରିଶ ସରିକି ଜେଲ୍ ମୁକ୍ତ ସଂଗ୍ରାମୀ ମିଶି ୧୯୪୩ ଏପ୍ରିଲ୍ ମାସ ଉତ୍ତର ବାଲେଶ୍ୱରର ପ୍ରାୟ ଅଠର ହଜାର ନିରନ୍ନ, ହା ଅନ୍ନ ପୀଡ଼ିତ କଙ୍କାଳସାର ନରନାରୀଙ୍କର ଏକ ବିରାଟ ବୁଭୁକ୍ଷୁ ପଟୁଆର ଦୁଇଦିନ ଧରି ଚାଲିଚାଲି ଯାଇ ବାଲେଶ୍ୱର କଲେକ୍ଟରଙ୍କ କୋଠିକୁ ରାତିର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ଘେରାଉ କଲୁ । ଭାତ ଦିଅ, କାମ ଦିଅ, ଭାତ ନଦେଲେ ସରକାରଙ୍କୁ ମାନିବୁ ନାହିଁ, ଗୁଳିଗୋଳା ମାନିବୁ ନାହିଁ, ଚିତ୍କାର କରି ଗଗନ ପବନ ପ୍ରକମ୍ପିତ କଲୁ । ଜେଲ୍‌ରେ ବନ୍ଦୀଥିବା ସଂଗ୍ରାମୀମାନେ ପଟୁଆର ସହ କଣ୍ଠ ମିଳାଇ ଇନ୍‌କିଲାବ ଜିନ୍ଦାବାଦ ଧ୍ୱନି କରି ଏକ ଅଭୂତପୂର୍ବ ପରିବେଶ ସୃଷ୍ଟି କଲେ । ସହରର ସବୁ ଅଫିସ୍, କଚେରି, ଦୋକାନ ଘାଟ ବନ୍ଦ ହୋଇଗଲା ।

ହାଘରି ମାନଙ୍କର ଆଗମନ ବାର୍ତ୍ତା ଜାଣି ସେତିକିବେଳେ ପାରଳା ମହାରାଜାଙ୍କର ଇଂରେଜ ପଛରେ ଏକ ଗୋଡ଼ାଣିଆ ମିଳିତ ମନ୍ତ୍ରୀମଣ୍ଡଳ ଚାଲିଥାଏ । ପଣ୍ଡିତ ଗୋଦାବରୀଶ ଏହି ମନ୍ତ୍ରୀମଣ୍ଡଳର ଖାଦ୍ୟ ମନ୍ତ୍ରୀ ଥିଲେ । ଓଡ଼ିଶାର ସବୁ ଧାନ ଚାଉଳ ଚଢ଼ା ମୂଲ୍ୟରେ ବଂଗଳାକୁ ବୁହାଯାଉଥାଏ । ଆମର ପଟୁଆର ଓ ଧାରଣା ମେଜିକ୍ ଭଳି କାମ କଲା । ଖାଦ୍ୟମନ୍ତ୍ରୀ ଦୁର୍ଭିକ୍ଷ ପୀଡ଼ିତ ଲୋକମାନଙ୍କର ସର୍ବପ୍ରକାର ରିଲିଫ୍‌ର ବ୍ୟବସ୍ଥା କଲେ । କେବଳ ଭୋଗରାଇ ଥାନାରେ ସରକାର ସବୁ ରିଲିଫ୍ ବ୍ୟବସ୍ଥା କଲେ । ଅନ୍ୟତ୍ର ନୁହେଁ । ଏଣୁ ଉତ୍ତର ବାଲେଶ୍ୱରର ଅନ୍ୟ ଅଞ୍ଚଳମାନଙ୍କରେ ଆମେ ସବୁ ଭୂମିଗତ ରହି ଧାନ ମହାଜନମାନଙ୍କର ଶସ୍ୟାଗାରମାନ ଜୋର ଜବରଦସ୍ତ ଲୁଣ୍ଠନ କରି ସେମାନଙ୍କୁ ବାଣ୍ଟିଦେଲୁ । ତା'ପରେ ଗୁଡ଼୍‌ଦାଖାଲ ପାଖ କୋଷ୍ଟକେନାଲ ବାଟେ ବଂଗଦେଶକୁ ଚାଲାଣ ହୋଇ ଯାଉଥିବା ଶତାଧିକ ଖାଦ୍ୟବାହୀ ନୌକା ଲୁଟ୍‌କରି ଏହି ଲୋକମାନଙ୍କୁ ବାଣ୍ଟିଦେଲୁ । ତାପରେ ଗିରଫଦାରୀ, କୋର୍ଟ କଚେରିରେ ଆମର ବିଚାର ଚାଲିଲା । ଆମେ ବାଲେଶ୍ୱର ଜେଲ୍‌ରେ ଥାଉ । ପୁଣି ବରହମପୁର ଜେଲ୍‌କୁ ଆମେ ସ୍ଥାନାନ୍ତର ହେଲୁ । ୧୯୪୩ରୁ ୪୫ମସିହା ଯାଏ ରାଜ୍ୟର ସମସ୍ତ ସଂଗ୍ରାମୀ ମାନଙ୍କର ସତ୍‌ସଂଗ ରବିବାବୁଙ୍କ ସମେତ ଆମ ଭାଗ୍ୟରେ ଘଟିଥିଲା ।



Digitized by srujanika@gmail.com

ସ୍ୱାଧୀନତା ପ୍ରାପ୍ତି ପରେ ରବିଭାଇ ବିଧାନସଭାର ସଭ୍ୟ ଭାବରେ ବାଲେଶ୍ୱରରୁ ନିର୍ବାଚିତ ହେଲେ । ରବିଭାଇ ସେତେବେଳେ ବିଧାନସଭାର ବିରୋଧୀ ଦଳର ନେତା ଥିଲେ । ରାଜନୀତି ନୁହେଁ, ଦେଶସେବା ଓ ରାଜ୍ୟର ଗଠନମୂଳକ କାର୍ଯ୍ୟରେ ନିଜକୁ ସାମିଲ୍ କରି ସେ ମାତି ଉଠିଲେ । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ମୁଁ ମଧ ବସି ରହିପାରିଲି ନାହିଁ । ଗୋପାଳଗାଁ ବାଲେଶ୍ୱରରେ ମୁଁ ୩୮ ମସିହାଠାରୁ ୫୦ ମସିହା ଯାଏ ରହିଥିଲି । ତହିଁପରେ ଭୋଗରାଇରେ ମୋ ଗାଁ ମାଟିକୁ ଆବୋରି ଆଜିଯାଏଁ ମୁଁ ପଡ଼ିଛି । ଦୀର୍ଘ ତିରିଶବର୍ଷ କାଳ ରବିଭାଇଙ୍କର ଆଦର୍ଶ ଓ ପଦାଙ୍କ ଅନୁସରଣ କରି ଧନ୍ୟ ହୋଇଛି ।

ରବିଭାଇ ନାମଟା ମୋଠାରେ ଅତି ଅନ୍ତରଂଗ ଓ ପ୍ରିୟନାମ ହୋଇଆସିଛି । ରବିଭାଇ ତାଙ୍କ ଜୀବନରେ କନିକା ଓ ନୀଳଗିରିର ପ୍ରଜାମୁକ୍ତି ଆନ୍ଦୋଳନରେ ମହତାବଜୀଙ୍କ ସହ ଯୋଗ ଦେଇଥିଲେ । ଇଞ୍ଚୁଡ଼ି, ଶ୍ରୀଜଙ୍ଗ ଭୋଗରାଇ ଓ ବୋଳଙ୍ଗ ଆଦି ଅଞ୍ଚଳରେ ଲୁଣମରା ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ । ହରିଜନ ମୁକ୍ତି ଆନ୍ଦୋଳନରେ ଯୋଗଦେଇ ୧୯୩୪ ମସିହାରେ ସେ ଗାନ୍ଧିଜୀଙ୍କ ସହ ଜିଲ୍ଲା ତମାମ ପଦଯାତ୍ରା କରିଥିଲେ । ଉତ୍ତର ଜୀବନରେ ଉତ୍ତର ଓଡ଼ିଶାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ସକାଶେ ଦେଶବାସୀଙ୍କ ନେତୃତ୍ୱ ନେଇ ଫକୀରମୋହନ ବିଶ୍ୱବିଦ୍ୟାଳୟ ବାଲେଶ୍ୱରରେ ଗଠନ କରିବାକୁ ସେ ସମର୍ଥ ହୋଇ ପାରିଛନ୍ତି । ବାଲେଶ୍ୱରବାସୀଙ୍କ ସେବାରେ ବିଭିନ୍ନ କ୍ଷେତ୍ରରେ ତାଙ୍କର ଅବଦାନ ସବୁଠାରୁ ବେଶି । ଏଥିରେ ସନ୍ଦେହ ନାହିଁ ।

ରବିଭାଇଙ୍କର ଅସୀମ ଧୈର୍ଯ୍ୟ ଆମକୁ ବିମୋହିତ କରିଛି । ଗାନ୍ଧିବାଦୀ ନାରୀନେତ୍ରୀ ଗୋଦାବରୀଦେବୀ ତାଙ୍କୁ ଶେଷପର୍ଯ୍ୟନ୍ତ ସଂଗ ଦେଇପାରିନାହାନ୍ତି । ଦ୍ୱିତୀୟା କନ୍ୟା କୀର୍ତ୍ତିଧାରା ଅକାଳରେ ଝରି ସେପାରିକୁ ଚାଲିଗଲେ । ଏସବୁ ଦୁର୍ଭାଗ୍ୟର ପ୍ରଭାବ ଏହି ସ୍ଥିତପ୍ରଜ୍ଞ ବ୍ୟକ୍ତିଜଣକ ଉପରେ ପଡ଼ି ମଧ ସେ ଭାଂଗିପଡ଼ି ନଥିଲେ ଶେଷଯାଏ । ଏ ଦେଶ, ବିଶେଷକରି ବାଲେଶ୍ୱର ମାଟି ରବିଭାଇଙ୍କର ମହାର୍ଘ ଅବଦାନ କେବେ ଭୁଲିପାରିବ ନାହିଁ ।

❑❑❑



Digitized by srujanika@gmail.com

# କଳିଙ୍ଗ ବୀର ବିଜୁ ପଟ୍ଟନାୟକ

ଭାରତର ସ୍ୱାଧୀନତା ପାଇଁ ଯୁଦ୍ଧରେ ଲିପ୍ତ ଆମ ଓଡ଼ିଶା ଭୂଖଣ୍ଡର ପ୍ରାୟ ସବୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଦେଖିବା ଓ ତାଙ୍କ ସହିତ ମିଶିବାର ସୌଭାଗ୍ୟ ମୋ ଜୀବନକାଳ ମଧ୍ୟରେ ଘଟିଛି, ଜେଲ ମଧ୍ୟରେ ଓ ଜେଲ କାନ୍ଥ ବାହାରେ । ସେମାନଙ୍କର ଜୀବନପଣ ସଂଗ୍ରାମ, ତ୍ୟାଗ, ଶୌର୍ଯ୍ୟ, ବୀର୍ଯ୍ୟ ମୁଁ ସର୍ବଶେଷ ଦେଖିଛି ଓ ଶୁଣିଛି କିନ୍ତୁ ବିଜୟାନନ୍ଦ ପଟ୍ଟନାୟକଙ୍କ ଭଳି ସଂଗ୍ରାମୀ ପୁରୁଷ ମୁଁ କାହିଁ ଦେଖିନାହିଁ କି ଶୁଣିବାକୁ ପାଇନାହିଁ । ମୁଁ ଅଭିଭୂତ ହୋଇଛି ତାଙ୍କୁ ଦେଖି ଓ ତାଙ୍କ ସହ ମିଶି । ଏତେ ଅପ୍ରମିତ ସାହସ, ମଣିଷପଣିଆ ଓ କର୍ମଦକ୍ଷତା ଖୁବ୍ କମ୍ ସଂଗ୍ରାମୀ ମାନଙ୍କ ମଧ୍ୟରେ ଥିଲା ତାଙ୍କ ତୁଳନାରେ । ଭକ୍ତିରେ ମୁଁ ତାଙ୍କୁ ବିଜୁଭାଇ ବୋଲି ଡାକୁଥାଏ ଏବଂ ସେ ମଧ୍ୟ ମୋତେ ସାନଭାଇ ଭାବି ଯେତେ ସ୍ନେହ ଶ୍ରଦ୍ଧା କରୁଥାନ୍ତି ଶେଷଯାଏ ।

ବିଜୁବାବୁ ଜଣେ ଆଦର୍ଶ କର୍ମବୀର ଥିଲେ ଆଦ୍ୟରୁ । କୌଣସି ପାର୍ଥିବ କାର୍ଯ୍ୟ ତାଙ୍କୁ ଭୟଭୀତ କରପାରିନାହିଁ । ଭଗବାନ ତାଙ୍କୁ ଏକ ଉଚ୍ଚ ଦୀର୍ଘ ଶରୀର ଦାନ କରିଥିଲେ ଯେମିତି, ମନପ୍ରାଣରେ ସାହସ, ବଳ ଓ ଦେଶପ୍ରେମ ତଥା ଯୋଦ୍ଧାଭାବ ଭରି ଦେଇଥିଲେ ସେମିତି । ତେଣୁ ତାଙ୍କଠାରେ କୌଣସି କାର୍ଯ୍ୟ, ସେ ଯେତେ କଠିନ ଓ ଭୟଙ୍କର ହେଲେ ବି ଦୁଃସାଧ୍ୟ ନଥିଲା ।

ସ୍ୱାଧୀନତା ପ୍ରାପ୍ତିପରେ ପଣ୍ଡିତ ନେହେରୁ କେନ୍ଦ୍ରରେ ଜାତୀୟ ସରକାର ଗଢ଼ିଲେ । ସେତିକିବେଳେ ଇଣ୍ଡୋନେସିଆ ଦେଶର ରାଷ୍ଟ୍ରପତି ସୋକର୍ଣ୍ଣଙ୍କ ବିରୁଦ୍ଧରେ ପ୍ରବଳ ଉତ୍ତେଜନା ଓ ବିରୋଧ ଦେଖାଦେଲା, ସୈନ୍ୟବାହିନୀ ମଧ୍ୟରେ । ସୈନ୍ୟବାହିନୀ ସୋକର୍ଣ୍ଣଙ୍କୁ ଗୃହବନ୍ଦୀ କରି ରଖିଲେ । ଏ ସମ୍ବାଦ ଭାରତ ସରକାର ଜାଣିପାରି ଓ ସୋକର୍ଣ୍ଣଙ୍କ ମୁକ୍ତିପାଇଁ ଭାରତ ସରକାରଙ୍କର ଶରଣାପନ୍ନ ହେଲେ । ବିଜୁପଟ୍ଟନାୟକ ସେତେବେଳେ ଜଣେ ଦକ୍ଷ ବିମାନଚାଳକ ଭାବେ ସୁଖ୍ୟାତ ଥିଲେ । ପଣ୍ଡିତଜୀଙ୍କ ନିର୍ଦ୍ଦେଶରେ ସେ ଏକ ବିମାନ ରାତିରେ ଚଳାଇ, ରାଷ୍ଟ୍ରପତି ଥିବା ଉଆସ ଛାତରେ ଓହ୍ଲାଇ ସୋକର୍ଣ୍ଣଙ୍କୁ ଧରି ଭାରତ ପଳାଇ ଆସିପାରିଥିଲେ । ଏଇ ଘଟଣାଥିଲା ଏକ ଦୁଃସାହସିକ ଅଭୂତପୂର୍ବ ଘଟଣା ସେ ସମୟରେ । ସାରା ଦୁନିଆ ବିଜୁବାବୁଙ୍କର ଏହି କାର୍ଯ୍ୟର ପ୍ରଶଂସାରେ ମୁଖର



Digitized by srujanika@gmail.com

ହୋଇଉଠିଥିଲା । କିଛିଦିନ ଅନ୍ତେ ଇଣ୍ଡୋନେସିଆର ବିଦ୍ରୋହ ପ୍ରଶମିତ ହେଲା ଓ ସୋକର୍ଣ୍ଣ ଦେଶକୁ ଫେରିଲେ ରାଷ୍ଟ୍ରପତି ମର୍ଯ୍ୟାଦାରେ ଭାରତ ସରକାରଙ୍କ ସାହାଯ୍ୟରେ । ବିଜୁବାବୁଙ୍କର ଏହି ଦୁଃସାହସିକ କାର୍ଯ୍ୟ ହେତୁ ଦୁନିଆ ଆଖିରେ ବେଶ୍ ପ୍ରଶଂସିତ ଓ ଚର୍ଚ୍ଚିତ ବ୍ୟକ୍ତିତ୍ୱ ରୂପେ ପ୍ରତିଭାତ ହେଲେ । ଇଣ୍ଡୋନେସିଆ ସରକାର ବିଜୁବାବୁଙ୍କୁ ତାଙ୍କ ରାଜ୍ୟର ଭୂମିପୁତ୍ର ରୂପେ ଘୋଷଣା କରି ସମ୍ବର୍ଦ୍ଧିତ କଲେ । ଏହା ଏକ ବିରଳ ଘଟଣା ଓଡ଼ିଆ ଜାତି ପକ୍ଷରେ । ତେଣୁ ସେ କଳିଙ୍ଗ ବୀର ରୂପେ ପରିଚିତ । ଏ ବିଂଶଶତାବ୍ଦୀରେ ଧରାପୃଷ୍ଠରେ ଜଣେ ଓଡ଼ିଆ ପକ୍ଷରେ ଏଭଳି ଏକ ସାହସ ଓ ବୀରତ୍ୱର ଅଭୂତପୂର୍ବ କାର୍ଯ୍ୟ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଛି ।

ବିଜୁବାବୁ ଗଞ୍ଜାମ ଜିଲ୍ଲାର ଏକ ବ୍ରାହ୍ମଧର୍ମାବଲମ୍ବୀ ପରିବାରର ଦ୍ୱିତୀୟ ସନ୍ତାନ ରୂପେ ଜନ୍ମଗ୍ରହଣ କରିଥିଲେ । ବଡ଼ଭାଇ ଡା. ଜର୍ଜ ପଟ୍ଟନାୟକ ଓଡ଼ିଶାର ବିଖ୍ୟାତ ଦନ୍ତ ଚିକିତ୍ସକ ଥିଲେ । ସେ ସମୟରେ, ବିଜୁବାବୁ ଏକ ସିନିଅର କେମ୍ବ୍ରିଜ୍ ସ୍କୁଲରେ ପାଠ ପଢ଼ି ପାସ୍ କରିଥିଲେ । ଇଂରାଜୀ ଭାଷାରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ଇଂରେଜମାନଙ୍କ ଭଳି ଇଂରାଜୀରେ କଥାବାର୍ତ୍ତା କରିପାରୁଥିଲେ । ତାପରେ ସେ ବିମାନ ଚାଳନା ଶିକ୍ଷାକରି ରେକର୍ଡ଼ ସ୍ଥାପନ କରିଥିଲେ । ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ କାରାବରଣ କରିଥିଲେ । ରାଜଧାନୀ ଦିଲ୍ଲୀ ତାଙ୍କର କର୍ମକ୍ଷେତ୍ର ଥିଲା । ସେ ପ୍ରାୟ ସାଢ଼େ ଛଅଫୁଟ ଉଚ୍ଚା ଥିଲେ ଏବଂ ତାଙ୍କର ଚେହେରା ଖୁବ୍ ଆକର୍ଷଣୀୟ ଥିଲା । ଆଦ୍ୟରୁ ସେ କଂଗ୍ରେସ ଆଦର୍ଶର ଅନୁଗାମୀ ଥିଲେ । ପଣ୍ଡିତ ନେହେରୁ ଓ ଇନ୍ଦିରାଗାନ୍ଧିଙ୍କର ପାଖଲୋକ ଥିଲେ ।

ନିଜ ରାଜ୍ୟ ଓଡ଼ିଶାକୁ ଶିଳ୍ପାୟନ କରି ଗଢ଼ିବାକୁ ତାଙ୍କର ଆକାଂକ୍ଷା ଥିଲା । ସେଥିପାଇଁ ସେ ମହତାବବାବୁଙ୍କୁ ଭୁବନେଶ୍ୱରରେ ସାକ୍ଷାତ କରିବାକୁ ଆସିଥିଲେ । ମହତାବ ସେତେବେଳେ ମଧ୍ୟବର୍ତ୍ତୀକାଳୀନ ରାଜ୍ୟ ସରକାରର ପ୍ରଧାନମନ୍ତ୍ରୀ ଥିଲେ । ମହତାବଙ୍କ ଏକାମ୍ର ନିବାସରେ ବିଜୁବାବୁଙ୍କ ସହ ଆମର ପ୍ରଥମ ସାକ୍ଷାତ ହୋଇଥିଲା ସେତିକିବେଳେ । ଧଳା ପତଲୁନ୍, ପଞ୍ଜାବୀ ଓ ଚମଡ଼ା ଚଟି ପରିହିତ ବିଜୁବାବୁଙ୍କର ଯୌବନଦୀପ୍ତ ଚେହେରା ଆମ ସମସ୍ତଙ୍କୁ ଆକର୍ଷିତ କରିଥିଲା ।

ଓଡ଼ିଶାରେ ଏକ ଲୁଗାକଳ ପ୍ରତିଷ୍ଠା କରିବାର ପ୍ରସ୍ତାବ ସେ ମହତାବବାବୁଙ୍କୁ ଦେଇଥିଲେ । ତାପରେ ଚୌଦ୍ୱାରଠାରେ ଓଡ଼ିଶା ଟେକ୍ସଟାଇଲ୍ ମିଲର (ଓ.ଟି.ଏମ୍.) ପତନ ଘଟିଥିଲା । ବିଜୁବାବୁ ଉକ୍ତ ଶିଳ୍ପାନୁଷ୍ଠାନର ସର୍ବମୟ କର୍ତ୍ତା ରୂପେ ଅବସ୍ଥାପିତ ହେଲେ । ଚୌଦ୍ୱାର ଲୁଗାକଳ କ୍ରମେ ତୀବ୍ର ବେଗରେ ଗତି କଲା ବିଜୁବାବୁଙ୍କର ଉଦ୍ୟମ ଓ ପ୍ରଚେଷ୍ଟା



Digitized by srujanika@gmail.com

ବଳରେ । ତା ସାଂଗକୁ ଅନେକ ଛୋଟବଡ଼ ପାର୍ଶ୍ୱ ଶିଳ୍ପକାରଖାନାମାନ ଗଢ଼ି ଉଠିଲା । ରାଜ୍ୟରେ ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଓ.ଟି.ଏମ୍. ଥିଲା ପ୍ରଥମ ପଦକ୍ଷେପ ଉଭୟ ନେତାଙ୍କ ସହାୟତାରେ ବିଜୁବାବୁ ଓ ମହତାବବାବୁଙ୍କ ନେତୃତ୍ୱରେ । ପାରାଦ୍ୱୀପଠାରେ ବନ୍ଦର ପ୍ରତିଷ୍ଠା ଦିଗରେ ସେମାନଙ୍କର ଅବଦାନ କିଛି କମ୍ ନଥିଲା ।

ମହତାବବାବୁ କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀ ଥିଲେ । ସେଥିରୁ ହଟିଆସି ବମ୍ବେରେ ରାଜ୍ୟପାଳ ହେଲେ । ତାପରେ ୧୯୫୭ ମସିହାରେ ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ ଦ୍ୱିତୀୟଥର ପାଇଁ । ଶିଳ୍ପପତି ବିଜୁବାବୁ ତାଙ୍କର ସହାୟକ ହୋଇ ରହିଲେ ଦ୍ୱିତୀୟ ସ୍ଥାନରେ ।

ବିଜୁବାବୁ ସ୍ୱଭାବତଃ କୌଣସି କାମ କରିବାରେ ବିଳମ୍ବ ସହିପାରୁ ନଥିଲେ । କାମରେ ସାଧାରଣ ନିୟମକାନୁନ ମାନିବା ତାଙ୍କର କୋଷ୍ଠିରେ ନଥିଲା । ତେଣୁ ତାଙ୍କ କାମରେ ଅନିୟମିତତା ଦେଖାଦେଇଥିଲା ।

ଏହି ଅସୀମ ସାହସୀ ଓଡ଼ିଆ ଜଣକ ରାଜ୍ୟର ରାଜା ମହାରାଜା ଓ ଜମିଦାରମାନଙ୍କର ବିଷଦୃଷ୍ଟିରେ ପଡ଼ିଥିଲେ । ମହତାବ ମନ୍ତ୍ରୀମଣ୍ଡଳରେ ସଂଖ୍ୟା ଗରିଷ୍ଠତା କମ୍ ଥିବାରୁ ମହତାବ ଗଣତନ୍ତ୍ର ପରିଷଦ ସହ ମିଶି ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ବାଧ ହୋଇଥିଲେ । ତହିଁପୂର୍ବରୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଚାଲିଥିବାବେଳେ ରାଜା ଜମିଦାର ମାନେ ଭୋଗ କରୁଥିବା ହଜାର ହଜାର ଏକର ନିଷ୍କର ଜଂଗଲ, ଖଣି ପୂର୍ଣ୍ଣ ଭୂମି ଉପରେ ଖଜଣା ଧାର୍ଯ୍ୟ କରିବାକୁ ଆଇନ୍ ପ୍ରଣୟନ କରିବା ସକାଶେ ବିଧାନସଭାରେ ବିଲ୍ ଆସିଥିଲା । ଗଣତନ୍ତ୍ର ପରିଷଦର ରାଜା ମହାରାଜା ଓ ଜମିଦାରମାନେ ଏହାର ଘୋର ବିରୋଧ କଲେ । ଉଭୟ କଂଗ୍ରେସ ଓ ଗଣତନ୍ତ୍ର ଦଳ ମଧ୍ୟରେ ଯୁଦ୍ଧଂଦେହୀ ଅବସ୍ଥା ସୃଷ୍ଟି ହେଲା । ରାଜଧାନୀ ଭୁବନେଶ୍ୱରର ଆଇନ୍ ଶୃଙ୍ଖଳା ଆଉ ରହିଲା ନାହିଁ । ଉଭୟ ଦଳମଧ୍ୟରେ ଘୋଡ଼ା ବେପାର ଚାଲିଲା । ରାଜାମାନେ ଦୁଇଜଣ କଂଗ୍ରେସ ଏମ୍.ଏଲ୍.ଏ.ଙ୍କୁ ଅପହରଣ କରି ଲୁଚାଇ ରଖିଲେ । ବିଜୁବାବୁ ସେମାନଙ୍କର ବ୍ୟୁହ ମଧ୍ୟକୁ ନିରସ୍ତ୍ର ଅବସ୍ଥାରେ ପଶିଗଲେ ଉଦ୍ଧାର କରିବାକୁ ଏମ୍.ଏଲ୍.ଏ. ତିନିଜଣକୁ । ଭୀଷଣ ମାଡ଼ଖାଇ ରକ୍ତାକ୍ତ ହୋଇ ଫେରିଲେ ପ୍ରାଣ ଘେନି । ମହତାବ ସରକାର ଚୁପ ହୋଇ ରହିପାରିଲେ ନାହିଁ । ପୁଲିସ୍ ଏକସନ୍ ଆରମ୍ଭ ହେଲା । ଉକ୍ତ ଅପହୃତ ଏମ୍.ଏଲ୍.ଏ. ମାନଙ୍କୁ ଉଦ୍ଧାର କରାଗଲା ଓ ଖଜଣାଧାର୍ଯ୍ୟ ବିଲ ପାସ୍ ହୋଇ ଆଇନ୍‌ରେ ପରିଣତ ହେଲା ।

ଏ ଗଣତନ୍ତ୍ର ଦଳ ସହ କଂଗ୍ରେସ ମିଶି ମିଳିତ ମନ୍ତ୍ରୀମଣ୍ଡଳ ତାଙ୍କପାଇଁ ଅସହ୍ୟ ଥିଲା । ରାଜ୍ୟ କଂଗ୍ରେସ ଦଳକୁ ବଳବତ୍ତର କରିବାକୁ ସେ ଓ.ଟି.ଏମ୍.ର ଲାଭାଂଶ



Digitized by srujanika@gmail.com

ଅଂଶୀଦାର ମାନଙ୍କୁ ନଦେଇ ମନଇଚ୍ଛା କଂଗ୍ରେସକୁ ମଜବୁତ୍ କରି ଗଢ଼ିବା ଦିଗରେ ଖର୍ଚ୍ଚ କରିବାକୁ ଲାଗିଲେ । କାରଖାନାର ଅଂଶୀଦାରମାନେ ମହତାବଙ୍କଠାରେ ଫେରାଦ ହେଲେ । ମହତାବ ଓ.ଟି.ଏମ୍.ର ଖର୍ଚ୍ଚ ଅଡିଟ୍ କରିବାର ନିର୍ଦ୍ଦେଶ ଦେଲେ । ଏହାକୁ ନେଇ ବିଜୁବାବୁଙ୍କ ସହ ତାଙ୍କର ଘୋର ବିବାଦ ସୃଷ୍ଟି ହେଲା ।

ଏତିକିବେଳେ ପ୍ରଦେଶ କଂଗ୍ରେସର ନିର୍ବାଚନ ହେଲା । ବିଜୁବାବୁ ସ୍ୱୟଂ ସଭାପତିପଦ ପାଇଁ ପ୍ରାର୍ଥୀ ହେଲେ ମହତାବଙ୍କ ପ୍ରାର୍ଥୀ ବିରୁଦ୍ଧରେ ଏବଂ ଜୟୀହେଲେ - ଉଭୟ ନେତାଙ୍କ ମଧ୍ୟରେ ବିବାଦ ଘନୀଭୂତ ହେଲା । ପରିସ୍ଥିତି ଏପରି ହେଲା ଯେ, କଂଗ୍ରେସ ସଭାପତି ବିଜୁବାବୁ ମିଳିତ ମନ୍ତ୍ରୀମଣ୍ଡଳକୁ ଭାଂଗିଦେଲେ । ମୁଖ୍ୟମନ୍ତ୍ରୀ ମହତାବ ଇସ୍ତଫା ଦେଲେ । ରାଜ୍ୟରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ୧୯୬୧ ମସିହାରେ ଜୁନ୍ ମାସରେ ହେଲା । ବିଜୁବାବୁଙ୍କ ନେତୃତ୍ୱରେ କଂଗ୍ରେସ ଦଳ ବିପୁଳ ଭୋଟରେ ଜୟଲାଭ କଲା । ବିଜୁବାବୁ କଂଗ୍ରେସର ମୁଖ୍ୟମନ୍ତ୍ରୀ ଭାବରେ ଶପଥ ନେଲେ । ମହତାବବାବୁ ନିରବ ରହିବାକୁ ବାଧ ହେଲେ ।

ବିଜୁବାବୁଙ୍କ ଜୟଯାତ୍ରା ଏହିପରି ଅବ୍ୟାହତ ଚାଲିଲା । ପୂର୍ବରୁ କେବେ ଓଡ଼ିଶାରେ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଖୋଲା ଅଧିବେଶନ ଅନୁଷ୍ଠିତ ହୋଇ ନଥିଲା । ଉଚ୍ଚାକାଂକ୍ଷୀ ବିଜୁବାବୁଙ୍କ ଉଦ୍ୟମରେ ୧୯୬୪ ମସିହାରେ ଜାତୀୟ କଂଗ୍ରେସ ଅଧିବେଶନ ଭୁବନେଶ୍ୱରଠାରେ ପ୍ରଥମଥର ସକାଶେ ଅନୁଷ୍ଠିତ ହେଲା । କଂଗ୍ରେସ ଦଳର ସବୁ ନେତୃବୃନ୍ଦ ଆସି ଉପସ୍ଥିତ ହେଲେ ରାଜଧାନୀ ଭୁବନେଶ୍ୱରରେ ।

ପଣ୍ଡିତ ନେହେରୁ ଅସୁସ୍ଥ ଥିବାସତ୍ତ୍ୱେ ମଧ୍ୟ ଆସିଥିଲେ ଝିଅ ଇନ୍ଦିରାଙ୍କ ସହ। ଦୁର୍ଭାଗ୍ୟବଶତଃ ଏତିକିବେଳେ ନାନା ଅନୈତିକ ଦୁଃଖଦ ଘଟଣାମାନ ଘଟିଲା ଭୁବନେଶ୍ୱରରେ ପଣ୍ଡିତ ନେହେରୁ ଓ ଇନ୍ଦିରାଙ୍କ ସମକ୍ଷରେ । ଘଟଣାରାଜି ପାଇଁ ବିଜୁବାବୁଙ୍କୁ ସମସ୍ତେ ଦାୟୀକଲେ । ଅଧିବେଶନ ସମାପ୍ତିପରେ ନେତୃବୃନ୍ଦ ରାଜ୍ୟରୁ ବାହୁଡ଼ିଗଲେ । ଅସୁସ୍ଥ ପଣ୍ଡିତ ନେହେରୁ ସାତଦିନ ପରେ ଦିଲ୍ଲୀରେ ପରଲୋକ ଗଲେ । ଲାଲ ବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ହେଲେ । କେନ୍ଦ୍ରୀୟ ନେତୃବୃନ୍ଦଙ୍କ ଆଗରେ ବିଜୁବାବୁ ଭାବମୂର୍ତ୍ତି ସଜାଡ଼ି ପାରିଲେ ନାହିଁ ।

ତେଣୁ କାମରାଜ ପ୍ଲାନ ବଳରେ ବିଜୁବାବୁ ମାତ୍ର ଅଢ଼େଇବର୍ଷ ଶାସନକଲା ପରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ବାଧ ହେଲେ । ବିଜୁପନ୍ଥୀ ବୀରେନ୍ ମିତ୍ର ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ । ବିରେନ୍‌ବାବୁ ଅଢ଼େଇବର୍ଷ ମୁଖ୍ୟମନ୍ତ୍ରୀ ପଦରେ ଥିଲେ । ଶେଷରେ ଜାତୀୟ କଂଗ୍ରେସ ପରିତ୍ୟାଗ କରି ବିଜୁବାବୁ ଉତ୍କଳ କଂଗ୍ରେସ ନାମରେ ଏକ



Digitized by srujanika@gmail.com

ଦଳ ଗଢ଼ିଲେ । ସେ ଦଳ ବେଶିଦିନ ତିଷ୍ଠି ପାରିଲା ନାହିଁ । ବିଜୁବାବୁ ପଟ ପରିବର୍ତ୍ତନ କରି ଜନତା ଦଳରେ ଯୋଗଦେଇ କେନ୍ଦ୍ରରେ ଇସ୍‌ପାତ ମନ୍ତ୍ରୀ ହେଲେ । ବିରେନ୍‌ବାବୁଙ୍କ ପରେ କଂଗ୍ରେସ ଦଳ ଶ୍ୟାମସୁନ୍ଦର ମହାପାତ୍ର ଆଦିଙ୍କ ନେତୃତ୍ୱରେ ରାଜ୍ୟରେ ଶାସନକୁ ଫେରିଲା । ନନ୍ଦିନୀଦେବୀ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ ।

ପରିଶେଷରେ ବିଂଶ ଶତାବ୍ଦୀର ଶେଷ ଭାଗରେ ଜନତାଦଳରୁ ବିଜୁବାବୁ ପୁଣି ରାଜ୍ୟର ମୁଖ୍ୟମନ୍ତ୍ରୀ ପଦରେ ନିର୍ବାଚିତ ହୋଇ ରାଜ୍ୟର ସର୍ବମୟ କର୍ଣ୍ଣଧାର ରୂପେ ଶାସନ ସମ୍ଭାଳିବାକୁ ଲାଗିଲେ ।

ରାଜନୀତିରେ ମହତାବବାବୁଙ୍କ ସହ ବାଦବିବାଦ ସତ୍ତ୍ୱେ ବିଜୁବାବୁଙ୍କ ପରିବାର ସହ ମହତାବବାବୁଙ୍କର ଖୁବ୍ ଘନିଷ୍ଠତା ଥିଲା । ବିଜୁବାବୁଙ୍କ ଧର୍ମପତ୍ନୀ ଶ୍ରୀମତୀ ଜ୍ଞାନ ପଟ୍ଟନାୟକ ମହତାବବାବୁଙ୍କ ଧରମଝିଅ ରୂପେ ପରିଚିତ ଥିଲେ । ନିଃସନ୍ତାନ ମହତାବ ସେମାନଙ୍କୁ ବହୁତ ସ୍ନେହ ଶ୍ରଦ୍ଧା କରୁଥିଲେ । ରାଜନୀତି ପରିପ୍ରେକ୍ଷୀରେ ସେମାନେ ଅଲଗା ହୋଇ ରହିଥିଲେ ମଧ୍ୟ ବ୍ୟକ୍ତିଗତ ଓ ସାଂସାରିକ ଜୀବନରେ ସେମାନଙ୍କ ମଧ୍ୟରେ ମନାନ୍ତର ନଥିଲା । ସଂକଟ ମୁହୂର୍ତ୍ତରେ ସେମାନେ ମହତାବଙ୍କର ସୁପରାମର୍ଶ ଲୋଡୁଥିଲେ ଏବଂ ମହତାବ ତାହା ଅକାତରେ ରାଜ୍ୟର ସ୍ୱାର୍ଥଦୃଷ୍ଟିରୁ ଦାନ କରୁଥିଲେ । ୧୯୪୬ମସିହା ଠାରୁ ବିଂଶ ଶତାବ୍ଦୀ ଶେଷଯାଏ, ଏହି ଅର୍ଦ୍ଧଶତାବ୍ଦୀକାଳ ମଧ୍ୟରେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ବିଶେଷ ଭାବରେ ସମ୍ଭବ ହୋଇପାରିଥିଲା । ଏହା ଅନସ୍ୱୀକାର୍ଯ୍ୟ ।

ବିଜୁବାବୁ ଏକାନ୍ତ ବନ୍ଧୁବତ୍ସଳ ଥିଲେ । ମୋ ଭଳି ଏକ ସାମାନ୍ୟ କଂଗ୍ରେସକର୍ମୀ ଓ ସ୍ୱାଧୀନତା ସଂଗ୍ରାମୀଙ୍କୁ ସେ ସାନଭାଇ ରୂପେ ବ୍ୟବହାର କରୁଥିଲେ । ମୋର କଂଗ୍ରେସ ପଣିଆରେ ମୋହିତ ହୋଇ ମୋତେ ଭୋଗରାଇ ପଞ୍ଚାୟତ ସମିତିର ଅଧକ୍ଷ ପଦରେ ୧୯୬୨ ମସିହାରେ ନିର୍ବାଚିତ କରିବାକୁ ଅକୁଣ୍ଠ ସାହାଯ୍ୟ କରିଥିଲେ । ମୁଁ ଅସୁସ୍ଥ ହୋଇ ଡାକ୍ତରଖାନାରେ ପଡ଼ିଥିବାବେଳେ ଅର୍ଥରାଶି ତତ୍‌କ୍ଷଣାତ୍ ସାହାଯ୍ୟ ପଠାଇ ଦେଇଥିଲେ । ଭୋଗରାଇ ଗସ୍ତରେ ଆସିବାବେଳେ ତାଙ୍କୁ ମିଳିଥିବା ଫୁଲମାଳମାନ ସର୍ବସମକ୍ଷରେ ମୋ ମୁଣ୍ଡରେ ଅଜାଡ଼ି ପକାଇଥିଲେ ସ୍ନେହବତ୍ସଳ ବଡ଼ଭାଇ ଭଳି । ଏଣୁ ତାଙ୍କୁ ଏବଂ ତାଙ୍କର ସଦାଶୟ ସ୍ନେହପୂର୍ଣ୍ଣ ବ୍ୟବହାରକୁ ମୁଁ କେବେ ଭୁଲିପାରିବି ନାହିଁ । ମୁଖ୍ୟମନ୍ତ୍ରୀ ଭାବରେ ସବୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭୁବନେଶ୍ୱର ଡକାଇ ନେଇ ଉପାୟନ ଓ ମାନପତ୍ର ପ୍ରଦାନ କରି ସମ୍ବର୍ଦ୍ଧନା ଜଣାଇଥିଲେ ।

ବୀରେନ୍ ମିତ୍ର ଜଣେ ଦରିଦ୍ର ମୁଖ୍ୟମନ୍ତ୍ରୀ ଥିଲେ । ଏଣୁ ଦୁଃଖୀଜନର ବନ୍ଧୁଥିଲେ । ଦୁଃସ୍ଥ, ପୀଡ଼ିତ ଓ ଅସହାୟଙ୍କ ପାଇଁ ତାଙ୍କର ଦୟାର୍ଦ୍ର ହୃଦୟ ସବୁବେଳେ କାନ୍ଦୁଥିଲା ।



Digitized by srujanika@gmail.com

ଅନ୍ୟପକ୍ଷରେ ବିଜୁବାବୁ ରାଜ୍ୟର ସ୍ୱାର୍ଥରକ୍ଷା କରିବା ଦିଗରେ ଅର୍ଥଖର୍ଚ୍ଚ କରିବା ସକାଶେ ମୁକ୍ତହସ୍ତ ଥିଲେ । ନୀଳମଣି ରାଉତରାୟ ଆଦ୍ୟରୁ ରାଜ୍ୟର ମନ୍ତ୍ରୀପଦ ଦୀର୍ଘବର୍ଷ ସମ୍ଭାଳିବା ପରେ ମୁଖ୍ୟମନ୍ତ୍ରୀ ହୋଇଥିଲେ । ସେ ଅତି ସ୍ନେହୀ ମଧୁର ସ୍ୱଭାବର ଲୋକଥାଇ ସମସ୍ତଙ୍କର ବିଶ୍ୱାସ ଭାଜନ ହୋଇପାରିଥିଲେ ।

ମହତାବ ବାବୁ ନବ ଉତ୍କଳର ନିର୍ମାତା ଓ ବିଜୁବାବୁ ଓଡ଼ିଆବୀର ଓ ଦୁଃସାହସୀ । ଏମାନେ ସମସ୍ତେ ଦେଶ ସେବକ ଥିଲେ । ଏମାନଙ୍କର କର୍ମକାଣ୍ଡ ରାଜ୍ୟର ଦୀର୍ଘବର୍ଷର ଇତିହାସକୁ ମଣ୍ଡନ କରିଛି । ଏଥିରେ କିଛି, ସନ୍ଦେହ ନାହିଁ । ଓଡ଼ିଶା ସବୁଦିନେ ଏମାନଙ୍କୁ ମନେ ପକାଉଥିବ ।





Digitized by srujanika@gmail.com

# ଭାରତ ବିଭାଜନ

ଜେଲ ଭିତରେ କଠିନ କଷଣ ଜୀବନ ସହିସହି ଆମର ଦେହମନ ପାଷାଣ ପାଲଟି ଯାଇଛି । ଇତି ମଧ୍ୟରେ ୨ୟବିଶ୍ୱଯୁଦ୍ଧ ସରିଛି । ମିତ୍ରଶକ୍ତି ଫାସିଷ୍ଟ ଶକ୍ତି ଉପରେ ବିଜୟ ଲାଭ କରିଛି । ଇଂରେଜ ଜାତି ବିଜୟୀ ହୋଇଛି । କିନ୍ତୁ ଭାରତର କୋଟିକୋଟି ଲୋକଙ୍କ ଉପରେ ସେମାନଙ୍କର କ୍ରମାଗତ ନୃଶଂସ ଅତ୍ୟାଚାର ସାରା ପୃଥିବୀର ସବୁ ଦେଶବାସୀଙ୍କ ପ୍ରାଣରେ ତୀବ୍ର ଆଲୋଡ଼ନ ଓ ପ୍ରତିକ୍ରିୟା ସୃଷ୍ଟି କଲା । ଭାରତବାସୀଙ୍କ ସ୍ୱତନ୍ତ୍ରତା ଦାବି ନେଇ ସମସ୍ତଙ୍କ ମନରେ ଘୋର ଅସନ୍ତୋଷ ଜାଗ୍ରତ ହେଲା । ଯୁଦ୍ଧ ପରେପରେ ସେତିକିବେଳେ ଇଂରେଜ ସାମ୍ରାଜ୍ୟର ସରକାରର ରୂପ ବଦଳିଗଲା । ଚର୍ଚ୍ଚିଲ୍‌ଙ୍କ କାଠ ସରକାର ବଦଳରେ ଅଟଲିଙ୍କ ଶ୍ରମିକ ଦଳ ଶକ୍ତିକୁ ଫେରିଲେ । ଅଟଲି ସାହେବ ପ୍ରଧାନମନ୍ତ୍ରୀ ହୋଇ ଭାରତର ସ୍ୱାଧୀନତା ଦାବିକୁ ସ୍ୱୀକାର କରିନେଲେ । ଭାରତର ଜେଲ ଫାଟକମାନ ଖୋଲି ଦିଆଗଲା । ଲକ୍ଷଲକ୍ଷ ସ୍ୱାଧୀନତା ସଂଗ୍ରାମୀ ଜେଲ୍‌ରୁ ମୁକ୍ତ ହେଲେ । ଏହି ଘଟଣା ୧୯୪୫ ଶେଷଭାଗ ଆଡ଼େ ହେବ । ଏତେଶୀଘ୍ର ଆମକୁ ସ୍ୱାଧୀନତା ମିଳିବ ବୋଲି ଆମେ କେବେ କଳ୍ପନା ସୁଦ୍ଧା କରିନଥିଲୁ । କିନ୍ତୁ ଈଶ୍ୱରଙ୍କ କୃପାରୁ ଆମ ଭାରତରେ ତାହା ସମ୍ଭବ ହେଲା ।

ଆମ ଜାତିର ପିତା ମହାତ୍ମାଗାନ୍ଧି ଓ ଜାତୀୟ କଂଗ୍ରେସର ନେତୃବୃନ୍ଦ ସହ ଇଂରେଜ ସରକାର କଥାବାର୍ତ୍ତା ଆରମ୍ଭ କଲେ ସତ କିନ୍ତୁ ଭାରତୀୟ ମୁସଲମାନମାନଙ୍କ ନେତାମାନଙ୍କୁ କୁ ପରାମର୍ଶ ଦେଇ ଓ ପାକିସ୍ଥାନ ଗଠନ ଉପରେ ଜୋରଦେଇ ଭାରତ ଭୂଖଣ୍ଡକୁ ଦୁଇଭାଗ କରିଦେଲେ । ପୂର୍ବବଂଗ ପଶ୍ଚିମାଞ୍ଚଳ ମିଶି ପାକିସ୍ଥାନ ଗଠିତ ହେଲା । ଭାରତର ବାକିତକ ଅଂଶ ଭାରତ ବନିଗଲା । ବହୁ ପ୍ରତ୍ୟାଶିତ ଅଖଣ୍ଡ ଭାରତ ଦ୍ୱିଖଣ୍ଡିତ ହେଲା । ସେତେବେଳେ ଇଂରେଜ ହାତରୁ କ୍ଷମତା ଛଡ଼େଇ ଆଣିବାକୁ ଅନ୍ୟକିଛି ଉପାୟ ନଥିଲା । ହିନ୍ଦୁ-ମୁସଲମାନ ଗଣ୍ଡଗୋଳ, ହଣାକଟା ବଂଗଦେଶରେ ଲାଗିଲା । ଅଯଥା ରକ୍ତର ସୁଅ ଭାରତମାଟିରେ ବହିବାକୁ ଲାଗିଲା । ଗାନ୍ଧିଜୀ ଉପଦ୍ରୁତ ଅଞ୍ଚଳରେ ଶାନ୍ତି ଯାତ୍ରା କରି ବୁଲିବାକୁ ଲାଗିଲେ । ବେଶ୍ କିଛି ସଂଖ୍ୟକ ଭାରତବାସୀ ଏହି ଅଭୂତପୂର୍ବ ଦଂଗାରେ ହତାହତ ହେଲେ । ମୁସଲମାନ ନେତା ଜିନ୍ନା ସାହେବ, ଲିଆକତ୍ ଅଲି ଖାଁ,



Digitized by srujanika@gmail.com

ସୁରବର୍ଦ୍ଦି ଓ ଭୁଟ୍ଟୋ ଆଦି ପାକିସ୍ଥାନ ଚାଲିଗଲେ । ବଂଗଦେଶ ବିଶେଷକରି ଦୁଇଭାଗ ହେଲା । ପୂର୍ବବଂଗ ପାକିସ୍ଥାନରେ ସାମିଲ୍ ହେଲା । ଏହା ହେଉଛି ଆମ ସ୍ୱାଧୀନତା ସଂଗ୍ରାମର ମିଶ୍ର ଫଳାଫଳ । ୧୯୪୫-୪୭ ସମୟ ମଧ୍ୟରେ ଏକ ମଧ୍ୟବର୍ତ୍ତୀକାଳୀନ ସରକାର ଗଠିତ ହେଲା । ଜିନ୍ନାସାହେବ ପାକିସ୍ଥାନରେ ଏବଂ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଭାରତର ଶାସନକର୍ତ୍ତା ରୂପେ ନିଯୁକ୍ତ ହେଲେ । ଲିଆକତ୍ ଅଲ୍ଲିଖାଁ ପାକିସ୍ଥାନର ଓ ଆମ ପଣ୍ଡିତ୍ ଜୀ ଭାରତର ପ୍ରଧାନମନ୍ତ୍ରୀ ହେଲେ । ୧୯୪୫ରୁ ଏହି ବିଭକ୍ତିକରଣ ଆରମ୍ଭ ହୋଇ ୧୯୪୭ ଅଗଷ୍ଟ ଯାଏ ଗଲା । ପରେ ଉଭୟ ଦେଶ ନିଜକୁ ସ୍ୱାଧୀନ ବୋଲି ୧୯୪୭ ଅଗଷ୍ଟ, ୧୪ ଓ ୧୫ରେ ଘୋଷଣା କଲେ ।

ହାୟ କି ଦୁର୍ଭାଗ୍ୟ ! ଶତାଧିକ ବର୍ଷ ଧରି ଯୁଦ୍ଧ କରିକରି, ଲକ୍ଷ ପ୍ରାଣର ରକ୍ତ ଢାଳି, ଅତ୍ୟାଚାର କଷଣ ସହି, ଗୁଳିଗୋଳା ଖାଇ, ଫାଶୀ ଖୁଣ୍ଟରେ ଝୁଲି ଏ ବିରାଟ ଭାରତୀୟ ଜାତିକୁ ମୁକ୍ତି ମିଳିଛି । ସ୍ୱାଧୀନତା ଚାଖିବା ପୂର୍ବରୁ ହିନ୍ଦୁ ମୁସଲମାନ ନିଜକୁ ନିଜେ ଭିନ୍ନ ହୋଇଗଲେ । ଅଧିକ ସୁଖ ସ୍ୱାଛନ୍ଦ୍ୟ ଆଶାରେ ଲୋକେ ଭିନ୍ନ ହେବାକୁ ଚାହାଁନ୍ତି ସ୍ୱାଧୀନ ଭାବରେ ରହିବାକୁ । କିଛି ନେତାଙ୍କ ବ୍ୟକ୍ତିଗତ ସ୍ୱାର୍ଥ ପ୍ରତିଷ୍ଠା ପାଇଁ ଗାନ୍ଧି ମହାତ୍ମା ବଞ୍ଚି ଥାଉଥାଉ ଅଖଣ୍ଡ ଭାରତ ଦ୍ୱିଖଣ୍ଡିତ ହୋଇଗଲା । ପରିସ୍ଥିତି ଏପରି ଉପୁଜିଲା ଯେ କେହି ନେତାଙ୍କ ପକ୍ଷରେ ଅନ୍ୟ ଉପାୟ ଦେଖାଗଲା ନାହିଁ । ରାଜି ନହେଲେ ପୁଣି ପରାଧୀନ ହୋଇ ରହିବାକୁ ପଡ଼ିବ । ରାଜାଜୀଙ୍କ ଟୁ ନେସନ୍‌ସ ଥିଓରୀ କାର୍ଯ୍ୟକାରୀ ହେଲା । ହିନ୍ଦୁ ମୁସଲମାନ ନିଜନିଜ କାର୍ଯ୍ୟକୁ ନେଇ ସନ୍ତୁଷ୍ଟ ରହିଲେ ସିନା କେତେ ପ୍ରଚୁର ରକ୍ତ ଉଭୟ ସଂପ୍ରଦାୟର ବୋହିଗଲା, ନିଜ ନିଜର ମାଟିରେ ନିଜନିଜ ମଧ୍ୟରେ ହଣାକଟା ହୋଇ । ସ୍ୱାଧୀନତା ସଂଗ୍ରାମରେ ଯେଉଁ ପରିମାଣର ଝାଳ ରକ୍ତ ଦେଶବାସୀ ବୁହାଇଥିଲେ ସେତକ ଯଥେଷ୍ଟ ନଥିଲା ବୋଲି ନିୟତି, ପ୍ରକୃତି ମନରେ ଭାବିଲେ । ତେଣୁ ଅଯଥାରେ କିଛି ଶୀତଳ ରକ୍ତ ବୋହିଗଲା ବୋଧହୁଏ । ଇତିହାସ ଏସବୁ କ୍ଷୟକ୍ଷତିର ହିସାବ ନିଶ୍ଚୟ ରଖିବ ।

ଭାରତ ସ୍ୱାଧୀନତା ଲାଭ କଲା ପରେ ଆଜି ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ମଧ୍ୟରେ ତିନିତିନିଟା ମହାଯୁଦ୍ଧ ଆମ ଭାରତ ମାଟିରେ ଘଟିଯାଇଛି । ଚୀନ୍ ଓ ପାକିସ୍ଥାନ ସହ ଦୁଇଟା ଯୁଦ୍ଧ । ପୁଣି ବାଂଲାଦେଶର ମୁକ୍ତି ସକାଶେ ପାକିସ୍ଥାନ ସହ ଭାରତର ଆଉ ଏକ ଯୁଦ୍ଧ । ଭାରତ କିନ୍ତୁ କୌଣସିଥିରେ ହାରିନାହିଁ । ଆମ ନେତାମାନଙ୍କର, ପଣ୍ଡିତଜୀ, ଶାସ୍ତ୍ରୀଜୀ, ଇନ୍ଦିରାଜୀ ଆଦିଙ୍କର ବଳିଷ୍ଠ ନେତୃତ୍ୱ ସକାଶେ । ପାକିସ୍ଥାନକୁ ହରାଇ ପୂର୍ବବଂଗ ଖଣ୍ଡକୁ ପାକିସ୍ଥାନଠାରୁ ଜିଣି ଆଣି ଭାରତ ତାକୁ ବାଂଲାଦେଶରେ ରୂପାନ୍ତରିତ କରି ସ୍ୱାଧୀନ



Digitized by srujanika@gmail.com

କରି ଛାଡ଼ିଦେଲେ । ପୃଥିବୀ ଇତିହାସରେ ଏକ ନୂଆ ଦୃଷ୍ଟାନ୍ତ ସୃଷ୍ଟି କଲା ଭାରତ । ଏସବୁ ବିଶ୍ୱମାନବ ସମାଜର ଶାନ୍ତିର ଦୂତ ଜବାହାରଲାଲ୍‌ଙ୍କର ପଞ୍ଚଶୀଳ ନୀତିର ପରିଣାମ । ଅନାକ୍ରମଣ ସହାବସ୍ଥାନ ଓ ପରସ୍ପର ମଧ୍ୟରେ ଯୁଦ୍ଧ ବିଗ୍ରହକୁ ଏଡ଼ି ଯିବାର ଉପାୟ ଥିଲା । ପୃଥିବୀରେ ଶାନ୍ତି ପ୍ରତିଷ୍ଠାର ବୀଜମନ୍ତ୍ର ଦେଶକୁ ସୁଦୃଢ଼, ଶକ୍ତିଶାଳୀ, କରି ଗଢ଼ିବା ସକାଶେ । ପଡ଼ୋଶୀ ରାଷ୍ଟ୍ର ତଥା ଦୁନିଆର ସବୁ ଦେଶ ସହିତ ମିତ୍ରତା ସ୍ଥାପନ ପୂର୍ବକ ଲେଣଦେଣ ଚୁକ୍ତି ଓ ପଞ୍ଚବାର୍ଷିକ ଯୋଜନା ଜରିଆରେ ଭାରତ କଲା ଅକୁଣ୍ଠ ଚିତ୍ତରେ । ଯାହାର ପରିଣାମ ଆମେ ଭୋଗୁଛୁ ଏକ ବୃହତ୍ତମ, ଗଣତାନ୍ତ୍ରିକ ବିକାଶଶୀଳ ରାଷ୍ଟ୍ର ଭାବରେ । କେହିକେହି ଆମର ମହାନୁଭବତା, ସର୍ବାଙ୍ଗୀନ ଉନ୍ନତିରେ ପ୍ରେରଣା, ମାନବିକତା, ଧର୍ମନିରପେକ୍ଷତା ଦେଖି ସହି ପାରିନାହାନ୍ତି । ଭିତରେ ଭିତରେ ଉଗ୍ର ହୋଇ ଆମ ଦେଶର ଆଭ୍ୟନ୍ତରୀଣ ସୁଖଶାନ୍ତିକୁ ନଷ୍ଟ କରିବାରେ ଲାଗିଛନ୍ତି । ଅଯଥା ଧନସମ୍ପତ୍ତି, ଜନମାନ କ୍ଷୟ ହୋଇ ଚାଲିଛି ଦେଶତମାମ୍ ଭିତରୁ ଓ ବାହାରୁ । ସେ ଏକ ଲଗାତାର ଭାରତର ମୁଣ୍ଡବ୍ୟଥା ହୋଇ ଦେଖା ଦେଇଛି । ଏଣୁ ଆଶାନୁରୂପ ଉନ୍ନତି ବିଘ୍ନିତ ହୋଇଛି । ଜାତୀୟ ଚରିତ୍ର କଳୁଷିତ ହୋଇ ଦୁର୍ନୀତି ଓ ଲୋଭର ମାତ୍ରା ଆମ ଭିତରେ ବଢ଼ି ଆମର ଏ ବିରାଟ ଜାତିକୁ ଦୁର୍ବଳ କରି ଦେଉଛି । ଦେଶ ମଧ୍ୟରେ କ୍ଷମତା ପାଇଁ ଦ୍ୱନ୍ଦ୍ୱ ପ୍ରବଳମାତ୍ରାରେ ଦେଖାଦେଇଛି । ଜାତି ଧର୍ମକୁ ମଧ୍ୟ ବାଦ୍‌ଦେଇ ନାହାଁନ୍ତି ଅନେକ । ଏ ଏକ ଅଦ୍‌ଭୁତ ଅବସ୍ଥା ଆଜିର ଗଣତନ୍ତ୍ର ରାଜନୀତିରେ ସୃଷ୍ଟି ହୋଇଛି । ବିଚ୍ଛିନ୍ନତାବାଦ ମାଡ଼ି ଚାଲିଛି ଦେଶତମାମ । ବସ୍ତୁତଃ ଦେଶର କିଛି ଆର୍ଥିକ ବା ସାମାଜିକ ଉନ୍ନତି ଘଟୁନାହିଁ । ପୃଥିବୀର ବୃହତ୍ତମ ଶକ୍ତିମାନେ ଆସି ଆମର ଏହି ଦୁର୍ବଳତାର ସୁଯୋଗ ନେବାରେ ଲାଗିଛନ୍ତି ।

ଏ ତ ଗଲା ଆମ ରାଷ୍ଟ୍ରର କଥା, ଏବେ ଆମ ରାଜ୍ୟର କଥା ଟିକିଏ ନଜର ପକାଇ ଦେଖାଯାଉ । ସ୍ୱାଧୀନତା ସଂଗ୍ରାମ କଥା ମନେ ପକଉଲେ ଦେଖାଯାଏ ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହରଙ୍କ ପରେ, ବିଶ୍ୱନାଥ ଦାସ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମାଳତୀ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀ ଆଦି ଆଜି ଆମ ସାମ୍ନାରୁ ହଜି ଗଲେଣି । ସେମାନଙ୍କର ସାହସ, ସଚ୍ଚୋଟପଣିଆ, ତ୍ୟାଗ, ଦେଶପ୍ରେମ, ଏସବୁ ଆମ ଓଡ଼ିଆ ଜାତିର ଇତିହାସ ପାଲଟି ଯାଇଛି । ରାଜ୍ୟର ତିନି ପାଖ ଓଡ଼ିଆ ଗାଁମାନଙ୍କୁ ଅନ୍ୟ ରାଜ୍ୟମାନେ ଖଣ୍ଡଖଣ୍ଡ କରି ଗ୍ରାସିଗଲେ । କେହି ବୁଝିବାକୁ ନାହିଁ । ରାଜ୍ୟର ବୁଦ୍ଧିଜୀବୀ ଓ ନେତାମାନେ କେବଳ କ୍ଷମତା ରାଜନୀତି ନେଇ ମାତିଗଲେ ଜୀବନଟାଯାକ । ଆମ ମହାବଳୀ ମହତାବ ବାବୁ, ବିଜୁବାବୁ ଏମାନଙ୍କ ଛାତି ବଡ଼ ଦରଜ ଥିଲା । ବଡ଼ବୁଦ୍ଧିଆ ଓ ଦୁଃସାହସୀ ଥିଲେ ଏମାନେ । ରାଜ୍ୟକୁ ଦୃଢ଼ କରି ଗଢ଼ିବାକୁ



Digitized by srujanika@gmail.com

ଯାଇ ବହୁଦିନ ଧରି ଚର୍ଚ୍ଚିତ ହେଲେ ଏମାନେ । କ୍ଷମତା ମୋହ ମଧ ଏମାନଙ୍କୁ ଗ୍ରାସିଗଲା । ପରସ୍ପରର ମୁହାଁମୁହିଁ ହୋଇ ଭାଂଗିରୁଜି ଗଲେ ନିଜେନିଜେ । ଅଶୁଭ ଶକ୍ତି ଏମାନଙ୍କୁ ପିଛା କଲା । ଜମିଦାର ଓ ରାଜାମାନେ ଶେଷରେ ରାଜ୍ୟରେ ରାଜନୀତିକଲେ ବେଶ୍ କିଛିଦିନ । ପ୍ରକୃତ ନେତା ବା ମଗଜ ଥିବା ବ୍ୟକ୍ତିମାନେ ସବୁ ହଜିଗଲେ । କ୍ଷମତାକୁ ଜାବୁଡ଼ିଧରି ଦୁର୍ନୀତି ବ୍ୟାପିଲା ସବୁ ମହଲରେ । ଟଙ୍କା ଏବଂ କ୍ଷମତା ମୋହରେ ପଡ଼ି ଦେଶ ଏବେ ଉଜୁଡ଼ି ଯିବାକୁ ବସିଛି । ରାଜ୍ୟ ତ ଦୁଃଖ ଦୁର୍ଦ୍ଦଶାରେ ଭରା । ବନ୍ୟା ବାତ୍ୟା ସବୁବେଳେ ଚିର ସହଚର ହୋଇ ରହିଛି । ରାଜ୍ୟରେ ସରକାରୀ ବେସରକାରୀ ମଦର ବନ୍ୟା ଛୁଟୁଛି । ଦକ୍ଷିଣ ପଶ୍ଚିମ ଓଡ଼ିଶାର ଆଦିବାସୀ ଭାଇ ଭଉଣୀମାନେ ଭାତ ନଖାଇ ମଦ ପିଇ ତୁଚ୍ଛ କଥାରେ ପରସ୍ପରକୁ ହାଣି ପକାଉଛନ୍ତି । ସେମାନଙ୍କର କିଛି ବିକାଶ ନହେବାରୁ ନକ୍ସଲ ଓ ମାଓବାଦୀ ପାଲଟିଯାଇ ରାଜ୍ୟବ୍ୟାପୀ ଅଶାନ୍ତି ଓ ଅରାଜକତା ସୃଜି ଚାଲିଛନ୍ତି । ରାଜ୍ୟସାରା ଯୌତୁକ ଜନିତ ନାରୀ ନିର୍ଯାତନା ଜନଜୀବନକୁ ଅସ୍ଥିର କରି ଦେଉଛି । ସତେ ଯେମିତି ଆମକୁ ଏହାହିଁ ସ୍ୱାଧୀନତାର ଉପହାର ମିଳିଛି ।





Digitized by srujanika@gmail.com

# ସଂଗ୍ରାମୀ ଜୀବନର ପରବର୍ତ୍ତୀ ଅଧ୍ୟାୟ

ଏ ଆଉ ଏକ ଅଧ୍ୟାୟ; ହର୍ଷ ବିଷାଦର କାହାଣୀ । କେବଳ ଯେ କେତେ ସହସ୍ର କଂଗ୍ରେସ କର୍ମୀ ଓ କେତେଜଣ ବିପ୍ଳବୀ ନେତାଙ୍କର ଚରମ ତ୍ୟାଗ ଓ ସାଧନା ବଳରେ ବିଶାଳ ଭାରତ ବର୍ଷର ସ୍ୱାଧୀନତା ଲାଭ ହୋଇଛି ବୋଲି ଭାବିବାଟା ଠିକ୍ ନୁହେଁ । ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତର ହିନ୍ଦୁ ମୁସଲମାନ ଆପାମର ଜନତା ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମକୁ ପୂର୍ଣ୍ଣ ସମର୍ଥନ କରିବା ସଂଗେସଂଗେ ସବୁ ମନ୍ତେ ସହଯୋଗ କରିଥିଲେ । ଇଂରେଜ ସରକାରର ଭାରତୀୟ କର୍ମଚାରୀମାନଙ୍କ ମଧ୍ୟରୁ ବହୁ ସଂଖ୍ୟକ ସ୍ୱାଧୀନଚେତା ଜାତୀୟତାବାଦୀ କର୍ମଚାରୀଙ୍କର ଗୋପନ ଓ ନୈତିକ ସମର୍ଥନ ମଧ୍ୟ ସଂଗ୍ରାମ ପାଇଁ ରହିଥିଲା । ଭାରତୀୟ ସେନାବାହିନୀରେ ମଧ୍ୟ ଅନ୍ତର୍ଦାହ, ଅସନ୍ତୋଷ ଓ ବିପ୍ଳବର ସୂତ୍ରପାତ ହୋଇଥିଲା । ସଂଗ୍ରାମୀମାନଙ୍କ ଉପରେ ଅତ୍ୟାଚାର କଲାବେଳେ ବହୁ ଭାରତୀୟ ଅଫିସରଙ୍କର ଆଖି ଅଶ୍ରୁଳ ହୋଇ ଉଠିଥିବାର ଦେଖାଯାଇଛି । ରାତ୍ରିର ନୀରନ୍ଧ୍ର ଅନ୍ଧକାର ମଧ୍ୟରେ ଆତ୍ମଗୋପନକାରୀ ସଂଗ୍ରାମୀମାନଙ୍କୁ ବହୁ ସରକାରୀ କର୍ମଚାରୀ ପ୍ରଭୂତ ଅର୍ଥ ସାହାଯ୍ୟ କରି ଉତ୍ସାହିତ କରିଛନ୍ତି । ମୋଟ ଉପରେ ଭାରତର ଚାଳିଶ କୋଟି ଲୋକ ସବୁ ଭୁଲି ପ୍ରତ୍ୟକ୍ଷ ଏବଂ ପରୋକ୍ଷରେ ଯଥାସାଧ୍ୟ ଏହି ସଂଗ୍ରାମ ସହ ଯୁକ୍ତ ଥିଲେ ।

ତଥାପି ଏଡ଼େ ସହଜରେ ଏବଂ ଏଡ଼େ ଚଞ୍ଚଳ ସ୍ୱାଧୀନ ହୋଇଯିବ ବୋଲି କେହି ଭାବି ନଥିଲେ । ଋଷି ମୁନିମାନଙ୍କର ଦେଶ, ଆଧ୍ୟାତ୍ମବାଦର ଦେଶ ଭାରତବର୍ଷର କପାଳରେ ଈଶ୍ୱର କିନ୍ତୁ ତାହାହିଁ ଲେଖିଥିଲେ । ଦେଶ ସ୍ୱାଧୀନ ହେଲେ ସ୍ୱାଧୀନତା ସଂଗ୍ରାମର ସେନାନୀ ଭାବରେ ସଂଗ୍ରାମୀମାନେ ଯେ ଦିନେ ଦେଶର ଶାସନ ଡୋରି ହାତକୁ ନେଇ ଗାଦିରେ ବସିବେ, କି ବିଶେଷ ସୁବିଧା ସୁଯୋଗ, ସମ୍ମାନ ଓ ପେନସନ ଇତ୍ୟାଦି ଲାଭ କରିବାକୁ ସମର୍ଥ ହେବେ, ତାହା କେହି କେବେ ସ୍ୱପ୍ନରେ ବି ଭାବି ନଥିଲେ । ଭାବିବାର ଅବକାଶ ମଧ୍ୟ ନଥିଲା । ମୁକ୍ତି ସଂଗ୍ରାମରେ ଜୀବନ ପଣକରି ଚରମ ତ୍ୟାଗ ସ୍ୱୀକାର କରିବାକୁ ସମସ୍ତେ ସଂକଳ୍ପବଦ୍ଧ ଥିଲେ । 'ତେନ ତ୍ୟକ୍ତେନ ଭୁଞ୍ଜୀଥାଃ । ମା ଗୃଧଃ କସ୍ୟସ୍ୱିଦ୍‌ଧନମ୍' ଉପନିଷଦ୍‌ର ଏହି ଶାଶ୍ୱତବାଣୀ ସେମାନଙ୍କ ଜୀବନର ପାଥେୟ ଥିଲା । ତ୍ୟାଗରେ ହିଁ ଭୋଗ, ପରମ ତ୍ୟାଗରେ ପରମ ଭୋଗ । କାହାରି ଧନ



Digitized by srujanika@gmail.com

ପ୍ରତି ସେମାନଙ୍କର ଆସ୍ଥା ନଥିଲା । କିନ୍ତୁ ସ୍ୱାଧୀନ ଭାରତର ଜନପ୍ରିୟ ଲୋକମତ ସରକାର ତଥା ଏ ଜାତି ସେମାନଙ୍କର ଜୀବନବ୍ୟାପୀ ସଂଗ୍ରାମ ଓ ଚରମ ବଳିଦାନ ବିଷୟ ଭୁଲନ୍ତେ ବା କେମିତି ? ସ୍ୱାଧୀନ ଭାରତର ସ୍ୱତନ୍ତ୍ରତା ସେନାନୀ ମାନଙ୍କର ପରିବାରବର୍ଗ ଦୁସ୍ଥ, ଅବନତ ଅବସ୍ଥା ପ୍ରତି ଲକ୍ଷ୍ୟ ରଖି, ସେମାନଙ୍କ ସମ୍ମାନାର୍ଥେ ଉପଯୁକ୍ତ ବ୍ୟବସ୍ଥା ମାନ ନେବାକୁ ସେମାନେ ପଛାଇ ନାହାନ୍ତି । ଏହା ସମଗ୍ର ଜାତି ଏବଂ ଦେଶ ପକ୍ଷରେ ନିଶ୍ଚିତ ଗୌରବର ବିଷୟ ।

ଜାତୀୟ ମୁକ୍ତି ସଂଗ୍ରାମ କାଳରେ ପର୍ଯ୍ୟାୟକ୍ରମେ ସର୍ବାଧିକ ସଂଖ୍ୟକ ତରୁଣ ଓ ତରୁଣୀ, ଯୁବକ ଓ ଯୁବତୀ, ଘରଦ୍ୱାର, ସ୍କୁଲ କଲେଜ ଛାଡ଼ି ଆନ୍ଦୋଳନରେ ଝାସ ଦେଇଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ସେମାନଙ୍କ ମଧ୍ୟରୁ ଅଳ୍ପକେତେକ ଯୋଗ୍ୟ ସଂଗ୍ରାମୀ ରାଜନୈତିକ ସଂଗଠନ ନିର୍ବାଚନ ଓ ଶାସନ ଆଦିରେ ସକ୍ରିୟ ଭୂମିକା ନେବାକୁ ସକ୍ଷମ ହୋଇଥିଲେ । କିଛି ସଂଖ୍ୟକ ଶାନ୍ତିସେନା ରୂପେ ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ ମାନ ହାତକୁ ନେଇ ବ୍ୟସ୍ତ ରହିଲେ । କିନ୍ତୁ ଶତକଡ଼ା ନବେ ଭାଗ ସଂଗ୍ରାମୀ ଭଗ୍ନ ସ୍ୱାସ୍ଥ୍ୟ ନେଇ ଓ ରୋଗଗ୍ରସ୍ତ ହୋଇ ଜେଲଖାନାରୁ ଘରକୁ ଫେରି ଅକର୍ମଣ୍ୟ ହୋଇ ରହିଲେ ଏବଂ ସହାୟ ସମ୍ବଳହୀନ ଜୀବନଯାପନ କରିବାକୁ ଲାଗିଲେ । ଏହା ଦେଖି ଆମ ରାଜ୍ୟରେ ସର୍ବପ୍ରଥମେ ୧୯୪୭-୪୮ ସାଲରେ ଉତ୍କଳକେଶରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ମନ୍ତ୍ରୀମଣ୍ଡଳ ଦୁଃସ୍ଥ ରାଜନୈତିକ ବନ୍ଦୀମାନଙ୍କୁ ମାସକୁ ଦଶ, ପନ୍ଦର, କୋଡ଼ିଏ ଏବଂ ପଚିଶ କରି ଟଙ୍କା ସାହାଯ୍ୟ ଦାନ ଯୋଜନା ଆରମ୍ଭ କଲେ । ଅବଶ୍ୟ ଏହି ସାହାଯ୍ୟ ପାଇବା ପାଇଁ ସେତେବେଳେ ସେତେ କଡ଼ାକଡ଼ି ନିୟମ ନଥିଲା । ଚିହ୍ନିତ ସଂଗ୍ରାମୀମାନଙ୍କ ମଧ୍ୟରୁ ଅକର୍ମଣ୍ୟ ସଂଗ୍ରାମୀମାନେ ପ୍ରାର୍ଥୀ ହୋଇ ନିଜର ଦୁସ୍ଥିତି ସରକାରଙ୍କୁ ଜଣାଇଲେ ସାହାଯ୍ୟ ମିଳିପାରୁଥିଲା । କିନ୍ତୁ ଏ ପ୍ରକାର ସାହାଯ୍ୟ ରାଜ୍ୟର ସମସ୍ତ ସଂଗ୍ରାମୀମାନଙ୍କୁ ସ୍ପର୍ଶ କରିପାରି ନଥିଲା । କାରଣ କର୍ମକ୍ଷମ ସଂଗ୍ରାମୀମାନେ ଏଥିରୁ ବିରତ ଥିଲେ । ପରବର୍ତ୍ତୀ କାଳରେ ଜାତୀୟ ସ୍ତରରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ରାଜା ମହେନ୍ଦ୍ର ପ୍ରତାପ, ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀଯୁକ୍ତ ଶୀଲଭଦ୍ର ଜାଜୀ ଏବଂ କର୍ଣ୍ଣେଲ ମଦନ ମୋହନ ଚୋପ୍ରା ପ୍ରମୁଖ 'ସ୍ୱତନ୍ତ୍ରତା ସଂଗ୍ରାମୀ ପରିଷଦ' ଗଠନ କରି, ସଂଗ୍ରାମୀମାନଙ୍କର ଦୁଃସ୍ଥ ଅବସ୍ଥା ପ୍ରତି ଜାତୀୟ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟିତ ହେଲେ । ସେମାନଙ୍କର ଦୀର୍ଘ ସଂଗ୍ରାମ ଫଳରେ ୧୯୭୨ ସାଲ ଅଗଷ୍ଟ ମାସ ପନ୍ଦର ତାରିଖଠାରୁ ପ୍ରାତଃସ୍ମରଣୀୟା ଜନନେତ୍ରୀ ଏବଂ ଦରଦୀ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସାହସର ସହ 'ସ୍ୱତନ୍ତ୍ରତା ସୈନିକ ସମ୍ମାନ ପେନ୍‌ସନ୍' ଯୋଜନା ପ୍ରବର୍ତ୍ତନ କଲେ ଏବଂ ଭାରତ ସବୁ ଶ୍ରେଣୀର ସଂଗ୍ରାମୀମାନଙ୍କୁ ଏହି ଯୋଜନାରେ ଅନ୍ତର୍ଭୁକ୍ତ କରିବା ସକାଶେ



Digitized by srujanika@gmail.com

ବ୍ୟାପକ ଉଦ୍ୟମ କଲେ । ମାସିକ ଉପଯୁକ୍ତ ପେନ୍‌ସନ୍ ସହ ସଂଗ୍ରାମୀମାନଙ୍କୁ ରୋଗମୁକ୍ତି, ଦାୟ-ଦାୟିତ୍ୱ ଆଦିରେ ଆର୍ଥିକ ସାହାଯ୍ୟ, ରେଳ ଓ ବସ୍ ଯୋଗେ ଦେଶଭ୍ରମଣ, ଦାୟାଦ ମାନଙ୍କର ଶିକ୍ଷା ଏବଂ ଚାକିରି କ୍ଷେତ୍ରରେ ସାହାଯ୍ୟ ପ୍ରଭୃତି ବିଭିନ୍ନ ସୁବିଧା ସୁଯୋଗମାନ ଏହି ଯୋଜନାର ଅନ୍ତର୍ଭୁକ୍ତ । ତତ୍କାଳୀନ ରାଜ୍ୟ ସରକାର ଏହି ସୁଯୋଗରେ ଦୁଃସ୍ଥ ରାଜନୀତିକ ବନ୍ଦୀ ସାହାଯ୍ୟ ଯୋଜନା ପରିହାର କରି ସ୍ୱତନ୍ତତା ସୈନିକ ପେନ୍‌ସନ ଯୋଜନା ଆରମ୍ଭ କଲେ ଏବଂ ମାସିକ ପେନସନ ହାର ପଚିଶ ଟଙ୍କାରୁ ପ୍ରଥମେ ଚାଳିଶ ଟଙ୍କାକୁ ଓ ପରେ ଶହେ ଟଙ୍କାକୁ ବଢ଼ାଇ ଦେଲେ ।

ଶ୍ରୀମତୀ ଇନ୍ଦିରା ଗାନ୍ଧି କେନ୍ଦ୍ର ପେନ୍‌ସନ୍‌ର ହାର ମାସକୁ ଦୁଇଶହ ଟଙ୍କାର ବଢ଼ାଇ ତିନିଶହ ଟଙ୍କା କରିଥିଲେ । ୧୯୮୫ସାଲରେ କଂଗ୍ରେସ ଶତବାର୍ଷିକୀ ବର୍ଷରେ ଭାରତର ପ୍ରିୟଦର୍ଶନ ଯୁବ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧି ଏହି ରାଷ୍ଟ୍ରୀୟ ପେନସନକୁ ଆବଶ୍ୟକ ପରିମାଣରେ ତିନିଶହରୁ ପାଞ୍ଚଶହକୁ ବଢ଼ାଇ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଅଶେଷ ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇଥିଲେ । ଶ୍ରୀମତୀ ଗାନ୍ଧି କଂଗ୍ରେସର ସଭାନେତ୍ରୀ ଥାଇ ସଂଗ୍ରାମୀମାନଙ୍କୁ ସାଂଗଠନିକ ତଥା ସାମାଜିକ ଓ ଅର୍ଥନୀତିକ ଉନ୍ନତି କ୍ଷେତ୍ରରେ କାର୍ଯ୍ୟରେ ନିଯୋଗ କରି ଅତୀତର ସଂଗ୍ରାମୀ ସୁଲଭ କଂଗ୍ରେସୀ ଶୃଙ୍ଖଳା ନୀତିବତ୍ତା ଫେରାଇ ଆଣି ଜାତୀୟ କଂଗ୍ରେସକୁ ଅଧିକ ଶୃଙ୍ଖଳିତ ଓ ସକ୍ରିୟ କରିବା ସକାଶେ ସଂଗଠନ ମଧ୍ୟରେ 'ସ୍ୱାଧୀନତା ସଂଗ୍ରାମୀ ସେଲ' ନାମରେ ଏକ ସ୍ୱତନ୍ତ ଫ୍ରଣ୍ଟ ୧୯୮୩ସାଲରେ ଗଠନ କରିଥିଲେ । ସରକାରଙ୍କର ରାଜନୀତିକ ପେନସନ ଯୋଜନାର ବିଭିନ୍ନ ସୁଖ ସୁବିଧା ଉତ୍ତମ ରୂପେ କାର୍ଯ୍ୟକାରୀ କରିବା ଦିଗରେ ଏହି ସେଲ ପ୍ରଭୂତ ଉଦ୍ୟମ କରିଥିବାର ଲକ୍ଷ୍ୟ କରାଯାଇଛି । କିନ୍ତୁ ଦୁଃଖ ଏବଂ ପରିତାପର ବିଷୟ, ସଂଗଠନ କିମ୍ବା ଶାସନ କ୍ଷେତ୍ରରେ ସେମାନଙ୍କୁ ଅଂଶୀଦାର ରୂପେ ଗ୍ରହଣ କରିବାକୁ ଏଯାବତ୍ ଅଧୁନା କଂଗ୍ରେସ ସକ୍ଷମ ହୋଇପାରିନାହିଁ ।

ଜାତୀୟ କଂଗ୍ରେସର ଏହି ଶତବାର୍ଷିକୀ କାଳ ମଧ୍ୟରେ ଦିଲ୍ଲୀ, ଏଲାହାବାଦ ମୁମ୍ବାଇ ତଥା ବିଭିନ୍ନ ରାଜ୍ୟର ରାଜଧାନୀ, ଜିଲ୍ଲା ଓ ବ୍ଲକ୍ ସ୍ତରରେ ସର୍ବତ୍ର ସଂଗ୍ରାମୀମାନଙ୍କୁ ଆମନ୍ତ୍ରଣ କରି କଂଗ୍ରେସ ସଂଗଠନ ଓ ସରକାରଙ୍କ ପକ୍ଷରୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରାଯିବା, ଦେଶ, ଜାତି ତଥା ସଂଗ୍ରାମୀମାନଙ୍କ ପକ୍ଷରେ ଏକ ପରମ ସୌଭାଗ୍ୟର ବିଷୟ ହୋଇଛି ଏଥିରେ ସନ୍ଦେହ ନାହିଁ । ଅଧିକରୁ ଅଧିକ ସଂଖ୍ୟକ ପ୍ରକୃତ ସଂଗ୍ରାମୀମାନଙ୍କୁ ଏସବୁ ସୁବିଧା ସୁଯୋଗ ଲାଗୁ କରିବାପାଇଁ ବ୍ୟବସ୍ଥାରେ କୋହଳନୀତି ମଧ୍ୟ ଅନୁସରଣ କରାଯାଇଛି ।

ଏସବୁ ସତ୍ତ୍ୱେ, ଏ ଐତିହାସିକ କାର୍ଯ୍ୟକ୍ରମର ଏକ କରୁଣ ଅଧ୍ୟାୟ ଭିତରେ ଲୁଚିରହି ବହୁ ସଂଖ୍ୟକ ସଂଗ୍ରାମୀଙ୍କର ଗଭୀର ମନୋବେଦନାର କାରଣ ହୋଇପଡ଼ିଛି, ସ୍ୱାଧୀନତା



Digitized by srujanika@gmail.com

ଆନ୍ଦୋଳନ ବେଳେ ଯେଉଁମାନେ କାରାରୁଦ୍ଧ ହୋଇଥିବାର ପ୍ରମାଣିତ ହୋଇଛନ୍ତି; ସେମାନଙ୍କୁ ସରକାର ମାସିକ ପେନ୍‌ସନ୍ ଓ ପ୍ରମାଣପତ୍ର ଦେଇ ସମ୍ମାନିତ କରିଛନ୍ତି । କିନ୍ତୁ ନେତାମାନଙ୍କର କାରାରୁଦ୍ଧ ସମୟରେ ଯେଉଁମାନେ ସେ ସଂଗ୍ରାମକୁ ଚଳେଇ ଆସିଥିଲେ, ସେମାନେ କିଏ ? ସେମାନଙ୍କୁ ଖୋଜି ବାହାର କରି ସମ୍ମାନିତ କରିବା ଏବଂ ସେମାନଙ୍କୁ ପେନ୍‌ସନ୍ ଦେବା ସରକାରଙ୍କର ପ୍ରଧାନ କାର୍ଯ୍ୟ । ସ୍ୱାଧୀନ ଭାରତରେ ପରାଧୀନ ସମୟର ସଂଗ୍ରାମୀମାନେ ସମସ୍ତେ ଲୋକଲୋଚନକୁ ଏଯାଏଁ ଆସିପାରି ନାହାନ୍ତି ଓ ସମ୍ମାନିତ ହୋଇପାରି ନାହାନ୍ତି, ଏହା ଅତି ଦୁଃଖର ବିଷୟ ।

୧୯୮୧ ସାଲରୁ କେନ୍ଦ୍ର ସରକାର ପେନସନ ଦାନର ପୂର୍ବ ବ୍ୟବସ୍ଥାକୁ ଯଥେଷ୍ଟ କୋହଳ କରି ଘୋଷଣା କଲେ । ଯୋଜନା ବାହାରେ ଥିବା ସଂଗ୍ରାମୀମାନଙ୍କଠାରୁ ଦରଖାସ୍ତ ମଧ୍ୟ ଆହ୍ୱାନ କଲେ । ଅବଶିଷ୍ଟ ଶତଶତ ସଂଗ୍ରାମୀ ଦରଖାସ୍ତ କଲେ । ବିଭିନ୍ନ ରାଜ୍ୟର ସରକାର ଭଳି ଆମ ରାଜ୍ୟ ସରକାରଙ୍କର ପେନସନ୍ କମିଟି ମଧ୍ୟ ବିଚାର ଆଲୋଚନା କଲେ । କିନ୍ତୁ ଦୁର୍ଭାଗ୍ୟର ବିଷୟ, ସେମାନଙ୍କର ଦରଖାସ୍ତମାନ ନାମଞ୍ଜୁର ହୋଇ ଶହଶହ ସଂଖ୍ୟାରେ ଫେରି ଆସିଲା । ଅବଶ୍ୟ ଇତି ମଧ୍ୟରେ ସୁଯୋଗ ଉଣ୍ଡି କେତେକ ପ୍ରତିକ୍ରିୟାଶୀଳ ଓ ସରକାରୀ କର୍ମଚାରୀଙ୍କର ଦୁର୍ନୀତିମୂଳକ ଷଡ଼ଯନ୍ତ୍ରର ଶିକାର ଏମାନେ ହୋଇଛନ୍ତି । ପ୍ରକୃତ ଜେଲଦଣ୍ଡ ଭୋଗିଥିବା ଏବଂ ଆତ୍ମଗୋପନ କରି ନାନା ଅତ୍ୟାଚାର ଏବଂ ଦୁଃଖ କଷ୍ଟ ବରଣ କରି ସଂଗ୍ରାମ କରିଥିବା ବହୁ ସଂଖ୍ୟକ ସଂଗ୍ରାମୀ ଉପଯୁକ୍ତ ପ୍ରମାଣ ଅଭାବରୁ ଏଥିରୁ ବଂଚିତ ହେଉଛନ୍ତି । ସେଥିପାଇଁ ସଂଗ୍ରାମୀମାନଙ୍କ ଭିତରେ ଗଭୀର ହତାଶା ଏବଂ ପ୍ରତିକ୍ରିୟା ସୃଷ୍ଟି ହୋଇଛି । ଭାରତୀୟ ଏକତା ନିର୍ମାଣ ସମିତି ଏହି ସଂଗ୍ରାମୀମାନଙ୍କୁ ଚିହ୍ନଟ କରିବା ଦିଗରେ ଯେତିକି ତତ୍ପର ହେବା ଆବଶ୍ୟକ ସେତିକି ହୋଇପାରି ନାହିଁ । ଏହା ଆଉ ଏକ କାରଣ ।

ଅନ୍ୟ ଦିଗରେ ପେନସନ ପ୍ରାପ୍ତ ମୃତ ସଂଗ୍ରାମୀମାନଙ୍କ ଉପରେ ନିର୍ଭରଶୀଳ ବିଧବା ପତ୍ନୀମାନେ ଦରଖାସ୍ତ କରି ସହଜରେ ପେନସନ୍ ପାଇବାକୁ ଅକ୍ଷମ ହେଉଛନ୍ତି । ବର୍ଷବର୍ଷ ଧରି ସେମାନେ ଅପେକ୍ଷା କରି ରହିଛନ୍ତି, କିନ୍ତୁ ନିଷ୍ଫଳ କାମନା ।

କେନ୍ଦ୍ର ପେନସନ୍ ପାଇବାକୁ ଅଯୋଗ୍ୟ ବିବେଚିତ ହେଉଥିବା ପ୍ରକୃତ ସଂଗ୍ରାମୀମାନେ ରାଜ୍ୟ ପେନସନ୍ ପାଇବାରେ କିଛି ଅସୁବିଧା ନାହିଁ । କିନ୍ତୁ ରାଜ୍ୟ ସରକାର ଏ ଦିଗରେ ଆଗ୍ରହ ପ୍ରକାଶ କରୁନଥିବାରୁ ସଂଗ୍ରାମୀ ମାନଙ୍କର ଅଧିକ ଦୁଃଖ । କେନ୍ଦ୍ର ପେନସନ ପ୍ରାପ୍ତ ବିଧବା ପତ୍ନୀମାନେ ରାଜ୍ୟ ପେନସନରୁ ଏଯାବତ୍ ବଂଚିତ ହୋଇ ରହିଛନ୍ତି । ବିଚାରରେ ଘୋଷିତ କୋହଳ ନୀତି ଅନୁସରଣ କରାଯାଉ ନାହିଁ । ଏଥିପାଇଁ ରାଜ୍ୟ ସରକାର ସହୃଦୟ



Digitized by srujanika@gmail.com

ହୋଇ ଟିକିଏ ବିଚାର କରି ବ୍ୟବସ୍ଥା ଗ୍ରହଣ କଲେ ସମସ୍ତେ ଉପକୃତ ହୋଇପାରନ୍ତେ ଏବଂ ସନ୍ତୋଷ ମିଳନ୍ତା ।

ସଂଗ୍ରାମୀମାନଙ୍କ ସମୂହ ବ୍ୟାପାରରେ ରାଜ୍ୟରେ ବର୍ତ୍ତମାନ ନେତୃତ୍ୱର ଆନ୍ତରିକତାର ଏକାନ୍ତ ଅଭାବ ଦେଖିବାକୁ ମିଳେ । ସେମାନେ ରାଜ୍ୟର ସୀମିତ ସମ୍ବଳ କଥା ଉଠାଇଥାନ୍ତି । ଅନ୍ୟପକ୍ଷରେ ବିଧାନସଭାର ସଦସ୍ୟମାନଙ୍କର ପେନସନ୍ ପ୍ରତି ତାଙ୍କର ଧ୍ୟାନ ଅଧିକ ଦେଖାଯାଏ । ସେତେବେଳେ ରାଜ୍ୟର ଆର୍ଥିକ ସମ୍ବଳ ସୀମାହୀନ ଭାବରେ ତାଙ୍କ ଦୃଷ୍ଟିରେ ଧରାଦିଏ । ଏହାର କାରଣ ମଧ୍ୟ ପରିଷ୍କାର । ଏମାନେ ଅଧିକାଂଶ କେହି ସଂଗ୍ରାମୀ ନୁହଁନ୍ତି କିମ୍ବା ସେମାନଙ୍କର ଦାୟାଦ ମଧ୍ୟ ନୁହଁନ୍ତି । ଏଣୁ ତାଙ୍କର ହାର୍ଦ୍ଦିକ ଅନୁଭବ ଏବଂ ଦରଦ କାହୁଁ ଆସିବ । ତେଣୁ ତାଙ୍କର ଏହି ଅନାସ୍ଥା ଭାବ । ଜାତିର ବରେଣ୍ୟ ପୁତ୍ର ଓ ପୁତ୍ରୀମାନଙ୍କ ପ୍ରତି କର୍ତ୍ତୃପକ୍ଷଙ୍କର ପ୍ରଚ୍ଛନ୍ନ ତାଚ୍ଛଲ୍ୟ ଲକ୍ଷିତ ହୁଏ । ଯେତିକି କରାଯାଉଛି, ତାହା ହୃଦୟର ସହ ହୋଇପାରୁ ନାହିଁ । କେବଳ ଚାପରେ ପଡ଼ି କରୁଛନ୍ତି । ଏହାହିଁ ହେଲା ଆମ ରାଜ୍ୟ ସରକାରଙ୍କର ସଂଗ୍ରାମୀ ମାନଙ୍କ ପ୍ରତି ସମ୍ମାନର ଧାରା ଏବଂ ରୀତି । ସେମାନେ ବୋଧହୁଏ ମୁକ୍ତିଯୋଦ୍ଧାମାନଙ୍କୁ ବୃଦ୍ଧ, ଅକର୍ମଣ୍ୟ ଓ ମୂର୍ଖ ଭାବି ଅନାବଶ୍ୟକ ଖାତାରେ ସେମାନଙ୍କର ନାମ ଦରଜ କରି ଦେଇ ନିଶ୍ଚିନ୍ତ । ତେଣୁ ସେମାନଙ୍କର ବୈରାଗ୍ୟ, କୁମାରୀ କନ୍ୟାର ବିବାହ, ଦାୟାଦମାନଙ୍କର ଶିକ୍ଷା ଓ ଚାକିରି କରିବା କ୍ଷେତ୍ରରେ ସଂରକ୍ଷଣ, ବିନାମୂଲ୍ୟରେ ଯାନବାହନରେ ଦେଶଭ୍ରମଣ ଓ ଭୂମିଦାନ ଆଦି ଗୃହୀତ କଲ୍ୟାଣ ମୂଳକ କାର୍ଯ୍ୟକ୍ରମ ଗୁଡ଼ିକର ସଫଳ ରୂପାୟନରେ କର୍ତ୍ତୃପକ୍ଷଙ୍କ ଠାରୁ ସୁବିଚାର ଓ ସାହାଯ୍ୟ କରିବା ନିରାଶା ମାତ୍ର । ସୌଭାଗ୍ୟ କ୍ରମେ କେନ୍ଦ୍ର ସରକାର ଠିକଣା ବେଳେ ଆଗେଇ ଆସିନଥିଲେ ସ୍ୱତନ୍ତ୍ରତା ସେନାନୀମାନେ ଆମ ରାଜ୍ୟରେ ଭିକାରି ଜୀବନଯାପନ କରିବାକୁ ଯେ ନିଶ୍ଚିତ ବାଧ୍ୟ ହୋଇଥାନ୍ତେ, ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ସଂଗ୍ରାମୀ ଜୀବନରେ ସଂଗ୍ରାମର ଅନ୍ତ ନାହିଁ । ମହାନ୍ କଂଗ୍ରେସର ପ୍ରତିନିଧି ଭାବେ ଅଧୁନା ରାଜ୍ୟ ନେତୃତ୍ୱ ଓ ସରକାରଙ୍କଠାରୁ ଆଜି କିଛି ଆଶା କରିବାକୁ ହେଲେ, ସଂଗ୍ରାମୀମାନଙ୍କ ପାଇଁ ପୁଣି ସଂଘବଦ୍ଧ ନିରବଚ୍ଛିନ୍ନ ସଂଗ୍ରାମର ଆବଶ୍ୟକତା ଦେଖାଦେଇଛି । ସେମାନଙ୍କୁ ଏବଂ ତାଙ୍କର ପରିବାରବର୍ଗଙ୍କୁ ବଂଚି ରହିବାକୁ ହେଲେ - ନାନ୍ୟଃ ପନ୍ଥାଃ, ହା ହତୋସ୍ମି, ମନ୍ଦ ଭାଗ୍ୟଃ । ସଂଗ୍ରାମୀ ଜୀବନରେ, ଜୀବନର ସାୟଂକାଳରେ ନିଜ ଦେଶ ମାଟିରେ ନିଜ ସରକାର ଏବଂ ନିଜ ଲୋକଙ୍କ ସହିତ ବଂଚି ରହିବାପାଇଁ ସଂଗ୍ରାମ ଅତୀବ ଦୁର୍ଭାଗ୍ୟଜନକ ।





Digitized by srujanika@gmail.com

# ଅରି ଫେରିନାହିଁ, ଯୁଦ୍ଧ ସରିନାହିଁ

ଭାରତବର୍ଷ ବା ଅଖଣ୍ଡ ଭାରତର ସ୍ୱାଧୀନତାର ଅର୍ଥ ସେତେବେଳେ ଇଂରେଜ ଶାସିତ ଭାରତବର୍ଷ କଥା କୁହାଯାଉଥିଲା । ଏହି ଭାରତର ଉତ୍ତରରେ ହିମାଳୟ, ଦକ୍ଷିଣରେ ସିଂହଳ, ପଶ୍ଚିମରେ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଏବଂ ପୂର୍ବରେ ବ୍ରହ୍ମଦେଶ, ମାଳୟ ଏବଂ ସିଙ୍ଗାପୁର ଯାଏ ବିସ୍ତୃତ ରହିଥିଲା । ୧୯୪୫ ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷବେଳକୁ ଏହି ଦେଶମାନ ଭାରତ ଭୂଖଣ୍ଡରୁ ବିଛିନ୍ନ ହୋଇ ସେମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ଜାହିର୍ କଲେ । ବ୍ରିଟିଶ ଶାସିତ ଭାରତବର୍ଷର ମାନଚିତ୍ର ସଂକୁଚିତ ହୋଇଆସିଲା । ଗାନ୍ଧିଜୀ ତଥା କଂଗ୍ରେସର ଅଖଣ୍ଡ ଭାରତର ରୂପ ଏବଂ ଆକାର କ୍ରମେ ବଦଳିଗଲା । ଏଣେ ଜିନ୍ନା ସାହେବ 'ହିନ୍ଦୁ-ମୁସଲମାନ' ଆଳରେ ପାକିସ୍ତାନ ଦାବି କରିବସିଲେ । ତେଣେ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ Two Nation Theory ଲେଖି ବିଭକ୍ତ ଭାରତ (ହିନ୍ଦୁସ୍ତାନ-ପାକିସ୍ତାନ) ଭାରତ ଏବଂ ପୃଥିବୀ ଆଗରେ ଟୋକି ଧରିଲେ । କ୍ରୂର ବ୍ରିଟିଶ ଶାସନର ପ୍ରତିନିଧି ଲର୍ଡ଼ମାଉଣ୍ଟ ବ୍ୟାଟନଙ୍କର ପ୍ରତିହିଂସା ପୂର୍ଣ୍ଣ ଭୂମିକା ତହିଁପରେ ଗରଳ ଢାଳିଦେଲା । ଗାନ୍ଧିଜୀ ଏବଂ କଂଗ୍ରେସ ଅଖଣ୍ଡ ଭାରତ ପ୍ରଶ୍ନ ଉପରେ ଅଟଳ ରହିଥାନ୍ତି । ୧୯୪୫ରେ ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତି ପାଇଁ ଦେଶବାସୀ ଜାତୀୟ କଂଗ୍ରେସ ସମେତ ଗାନ୍ଧିଜୀ ଏକାବେଳକେ ଅଧୀର ହୋଇ ଉଠିଥାନ୍ତି । ମୁହୂର୍ତ୍ତେ ଆଉ ବିଳମ୍ବ ସମ୍ଭବ ନଥିଲା । ମୁସଲିମଲିଗ୍ କିନ୍ତୁ ନଛୋଡ଼ବନ୍ଧା । ଗତ୍ୟନ୍ତର ନଦେଖି ଗାନ୍ଧିଜୀ ଏବଂ କଂଗ୍ରେସ ଅଖଣ୍ଡ ଭାରତର ବିଭାଜନ ବାଧ ହୋଇ ସ୍ୱୀକାର କଲେ ।

୧୯୪୨ ବେଳକୁ ଭାରତବର୍ଷର ଆକାର ବର୍ତ୍ତମାନର ଭାରତର ପ୍ରାୟ ଦୁଇଗୁଣ ରହିଥିଲା । ୧୯୪୭ରେ ପାକିସ୍ତାନ ସୃଷ୍ଟି ହୋଇ ଭାରତ ଦୁଇଭାଗ ହେଲା । ପରେ ପାକିସ୍ତାନରୁ ବାଂଲାଦେଶ ବାହାରିଯାଇ ସ୍ୱତନ୍ତ୍ରତା ଘୋଷଣା କଲା । ଏଣୁ ଆଜି ଅଖଣ୍ଡ ଭାରତର ଅର୍ଥ, ଚତୁର୍ଦ୍ଦିଗରୁ ବିଖଣ୍ଡିତ, ଖଣ୍ଡଖଣ୍ଡ ଭୂଖଣ୍ଡ ସଂଯୁକ୍ତ, ଏକ ବିକଳାଙ୍ଗ ଦେଶ ଛଡ଼ା ଆଉ କିଛି ନୁହେଁ । ତାହା ମଧ୍ୟ ନିଛକ ଆଞ୍ଚଳିକ ଭଷା, ସଂକୀର୍ଣ୍ଣ ପ୍ରାଦେଶିକତା, ଧର୍ମାନ୍ଧତା ଓ ସନ୍ତ୍ରାସବାଦ ପ୍ରଭୃତି ଉଗ୍ର ବିଛିନ୍ନତାବାଦ ଦ୍ୱାରା ଆଜି



Digitized by srujanika@gmail.com

ଭୀତତ୍ରସ୍ତ ହୋଇଉଠିଛି । ଉତ୍ତରରେ କାଶ୍ମୀର, ପୂର୍ବରେ ମିଜୋରାମ, ନାଗାଲାଣ୍ଡ, ଗୁର୍ଖାଲାଣ୍ଡର ଅବସ୍ଥା ଦିନକୁ ଦିନ ସନ୍ଦେହାକୁଳ ହୋଇ ଉଠୁଛି । ପୁଣି ଭାରତମାତାର କପାଳରେ ଆଉ କ'ଣ ପରିବର୍ତ୍ତନ ଆସିବ ତାହା କେବଳ ଅଦୂର ଭବିଷ୍ୟତ ହିଁ କହିପାରେ ।

**ଶାସନ ଓ ସଂଗଠନ**

ସଂପ୍ରତି ଏହି ମୁକ୍ତ ଭାରତର ଏକତା ଓ ଅଖଣ୍ଡତାକୁ ପ୍ରତିକ୍ରିୟାଶୀଳ ବିଭେଦକାରୀ ଶକ୍ତି ହାତରୁ ରକ୍ଷା କରିବା ଦେଶର ପ୍ରତ୍ୟେକ ନାଗରିକର ବିଶେଷକରି ସ୍ୱତନ୍ତ୍ରତା ସେନାନୀମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଅନିବାର୍ଯ୍ୟ କାରଣ ବଶତଃ ପରିବର୍ତ୍ତିତ ପରିସ୍ଥିତିର ଶାସନ ଓ ସଂଗଠନ ଉଭୟ କ୍ଷେତ୍ରରେ ଯୁବଶକ୍ତିର କ୍ରମ ବିପୁଳ ଅଭ୍ୟୁଦୟ, ଜନମାନସରେ କିଛିଟା ସଂଶୟ ଓ ସନ୍ଦିଗ୍ଧ ଭାବ ଆଣିଦେବା ସ୍ୱାଭାବିକ । ସ୍ୱାଧୀନତା ପ୍ରାପ୍ତି ପରଠାରୁ ସ୍ୱତନ୍ତ୍ରତାସେନାନୀ ମାନଙ୍କ ହାତରେ ଦେଶର ଶାସନ ଏବଂ ସଂଗଠନ ଦୀର୍ଘଦିନ ଧରି ରହିଆସିଛି । ସେମାନଙ୍କର ଶାସନ ଓ ସଂଗଠନଗତ ଯୋଗ୍ୟତା, ଅଭିଜ୍ଞତା, ଐକାନ୍ତିକ ସ୍ୱଦେଶପ୍ରୀତି ଓ ଶୃଙ୍ଖଳାବୋଧ କେବଳ ସଂକୀର୍ଣ୍ଣ ପ୍ରାଦେଶିକତା ଓ ବିଚ୍ଛିନ୍ନତାବାଦଠାରୁ ଭାରତକୁ ଏଯାବତ୍ ରକ୍ଷା କରିବାକୁ ସକ୍ଷମ ହୋଇପାରିଥିଲା । କିନ୍ତୁ ଦୁର୍ଭାଗ୍ୟ କ୍ରମେ ଆଜି ଭାରତର ଅଖଣ୍ଡତା ତଥା ଏକତା ଆମ ଆଗରେ ଏକ ପ୍ରଶ୍ନବାଚୀ ହୋଇ ଛିଡ଼ା ହୋଇଛି । ସଚ୍ଚୋଟପଣିଆ, ସାଧୁତା ଓ ଶୃଙ୍ଖଳା ସମାଜ ତଥା ରାଷ୍ଟ୍ରୀୟ ଜୀବନରୁ ବିଦାୟ ନେଲାଭଳି ଜଣାପଡୁଛି । ଶାସନ ଓ ସଂଗଠନ ଉଭୟ ଦୁର୍ନୀତି ଓ ଅପାରଗତାରେ ଜର୍ଜରିତ ହୋଇ କ୍ରମେ ଦୁର୍ବଳ ହୋଇପଡୁଛି । ସଂଗଠନ ମଧ୍ୟରେ ଆଭ୍ୟନ୍ତରୀଣ ଗଣତନ୍ତ୍ର ସ୍ଥାନରେ ଏକନାୟକତ୍ୱର ପ୍ରଭାବ ସଂଗଠନକୁ ଯଥେଷ୍ଟ ଦୁର୍ବଳ କରିଦେଇଛି । ଫଳରେ ଶାସନ ଓ ଶାସକ ଉପରେ ସଂଗଠନ ତାର ଅତୀତର ପାରମ୍ପରିକ କର୍ତ୍ତୃତ୍ୱ ହରାଇ ବସିଛି । ରାଜନୀତିକ ଅସ୍ଥିରତା ସ୍ଥାନେ ସ୍ଥାନେ ଉପୁଜି ସାମୂହିକ ପ୍ରଗତି କ୍ଷୁଣ୍ଣ ହେବାରେ ଲାଗିଛି । ସେଥିପାଇଁ ଆଜି ଯେତେ ବିଶୃଙ୍ଖଳା ।

ଜାତୀୟ ଅର୍ଥ ଦେଶର ପ୍ରଗତି ଓ ସୁରକ୍ଷା ଦିଗରେ ଆଶାନୁରୂପ ସଦୁପଯୋଗ ହୋଇ ନପାରି ବହୁଳାଂଶରେ ବିନା ବ୍ୟୟ ଏବଂ ନଷ୍ଟ ହେବାରେ ଲାଗିଛି । ଦେଶରେ କଳାଧନ ବଢ଼ିବଢ଼ି ଚାଲିଛି । ଏସବୁ ଉପରେ ଜାତୀୟ ନିୟନ୍ତ୍ରଣର ଶକ୍ତମୁଠା କ୍ରମେ ଶିଥିଳ ହେବାର ଲକ୍ଷ୍ୟ କରାଯାଉଛି । ନିଷ୍ପାପର ରାଜନୀତିଜ୍ଞ, ଦକ୍ଷ ଶାସକ ଏବଂ ସଂଗ୍ରାମୀମାନଙ୍କୁ ସଂଗଠନ ଓ ଶାସନ କ୍ଷେତ୍ରରୁ ଧୀରେଧୀରେ ବିଦାୟ ଦିଆଯାଉଛି ।



Digitized by srujanika@gmail.com

ସଂଗଠନ, ଶାସକ ଓ ଗୋଷ୍ଠୀର ଗୋଡ଼ାଣିଆ ହୋଇ ତାର ଅସ୍ତିତ୍ୱ ଲୋପ କରିଦେଇଛି । ସେମାନଙ୍କର କୂଟଚକ୍ର (Vicious Circle) ଭେଦକରି ନିଜକୁ ଜାହିର କରିବା ସଂଗ୍ରାମୀମାନଙ୍କ ପକ୍ଷେ କଷ୍ଟସାଧ୍ୟ । ସଂଗଠନ ମଧ୍ୟରେ ସେମାନଙ୍କୁ ଅନାବଶ୍ୟକ ମଣି ବାଦ୍ ରଖାଯାଇଛି । ଅଧିକାଂଶ ସ୍ଥଳରେ କଂଗ୍ରେସ ଲୋକେ ଜାତୀୟ କଂଗ୍ରେସ ନାମକୁ ଅବଲମ୍ବନ କରି ଯଥେଚ୍ଛା ବ୍ୟବହାର କରିବାରେ ଲାଗିଛନ୍ତି । କ୍ରମେ ସାଧାରଣ ଶିଷ୍ଟାଚାର, ସାମାଜିକତା, ବ୍ୟବହାରିକ ଶୃଙ୍ଖଳାଜ୍ଞାନ କଂଗ୍ରେସୀଙ୍କ ମଧ୍ୟରୁ ଏପରି ହ୍ରାସ ପାଇବାରେ ଲାଗିଛି ଯେ, ଏସବୁ ଅନାଚାରର ଫଳଶ୍ରୁତି ସ୍ୱରୂପ, ସମୟର ଧାର ଗଡ଼ିଗଡ଼ି ଆସି ଆମକୁ ଏବଂ ସମଗ୍ର ଦେଶକୁ ଏକ ଅନିଶ୍ଚିତ ଭବିଷ୍ୟତ ଆଡ଼କୁ ଟାଣିବାରେ ଲାଗିଛି ।

ଦ୍ରୁତ ବେଗରେ ସମୟ ଗତି କରି ଚାଲିଛି । କାହାରିକୁ ଅପେକ୍ଷା ନରଖି ସମାଜରେ ଜୀବନଟା ଏକାନ୍ତ ବିବର୍ତ୍ତନ ଓ ପରିବର୍ତ୍ତନବାଦୀ ହୋଇଯାଇଛି । ଦୁନିଆଟା ଏପରି ବଦଳି ଯାଇଛି ଯେ କେହି କାହାରିକୁ ସହ୍ୟ କରିପାରୁ ନାହାନ୍ତି । ସମାଜରେ ନିରୀହ, ଉପକାରୀ, ସତ୍ୟାଶ୍ରୟୀ ଓ ନ୍ୟାୟ ପରାୟଣ ଲୋକମାନେ, କ୍ଷମତାଶାଳୀ ଲୋକଙ୍କ ଦ୍ୱାରା ପ୍ରତାରିତ ହେଉଛନ୍ତି । ଏଥିରେ କାହାରି ଦୁଃଖ ବା ଅଭିମାନ କରିବାର ନାହିଁ, ହତାଶ ମଧ୍ୟ ହେବାର ନାହିଁ । ଉକ୍ତ ଅବସ୍ଥା ପାଇଁ ବ୍ୟକ୍ତିଗତ ଭାବେ କେହି ଦାୟୀ ନୁହେଁ । କେହି ଜଣେ ଏକା ଚାହିଁଲେ ମଧ୍ୟ ବର୍ତ୍ତମାନର ଧାରାକୁ ବଦଳି କିଛି ପରିବର୍ତ୍ତନ କରିପାରିବ ନାହିଁ । ନିଗୃହୀତ ଲୋକମାନେ ଏକମେଳ ହୋଇ ଶୃଙ୍ଖଳା ଓ ନିୟମ ଅନୁସାରେ ନ୍ୟାୟ ଓ ଧର୍ମପଥ ଧରି ଚାଲିଲେ, ଅତ୍ୟାଚାରୀର ବଳଦର୍ପ ଖସିଯିବ । ଅନ୍ୟ କେହି ଆସି ସାହାଯ୍ୟ କରି ଆମକୁ ଉଦ୍ଧାର କରିବ, ଏକଥା ଭାବିବା ଭୁଲ୍ । ବାହାରର ଲୋକେ କେହି କାହାରିକୁ କିଛି ସାହାଯ୍ୟ କରିପାରିବେ ନାହିଁ । ଆମ ଉପରେ ହେଉଥିବା ଅନ୍ୟାୟ, ଅତ୍ୟାଚାରର ପ୍ରତିକାର ପାଇଁ ଆମେ ନିର୍ଭୀକ ଭାବରେ ନିଜେ ନିଜକୁ ସାହାଯ୍ୟ ନକଲେ, ଈଶ୍ୱର ମଧ୍ୟ ମଣିଷକୁ ସାହାଯ୍ୟ କରନ୍ତି ନାହିଁ । ଏଣୁ ପ୍ରକୃତ ଅବସ୍ଥା ସମସ୍ତଙ୍କର ବୁଝିବାର ଅଛି ଏବଂ ହେଜିବାର ଅଛି । ବିଶେଷକରି ଦେଶର ନେତୃତ୍ୱ ନେଇଥିବା ଯୁବଗୋଷ୍ଠୀ ଏବଂ ପରିତ୍ୟକ୍ତ ସଂଗ୍ରାମୀମାନଙ୍କୁ ସଂକୀର୍ଣ୍ଣ ଆତ୍ମକୈନ୍ଦ୍ରିକତା, ବିଶୃଙ୍ଖଳା ଭୋଗ ଓ ଦୁର୍ନୀତିଠାରୁ ନିଜକୁ ଦୂରେ ରଖି ମିଳିମିଶି ଅଧିକ ସଂଗଠିତ ହେବାକୁ ହେବ । ନିଜ ମଧ୍ୟରେ ପୁରୁଣା ଦିନର ସଂଗ୍ରାମୀ ତଥା ଗଣତାନ୍ତ୍ରିକ ମୂଲ୍ୟବୋଧ ଆମକୁ ପୁଣି ଜାଗ୍ରତ କରିବାକୁ ପଡ଼ିବ । ଦେଶର ସ୍ୱାର୍ଥ ଯେ ସବୁରି



Digitized by srujanika@gmail.com

ଊର୍ଦ୍ଧ୍ୱରେ, ଏ ହୃଦ୍‌ବୋଧ ସମସ୍ତଙ୍କର ରହିବା ଆବଶ୍ୟକ । ସେଥିପାଇଁ ଉପଯୁକ୍ତ ତାଲିମ୍‌ର ମଧ୍ୟ ପ୍ରୟୋଜନ ରହିଛି । ସାନବଡ଼ ସମସ୍ତ କର୍ମୀଙ୍କ ପାଇ ସଂଗଠନ ଅନୁସୃତ ପୁରାତନ ଆଚରଣ ବିଧିମାନ କଠୋର ଭାବରେ ଲାଗୁହେବା ଆବଶ୍ୟକ । ସଂଗଠନର ସଭ୍ୟ ଓ ପ୍ରତିନିଧିମାନେ ସମସ୍ତେ ସଂଗଠନ ପାଖରେ ଏକାନ୍ତ ଭାବେ ଦାୟୀ ହୋଇ ରହିବା ବାଞ୍ଛନୀୟ । ତେବେ ଯାଇ ଏ ଅଶାନ୍ତ ଅବସ୍ଥା ଶାନ୍ତ ହେବ ଏବଂ ସଂଗଠନ ସମସ୍ତଙ୍କ ଠାରେ ଆଦୃତ ହେବା ସଂଗେସଂଗେ ସରକାର ସ୍ଥିର ଏବଂ ଦୃଢ଼ ହୋଇପାରିବ । ଦେଶରକ୍ଷା ଓ ପ୍ରଗତି ସମ୍ଭବ ହୋଇପାରିବ ।

ସଂପ୍ରତି ଦେଶ ଓ ଜାତି ବହିଃଶତ୍ରୁ ଏବଂ ଆଭ୍ୟନ୍ତରୀଣ ଉଗ୍ର ଆଞ୍ଚଳିକତା ଏବଂ ଧର୍ମାନ୍ଧତା ଦ୍ୱାରା ବିଭିନ୍ନ ଦିଗରୁ ଏକ ଆହ୍ୱାନର ସମ୍ମୁଖୀନ । ଏହାର ମୁକାବିଲା ଆମ ସମସ୍ତଙ୍କୁ କରିବାକୁ ପଡ଼ିବ । ଦେଶର ସୁରକ୍ଷା, ପ୍ରଗତି, ଏକତା ଓ ଅଖଣ୍ଡତା ଦେଶବାସୀଙ୍କ ଉପରେ ହିଁ ନିର୍ଭର କରେ । ଯଥେଚ୍ଛା ବ୍ୟବହାର କଲେ ଏକତା ବିଘ୍ନିତ ଏବଂ ସ୍ୱାଧୀନତା ବିପନ୍ନ ହେବ । ବର୍ତ୍ତମାନର ପରିପ୍ରେକ୍ଷୀରେ ସମସ୍ତଙ୍କୁ ଚିନ୍ତା କରି ଅଗ୍ରସର ହେବାକୁ ହେବ । ଏ ଦିଗରେ ଅନ୍ୟମାନଙ୍କ ଅପେକ୍ଷା ମୁକ୍ତିଯୋଦ୍ଧା ମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ସର୍ବାଧିକ । କାରଣ ସେମାନଙ୍କ ଅପେକ୍ଷା ଦେଶର ସ୍ୱାଧୀନତା ଏବଂ ଏକତା ବିଷୟ ଅଧିକ କିଏ ଆଉ ବୁଝିବ ? ସେମାନଙ୍କୁ ପୁଣି ସେହି ପୁରୁଣା ସ୍ୱାଧୀନତା ଆନ୍ଦୋଳନ ଯୁଗକୁ ଫେରିଯିବାକୁ ହେବ । ସେମାନଙ୍କୁ ବୁଝିବାକୁ ହେବ 'ଅରିଫେରିନାହିଁ, ଯୁଦ୍ଧ ସରିନାହିଁ' । ସ୍ୱତନ୍ତ୍ରତାସେନାନୀ ଭାବରେ ଆମର ଜରାଗ୍ରସ୍ତ ଶିଥିଳ ଶରୀରର ମାଂସପେଶୀକୁ ଟାଣ କରିନେବାକୁ ହେବ । ଧମନୀର ଶୀତଳ ରକ୍ତପ୍ରବାହରେ ତୀବ୍ର ଉଷ୍ମତା ଆଣିବାକୁ ହେବ । ବ୍ୟକ୍ତିଗତ ଭାବେ ହେଉ ବା ସଂଗଠିତ ଭାବେ ହେଉ, ଅବସ୍ଥାର ମୁକାବିଲା ଆମ ସମସ୍ତଙ୍କୁ ହିଁ କରିବାକୁ ପଡ଼ିବ । ଶତଶତ ବର୍ଷ ଧରି ବିଦେଶୀ ଶାସନ ଶୃଙ୍ଖଳାର କଷଣ ସହିଲା ପରେ ଜାତିର ଏ ନବୀନ ଅଭ୍ୟୁଦୟର ସହସା ପତନ ପୁଣି ସେହି ହୀନ ଲାଞ୍ଛନା, ଅଗୌରବର କଳ୍ପନା କେବେହେଲେ କରିହେବ ନାହିଁ ।

'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ' । ଦେଶ ଏବଂ ଜାତିଠାରୁ ବଡ଼ ଆଉ ନାହିଁ । ତାର ସୁରକ୍ଷା ଓ ସେବାଠାରେ କୌଣସି ପ୍ରକାର ଉଦାସୀନତା, ଅଭିମାନ ବା ସ୍ୱାର୍ଥପରତାର ସ୍ଥାନ ନାହିଁ । ଜାତିର ଏ ସଂକଟ ମୁହୂର୍ତ୍ତରେ ରାଜୀବ ଗାନ୍ଧିଙ୍କର ସାଂଗଠନିକ ଓ ପ୍ରଶାସନିକ ଆଭିମୁଖ୍ୟ ଓ ନେତୃତ୍ୱ ଉପରେ ଆସ୍ଥାରଖି ଯେପରି ଦେଶର



Digitized by srujanika@gmail.com

ସ୍ଥିତି ସୁଦୃଢ଼ ହୋଇପାରିବ, ସେଥିପାଇଁ ଆମର ପୂର୍ଣ୍ଣ ସହଯୋଗ ଏକାନ୍ତ କାମ୍ୟ । ଆମେ ଭୁଲିଗଲେ ଚଳିବ ନାହିଁ, ଜାତିର ଅମର ସଂଗୀତ -

"ପତନ, ଅଭ୍ୟୁଦୟ ବନ୍ଧୁର ପନ୍ଥା
ଯୁଗଯୁଗ ଧାବିତ ଯାତ୍ରୀ,
ତୁମି ଚିର ସାରଥି ତବ ରଥଚକ୍ରେ
ମୁଖରିତ ପଥ ଦିବାରାତ୍ରି ।
ଦାରୁନ ବିପ୍ଳବ ମାଝେ ତବ ଶଙ୍ଖଧ୍ୱନି ବାଜେ
ସଂକଟ ଦୁଃଖ ତ୍ରାତା,
ଜନଗଣମନ ଅଧିନାୟକ ଜୟହେ
ଭାରତ ଭାଗ୍ୟ ବିଧାତା ।"





Digitized by srujanika@gmail.com

# ଜୟତୁ କଂଗ୍ରେସ

ଜାତୀୟ କଂଗ୍ରେସ ବାସ୍ତବତଃ ଏପରି ଏକ ସଂଗଠନ, ଯାହାସଂଗେ ଭାରତର ଭାଗ୍ୟ ଗୁନ୍ଥା ହୋଇ ରହିଛି । ବିଗତ ଏକ ଶତାବ୍ଦୀ ଧରି ଏହି ସଂଗଠନକୁ ଯେଉଁ ସୌଭାଗ୍ୟ ମିଳିଛି, ତାହା ପୃଥିବୀରେ ଅନ୍ୟ କୌଣସି ଦଳକୁ ମିଳିନଥିବ । କଂଗ୍ରେସର ମହାନ ନେତୃବୃନ୍ଦ, ଯାହାଙ୍କ ମଧ୍ୟରେ ସେ କାଳର କତିପୟ ମହାପୁରୁଷ ମଧ୍ୟ ରହିଥିଲେ, ଯେଉଁ ଚାରାଗଛଟିକୁ ପୋତି ବଢ଼ାଇଥିଲେ, ବର୍ତ୍ତମାନ ତାହା ଏକ ବିଶାଳ ଦ୍ରୁମରେ ପରିଣତ ହୋଇଛି ଏବଂ ଯଥେଷ୍ଟ ବିବେକ, ବିଚାରବୁଦ୍ଧି ଓ ପରିପକ୍ୱତା ଲାଭ କରିପାରିଛି । କଂଗ୍ରେସ ବହୁ କଠିନ ପରୀକ୍ଷା ଓ ଆତ୍ମବଳି ମଧ୍ୟ ଦେଇ ଗତି କରିଆସିଛି ଏବଂ ସୁଖର କଥା, ଭାରତର ଜନସାଧାରଣ ଭଲ ଭାବରେ ବାରମ୍ବାର ପରୀକ୍ଷା କରି ଅନୁଭବ କରିଛନ୍ତି ଯେ, ଏହାକୁ ସଂପୂର୍ଣ୍ଣ ଭରସା କରାଯାଇପାରେ ।

ଏକ ନୂତନ ଭାରତ ଗଠନ, ଯାହା ଶ୍ରେଣୀ, ଅସାମ୍ୟ ଓ ଶୋଷଣରୁ ମୁକ୍ତ ହେବ ଏବଂ ଯେଉଁଥିରେ ସମସ୍ତ ନାଗରିକ ଆନନ୍ଦରେ ମୈତ୍ରୀ ଓ ଶାନ୍ତିରେ ସମାନ ସ୍ତରରେ ରହିପାରିବେ, କଂଗ୍ରେସର ଏହାହିଁ ଐତିହାସିକ ଲକ୍ଷ୍ୟ ହୋଇ ଆସିଛି ।

'ଜାତୀୟତା' ଶବ୍ଦଟି ଭାରତରେ ଖୁବ୍ ପ୍ରାଚୀନ ନୁହେଁ । ସନାତନ ଧର୍ମ ସଂସ୍କୃତି ଓ ଧର୍ମ ଅଧୁଷିତ ଭାରତର ଜାତୀୟତା ପୁରାକାଳରେ ବିଶ୍ୱମାନବ ସମାଜ ମଧ୍ୟରେ ବ୍ୟାପି ଯାଇଥିଲା । 'ବସୁଧୈବ କୁଟୁମ୍ବକମ୍' ଏହି ହିନ୍ଦୁ ଜାତୀୟତାର ଅର୍ଥ, ଏକ ମାନବିକ ମୂଲ୍ୟବୋଧକୁ ବୁଝାଉଥିଲା । ଉତ୍କଳମଣି ତାଙ୍କର 'ବନ୍ଦୀର ଆତ୍ମକଥା'ରେ ସେଥିପାଇଁ ଗାଇଥିଲେ -

"ନିଜ ସ୍ୱାର୍ଥ ଲାଗି ଜାତ ନୁହେଁ ହିନ୍ଦୁ ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ"

ଏହି ମାନବୀୟ ଜାତୀୟତାର ଆକାର କଳ୍ପନା କରିବା ସମ୍ଭବ ନୁହେଁ । ଏହା ସୀମାହୀନ ଏକ ଚିନ୍ତା । କିନ୍ତୁ ଜାତୀୟତାର ଅର୍ଥ, ଅଧୁନା ସୀମାହୀନ ହୋଇ ରହିନାହିଁ । ବିଶ୍ୱରେ ବିଭିନ୍ନ ଅଂଶରେ ଆଜି ସ୍ୱକୀୟ ଧର୍ମ, ଶିକ୍ଷା, ସଭ୍ୟତା, ସଂସ୍କୃତିକୁ କେନ୍ଦ୍ରକରି ବଞ୍ଚି ରହିବାର ଦୁର୍ବାର ଆକାଂକ୍ଷା ନେଇ ବହୁ ରକ୍ତକ୍ଷୟୀ ସଂଗ୍ରାମ ଫଳରେ ଦିଗନ୍ତ ବିସ୍ତୃତ ସାମାଜିକତା ବା ମାନବିକ ମୂଲ୍ୟବୋଧ ସଂକୁଚିତ ହୋଇ କ୍ଷୁଦ୍ରକ୍ଷୁଦ୍ର ଜାତି ଓ ଜାତୀୟତାରେ



Digitized by srujanika@gmail.com

କାଳକ୍ରମେ ପରିଣତ ହୋଇଛି । ବହୁକାଳ ପରେ ମାତୃଭୂମି ହିନ୍ଦୁସ୍ଥାନ ମଧ ଏହି ବିବର୍ତ୍ତନ ଓ ପରିବର୍ତ୍ତନରୁ ରକ୍ଷାପାଇ ପାରିନାହିଁ । ଇତିହାସକୁ ଅନୁଧାନ କଲେ ଦେଖାଯିବ, ଭାରତରେ ମଧ୍ୟଯୁଗରେ ମଧ ଜାତୀୟତାର ସେପରି କିଛି ଉନ୍ମେଷ ବା ପରିପ୍ରକାଶ ଲକ୍ଷ୍ୟ କରାଯାଏ ନାହିଁ । ହର୍ଷବର୍ଦ୍ଧନ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟ-ଚାଣକ୍ୟ, ଅଶୋକ, ଆକବରଙ୍କ ଭଳି ଭାରତର ଏକଛତ୍ର ସମ୍ରାଟଙ୍କ ସମୟରେ ଉଗ୍ର ଜାତୀୟତାବୋଧର ଅଭାବ ଦେଖାଦେଇଛି । ସେମାନେ ମଧ ସମଗ୍ର ଭାରତ ଖଣ୍ଡକୁ ଠିକ୍‌ଠିକ୍ ଭାବେ ଏକତ୍ର କରି ବାନ୍ଧି ପାରି ନଥିଲେ । ଯଦିବା ସେମାନଙ୍କର ସାମ୍ରାଜ୍ୟର ସୀମା କେବେକେବେ ଭାରତ ସୀମାକୁ ଟପି ଯାଇଥିଲା । ସେ ସମୟରେ ଭାରତ ଏକ ଜାତି ହିସାବରେ ଆତ୍ମପ୍ରକାଶ କରିବାକୁ ସୁଯୋଗ ପାଇନାହିଁ । ମଧ୍ୟଯୁଗରେ ଭାରତର ଅବସ୍ଥିତି ବିକ୍ଷିପ୍ତ ହୋଇ ରହିଥିବାର ଜଣାଯାଏ । ତାହା ହୋଇନଥିଲେ ଇଂରେଜମାନେ କେବଳ ନିଜର ବୁଦ୍ଧି ଓ କୌଶଳ ବଳରେ ଭାରତବର୍ଷକୁ ଏକତ୍ରିତ କରି ସୀମାବଦ୍ଧ କରିବାକୁ ସମର୍ଥ ହୋଇନଥାନ୍ତେ । ପ୍ରଥମଥର ପାଇଁ ଭାରତ ବକ୍ଷରେ ସେମାନଙ୍କର ନିରବଚ୍ଛିନ୍ନ ଶାସନ କେବଳ ଆମକୁ ଭାରତୀୟ ବୋଲି ଆଖ୍ୟାୟିତ କରି ଆମ ଦେଶକୁ ଅଖଣ୍ଡ ଭାରତବର୍ଷ ରୂପେ ଚିହ୍ନିତ କରିପାରିଛି, ଏହା ଅନସ୍ୱୀକାର୍ଯ୍ୟ । ଇଂରେଜ ଶାସନର ଫଳଶ୍ରୁତି ସ୍ୱରୂପ ଭାରତୀୟ ଜାତୀୟତାବୋଧ ବା ଚେତନାର ଜନ୍ମଲାଭ ହୋଇଛି । ଶତାବ୍ଦୀ କାଳ ମାତ୍ର ଏହି ଜାତୀୟତାବୋଧର ବୟଃକ୍ରମ ହେବାର ଅନୁମାନ କରାଯାଏ ଏବଂ ଭାରତୀୟ ଜାତୀୟ କଂଗ୍ରେସ ହିଁ ଜାତୀୟମୁକ୍ତି ସଂଗ୍ରାମ ମାଧମରେ ତୀବ୍ର ଭାବରେ ଏ ଜାତିର ଜୀବନରେ ଏହି ଜାତୀୟତାବୋଧ ଆଣିଦେବାରେ ସମର୍ଥ ହୋଇଛି । ଏଣୁ କଂଗ୍ରେସ ହିଁ ଭାରତୀୟ ଜାତୀୟତାର ପ୍ରକୃତ ଜନ୍ମଦାତା, ଏହା ସନ୍ଦେହାତୀତ ।

ଏହି ଜାତୀୟ କଂଗ୍ରେସ କେବଳ ଏକ ପାର୍ଟି ନୁହେଁ । ଏହା ଏକ ବିଶାଳ ବୟସ୍କ ଜାତୀୟ ଜନ ଆନ୍ଦୋଳନ । କ୍ଷମତା ଓ ନେତୃତ୍ୱ ମୋହରେ ବିଭିନ୍ନ ରାଜନୈତିକବାଦ, ସଂକୀର୍ଣ୍ଣ ଆଞ୍ଚଳିକତାବାଦ ଓ ଧର୍ମାନ୍ଧତାବାଦ ନାମରେ ଦେଶର ଆଜି ବହୁ ଦଳ ଓ ପାର୍ଟି ଦେଖାଯାଉଛନ୍ତି । ସେମାନଙ୍କର ଆଦର୍ଶ, ଅସ୍ତିତ୍ୱ ଓ ଆଚରଣ ଅପେକ୍ଷା କଂଗ୍ରେସ ବହୁ ଊର୍ଦ୍ଧ୍ୱରେ । କଂଗ୍ରେସ ସେମାନଙ୍କ ପରି ଆଦୌ ନୁହେଁ । ଏହା ଏକ ମହାସାଗର । ଯାହାକୁ ମାପି ହୁଏ ନାହିଁ, ଶୁଖାଇ ମଧ ହୁଏନାହିଁ ଏବଂ ଦୂରେଇ ଦେଇ ରହିହୁଏ ନାହିଁ । କେତେ ବିପୁଳ ଆତ୍ମଉତ୍ସର୍ଗ ଓ କେତେ ମହୀୟାନ ସହିଦମାନଙ୍କର ରକ୍ତଦାନରେ ଏହା ପବିତ୍ର । କେତେ କଷଣ, ପେଷଣ, ନିର୍ଯାତନ ଓ ନିପୀଡ଼ନ ହୋମାଗ୍ନିରୁ ଏହା ଉତ୍ତୀର୍ଣ୍ଣ । କେତେ ନିଃସ୍ୱାର୍ଥପର ସେବା ଓ ସାଧନାରେ ଏହା ସମୃଦ୍ଧ, ତାହା କେବଳ ବିଗତ ଏକ ଶତାବ୍ଦୀର କଂଗ୍ରେସର ସୁଦୀର୍ଘ ଓ ସଂଗ୍ରାମୀ ଇତିହାସ କହିବ । କେତେ ଅମୂଲ୍ୟ ଅନୁଭୂତିରେ ଏହା



Digitized by srujanika@gmail.com

ଅଭିଷିକ୍ତ, କେତେ ବିଚକ୍ଷଣ ବିଚାରରେ ଏହା ପୁଷ୍ଟ ଓ ବଳିଷ୍ଠ, କେତେ ପ୍ରଜ୍ଞା ଓ ପରୀକ୍ଷାରେ ଏହା ପରିପକ୍ୱ, ତାହା ବର୍ଣ୍ଣନା କରିହେବ ନାହିଁ । ଭାରତର କୋଣେ କୋଣେ, ପୁରପଲ୍ଲୀ ଏବଂ ଅରଣ୍ୟ ଅଭ୍ୟନ୍ତରରେ ବାସ କରି ପଡ଼ି ରହିଥିବା କୋଟିକୋଟି ମଣିଷ ଏହି ମହାସମୁଦ୍ରରେ ପବିତ୍ର ଜଳରେ ଅବଗାହନ କରି ଆସୁଛନ୍ତି ଏବଂ ଆଗାମୀ ଶତାବ୍ଦୀ ଶତାବ୍ଦୀ ଧରି ଆସୁଥିବେ ।

ଭାରତର ଜନସାଧାରଣଙ୍କର ଦୁଃଖଭାର ଲାଘବ, ଭାରତର ସ୍ୱାଧୀନତାର ସୁରକ୍ଷା ଏବଂ ଭାରତର ଶକ୍ତି ସାମର୍ଥ୍ୟ ଓ ସମଗ୍ର ବିଶ୍ୱରେ ଭାରତର ସମ୍ମାନ ବୃଦ୍ଧି କରିବାପାଇଁ ଭାରତର ଅନ୍ତଃଶକ୍ତି ଓ ଆଧ୍ୟାତ୍ମିକତାକୁ ଜୀବନ୍ତ ରଖିବା ତଥା ସମସ୍ତ ଭେଦାଭେଦ ଲୋପ କରି ଐକ୍ୟବଦ୍ଧ ସଂଗ୍ରାମ ବଳରେ ଭାରତକୁ ନୂତନ ଏକବିଂଶ ଶତାବ୍ଦୀକୁ ନେଇଯିବା ସକାଶେ କେବଳ ଏହି କଂଗ୍ରେସ ହିଁ ସକ୍ଷମ ହେବ, ଏଥିରେ ସନ୍ଦେହ ନାହିଁ । ଜାତୀୟ କଂଗ୍ରେର ଏହି ସୁମହାନ୍ ଚରିତ୍ର ବଜାୟ ରଖିବାକୁ ହେଲେ, ଆମର ପ୍ରତ୍ୟେକଙ୍କର ଚରିତ୍ର ମଧ୍ୟ ଠିକ୍‌ଠିକ୍ ଭାବେ ବଜାୟ ରଖିବା ଆବଶ୍ୟକ । ସେଥିପାଇଁ ଆମକୁ ସବୁ ଦିଗରୁ ନିର୍ମଳ ଓ ସମର୍ପିତ ହେବାକୁ ହେବ । ଜଣେ ପ୍ରକୃତ କଂଗ୍ରେସ ଲୋକ ହେବା ଖୁବ୍ ସହଜ ନୁହେଁ । ଆଜି ଦୁନିଆରେ ଜଣେ କଟ୍ଟର କଂଗ୍ରେସ ହେବା ସହଜ । କିନ୍ତୁ ଜଣେ ଆଦର୍ଶ, ଏକନିଷ୍ଠ କଂଗ୍ରେସ ହେବା ଏବଂ ହୋଇ ରହିବା ସହଜ ନୁହେଁ । ତାହା ହୋଇନପାରିଲେ ଦେଶର ନେତୃତ୍ୱ ନେବା ଅସମ୍ଭବ । ସେଥିପାଇଁ ଏକାନ୍ତ ସାଧନା ଏବଂ ଉପଯୁକ୍ତ ପରିବେଶ ସୃଷ୍ଟି କରିବାର ପ୍ରୟୋଜନ ମଧ୍ୟ ରହିଛି । ଯୁଗଯୁଗ ଧରି ଭାରତୀୟ ଜନତା କଂଗ୍ରେସକୁ ଏବଂ କଂଗ୍ରେସର ନେତା ଓ କର୍ମୀମାନଙ୍କୁ ଯେଉଁ ଆଖିରେ ଦେଖି ଆସିଛନ୍ତି ଏବଂ ନିଜର ଏକାନ୍ତ ବିଶ୍ୱାସ ସ୍ଥାପନ କରି ଆସିଛନ୍ତି, ତାହା ଏଣିକି ଆଉ ହୋଇପାରୁନାହିଁ ।

ସ୍ୱାଧୀନତାସଂଗ୍ରାମ କାଳର ଏବଂ ସ୍ୱାଧୀନତା ପ୍ରାପ୍ତିର ଠିକ୍ ପରବର୍ତ୍ତୀ ସମୟରେ କଂଗ୍ରେସ ଅନୁଷ୍ଠାନ, କଂଗ୍ରେସ ଶାସନ ଏବଂ କଂଗ୍ରେସ ଲୋକଙ୍କ ଆଚରଣ ଓ କ୍ରିୟାକଳାପ ତଥା ଏବର କଂଗ୍ରେସ ଅନୁଷ୍ଠାନ, ଶାସନ ଏବଂ ଲୋକଙ୍କର ଆଚରଣ ଓ କ୍ରିୟାକଳାପ ମଧ୍ୟରେ ନାହିଁ ନ ଥିବାର ପରିବର୍ତ୍ତନ ଘଟିଛି । କଂଗ୍ରେସ ଲୋକେ ସୂତା କାଟିବା ତ ଦୂରର କଥା, ଖଦଡ଼ ନ ପିନ୍ଧିଲେ ମଧ୍ୟ ଚଳେ । 'ନିଶା ନିବାରଣ' କେବଳ କଂଗ୍ରେସ ନୁହେଁ, କଂଗ୍ରେସ ଶାସନର ଏକ ବାଧ୍ୟତାମୂଳକ ବ୍ୟାପକ କାର୍ଯ୍ୟକ୍ରମ ଥିଲା । ଏବେ କଂଗ୍ରେସ ଶାସକ ନିଶାକୁ ଜାତୀୟକରଣ କରିଦେଲେ ଏବଂ ସେଥିରୁ ଯେଉଁ ଏକ୍‌ସାଇଜ ଟିକସ ଆଦାୟ ହେଉଛି ତାହା ଆମ ପିଲାଙ୍କ ପାଠପଢ଼ାରେ ଖର୍ଚ୍ଚ ହେଉଛି । କଂଗ୍ରେସ ଲୋକେ ଏବଂ ପ୍ରତିନିଧିମାନେ ଏପରିକି ନେତାମାନେ କେବଳ ମଦପିଇ ସ୍ଥିର ହେଲେ ନାହିଁ, ନିଜ



Digitized by srujanika@gmail.com

ନାମରେ ଆତ୍ମୀୟଙ୍କ ନାମରେ ମଦଭାଟି ଓ ଦୋକାନମାନ ଖୋଲି ବସିଲେଣି । ପଞ୍ଚତାରକା ହୋଟେଲ ମାନଙ୍କର ଉଦ୍‌ଘାଟନ ଉତ୍ସବରେ ପୌରୋହିତ୍ୟ କରିବା କଂଗ୍ରେସୀ ମନ୍ତ୍ରୀମାନେ ଠିକା ନେଇଗଲେ । ଏହିପରି କଂଗ୍ରେସ ଲୋକେ କଂଗ୍ରେସର ପବିତ୍ର ମହାନ୍ ଆଦର୍ଶକୁ କଳୁଷିତ କରିବାରେ ଅଗ୍ରଣୀ ଭୂମିକା ନେବାର ଦେଖାଯାଉଛି । କଂଗ୍ରେସର ଗଠନମୂଳକ କାର୍ଯ୍ୟକ୍ରମ ଅନୁଷ୍ଠାନ ତରଫରୁ କେବେ ପ୍ରଚାରିତ ହୁଏ ନାହିଁ । ଅତି ଲଜ୍ଜାର କଥା, ଲୋକେ କହୁଛନ୍ତି କଂଗ୍ରେସ ଆଉ କ'ଣ ଅଛି ଯେ ? ସେଥିପାଇଁ କଂଗ୍ରେସ କର୍ମୀ ଓ ନେତାମାନଙ୍କୁ ଭୋଗ ଛାଡ଼ି, ତ୍ୟାଗ ଓ କ୍ଷମତା ଛାଡ଼ି ସେବାର ଜଗତକୁ ଓହ୍ଲାଇ ଆସିବାକୁ ପଡ଼ିବ । ସମଦୃଷ୍ଟି ନେଇ ଅହିଂସା ଭାବରେ ସିକ୍ତ ହୋଇ ତ୍ୟାଗ ଓ ସେବାକୁ ଆଶ୍ରୟ କରି ଆତ୍ମସ୍ୱାର୍ଥ ଭୁଲି ସମୂହ ସ୍ୱାର୍ଥକୁ ଅଗ୍ରାଧିକାର ଦେଇ କଠିନ ଶୃଙ୍ଖଳା ଓ ନିୟମାନୁବର୍ତ୍ତିତା ମଧଦେଇ କଂଗ୍ରେସ ନେତା ଏବଂ କର୍ମୀମାନେ ଅଗ୍ରସର ହେଲେ ଯାଇ ସମସ୍ୟାର ସମାଧାନ ହେବ ।

ସତ୍ୟ ଏବଂ ଅହିଂସା କଂଗ୍ରେସର ମୂଳମନ୍ତ୍ର । ସାବରମତିର ସନ୍ଥ ଗାନ୍ଧିଜୀ, ଶାନ୍ତି, ମୁକ୍ତି ଓ ପ୍ରଗତିର ବାଣୀ ପ୍ରଚାର କରିଥିଲେ । କିନ୍ତୁ ଆମେ ତାହା ଜୀବନରେ ଆଚରଣ ନକରି, କେବଳ କଂଗ୍ରେସର ନୀତି କଥା ଜୋର କଣ୍ଠରେ ଭାଷଣ ଦେଇ, ଲୋକଙ୍କୁ ଡରାଇ, ଶୋଷଣ କରି, ଶାସନ କରିବା ଦିନ ଆଉ ନାହିଁ । ବାକ୍ୟ ସହ ଆମ କର୍ମର ସଂପର୍କ ରହିବା ଏକାନ୍ତ ଦରକାର । ଦୁର୍ଭାଗ୍ୟର କଥା, ଏବର ନେତୃମଣ୍ଡଳୀଙ୍କ ଠାରେ ସେ ନିଷ୍ଠା ଦେଖାଯାଏ ନାହିଁ । କଂଗ୍ରେସ ଲୋକେ କାହାରିକୁ ପ୍ରତାରଣା କରିବାର ଚିନ୍ତା କରି ହୁଏନା । ଦେଶ ଆଗରେ ଆମେ ନିଜକୁ ଯେତେ ବେଶି ଦେଇପାରିବା, ବିତରଣ କରିପାରିବା, ଆମର ନେତୃତ୍ୱ ସେମାନଙ୍କ ଠାରେ ସେତେ ଦୃଢ଼ ଓ ଲୋକପ୍ରିୟ ହେବ । ପବିତ୍ର କଂଗ୍ରେସ ଅନୁଷ୍ଠାନକୁ ବାଣିଜ୍ୟ ବ୍ୟବସାୟର ଆୟୁଧ ରୂପେ ବ୍ୟବହାର କରି ତାହାର ମହାନ୍ ଆଦର୍ଶକୁ ବାହାରେ ଏବଂ ଭବିଷ୍ୟତ ବଂଶଧରମାନଙ୍କଠାରେ କ୍ଷୁଣ୍ଣ କରାନଯାଉ । ନ୍ୟସ୍ତସ୍ୱାର୍ଥ ବନି ଆମ ପରିବାର ପୁଅମାନଙ୍କ ବଳକୁ ଦେଶରକ୍ଷା ଓ ଦୀନଜନ ସେବାରେ ନ ଲଗାଇ, ସତ୍ୟର କଣ୍ଠରୋଧ କରିବା କାର୍ଯ୍ୟରେ ଲଗାଇବା ଦୁର୍ଭାଗ୍ୟଜନକ । ଏହା ଦ୍ୱାରା ମାନବିକ ସମ୍ବଳର ସଫଳ ବିନିଯୋଗ ହେଉନାହିଁ ଏବଂ ଦେଶ ଧ୍ୱଂସ ଆଡ଼କୁ ମୁହାଁଇ ଚାଲିଛି ।





Digitized by srujanika@gmail.com

# ମୋ ଆଖିଦେଖା ଓଡ଼ିଶା

୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ ହେଲା । ଇଂରେଜ ସରକାରଙ୍କ ଭାରତ ଶାସନ ୩୫ଧାରା ଅନୁଯାୟୀ ରାଜ୍ୟମାନଙ୍କରେ ସ୍ୱାୟତ୍ତ ଶାସନ ପ୍ରତିଷ୍ଠା ହେଲା । ଆମ ଓଡ଼ିଶାରେ କଂଗ୍ରେସର ଅଭିଜ୍ଞ ରାଜନେତା ବିଶ୍ୱନାଥ ଦାଶ ନୂତନ ମନ୍ତ୍ରୀମଣ୍ଡଳ ଗଠନ କଲେ । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଜାତୀୟ କଂଗ୍ରେସର ଯୁଦ୍ଧ ବିରୋଧୀ ନୀତି ଯୋଗୁଁ ଦାଶ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇ ଜେଲ ଗଲେ । ଇଂରେଜ ସରକାର ମିଳିତ ମନ୍ତ୍ରୀମଣ୍ଡଳ ପାରଳା ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଶ୍ରୀ ଗୋଦାବରୀଶ ମିଶ୍ର ଓ ସ୍ୱଭାନ୍ ଖାଁଙ୍କୁ ନେଇ ଗଠନ କଲେ । ପଣ୍ଡିତ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, ଶରଳା ଦେବୀ ଓ ଆମ ଏମ୍.ଏଲ୍.ଏ. ଚାରୁଚନ୍ଦ୍ରରାୟ ମହାଶୟ ଆଦି କଂଗ୍ରେସ ଦଳରୁ ବାହାରି ଏହି ସରକାରରେ ଯୋଗଦେଲେ । ମିଳିତ ମନ୍ତ୍ରୀମଣ୍ଡଳ ଇଂରେଜ ସରକାରଙ୍କ ଗୋଡ଼ାଣିଆ ହୋଇ କାମକଲେ । ୧୯୪୨-୪୩ରେ ମହାବାତ୍ୟା ଓ ପ୍ରଳୟଙ୍କରୀ ବନ୍ୟା ଫଳରେ ସମଗ୍ର ମେଦିନୀପୁର ଓ ବାଲେଶ୍ୱର ଜିଲ୍ଲାରେ ଘୋର ଦୁର୍ଭିକ୍ଷ ଦେଖାଦେଲା । ସମଗ୍ର ଉତ୍ତର ବାଲେଶ୍ୱରରେ ଅନ୍ନ ବିନା ହାହାକାର ସୃଷ୍ଟିହେଲା । ଇଂରେଜ ସରକାର କିଛି ବୁଝିଲେ ନାହିଁ । ଭାରତ ଛାଡ଼ ଆନ୍ଦୋଳନ ଜାରିଥିବା ହେତୁ ସବୁ କଂଗ୍ରେସ ଲୋକେ ଜେଲ୍‌ରେ ଥିଲେ, ବୁଝିବାକୁ କେହି ନଥିଲେ । ହଜାର ହଜାର ଲୋକ ପୋକମାଛି ପରି ମରି ରାସ୍ତାକଡ଼ରେ ପଡିସଢ଼ି ଗଲେ । ରାଜ୍ୟର ଧାନଚାଉଳ ସବୁ ବଂଗଦେଶକୁ ସରକାରୀ ସହାୟତାରେ ବୋହି ନିଆଗଲା । ସରକାରୀ ଧାନ ଦର ଭରଣପିଛା ପାଞ୍ଚ ଟଙ୍କାରୁ ପଚିଶ ଟଙ୍କା ବଢ଼ିଗଲା । ଅଞ୍ଚଳ ଲୋକେ ହିଂସ୍ର ଓ ପାଗଳ ପାଲଟି ଗଲେ । ହଜାର ହଜାର ବୁଭୁକ୍ଷୁ କଙ୍କାଳସାର ଲୋକ ଚାଲିଚାଲି ପଟୁଆର କରି ମୁକାମ ବାଲେଶ୍ୱର ଚାଲିଲେ । ୧୯୪୩ ମସିହା ଏପ୍ରିଲ୍ ୧୮,୧୯,୨୦ ତାରିଖ ଦିନମାନଙ୍କରେ ଏହି ଅଭୁକ୍ତ କଙ୍କାଳସାର ଲୋକମାନେ ବାଲେଶ୍ୱର ସହରକୁ ଅବରୋଧ କଲେ । ଭାତ ଦିଅ, କାମ ଦିଅ, ନଦେଲେ ସରକାରଙ୍କୁ ମାନିବୁ ନାହିଁ । ଗୋଳାବାରୁଦ ମାନିବୁ ନାହିଁ ଧ୍ୱନିରେ ସହର ପ୍ରକମ୍ପିତ ହେଲା । ବାଲେଶ୍ୱର ଜେଲ୍‌ରେ ଅଟକି ରହିଥିବା କଂଗ୍ରେସ ବନ୍ଦୀମାନେ ସେମାନଙ୍କ ସ୍ୱର ସହିତ ତାଳ ମିଳାଇ ବନ୍ଦେ ମାତରମ୍, ଇନ୍‌କ୍ଲାବ୍ ଜିନ୍ଦାବାଦ ଧ୍ୱନିକରି



Digitized by srujanika@gmail.com

ଜେଲ୍ ଫାଟକ ଭାଂଗି ପକାଇଲେ । ଜିଲ୍ଲା କଲେକ୍ଟର ରାମନାଥନ୍ ସାହେବ ଲୋକଙ୍କର ଦୁରବସ୍ଥା ଦେଖି କାର୍ଯ୍ୟ ଯୋଗାଇ ସରକାରଙ୍କ ଦୁର୍ଭିକ୍ଷ ଅଞ୍ଚଳ ଜିଲ୍ଲାକୁ ଘୋଷଣା କରିବାକୁ ଅନୁରୋଧ କଲେ । ସରକାରଙ୍କ ଟଣକ ହଲିଲା । ଖାଦ୍ୟମନ୍ତ୍ରୀ ଶ୍ରୀ ଗୋଦାବରୀଶ ମିଶ୍ର ରାତିଅଧିଆ ଆସି ବାଲେଶ୍ୱରରେ ପହଞ୍ଚିଲେ । ଚାରୁବାବୁ ଏମ୍.ଏଲ୍.ଏ.ଙ୍କ ଭଣଜା ରାୟବାହାଦୁର ମନ୍ମଥ ନାଥ ବସୁ ଜିଲ୍ଲାପାଳ ପଦରୁ ଅବସର ନେଇ ପୁରୀରେ ରହୁଥିଲେ । ସେ ଭୋଗରାଇର କଖଡ଼ା ଗ୍ରାମର ବାସିନ୍ଦା । ତାଙ୍କୁ ସାଂଗରେ ଧରି ମନ୍ତ୍ରୀ ଆସିଥିଲେ । ରାମନାଥନ୍‌ଙ୍କୁ ଛୁଟି କରିଦିଆଗଲା । ରାୟ ବାହାଦୁର ତୁରନ୍ତ ଜିଲ୍ଲାର ଦାୟିତ୍ୱ ନେଲେ । ରାମନାଥନ୍‌ଙ୍କ ଶାସ୍ତି ଏତିକିରେ ସରିଲା ନାହିଁ । ତାଙ୍କୁ କୋରାପୁଟର ଆଦିବାସୀ ନେତା ସ୍ୱାଧୀନତା ସଂଗ୍ରାମୀ ଲକ୍ଷ୍ମଣ ନାଏକଙ୍କର ଗୁଳିକାଣ୍ଡର ବିଚାର କରିବାକୁ ସ୍ପେଶାଲ ଇନସ୍‌ପେକ୍ଟର ଭାବେ ନିଯୁକ୍ତ କରାଗଲା । ଆଉ ରାମନାଥନ ଲକ୍ଷ୍ମଣ ନାଏକଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରିବାକୁ ନିର୍ଦ୍ଦେଶ ଦେଲେ । ସେଇଆ ହିଁ ହେଲା ଶେଷରେ ।

ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା ନକରି ଆଇନ୍ ମୁତାବକ ସବୁପ୍ରକାର ରିଲିଫ୍ ବ୍ୟବସ୍ଥା କେବଳ ଭୋଗରାଇରେ ରାୟ ବାହାଦୁର କଲେ । କିନ୍ତୁ ଜିଲ୍ଲାର ଅନ୍ୟ ଅଞ୍ଚଳ ମାନଙ୍କରେ କେବଳ କିଛି ସଂଖ୍ୟକ କଣ୍ଟ୍ରୋଲ ଦୋକାନ ଖୋଲି ଚୁପ୍ ରିହଲେ ।

ହିଂସ୍ର ବୁଭୁକ୍ଷୁ ଲୋକେ ଜଲେଶ୍ୱର, ବାଲେଶ୍ୱରର ଅଞ୍ଚଳର ଧାନ ମହାଜନମାନଙ୍କ ଶସ୍ୟ ଗୋଲାମାନ ଭାଂଗି ଧାନମାନ ଲୁଟି ନେଇଗଲେ । କୋଷ୍ଟକେନାଲର ଗୁଡ଼ଦା ଠାରେ ସେମାନେ ଶହଶହ ଖାଦ୍ୟବାହି ସରକାରୀ ଓ ବେସରକାରୀ ବୋଟ୍‌ମାନ ଲୁଟି ନେବାରେ ଲାଗିଲେ । କିଏ ବା ଅଟକାଇବ ? ଲୁଟେରାମାନେ ହେଲେ ସଂଖ୍ୟାରେ ହଜାର ହଜାର । ଦୁର୍ଭିକ୍ଷରେ ହଜାରେ ଲୋକ ମରିହଜି ଗଲେ । ବାକି ଲୋକଙ୍କର ମେରୁଦଣ୍ଡ ଭାଂଗି ଦେଇ ଯାଇଥିଲା । ଏ ଥିଲା ଆମ ବାଲେଶ୍ୱରର କରୁଣ କାହାଣୀ । ୧୯୪୫ ଶେଷ ଭାଗରେ ବିଲାତର ଶ୍ରମିକ ଦଳର ନେତା ଅଟଲି ସାହେବ ଇଂରେଜୀ ସରକାରଙ୍କର ପ୍ରଧାନମନ୍ତ୍ରୀ ରୂପେ ନିର୍ବାଚିତ ହେଲେ । ଭାରତବାସୀଙ୍କ ପ୍ରତି ଗୋରା ସରକାରଙ୍କ ନୀତି ବଦଳିଗଲା । ମହାତ୍ମା ଗାନ୍ଧିଙ୍କ ସମେତ ଲକ୍ଷଲକ୍ଷ ସ୍ୱାଧୀନତା ସଂଗ୍ରାମୀଙ୍କୁ ଜେଲ୍‌ରୁ ମୁକ୍ତ କରିଦେଲେ ବିଲାତ ସରକାର । ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେବାକୁ ଅଟଲି ସାହେବ ଘୋଷଣା କଲେ । କିନ୍ତୁ ଠିକ୍ ଏତିକିବେଳେ ମୁସଲିମ୍ ଲିଗ୍ ନେତା ମହମ୍ମଦ ଅଲ୍ଲୀ ଜିନ୍ନା ପାକିସ୍ଥାନ ଦାବି କରିବସିଲେ । ଅଖଣ୍ଡ ଭାରତ ଦ୍ୱିଧା ବିଭକ୍ତ ହେଲା । ହିନ୍ଦୁସ୍ଥାନ ଓ ପାକିସ୍ଥାନର ଜନ୍ମ ହେଲା । ପୂର୍ଣ୍ଣ ସ୍ୱାଧୀନତା ଏ ଦୁଇ ବିଶାଳ ରାଜ୍ୟକୁ ଦେଶରେ ଓ କାର୍ଯ୍ୟକାରୀ କରିବାକୁ ସମୟ ୪୫ରୁ ୪୭ ଯାଏଁ ଲାଗିଲା । ଏହି ଅନ୍ତର୍ବର୍ତ୍ତୀ



Digitized by srujanika@gmail.com

ସମୟରେ ଏକ ମଧ୍ୟବର୍ତ୍ତୀକାଳୀନ ସ୍ୱାଧୀନ ସରକାର ଗଠନ ହେଲା । ଜାତୀୟ କଂଗ୍ରେସ ସଭାପତି ପଣ୍ଡିତ ନେହେରୁ ଓ ମୁସଲିମ୍ ଲିଗ୍ ସଭାପତି ଜିନ୍ନା ସାହେବ ଯଥାକ୍ରମେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌ର ସର୍ବେସର୍ବା ହେଲେ । ହିନ୍ଦୁ ଓ ମୁସଲମାନ୍ ମଧ୍ୟରେ ବହୁତ ହାଣକାଟ ହେଲା । ପ୍ରଭୂତ ରକ୍ତପାତ ଘଟିଲା । ପରିଶେଷରେ ୧୯୪୭ ଅଗଷ୍ଟ ମାସ ଦୁଇ ଦେଶ ପୂର୍ଣ୍ଣ ସ୍ୱାଧୀନତା ଲାଭ କଲେ ।

ସ୍ୱାଧୀନ ଭାରତ ଖଣ୍ଡ ପ୍ରଦେଶମାନଙ୍କର ମଧ୍ୟବର୍ତ୍ତୀକାଳୀନ ରାଜ୍ୟ ସରକାର ଗଠନ ହେଲା । ଆମ ଓଡ଼ିଶା ରାଜ୍ୟରେ ଡ.ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ ରୂପରେ ଅବସ୍ଥାପିତ ହେଲେ । ଏତିକିବେଳେ ମହତାବବାବୁ ଭୋଗରାଇ ଓ ବାଲିଆପାଳ ଗସ୍ତରେ ଆସି ଉତ୍ତର ବାଲେଶ୍ୱରର ଦୁର୍ଭିକ୍ଷ ଅଞ୍ଚଳ ପରିଭ୍ରମଣ କରି ଏହାର ଦାରୁଣ ଅବସ୍ଥା ଅନୁଧ୍ୟାନ କରିଥିଲେ । ୪୭-୪୮ରେ ବାଲିଆପାଳଠାରେ ଉତ୍ତର ବାଲେଶ୍ୱରର ଏକ ରାଜନୀତିକ ସମ୍ମିଳନୀରେ ମୁଁ ମହତାବ ବାବୁଙ୍କୁ ସ୍ୱାଗତ ଜଣାଇ ଭୋଗରାଇର ଦୁରବସ୍ଥା ବିଷୟରେ ବର୍ଣ୍ଣନା କଲି । ଦୁର୍ଭିକ୍ଷ ପୀଡ଼ିତ ହଜାର ହଜାର ଜନତାଙ୍କୁ ମହତାବ ଗଭୀର ଆନ୍ତରିକ ଆଶ୍ୱସନାର ବାଣୀ ଶୁଣାଇଥିଲେ । ୪୮ ପରେପରେ ମହତାବବାବୁ ସ୍ୱାଧୀନ ଭାରତର ସରକାରଙ୍କ ଶିଳ୍ପ ଓ ବାଣିଜ୍ୟମନ୍ତ୍ରୀ ରୂପେ ଯୋଗଦେଲେ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଆମ ରାଜ୍ୟର ଦ୍ୱିତୀୟ ମୁଖ୍ୟମନ୍ତ୍ରୀ ହେଲେ । କେନ୍ଦ୍ର ମନ୍ତ୍ରୀପଦ ବେଶି ଦିନ ମହତାବ ଜୀଙ୍କ ଭାଗ୍ୟରେ ରହିଲା ନାହିଁ । ସାମାନ୍ୟ ଏକ 'ସାଇକେଲ୍ ତିଆରି କାରଖାନା' ଲାଇସେନ୍ସକୁ କେନ୍ଦ୍ରକରି ସାରା ଦେଶରେ ହଇଚଇ ସୃଷ୍ଟି ହେଲା । ମହତାବବାବୁ ଏହି ବ୍ୟାପାରରେ ଜଡ଼ିତ ହୋଇ ପଡ଼ିଲେ । କାରଣ କେନ୍ଦ୍ର ବାଣିଜ୍ୟ ଦପ୍ତର ଉକ୍ତ ଲାଇସେନ୍ସଟି ବିଜୁବାବୁଙ୍କ ନାମରେ ଦେଇଥିଲେ ବୋଲି ଶୁଣାଗଲା । କିନ୍ତୁ ବିଜୁବାବୁ ସାଇକେଲ କାରଖାନା ନକରି ଜଣେ ବମ୍ବେବାସୀ ବ୍ୟବସାୟୀଙ୍କୁ ବିକ୍ରୟ କରିଦେଇଥିଲେ । ଏହି ବ୍ୟବସାୟ ସଂସ୍ଥା ସାଇକେଲ ତିଆରି କରି ଜାପାନକୁ ରପ୍ତାନି କରିଥିଲେ । ଜାପାନ ସରକାରଙ୍କର ଆପତ୍ତିମୂଳେ ଏହି ଖୋଳତାଡ଼ ଭାରତରେ ହୋଇଥିଲା । ପଣ୍ଡିତ ନେହେରୁ ମହତାବ ଜୀଙ୍କୁ କେନ୍ଦ୍ର ମନ୍ତ୍ରୀମଣ୍ଡଳରୁ ବିଦାୟ କରିଦେଲେ । ଶ୍ରୀ ମହତାବବାବୁଙ୍କର ଭୁବନେଶ୍ୱର, କଟକ, ଭଦ୍ରକ, ଅଗରପଡ଼ା ବାସଭବନ ମାନଙ୍କରେ ଚଢ଼ାଉ କରି ଖାନତଲାସ୍ କରାଯାଇଥିଲା । ଏହି ଦୁର୍ଘଟଣା ବ୍ୟକ୍ତିଗତ ଭାବରେ ମହତାବବାବୁଙ୍କର ସୁନାମକୁ କ୍ଷୁଣ୍ଣ କଲା । ନେହେରୁ ଜୀ ମହତାବବାବୁଙ୍କ ଉପରେ ବିଶେଷ ଭାବରେ ବିରକ୍ତ ହୋଇ ରହିଲେ । ମୁଖ୍ୟମନ୍ତ୍ରୀ ଥିବାବେଳେ ମହତାବଜୀ ହୀରାକୁଦ ବନ୍ଧ ନିର୍ମାଣ କରିବାରେ ବିଶେଷ ଭୂମିକା ଗ୍ରହଣ କରିଥିଲେ ଏବଂ ସେ ଜଣେ ବିଚକ୍ଷଣ ରାଜନୀତିଜ୍ଞ ଓ ଦକ୍ଷ



Digitized by srujanika@gmail.com

ପ୍ରଶାସକ ଭାବେ ନିଜକୁ ପ୍ରମାଣିତ କରିପାରିଥିଲେ । ତା ପରେପରେ ପ୍ରଧାନମନ୍ତ୍ରୀ ନେହେରୁ ହୀରାକୁଦ ଡ୍ୟାମ୍ ଉଦ୍‌ଘାଟନ କରିବାକୁ ଓଡ଼ିଶା ଆସିଥିଲେ । ସାଂଗରେ ପଶ୍ଚିମବଂଗର ମୁଖ୍ୟମନ୍ତ୍ରୀ ଓ ସ୍ୱନାମଧନ୍ୟ ଡାକ୍ତର ବିଧାନ ଚନ୍ଦ୍ର ରାୟ ଆସିଥିଲେ ଓ ଏହି ଉଦ୍‌ଘାଟନ ଉତ୍ସବରେ ଯୋଗଦେଇଥିଲେ । ନିମନ୍ତ୍ରିତ ହୋଇ ମହତାବ ଜୀ ମଧ୍ୟ ହୀରାକୁଦରେ ଉପସ୍ଥିତ ଥିଲେ । ସେତେବେଳକୁ ମହାରାଷ୍ଟ୍ର ଓ ବମ୍ବେରେ ମରାଠା ରାଜ୍ୟ ଗଠନ ନେଇ ତୀବ୍ର ଆନ୍ଦୋଳନ ଓ ଶାନ୍ତି ଶୃଙ୍ଖଳା ଭଂଗ ପ୍ରବଳ ବେଗରେ ଚାଲିଥାଏ । ପଣ୍ଡିତ ଜୀ ବଡ଼ ବିବ୍ରତ ଦେଖାଯାଉଥାନ୍ତି । ଡାକ୍ତର ରାୟଙ୍କ ପରାମର୍ଶ ଓ ସୁପାରିଶରେ ପଣ୍ଡିତ ନେହେରୁ ମହତାବ ଜୀଙ୍କୁ ବମ୍ବେର ରାଜ୍ୟପାଳ ଭାବେ ନିଯୁକ୍ତ କଲେ । ସୌଭାଗ୍ୟ କ୍ରମେ ମହତାବ ନିଜର ସୁଦୃଢ଼ ବ୍ୟକ୍ତିତ୍ୱ ଓ ଦକ୍ଷତା ବଳରେ ଉପୁଜିଥିବା ଆନ୍ଦୋଳନ ସମସ୍ୟାକୁ ଅଚିରେ ସମାଧାନ କରି ଶାନ୍ତି ପ୍ରତିଷ୍ଠା କଲେ । ତାଙ୍କର ପ୍ରଶଂସା ସର୍ବତ୍ର ଶୁଣାଗଲା ।

୧୯୫୨ ସାଧାରଣ ନିର୍ବାଚନରେ ବିଜୟୀ କଂଗ୍ରେସ ଦଳର ନେତା ଭାବରେ ଶ୍ରୀ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ନବବାବୁ ଜଣେ ସାଧୁ ସଚ୍ଚୋଟ ପାରଙ୍ଗମ ପ୍ରଶାସକ ଥିଲେ । ବମ୍ବେରେ ଥାଇ ମହତାବ ଜୀ ଓଡ଼ିଶାର ରାଜନୀତିକ ଘଟଣା ଉପରେ ସଜାଗ ନଜର ରଖିଥାନ୍ତି । ବିଜୁବାବୁ, ବିରେନ ମିତ୍ର ଓ ନୀଳମଣି ରାଉତରାୟଙ୍କ ଜରିଆରେ ସବୁ ଖବର ରଖୁଥାନ୍ତି । ନବବାବୁଙ୍କ ଶାସନରେ କିଛି ଶାନ୍ତି ଶୃଙ୍ଖଳା ଭଂଗ ଦୁର୍ଭାଗ୍ୟ କ୍ରମେ ଓଡ଼ିଶାରେ ଦେଖାଦେଲା । ତା ପରେପରେ ୧୯୫୭ର ସାଧାରଣ ନିର୍ବାଚନ ଆସିଗଲା । କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠ ହୋଇ ରାଜ୍ୟରେ ନିର୍ବାଚିତ ହେଲେ ଏବଂ ଶାସନକୁ ଆସିଲେ । ମହତାବ ଜୀ ଦ୍ୱିତୀୟ ଥର ପାଇଁ ଓଡ଼ିଶାର ବିଧାନସଭାର ନେତୃତ୍ୱ ଓ ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କଲେ । କିନ୍ତୁ କଂଗ୍ରେସ ବିଧାୟକ ଦଳର ସଂଖ୍ୟା ଗରିଷ୍ଠତା ସେତେ ନଥିଲା । ବିରୋଧୀ ରାଜାରାଜୁଡ଼ା, ଜମିଦାର ମାନଙ୍କର ସ୍ୱତନ୍ତ୍ର ଦଳ ପ୍ରବଳ ଥିଲା । ମହତାବ ଜୀଙ୍କ ପ୍ରବଳ ପ୍ରଚେଷ୍ଟାରେ ହୀରାକୁଦ ବନ୍ଧ ନିର୍ମାଣ ଓ ଭୁବନେଶ୍ୱରରେ ରାଜଧାନୀ ପ୍ରତିଷ୍ଠା ଲାଭ କରିଥିଲା । ଏଥିପୂର୍ବରୁ ସର୍ଦ୍ଦାର ପଟେଲଙ୍କ ନେତୃତ୍ୱ ବଳରେ ଓଡ଼ିଶାର ଗଡ଼ଜାତମାନଙ୍କୁ ବୁଦ୍ଧି ଓ କୌଶଳ ବଳରେ ମୋଗଲବନ୍ଦୀ ସହ ମିଶାଇ ସମଗ୍ର ଓଡ଼ିଶାକୁ ଏକତ୍ର କରାଯାଇଥିଲା । ଫଳରେ ରାଜା ଓ ଜମିଦାର ଅନେକ ମହତାବ ଜୀଙ୍କ ଉପରେ ବିଶେଷ କ୍ଷୁବ୍ଧ ଥିଲେ । ମହତାବବାବୁ ନୂତନ ଓଡ଼ିଶା ଗଠନ କାର୍ଯ୍ୟରେ ବିଶେଷ ବ୍ୟସ୍ତ ହୋଇପଡ଼ିଲେ । ପ୍ରଶସାନିକ ଗୃହ ଓ ନୂତନ ବିଧାନସଭା ଗୃହ ଆଦି ନିର୍ମିତ ହେବାକୁ ଲାଗିଲା ।



Digitized by srujanika@gmail.com

ଏତିକିବେଳେ ଓଡ଼ିଶା ରାଜ୍ୟର କଲ୍ୟାଣାର୍ଥେ ଏ ରାଜ୍ୟ ବିକାଶ ତଥା ରାଜସ୍ୱ ବୃଦ୍ଧିପାଇଁ ପୂର୍ବ ପରିକଳ୍ପିତ ଯୋଜନା ଅନୁଯାୟୀ ଆଉ ଏକ ବୈପ୍ଳବିକ କାର୍ଯ୍ୟକ୍ରମ ମହତାବ ବାବୁ ହାତକୁ ନେଲେ । ତାଙ୍କର ସିଦ୍ଧାନ୍ତ ଅଭ୍ରାନ୍ତ ଥିଲା । ସେଥିପୂର୍ବରୁ ରାଜ୍ୟର ରାଜା, ମହାରାଜା ଓ ଜମିଦାର ମାନେ ଲକ୍ଷଲକ୍ଷ ଏକର ଚାଷଜମି, ଜଂଗଲ ଓ ଖଣି ଅଞ୍ଚଳ ବିନା ଖଜଣାରେ ନିଷ୍କର ଭୋଗ କରୁଥିଲେ । ସେସବୁ ଭୂମି ଉପରେ ଖଜଣା ଧାର୍ଯ୍ୟ କରିବାର ସ୍ଥିର କରାଗଲା ।

ପୁରୁଣା ରାଜଧାନୀ କଟକରୁ ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ ବିଭାଗମାନ (ହାଇକୋର୍ଟ ଛଡ଼ା) କ୍ରମେ ଭୁବନେଶ୍ୱରକୁ ଅଣାଗଲା । ରାଜ୍ୟର ଉନ୍ନତି କଳ୍ପେ ବନ୍ଦର ନିର୍ମାଣ, କେନାଲ ଖନନ, ସଡ଼କ ନିର୍ମାଣ ଆଦି କାମ ହାତକୁ ତୁରନ୍ତ ନିଆଗଲା । ଓଡ଼ିଶା ଲୁଗା କଳ (ଓ.ଟି.ଏମ୍.) ଶିଳ୍ପ ଉନ୍ନତି ବିଧାନ କରାଗଲା । ବିଜୁବାବୁ ଚୌଦ୍ୱାର ଲୁଗାକଳର ମୁଖ୍ୟ ପରିଚାଳକ ନିଯୁକ୍ତ ହେଲେ । ମାତ୍ର ରାଜସ୍ୱ ଆଦାୟ ନିଅଣ୍ଟ ପଡ଼ିଲା । ପଞ୍ଚବାର୍ଷିକ ଯୋଜନାର ଅର୍ଥ ମଧ୍ୟ ନିଅଣ୍ଟ ହେଲା । ୧୯୫୨ ପୂର୍ବରୁ ମଧ୍ୟବର୍ତ୍ତୀକାଳୀନ ରାଜ୍ୟ ସରକାର ଓ ସ୍ୱାଧୀନତା ପ୍ରାପ୍ତିପରେ ଓଡ଼ିଶାର ସବୁ ଗଡ଼ଜାତ, ମୋଗଲବନ୍ଦୀ ଅଞ୍ଚଳ ସହ ମିଶାଇ ଓଡ଼ିଶା ଭୂଖଣ୍ଡକୁ ଏକ ଶାସନାଧୀନ ମହତାବବାବୁ କରିଥିଲେ । ସର୍ଦ୍ଦାର ପଟେଲଙ୍କ ସାହାଯ୍ୟରେ ଏକାନ୍ତ ଦୁଃସାହସ ଓ ତୀକ୍ଷ୍ଣ ବୁଦ୍ଧିମତା ସହକାରେ ଏ କାର୍ଯ୍ୟ ସେ କରିଥିଲେ । ନୀଳଗିରି ରାଜ୍ୟର ରାଜା ଅମତ ହେବାରୁ ସେ ରାଜ୍ୟକୁ ଆକ୍ରମଣ କରି ନିଜ ଅଧୀନକୁ ଅଣା ଯାଇଥିଲା । ତେଣୁ ରାଜ୍ୟର ରାଜା ଓ ଜମିଦାରମାନେ ମହତାବ ଜୀଙ୍କ ଉପର ବିଶେଷ ଭାବେ ଖପ୍ପା ହୋଇ ପଡ଼ିଥିଲେ । ଅନ୍ତତଃ ୧୦ବର୍ଷ ପୂର୍ବରୁ ସେମାନେ ଭୋଗ କରୁଥିବା ନିଷ୍କର ଭୂମି ଉପରେ ଖଜଣା ଧାର୍ଯ୍ୟ କରିବାର ସିଦ୍ଧାନ୍ତ ନେଇ ଆଇନ ପ୍ରଣୟନ ସକାଶେ ବିଧାନସଭାରେ ଏକ ବିଲ୍ ଆଣି ବସିଲେ । ରାଜା ଜମିଦାରମାନଙ୍କ ପ୍ରାଣରେ ନିଆଁ ଲାଗିଲା ପରି ଜଣାଗଲା । ବିଧାନସଭାରେ ସରକାରୀ ଓ ବେସରକାରୀ (ବିରୋଧୀ) ଦଳରେ ବହୁ ସଂଖ୍ୟାରେ ରାଜା, ରାଣୀ ଓ ଜମିଦାରମାନେ ନିର୍ବାଚିତ ହୋଇ ଆସିଥିଲେ । ବିରୋଧୀ ଗଣତନ୍ତ୍ର ଦଳର ନେତା ପାଟଣା ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂଦେଓ ବଡ଼ ପାରଙ୍ଗମ ବ୍ୟକ୍ତି ଥିଲେ । କଳାହାଣ୍ଡି ରାଜ୍ୟର ରାଜା ଶ୍ରୀ ପ୍ରତାପ କେଶରୀ ଦେଓ ଏହି ଦଳର ଏମ୍.ପି. ଭାବେ ନିର୍ବାଚିତ ହୋଇଥାନ୍ତି ।

୧୯୫୭ର ଦ୍ୱିତୀୟ ବିଧାନସଭା ନିର୍ବାଚନରେ ମହତାବ ଜୀ କଂଗ୍ରେସ ଦଳର ମୁଖ୍ୟଥିଲେ । ଏହି ଦଳର ସଭ୍ୟ ଭାବରେ କନିକା ରାଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଖଡ଼ିଆଳ ରାଜା ଅନୁପ ସିଂଦେଓ, ଖଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ, ଦଶପଲ୍ଲାର



Digitized by srujanika@gmail.com

କିଶୋର ଚନ୍ଦ୍ର ଭଞ୍ଜଦେଓ ବଡ଼ଖେମୁଣ୍ଡି ରାଜ୍ୟର ଅନଙ୍ଗ ମଞ୍ଜରୀ ଦେବୀ ଓ ରଣପୁର ରାଜମାତା ବସନ୍ତ ମଞ୍ଜରୀ ଦେବୀ ଓ ରାଜଗାଂଗପୁରର ରାଜା ଉଦିତ ପ୍ରତାପ ସିଂଦେଓ, କେଉଁଝରର ଆଦି ରାଜ୍ୟର ରାଜା ଓ ଜମିଦାର ମାନେ କଂଗ୍ରେସ ଦଳରୁ ନିର୍ବାଚିତ ହୋଇ ଆସିଥିଲେ । ବାଙ୍କୀ, ବଲାଙ୍ଗୀର, ଢେଙ୍କାନାଳର ରାଜା ଶଙ୍କର ପ୍ରତାପ ସିଂଦେଓ, ରାଣୀ ରତ୍ନପ୍ରଭା, ବଡ଼ମ୍ବାର ରାଣୀ ଜ୍ୟୋତି ମଞ୍ଜରୀ, ନରସିଂହର ରାଣୀ କନକଲତା ଦେବୀ ଆଦି ସ୍ୱତନ୍ତ୍ର ଦଳର ନିର୍ବାଚିତ ସଭ୍ୟ ଓ ସଭ୍ୟା ଥିଲେ । ସେମାନଙ୍କର ନିଷ୍କର ଭୂମି ଉପରେ ଖଜଣା ଧାର୍ଯ୍ୟର ବିଲ୍ ବିଧାନସଭାରେ ଆଗତ ହେବାରୁ ବିରୋଧୀ ଦଳ ତାର ତୀବ୍ର ବିରୋଧ କଲା । ଉଭୟ ଦଳ ମଧ୍ୟରେ ତୁମୁଳ ଯୁଦ୍ଧ ରାଜଧାନୀ ଭୁବନେଶ୍ୱରରେ ଆରମ୍ଭ ହୋଇଗଲା ।

ଶାସକ କଂଗ୍ରେସ ଦଳରେ ମାତ୍ର ଦୁଇଟି ଭୋଟ ଅଧିକାର ଥାଏ । ଏଣୁ ରାଜା ଜମିଦାର ମାନେ ହଜାର ହଜାର ଟଙ୍କା, ଗାଡ଼ି, ବନ୍ଧୁକ ବିନିମୟରେ କଂଗ୍ରେସ ଦଳର ବିଧାୟକମାନଙ୍କୁ ଅପହରଣ କରିବା ସହ ପ୍ରବଳ ଗୁଣ୍ଡାଗିରି କରିବା ଆରମ୍ଭ କଲେ । ଭୋଟ ପ୍ରଚାର ଭଳି ରାଜା ଓ ରାଣୀମାନେ କଂଗ୍ରେସ ବିଧାୟକମାନଙ୍କ ବସାକୁ ଯାଇ ଉତ୍କୋଚ ଦେବାକୁ ବାହାରି ପଡ଼ିଲେ । ଶ୍ରୀଧର ଦାସ, ଅନୁପ୍ ସିଂଦେଓ ଓ ମୋହନ ଦାସଙ୍କୁ ଆପଣା କବ୍‌ଜାକୁ ଘେନିଗଲେ ।

ବିଜୁବାବୁ (ଏମ୍.ଏଲ.ଏ.) ସେତେବେଳେ ମାନ୍ଦ୍ରାଜ ଗସ୍ତରେ ଥିଲେ । ତାଙ୍କୁ ରାତାରାତି ଡକାଗଲା । ମହତାବବାବୁ ଓ ଘରୋଇ ମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀଙ୍କ ସହ ପରାମର୍ଶ କରି ବିଜୁବାବୁ ଏକ ଦୁଃସାହସିକ ପଦକ୍ଷେପ ନେଇ ବାହାରି ପଡ଼ିଲେ ଅପହୃତ କଂଗ୍ରେସ ଏମ୍.ଏଲ୍.ଏ. ମାନଙ୍କୁ ଉଦ୍ଧାର କରିବାକୁ । ବାକି ବିଧାୟକ ମାନଙ୍କର ଦୃଢ଼ ସୁରକ୍ଷା ବ୍ୟବସ୍ଥା କରାଗଲା । ବଡ଼ମ୍ବାର ରାଣୀ ଜ୍ୟୋତି ମଞ୍ଜରୀ ଦେବୀ ଏମ୍.ଏଲ୍.ଏ., ଖଡ଼ିଆଳ ରାଜା ଅନୁପବାବୁଙ୍କର ଭିଣୋଇ ଥିଲେ । ସେ ତାଙ୍କୁ ଡକାଇ ଆଣି ଶ୍ରୀଧର ଦାସ ଓ ତାଙ୍କୁ ନିଜ ବସାରେ ଅଟକାଇ ଦେଲେ । ତାଙ୍କ ଭାଇ କଳାହାଣ୍ଡି ରାଜା ପ୍ରତାପ କେଶରୀ ଦେଓ ଏମ୍.ପି.ଙ୍କ ସହ ମୋହନ ଦାସଙ୍କୁ ଉତ୍କୋଚ ଦେଇ କଟକ ଗଣତନ୍ତ୍ର ଖବରକାଗଜ ପ୍ରେସରେ ଲୁଚାଇ ଦିଆଗଲା ।

ବିଜୁବାବୁ ନିରସ୍ତ୍ର ସିଧା ଜ୍ୟୋତିମଞ୍ଜରୀଙ୍କ ବସାକୁ ପଶିଗଲେ । ରାଜାରାଣୀଙ୍କର ଗୁଣ୍ଡାମାନେ ଉତ୍‌କ୍ଷିପ୍ତ ହୋଇ ତାଙ୍କୁ ଘେରିଯାଇ ଆକ୍ରମଣ କରି ରକ୍ତାକ୍ତ, କ୍ଷତବିକ୍ଷତ ଓ ବିବସ୍ତ୍ର କରିଦେଲେ । କୌଣସି ପ୍ରକାରେ ପ୍ରାଣନେଇ ବିଜୁବାବୁ ପଳାଇ ଆସି ମହତାବ ବାବୁଙ୍କ ପାଖରେ ପହଞ୍ଚିଲେ । ରାଣୀଙ୍କ ବସାରେ ସେ ପ୍ରଭୂତ ବିଦେଶୀ ମଦର ବନ୍ୟା



Digitized by srujanika@gmail.com

ଭାସୁଥିବା ଦେଖିଥିଲେ । ମହତାବ ବାବୁ ଅବିଳମ୍ବେ ସାହସର ସହ ଶାନ୍ତି ଶୃଙ୍ଖଳା ଭଂଗ ଓ ବିଦେଶୀ ମଦର କାରବାର ଆଳରେ ଜ୍ୟୋତିମଞ୍ଜରୀଙ୍କ ବସାକୁ ପୁଲିସ୍ ଦ୍ୱାରା ଘେରାଉ କରି ଏମ୍.ପି. ପ୍ରତାପ କେଶରୀ ଦେଓ, ଶ୍ରୀଧର ଦାସ ଓ ଅନୁପ୍ ସିଂଦେଓଙ୍କୁ ଗିରଫ କରି ଜେଲ୍‌କୁ ପଠାଇ ଦେଲେ । ଜେଲ୍‌ରୁ ଶ୍ରୀଧର ଦାସ ଓ ଅନୁପ ସିଂଦେଓ କଂଗ୍ରେସ ଦଳକୁ ଫେରି ଆସିଲେ । ଏଣେ ଗଣତନ୍ତ୍ର ପ୍ରେସରେ ଆତ୍ମଗୋପନ କରିଥିବା ମୋହନ ଦାସ ମଧ୍ୟ ପୁଲିସ୍ ସାହାଯ୍ୟରେ ଉଦ୍ଧାର ପାଇ ଆସି ଦଳରେ ଯୋଗଦେଲେ । ଏଣୁ କଂଗ୍ରେସ ଦଳ ପୂର୍ବବତ୍ ସଂଖ୍ୟାଗରିଷ୍ଠ ହୋଇ ରହିଲା । କେବଳ ଏମ୍.ପି. ପି.କେ. ଦେଓଙ୍କୁ ଲୋକସଭା ସଭାପତିଙ୍କ ବିନା ଅନୁମତିରେ ଗିରଫ କରିନେବା ସରକାରଙ୍କ ପକ୍ଷରେ ବେଆଇନ୍ କାର୍ଯ୍ୟଥିଲା ।

ତହିଁ ଆରଦିନ ବିଧାନସଭାରେ ସ୍ଥିତାବସ୍ଥା ଲକ୍ଷ୍ୟକରି ବିରୋଧୀ ଦଳନେତା ଆର.ଏନ୍. ସିଂଦେଓ ବାଧହୋଇ ଲ୍ୟାଣ୍ଡ ଏସେସ୍‌ମେଣ୍ଟ ବିଲ୍‌କୁ ସମର୍ଥନ କରିଗଲେ । ବିଲ୍ ସର୍ବସମ୍ମତି କ୍ରମେ ପାସ୍ ହୋଇ ଆଇନ୍‌ରେ ପରିଣତ ହୋଇଗଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହି ବିଲ୍ ଅନ୍ତର୍ଗତ ଲକ୍ଷଲକ୍ଷ ଏକର ମୂଲ୍ୟବାନ ଭୂସମ୍ପତ୍ତି ମଧ୍ୟରେ ସୁନ୍ଦରଗଡ଼, ଗାଙ୍ଗପୁର ରାଜାଙ୍କର ୩୬ହଜାର ଏକର ଏବଂ ବିଶ୍ୱନାଥ ଦାସ ଓ ବିପ୍ର ଦାସଙ୍କ ତାଙ୍କଠାରୁ କିଛି କମ୍ ଜଂଗଲ ଓ ଖଣିଥିବା ଉର୍ବର ଭୂସମ୍ପତ୍ତିର ଖଜଣା ଧାର୍ଯ୍ୟ କରାଗଲା । ଏଥିପାଇଁ ବିଶ୍ୱନାଥ ଦାସଙ୍କର ମହତାବ ଜୀଙ୍କ ଉପରେ ଏକ ବୈର ଭାବଥିଲା ।

ରାଜ୍ୟରେ ରାଣୀମାନଙ୍କ ମଧ୍ୟରେ ସେ ସମୟରେ ରାଜନେତା, ବସନ୍ତ ମଞ୍ଜରୀ, ଢେଙ୍କାନାଳ ରାଣୀ ରତିପ୍ରଭା ଦେବୀ, ନରସିଂହପୁର ରାଣୀ କବି କନକଲତା, ରାଣୀ ଅନଙ୍ଗ ମଞ୍ଜରୀ ଦେବୀ ବିଧାନସଭାର ନିର୍ବାଚିତ ସଭ୍ୟା ଥିଲେ । କିଛିଦିନ ପରେ ବିଧାନସଭାରେ କଂଗ୍ରେସ ଦଳର ଦୁର୍ବଳ ସଂଖ୍ୟା ଗରିଷ୍ଠତାକୁ ଲକ୍ଷ୍ୟକରି ମହତାବ ବାବୁ ଗଣତନ୍ତ୍ର ଦଳର ପରାମର୍ଶ ଓ ସାହାଯ୍ୟରେ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ । ଏହି ମିଳିତ ମନ୍ତ୍ରୀମଣ୍ଡଳରେ ଆରଏନ୍. ସିଂଦେଓ ଶିକ୍ଷାମନ୍ତ୍ରୀ ହୋଇ ରହିଥିଲେ ।

ଚୌଦ୍ୱାର ସ୍ଥିତ ଓ.ଟି.ଏମ୍. ଲୁଗାକଳ ମହତାବବାବୁ ଶତାଧିକ ସାଧାରଣ ଅଂଶୀଦାର ମାନଙ୍କ ସାହାଯ୍ୟ ଓ ସରକାରୀ ଅନୁଦାନରେ ଗଠନ କରିଥିଲେ । ବିଜୁବାବୁ ଏହି ଓଟିଏମ୍‌ର ପରିଚାଳନା ନିର୍ଦ୍ଦେଶକ (ଏମ୍.ଡି) ଥିଲେ । କିନ୍ତୁ ଦୀର୍ଘଦିନ ଧରି ଅଂଶୀଦାର ମାନଙ୍କୁ ଲାଭାଂଶ ମିଳିଲା ନାହିଁ । ବିଜୁବାବୁ ସେ ଟଙ୍କା ଯଥେଚ୍ଛା ଖର୍ଚ୍ଚ କରିବାକୁ ଲାଗିଲେ ବୋଲି ଅଭିଯୋଗ ହେଲା । କଂଗ୍ରେସ ସଂଗଠନ ସରକାର ମଧ୍ୟ ଏହି ଲାଭାଂଶ ଖର୍ଚ୍ଚ



Digitized by srujanika@gmail.com

କରାଯାଇଥିବାର ଅଭିଯୋଗ ହେଲା । ଲୁଗାକଳକୁ କେନ୍ଦ୍ରକରି ଅଂଶୀଦାରମାନେ ମୁଖ୍ୟମନ୍ତ୍ରୀ ଓ ଶିଳ୍ପମନ୍ତ୍ରୀଙ୍କଠାରେ ଫେରାଦ୍ ହେଲେ । ବହୁତ କହିଲା ପରେ ବି ବିଜୁବାବୁ ଭ୍ରୂକ୍ଷେପ କଲେନାହିଁ ବୋଲି ଅବସ୍ଥା ସଂଗୀନ୍ ହେବାରୁ ଓଟିଏମ୍‌ର ସ୍ପେଶାଲ ଅଡିଟ୍ ସକାଶେ ସରକାରୀ ନିର୍ଦ୍ଦେଶନାମା ଜାରିହେଲା । ବିଜୁବାବୁ ଅଡୁଆରେ ପଡ଼ିଲେ ଓ ରାଗିଗଲେ ମହତାବବାବୁଙ୍କ ଉପରେ । କଂଗ୍ରେସ ଦଳ ମଧ୍ୟରେ ଏକ ବିଷମ ସଂକଟ ଦେଖାଦେଲା । ଦଳ ମଧ୍ୟରେ ବିଜୁବାବୁ ମିଳିତ ମନ୍ତ୍ରୀମଣ୍ଡଳ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ବିଶ୍ୱନାଥ ଦାଶଙ୍କ ସହ ମିଶି କଟକର ନିତ୍ୟାନନ୍ଦ କାନୁନ୍‌ଗୋ, ବିରେନ୍ ମିତ୍ର ଆଦି ମହତାବବାବୁଙ୍କୁ ବାଲେଶ୍ୱରିଆ କହି ତାଙ୍କ ନେତୃତ୍ୱକୁ ଅସ୍ୱୀକାର କଲେ । ବିଜୁବାବୁଙ୍କ ସପକ୍ଷରେ ଗଞ୍ଜାମ, ପୁରୀ ଓ କଟକ ନେତାମାନେ ମହତାବ ଜୀଙ୍କ ବିରୁଦ୍ଧରେ ଏକଜୁଟ ହେବାକୁ ଲାଗିଲେ । ଯୋଗକୁ ସେତିକିବେଳେ ପ୍ରଦେଶ କଂଗ୍ରେସର ସଭାପତି ନିର୍ବାଚନ ବେଳ ଆସି ପହଞ୍ଚିଲା । ମହତାବ ବାବୁ ଖୋର୍ଦ୍ଧା ନେତା ବନମାଳି ପଟ୍ଟନାୟକଙ୍କୁ ସଭାପତି ପଦ ସକାଶେ ମନୋନୀତ କଲେ । ବିଜୁବାବୁ ତାଙ୍କ ବିରୋଧରେ ସ୍ୱୟଂ ପ୍ରାର୍ଥୀପତ୍ର ଦାଖଲ କଲେ । ଏହା ୬୦/୬୧ ବେଳର କଥା । ବିଧାନସଭାର ଜୀବନକାଳ ଚାରିବର୍ଷ ବିତିବାକୁ ବସିଥାଏ । ଦଳ ମଧ୍ୟରେ ସେମାନଙ୍କର ଲଢ଼ାଇ ଚାଲିଲା । ନୀଳମଣି ରାଉତରାୟ ଏହି ଯୁଦ୍ଧରେ ମହତାବଙ୍କୁ ଛାଡ଼ି ବିଜୁବାବୁଙ୍କ ସହିତ ଯୋଗଦେଲେ । ବହୁ ତିକ୍ତତା ପରେ ବିଜୁବାବୁ ନିର୍ବାଚନରେ ବିଜୟୀ ହେଲେ । ମହତାବ ବିଜୁ ପଟ୍ଟନାୟକ ବିବାଦ ତୁଙ୍ଗକୁ ଚାଲିଗଲା । ମିଳିତ ମନ୍ତ୍ରୀମଣ୍ଡଳ ଉପରେ ଏହାର ପ୍ରଭାବ ସିଧାସଳଖ ଯାଇ ପଡ଼ିଲା । ବିଜୁବାବୁ ସେତିକିବେଳେ ରାଜ୍ୟ କଂଗ୍ରେସର ମୁଖ୍ୟ ଥାଆନ୍ତି । ସେ ସିଧା ଏକ କଂଗ୍ରେସ ବିଧାୟକ ଦଳର ବୈଠକ ଡକାଇ ମହତାବ ଜୀଙ୍କର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦାବିକଲେ ଏବଂ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ସକାଶେ ଡାକରାଦେଲେ । ମହତାବବାବୁଙ୍କ ଆପତ୍ତିକୁ ରାଜ୍ୟ ଓ ଉପରେ କେହି କାନ ଦେଲେନାହିଁ । ମହତାବବାବୁ ଶେଷରେ ଇସ୍ତଫା ଦେଲେ । ମନ୍ତ୍ରୀମଣ୍ଡଳ ଓ ବିଧାନସଭା ଭାଂଗିଗଲା । ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲା । ୧୯୬୧ ଜୁନ୍ ମାସ ବିଜୁବାବୁଙ୍କ ନେତୃତ୍ୱରେ କଂଗ୍ରେସ ଦଳ ବେଶ୍ ସଂଖ୍ୟାଗରିଷ୍ଠ ଭୋଟରେ ଜିତି ଆସିଲେ । ବିଜୁବାବୁ ମୁଖ୍ୟମନ୍ତ୍ରୀ ହେଲେ । ମହତାବ ଓ ବିଜୁବାବୁଙ୍କ ମଧ୍ୟରେ ଫାଟ କ୍ରମେ ବଢ଼ିବଢ଼ି ଚାଲିଲା ।

ଏହି ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଭୋଗରାଇରେ ପି.ଏସ୍.ପି. ନେତା ମୋ ବଡ଼ଭାଇ ପ୍ୟାରୀବାବୁ ମୋତେ ପରାସ୍ତ କରି ବିଧାନସଭାକୁ ନିର୍ବାଚିତ ହେଲେ । ମୋ



Digitized by srujanika@gmail.com

ନିର୍ବାଚନ ପ୍ରଚାର ଲାଗି ମହତାବ ବାବୁ ଘୋର ବର୍ଷା ମଧ୍ୟରେ ବହୁ କଷ୍ଟରେ ଭୋଗରାଇ ଆସିଥିଲେ । ମାତ୍ର ବିଜୁବାବୁ ଆସିବେ କହି ଶେଷ ପର୍ଯ୍ୟନ୍ତ ଆସିପାରିଲେ ନାହିଁ ।

୧୯୬୨ ଫେବୃଆରୀରେ ଲୋକସଭା ପାଇଁ ନିର୍ବାଚନ ହେଲା । ଏହି ଭୋଟରେ ଭଦ୍ରକର ଗାନ୍ଧିବାଦୀ ନେତା ଗୋକୁଳାନନ୍ଦ ମହାନ୍ତି କଂଗ୍ରେସ ଦଳର ପ୍ରାର୍ଥୀ ଭାବରେ ଛିଡ଼ା ହୋଇଥିଲେ । ଭୋଗରାଇରେ ମୁଁ କଂଗ୍ରେସ ଦଳର ପ୍ରଚାର ଦାୟିତ୍ୱରେ ଥାଏ । ସେତେବେଳେ ନୀଳମଣି ବାବୁଙ୍କ ସହ ବିଜୁବାବୁ ପ୍ରଥମଥର ନିର୍ବାଚନ ପ୍ରଚାରରେ ଆସିଲେ । ଉତ୍ତର ବାଲେଶ୍ୱର ତଥା ଭୋଗରାଇରେ କଂଗ୍ରେସ ଓ ବିଜୁବାବୁଙ୍କ ପ୍ରତି ପ୍ରବଳ ଉଦ୍ଦୀପନା ଖେଳିଗଲା । ଭୋଗରାଇ ନିର୍ବାଚନ ମଣ୍ଡଳୀ ବୁଲି ଅହୋରାତ୍ର ବିଜୁବାବୁ ବିଜୁଳି ବେଗରେ ସଭା କଲେ । ଗାଁ ପାଠାଗାର, ସମାଜ ସେବାନୁଷ୍ଠାନ ଓ ପ୍ରାଇମେରୀ ସ୍କୁଲର ଉନ୍ନତି ସକାଶେ ୪ଲକ୍ଷ ଟଙ୍କା ସାହାଯ୍ୟ ଘୋଷଣା କଲେ । ହଜାର ହଜାର ଲୋକ ବିଜୁବାବୁଙ୍କୁ ଦେଖି ଓ ଶୁଣି ସମ୍ବର୍ଦ୍ଧନା ଜଣାଇଲେ । ଶେଷରେ ଲୋକସଭା ନିର୍ବାଚନରେ କଂଗ୍ରେସ ଆମ ଜିଲ୍ଲାରେ ବିଜୟୀ ହେଲା ।

ଭୋଗରାଇରେ ମୋ ନେତୃତ୍ୱାଧୀନ କଂଗ୍ରେସ ସଂଗଠନ ପ୍ରତି ପ୍ରବଳ ଉତ୍ସାହ ଓ ସମର୍ଥନ ଦେଖି ବିଜୁବାବୁ ପ୍ରୀତ ହେଲେ । ଗତ ବିଧାନସଭା ନିର୍ବାଚନରେ ସେ ଏଠାକୁ ଆସିପାରି ନଥିବାରୁ ବହୁତ ଦୁଃଖ କଲେ ଏବଂ ସେଥିପାଇଁ ନୀଳମଣି ବାବୁଙ୍କୁ ଦାୟୀ କଲେ । ତାଙ୍କୁ ଧାରଣା ଦିଆଯାଇଥିଲା ମୁଁ କୁଆଡ଼େ ମହତାବବାବୁଙ୍କ ପ୍ରାର୍ଥୀ ନଥିଲେ । ବିଜୁବାବୁ ସର୍ବସମକ୍ଷରେ ପ୍ରକାଶ କଲେ । ଦୁର୍ଗା ଦାସ କାହାରି ବ୍ୟକ୍ତିଗତ ପ୍ରାର୍ଥୀଥିଲି । ସେ ଜଣେ କଂଗ୍ରେସ ଲୋକ ପୂରାମାତ୍ରାରେ । ପ୍ରକାଶ୍ୟ ଜନସଭାରେ ଭୋଗରାଇ ପଞ୍ଚାୟତ ସମିତିର ଚେୟାରମେନ୍ କରିବାକୁ ସେ ମୋ ନାମ ଘୋଷଣାକଲେ ଏବଂ ସେଥିସହ ଭୋଗରାଇ ରେଡୋ ବ୍ଲକ୍‌କୁ **ଷ୍ଟେଜ୍ ପ୍ଲସ** ବ୍ଲକ୍‌ରେ ରୂପାନ୍ତରିତ କରିବାର ପ୍ରତିଶ୍ରୁତି ଦେଲେ । ଦୁଇମାସ ମଧ୍ୟରେ ମୁଁ ଭୋଗରାଇ ପଞ୍ଚାୟତ ସମିତି ଅଧ୍ୟକ୍ଷ ପଦରେ ୧୯୬୨ରେ ନିର୍ବାଚିତ ହେଲି ୫ବର୍ଷ ପାଇଁ । ବିଜୁବାବୁଙ୍କ ସାହାଯ୍ୟରେ ଏହି ପାଞ୍ଚବର୍ଷ ମଧ୍ୟରେ ଭୋଗରାଇ ବ୍ଲକ୍ ମାଧ୍ୟମରେ ସର୍ବବିଧ ଉନ୍ନୟନ ମୂଳକ କାର୍ଯ୍ୟକ୍ରମ ପୂରା ଦମ୍‌ରେ ଚାଲିଥିଲା ।

୧୯୬୪ରେ ଜାତୀୟ କଂଗ୍ରେସର ସାଧାରଣ ଅଧିବେଶନ ପ୍ରଥମଥର ସକାଶେ ଭୁବନେଶ୍ୱରରେ ଅନୁଷ୍ଠିତ ହେଲା ବିଜୁବାବୁଙ୍କ ପ୍ରଚେଷ୍ଟାରେ । ସମସ୍ତ କଂଗ୍ରେସ ନେତୃମଣ୍ଡଳୀ ସହ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଘୋର ଅସୁସ୍ଥତା ସତ୍ତ୍ୱେ ଆସି ଯୋଗ



Digitized by srujanika@gmail.com

ଦେଇଥିଲେ ଇନ୍ଦିରା ଗାନ୍ଧିଙ୍କ ସହିତ । ରାଜ୍ୟରେ କଂଗ୍ରେସ ଦଳ ପ୍ରତି ପ୍ରବଳ ଉତ୍ସାହ ସୃଷ୍ଟି ହେଲା । ଟିକଟ ଡ୍ୟାମ୍‌ର ଶୁଭ ପଣ୍ଡିତ ନେହେରୁ ଦେବାର କାର୍ଯ୍ୟକ୍ରମ ବିଜୁବାବୁ ରଖିଥିଲେ । କିନ୍ତୁ ଅସୁସ୍ଥ ପ୍ରଧାନମନ୍ତ୍ରୀଙ୍କୁ ଏହି କାର୍ଯ୍ୟକ୍ରମରେ ଯୋଗଦେବାକୁ ଇନ୍ଦିରା ଗାନ୍ଧି ଆପତ୍ତି କଲେ । କିନ୍ତୁ କେହି ଶୁଣିଲେ ନାହିଁ । ଏତିକିବେଳେ ଏକ ଅଭାବନୀୟ ଦୁର୍ଘଟଣା ଘଟି ରାଜ୍ୟରେ ପ୍ରବଳ ଉତ୍ତେଜନା ସୃଷ୍ଟି ହେଲା । ପିଲୁ ବେନ୍ ପଟେଲ ନାମ୍ନୀ ଏକ ଅତୀବ ସୁନ୍ଦରୀ ମହିଳା ସେବାଦଳର ନେତ୍ରୀ ଭାବରେ କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ଆସିଥାନ୍ତି । ଏହି ମହିଳାଙ୍କୁ କତିପୟ ଦୁର୍ବୃତ୍ତ ଟେକିନେଇ ଧର୍ଷଣ ସହିତ ହତ୍ୟା କଲେ ଏହି କଂଗ୍ରେସ ଅଧିବେଶନ ଚାଲିଥିବାବେଳେ । ବିଜୁବାବୁଙ୍କ ଶାସନବେଳେ ଏହି ଦୁର୍ଘଟଣା ବିଜୁବାବୁଙ୍କୁ ଅନେକ ରାଜନୀତିକ ମୂଲ ଦେବାକୁ ପଡ଼ିଥିଲା । ପଣ୍ଡିତ ଜୀ ଓ ଇନ୍ଦିରାଜୀଙ୍କ ସହିତ ସମସ୍ତ ନେତୃବୃନ୍ଦ ଘୋର ନିନ୍ଦା ଓ ଆପତ୍ତି କଲେ । ପଣ୍ଡିତ ଜୀଙ୍କ ମାନସିକ ଓ ଶାରୀରିକ ପୀଡ଼ା ବଢ଼ିବାରୁ ସେ ଦିଲ୍ଲୀ ତତ୍‌କ୍ଷଣାତ୍ ଫେରିଗଲେ ଏବଂ ଦୁର୍ଭାଗ୍ୟରୁ ପନ୍ଦର ଦିନ ମଧ୍ୟରେ ସେ ପରଲୋକ ଗମନ କଲେ । ବିଜୁବାବୁଙ୍କ ଶାସନରେ ଅନିୟମିତତା, ହଠକାରିତା ଓ ଅନୈତିକତା କ୍ରମେ ପଦାକୁ ଆସିଲା । ଶେଷରେ ଦଳ ମଧ୍ୟରେ କାମରାଜ ପ୍ଲାନ୍ ଅନୁଯାୟୀ ମାତ୍ର ଅଢ଼େଇ ବର୍ଷକାଳ ଶାସନ ପରେ ବିଜୁବାବୁଙ୍କୁ କ୍ଷମତା ଓ ନେତୃତ୍ୱରୁ ବିଦାୟ ନେବାକୁ ପଡ଼ିଲା । ତାପରେ ବିରେନ୍ ମିତ୍ର ଓ ସଦାଶିବ ତ୍ରିପାଠୀ କଂଗ୍ରେସ ଦଳରୁ ମୁଖ୍ୟମନ୍ତ୍ରୀ ପଦ ଯଥାକ୍ରମେ ସମ୍ଭାଳିଥିଲେ । ଏହାପରେ କଂଗ୍ରେସ ଛାଡ଼ି ବିଜୁବାବୁ ଉତ୍କଳ କଂଗ୍ରେସ ଗଠନ କଲେ । କଂଗ୍ରେସ ଦଳ ଭାଂଗିରୁଜି ତଳିତଳାନ୍ତ ହୋଇଗଲା । ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର, ପ୍ରଦ୍ୟୁମ୍ନ ବଳ ଓ ବିନାୟକ ଆଚାର୍ଯ୍ୟଙ୍କ ନେତୃତ୍ୱରେ କଂଗ୍ରେସ ଦଳ ରାଜ୍ୟରେ ପୁଣି ସଂଗଠିତ ହୋଇ ୧୯୭୧ ନିର୍ବାଚନରେ ସଂଖ୍ୟା ଗରିଷ୍ଠତା ହାସଲ କଲା । କେନ୍ଦ୍ର ମନ୍ତ୍ରୀମଣ୍ଡଳରୁ ଆସି ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ହେଲେ । ନନ୍ଦିନୀ ଦେବୀ ହେଲେ ଓଡ଼ିଶାର ବିଖ୍ୟାତ ସାରସ୍ୱତ ସାଧକ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କର କନ୍ୟା ଓ ରାଜ୍ୟର ସାମ୍ୟବାଦୀ ଆନ୍ଦୋଳନର ଜନ୍ମଦାତା ଭଗବତୀ ଚରଣ ପାଣିଗ୍ରାହୀଙ୍କର ଝିଆରୀ । ମୂଳରୁ ସେ କମ୍ୟୁନିଷ୍ଟ ଭାବାପନ୍ନ ଥିଲେ । ବିଜୁବାବୁ ତାଙ୍କୁ କଂଗ୍ରେସରେ ମିଶାଇ କେନ୍ଦ୍ର ସହକାରୀ ମନ୍ତ୍ରୀ କରାଇଥିଲେ ଇନ୍ଦିରାଜୀଙ୍କୁ ପ୍ରବର୍ତ୍ତାଇ । ଏଣୁ ନନ୍ଦିନୀ ଦେବୀ, ଇନ୍ଦିରା ପନ୍ଥୀ ହୋଇ ଉଠିଥିଲେ । ମୂଳରୁ ସାମ୍ୟବାଦୀ ସ୍ୱଭାବତଃ ଏକଛତ୍ରବାଦୀ ଏବଂ ରାଜନୀତିକ ସହନଶୀଳତା ତାଙ୍କର ବହୁତ କମ୍ ଥିଲା । କିନ୍ତୁ ଦକ୍ଷ ପ୍ରଶାସକ ଥିଲେ ଓ ଅନ୍ୟକୁ ସହିପାରୁ ନଥିଲେ ।



Digitized by srujanika@gmail.com

ଇନ୍ଦିରାଜୀ ୧୯୭୫ରେ ଜରୁରୀକାଳୀନ ବ୍ୟବସ୍ଥା ଜାରିକଲେ ଭାରତରେ । ଏହାକୁ ନେଇ ସାରା ଭାରତରେ ତୁମ୍ଫିତୋଫାନ ହେଲା । କଂଗ୍ରେସର ରକ୍ଷଣଶୀଳ ଗୋଷ୍ଠୀ ଇନ୍ଦିରାଙ୍କର ସମାଲୋଚନାରେ ପ୍ରଖର ହୋଇଉଠିଲେ । ରାଜ୍ୟରେ ମହତାବ ମଧ୍ୟ । ନନ୍ଦିନୀଦେବୀ ମହତାବଜୀଙ୍କୁ ଏଥି ସକାଶେ ଗିରଫକରି ଜେଲରେ ପୂରାଇଦେଲେ ଏବଂ ମହତାବବାବୁଙ୍କୁ କଂଗ୍ରେସ ଦଳରୁ ନିଲମ୍ବନ କଲେ ମଧ୍ୟ । ରାଜ୍ୟର ରାଜନୀତିକ ମହଲରେ ସେତେବେଳେ ତୁମୁଳ ଦ୍ୱନ୍ଦ୍ୱ ଓ ଅବିଶ୍ୱାସର ବାତାବରଣ ସୃଷ୍ଟି ହେଲା ।

ଏତିକିବେଳେ ବାଲେଶ୍ୱରର ଶ୍ୟାମସୁନ୍ଦର ମହାପାତ୍ର ଲୋକସଭା ଓ ବିଧାନସଭା ଆସନ ଉଭୟରୁ ବହୁ ଭୋଟରେ ନିର୍ବାଚିତ ହୋଇଥିଲେ । ମାତ୍ର ସେ ବିଧାନସଭା ଛାଡ଼ି ଏମ୍.ପି. ହେବାକୁ ପସନ୍ଦ କଲେ । ରାଜ୍ୟ ବିଧାନସଭାରେ ସଂଖ୍ୟା ଗରିଷ୍ଠତା ଦୁର୍ବଳ ଥିବାରୁ ତାଙ୍କୁ ନନ୍ଦିନୀଦେବୀ ପିସିସିର ସଭାନେତ୍ରୀ ଥାଇ କଂଗ୍ରେସ ଦଳରୁ ନିଲମ୍ବନ କଲେ । ସମସ୍ୟା ପରେ ସମସ୍ୟା ସୃଷ୍ଟିହେଲା କଂଗ୍ରେସ ଦଳରେ । ମହାପାତ୍ର ଜୀ ଜଣେ ଦକ୍ଷ ପାର୍ଲାମେଣ୍ଟାରିଆନ୍ ଥିଲେ ଓ କଂଗ୍ରେସ ନେତା ମଧ୍ୟ । ସେ ଇନ୍ଦିରା ଜୀଙ୍କ ବିଶ୍ୱସ୍ତ ଲୋକ ଭାବେ ପରିଚିତ ହେଲେ । ଏଣୁ ନନ୍ଦିନୀ ଦେବୀ ତାଙ୍କ ବିପକ୍ଷରେ ଜାରିଥିବା ନିଲମ୍ବନ ଆଦେଶ ପ୍ରତ୍ୟାହାର କରିନେଲେ ।

ତେବେ ମହତାବବାବୁଙ୍କ ଉପରେ ଲାଗୁ ହୋଇଥିବା ପ୍ରଦେଶ କଂଗ୍ରେସ ନିଲମ୍ବନ ଆଦେଶର ଦୃଢ଼ୀକରଣ ପାଇଁ ରାଜ୍ୟର ସବୁ ଜିଲ୍ଲା କମିଟିକୁ ପିସିସିର ଆଦେଶ ଜାରି ହୋଇଥିଲା । ବାଲେଶ୍ୱର ପିସିସିକୁ ମଧ୍ୟ ଏ ନିର୍ଦ୍ଦେଶ ଆସିଥିଲା । ସେତେବେଳେ ବାଲେଶ୍ୱରର ଏମ୍.ଏଲ୍.ଏ. ପ୍ରିୟନାଥ ନନ୍ଦୀ ଡିସିସିର ସଭାପତି ଥାନ୍ତି । ସେ ମହତାବ ପନ୍ଥୀ ଥିଲେ । ମୁଁ ପିସିସି ସଂପାଦକ କାହ୍ନୁ ଲେଙ୍କା ଆସି ଡିସିସି ବୈଠକରେ ଯୋଗ ଦେଇଥାଆନ୍ତି । ମହତାବ ବିରୁଦ୍ଧରେ ନିଲମ୍ବନ ଆଦେଶ ପାସ୍ କରିବାକୁ ନିର୍ଦ୍ଦେଶ ଦେଇ ଶ୍ୟାମବାବୁ, ଚିନ୍ତାମଣିବାବୁ, ପ୍ରସନ୍ନ ବାବୁ, କାର୍ତ୍ତିକବାବୁ ଆଦିଙ୍କୁ ନନ୍ଦିନୀଦେବୀ ପୂର୍ବରୁ କହି ରଖିଥିଲେ । କିନ୍ତୁ ଡିସିସିର ମହତାବବାବୁଙ୍କ ସପକ୍ଷରେ ବହୁମତ ଦେଖି ସେମାନେ ଦେହଛପା ଦେଲେ । ମହତାବ ଜୀଙ୍କ ପ୍ରତି ବାଲେଶ୍ୱର କଂଗ୍ରେସର ପ୍ରବଳ ସମର୍ଥନ ଥିବାରୁ ଉକ୍ତ ପ୍ରସ୍ତାବ ବୈଠକରେ କେବଳ ଉପସ୍ଥାପନ କରାଯାଇଥିଲା । ମୋର ଦୃଢ଼ ପ୍ରତିବାଦ ଯୋଗୁଁ ପ୍ରସ୍ତାବ ଆଲୋଚନାକୁ ଆସିନପାରି ସ୍ଥଗିତ ହୋଇଗଲା । ଖବରକାଗଜ ମାନଙ୍କରେ ବଡ଼ବଡ଼ ଅକ୍ଷରରେ ଏସବୁ ସମ୍ବାଦ ପ୍ରକାଶ ପାଇଲା । ନନ୍ଦିନୀ ଦେବୀ ସବୁ ଜାଣି ବାଲେଶ୍ୱର ଗସ୍ତରେ ଆସି ମୋତେ ଡକାଇ ପଠାଇଲେ ଏବଂ ମୋଠାରୁ ସବୁ ଖବର ବୁଝି କ୍ଷାନ୍ତ ହେଲେ । ନନ୍ଦିନୀ ଦେବୀଙ୍କ ଦର୍ଘ ୪ବର୍ଷ କାର୍ଯ୍ୟକାଳ ପରେ ଶ୍ରୀ



Digitized by srujanika@gmail.com

ବିନାୟକ ଆଚାର୍ଯ୍ୟ ୭୬-୭୭ ଯାଏ ମୁଖ୍ୟମନ୍ତ୍ରୀ ଭାବେ କଂଗ୍ରେସ ଦଳରେ ରହିଥିଲେ । ୧୯୭୫ରେ ଜରୁରୀ ଅବସ୍ଥା ପ୍ରତ୍ୟାହାର ପରେ ସାଧାରଣ ନିର୍ବାଚନ ହୋଇଥିଲା । ଏହି ନିର୍ବାଚନରେ ଇନ୍ଦିରାଗାନ୍ଧିଙ୍କ ସହ ସମଗ୍ର ଭାରତରେ କଂଗ୍ରେସ ଦଳ ସମୂଳେ ପରାସ୍ତ ହେଲେ । ଜନତା ଦଳ ନିର୍ବାଚନ ଜିଣିଲା । ମୋରାରଜୀ ଦେଶାଇ ଭାରତର ପ୍ରଧାନମନ୍ତ୍ରୀ ହେଲେ । ବିଜୁବାବୁ କେନ୍ଦ୍ରମନ୍ତ୍ରୀ ଓ ନୀଳମଣି ବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ନୀଳମଣି ରାଉତରାୟ ଓଡ଼ିଶାର ଜଣେ ସ୍ୱାଭିମାନୀ ଜନନାୟକ ଥିଲେ । ସେ ଜଣେ ଖ୍ୟାତନାମା ସଂଗ୍ରାମୀ ଓ ଦୀର୍ଘଦିନ ଧରି ଓଡ଼ିଶାର ଜନପ୍ରିୟ ମନ୍ତ୍ରୀ, ସୁଶାସକ ଓ ନେତା ଥିଲେ । ତାଙ୍କର ବ୍ୟବହାର ସମସ୍ତଙ୍କ ପ୍ରତି ମଧୁର ଓ ସମ୍ବେଦନଶୀଳ ଥିଲା । ରାଜ୍ୟର ସବୁ ଅଞ୍ଚଳର ସମସ୍ୟା ତାଙ୍କର ଜ୍ଞାତ ଥିଲା । କଂଗ୍ରେସ ଛାଡ଼ି ବିଜୁବାବୁଙ୍କ ସହିତ ମିଶି ସେ ଉତ୍କଳ କଂଗ୍ରେସ ଏବଂ ପରେ ଜନତାଦଳକୁ ଚାଲିଗଲେ । ପରିଣତ ବୟସରେ ପୁଣି ସେ କଂଗ୍ରେସକୁ ବାହୁଡ଼ି ଆସିଲେ । ତାଙ୍କର ରଚିତ 'ସ୍ମୃତି ଓ ଅନୁଭୂତି' ପୁସ୍ତକରେ ସେ ତାଙ୍କର ଜୀବନ ଅନୁଭୂତିମାନ ସ୍ପଷ୍ଟ ଭାବେ ବର୍ଣ୍ଣନା କରିଛନ୍ତି । ଏହା ସମଗ୍ର ରାଜ୍ୟର ଆମୂଳଚୂଳ ସଂଗ୍ରାମ ଓ ଇତିହାସ କହିଲେ ଚଳେ । ୧୯୮୦ ନିର୍ବାଚନରେ କଂଗ୍ରେସ ଦଳରୁ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଜାନକୀବାବୁ ଜଣେ ପଣ୍ଡିତ ବ୍ୟକ୍ତି ଓ ଦକ୍ଷ ରାଜନୀତିଜ୍ଞ ତଥା ପ୍ରଶାସକ ଥିଲେ । ସେ ସମସ୍ତ ମୁଖ୍ୟମନ୍ତ୍ରୀମାନଙ୍କ ଅପେକ୍ଷା ରାଜ୍ୟର ମୁଖ୍ୟମନ୍ତ୍ରୀ ପଦ ଅଧିକ ସମୟ ସମ୍ଭାଳିବାରେ ସକ୍ଷମ ବ୍ୟକ୍ତିଥିଲେ । ପ୍ରଜାତନ୍ତ୍ର କାରଖାନାରୁ ବିଜୁବାବୁ, ନୀଳମଣି ବାବୁ, ବୀରେନ୍‌ବାବୁ ପରି ମହତାବଙ୍କ ମାନସପୁତ୍ର ରୂପେ ଏମାନେ ଜନ୍ମ ନେଇଥିଲେ । ୧୯୯୦ରେ ଜନତାଦଳ ନେତା ବିଜୁବାବୁ ଦ୍ୱିତୀୟ ଥର ସକାଶେ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ ପାଞ୍ଚବର୍ଷ ପାଇଁ । ସେ ସମୟରେ ସେ ଥିଲେ ରାଜ୍ୟର ସର୍ବମୟ କର୍ତ୍ତା କହିଲେ ଚଳେ । ଅନ୍ୟ ଦଳର ନେତାମାନେ ତାଙ୍କର ବ୍ୟକ୍ତିତ୍ୱ ଓ କର୍ତ୍ତୃତ୍ୱ ପାଖରେ ମ୍ରିୟମାଣ ଦେଖାଗଲେ ୧୯୯୫ ଯାଏ । ପାରାଦ୍ୱୀପ ବନ୍ଦର ଓ ଭୁବନେଶ୍ୱର ବିମାନଘାଟି ଭଳି ବହୁ ଆନ୍ତର୍ଜାତିକ ଉନ୍ନତି କ୍ଷେତ୍ରରେ କାର୍ଯ୍ୟକରି ସେ ସୁଖ୍ୟାତି ପାଇବାରେ ସକ୍ଷମ ହୋଇଥିଲେ । ଜଣେ ଦୁର୍ଦ୍ଧର୍ଷ ସଂଗ୍ରାମୀ ଓ ବିମାନଚାଳକ ଏହି କଳିଙ୍ଗ ବୀରକୁ ଏ ଜାତି ସବୁଦିନ ମନେ ରଖିବ ଏଥିରେ ସନ୍ଦେହ ନାହିଁ ।





Digitized by srujanika@gmail.com

# ମୋ ଜନ୍ମମାଟି ଭୋଗରାଇ

ବଙ୍ଗୋପସାଗରର ଊର୍ମିମାଳା ପରିତ୍ୟକ୍ତ ଚରଭୂମି ଓ ସୁବର୍ଣ୍ଣରେଖା ଅବବାହିକା ମଧ୍ୟରେ ପ୍ରସାରିତ ବଙ୍ଗ ସୀମା ସଂଲଗ୍ନ ଉର୍ବର କ୍ଷୁଦ୍ର ଏକ ଭୂଖଣ୍ଡ 'ଭୋଗରାଇ' ନାମରେ ପରିଚିତ । ଏହାର ଆୟତନ ଦକ୍ଷିଣରେ ସାଗର ମଧ୍ୟକୁ ଧୀର ମନ୍ଥର ଗତିରେ ବଢ଼ିଚାଲିଛି । ପଶ୍ଚିମପଟ ସୁବର୍ଣ୍ଣରେଖା ବନ୍ୟା ଦ୍ୱାରା କ୍ରମକ୍ଷୟିଷ୍ଣୁ । ଦୀର୍ଘରେ ୨୪କି.ମି. ଏବଂ ଓସାରରେ ୧୬କି.ମି., ମୋଟରେ ୨୫୦ବର୍ଗକି.ମି. ପରିମିତ ଏହି ଆୟତକ୍ଷେତ୍ରଟି ଭୂଆବନ୍ଧ ଦ୍ୱାରା ପ୍ରାୟ ସମଦ୍ୱିଖଣ୍ଡିତ କହିଲେ ଚଳେ । ବଂଗ ସୀମାଠାରୁ ଆରମ୍ଭ ହେଇ ଏହି ସମୁଚ୍ଚ ବନ୍ଧଟି ଭୋଗରାଇର ହୃଦୟ ଭେଦକରି ସୁବର୍ଣ୍ଣରେଖା କୂଳେକୂଳେ ପଶ୍ଚିମ ଦକ୍ଷିଣରୁ ସମୁଦ୍ର ବେଳାଭୂମି ପର୍ଯ୍ୟନ୍ତ ଲମ୍ବିଛି । ମରହଟ୍ଟା କାଳର ଭୋନସଲା ବଂଶର କେହି ଜଣେ ଶାସକଙ୍କ ଦ୍ୱାରା ଏହି ବନ୍ଧ ପ୍ରଥମେ ନିର୍ମିତ ହୋଇ, ଏହାର ନାମ 'ଭୂଆବନ୍ଧ' ହୋଇଥିବାର ପ୍ରବାଦ ଅଛି । ବନ୍ଧର ଉତ୍ତରାଂଶ ପଟୁମାଟି ଦ୍ୱାରା ପରିପୂର୍ଣ୍ଣ ଓ ଉର୍ବର । ଦକ୍ଷିଣାଂଶ ସମୁଦ୍ର ପରିତ୍ୟକ୍ତ, ସାରିସାରି ଅନୁଚ୍ଚ ବାଲୁକାସ୍ତୂପ ଉପରେ ପାନବରଜ, ଗୁଆ, ନଡ଼ିଆ, ଗଦାମ୍ବ ଗଛ ଓ ବାଉଁଶବୁଦା ଦ୍ୱାରା ଘନାକୀର୍ଣ୍ଣ । ଖରଗତି-ପରିବର୍ତ୍ତନଶୀଳ-ସୁବର୍ଣ୍ଣରେଖା ଅବବାହିକାର ନଦୀକୂଳ ସଂଲଗ୍ନ ଯେଉଁ ସ୍ଥାନରେ ବର୍ତ୍ତମାନ ଜଳେଶ୍ୱର ଓ ଭୋଗରାଇ ଭୂଖଣ୍ଡନର ମିଳନ ଦେଖାଯାଏ, ସେହି ସ୍ଥାନରେ ପୂର୍ବେ ସୁବର୍ଣ୍ଣରେଖାର ମୁହାଣ ରହିଥିବା ସମ୍ଭାବନା । ଇତିହାସ ପ୍ରସିଦ୍ଧ ପିପିଲି ବନ୍ଦର ଏହି ନଦୀମୁହାଣରେ ଅବସ୍ଥିତ ଥିଲା । ଖରଦିପିପ୍‌ଲ, ସାହାବନ୍ଦର ଓ ଝାଡ଼ ପିପ୍‌ଲ ପ୍ରଭୃତି ଗ୍ରାମର ଅବସ୍ଥିତି ଏହି ବନ୍ଦରର ସ୍ଥାନ ଓ ଅବସ୍ଥିତି ନିର୍ଦ୍ଦେଶ କରେ । ବନ୍ଦରର ଅନତି ଦୂରରେ ନଦୀ ମୁହାଣ ବାମପାଖେ ପୁରାଣ ପ୍ରସିଦ୍ଧ ଭୋଗରାଇ ବିଜୟ ବାସୁଳୀ ଶକ୍ତିପୀଠ, ଭାରତର ବୃହତ୍ତମ ଶିବଲିଙ୍ଗ ଭୂଷଣ୍ଡେଶ୍ୱର ଓ ରତ୍ନାକର ତୀରବାସୀ ହିରଣ୍ୟଗର୍ଭ ଓ ଜଳଯନ୍ତ୍ର ପ୍ରକାଶିତ ବାବା ଚନ୍ଦନେଶ୍ୱର ଶୈବପୀଠର ଏହି ଅଞ୍ଚଳ ବକ୍ଷରେ ଆବିର୍ଭାବ, ବିଶେଷ ଶୁଭ ଓ ସୌଭାଗ୍ୟ ସୂଚକ । ଏହି ଦେବଦେବୀମାନଙ୍କର ଆବିର୍ଭାବ ସଂପର୍କରେ ନାନାପ୍ରକାର ଚମକପ୍ରଦ ଓ ରହସ୍ୟଜନକ କିମ୍ବଦନ୍ତୀ ଭୋଗରାଇ ଅଞ୍ଚଳରେ ଯୁଗଯୁଗ ଧରି ପ୍ରଚଳିତ । ସେମାନଙ୍କ ଦୈବବଳର ମାହାତ୍ମ୍ୟ ଓ ଜାହିରା, ଉତ୍କଳ ଓ ବଂଗବାସୀଙ୍କ ହୃଦୟରେ ଅମାପ ଓ ସୁଗଭୀର ଭକ୍ତିଭାବ



Digitized by srujanika@gmail.com

ରେଖାପାତ କରିଆସିଛି । ଚୈତ୍ର ଚଡ଼କ ଉତ୍ସବ ଉପଲକ୍ଷେ ଚନ୍ଦନେଶ୍ୱର ମେଳା ଉଭୟ ପ୍ରାନ୍ତର ବୃହତ୍ତମ ମେଳା ରୂପେ ଗଣ୍ୟ । ଠାକୁରଙ୍କର ଦୈବୀଶକ୍ତିର ପ୍ରଭାବ ଅମିତ ଓ ସୁଦୂର ପ୍ରସାରୀ । ଭୂଷଣ୍ଡେଶ୍ୱରଙ୍କ ଆବିର୍ଭାବର ଇତିହାସ ଏବେ ମଧ୍ୟ ରହସ୍ୟାବୃତ ଓ ଅଜ୍ଞାତ ହୋଇରହିଛି । ଏସବୁର ପ୍ରକୃତ ଇତିହାସ ଉଦ୍‌ଘାଟନ ଏକ ଆହ୍ୱାନ ରୂପେ ଏ ଯୁଗର ଇତିହାସ ଓ ଭୂତତ୍ତ୍ୱ ଗବେଷକମାନଙ୍କୁ ହାତଠାରି ଦୃଷ୍ଟି ଆକର୍ଷଣ କରିଆସୁଅଛି । ବନ୍ଦରର ଦକ୍ଷିଣପାଖେ ଗଡ଼ସାହାବନ୍ଦର ଓ ଗଡ଼ ଜାମକୁଣ୍ଡା ଏବଂ ବାମପାଖେ ଗଡ଼ କୀର୍ତ୍ତିଶାଳର ଭଗ୍ନସ୍ତୁପ ମୂକସାକ୍ଷୀ ରୂପେ ଏବେ ମଧ ଦଣ୍ଡାୟମାନ । ସମୁଦ୍ର କୂଳରେ ତତ୍କାଳୀନ ବିତ୍ତଶାଳୀ ସାଧବ, ଜମିଦାର ଏବଂ ଦସ୍ୟୁବୃତ୍ତି କରୁଥିବା ବ୍ୟକ୍ତିମାନେ କାଳକ୍ରମେ ଏହି ଗଡ଼ମାନ ନିର୍ମାଣ କରିଥିବାର ପ୍ରମାଣ ମିଳେ । ଗଡ଼ସାହା ବନ୍ଦର ଏବେ ନଦୀଗର୍ଭରେ ସଂପୂର୍ଣ୍ଣ ଭାବେ ଲୀନ ଏବଂ ଗଡ଼କୀର୍ତ୍ତିଶାଳ ଭୂଗର୍ଭରେ ପୋତି ହୋଇଯାଇଛି ।

ନଦୀମୁହାଣ ବାଟେ ଅନୁପ୍ରବେଶକାରୀ ବହିଃ ଶତ୍ରୁମାନଙ୍କ କବଳରୁ ଦେଶକୁ ରକ୍ଷା କରିବାପାଇଁ ଏହି ଗଡ଼ମାନଙ୍କର ଏବଂ ଗଡ଼ ମନ୍ଦାର ଦୁର୍ଗର ତତ୍କାଳୀନ ଭୂମିକା କିଛି କମ୍ ନୁହେଁ । କଥିତ ଅଛି, ଅଷ୍ଟାଦଶ ଶତାବ୍ଦୀର ଶେଷ ଓ ଊନବିଂଶ ଶତାବ୍ଦୀର ପ୍ରଥମ ଦଶକ କାଳରେ ଇଂରେଜମାନେ ଓ ଅନ୍ୟାନ୍ୟ ଫିରିଙ୍ଗି ଦଳ ବାଣିଜ୍ୟ ସମ୍ଭାର ଧରି ନଦୀ ମୁହାଣ ବାଟେ ସନ୍ତର୍ପଣରେ ପିପିଲି ବନ୍ଦର ଆଡ଼େ ମାଡ଼ି ଆସିବାର ପ୍ରବଳ ଉଦ୍ୟମ କରିଥିଲେ । କିନ୍ତୁ ଗଡ଼ କୀର୍ତ୍ତିଶାଳ, ଗଡ଼ ଜାମକୁଣ୍ଡା ଓ ଗଡ଼ ସାହାବନ୍ଦର ଦୁର୍ଗର ବୀର ସୈନ୍ୟମାନେ ତାଙ୍କୁ ପ୍ରବଳ ପରାକ୍ରମ ସହ ପ୍ରତିରୋଧ କରି ଦୂରକୁ ହଟାଇ ଦେଇଥିଲେ । ବନ୍ଦେମାତରମ୍ ଆନ୍ଦୋଳନ ସମୟରେ ପ୍ରକାଶିତ 'ଦେଶ୍' ପତ୍ରିକାରେ ଏ ସମସ୍ତ ବିଷୟ ଉଲ୍ଲେଖ ଥିବାର ଜଣାଯାଏ । ଏହି ବନ୍ଦରାଞ୍ଚଳ ଓ ଉତ୍ତର ଭୋଗରାଇର ଉର୍ବର ଭୂଖଣ୍ଡକୁ ତତ୍କାଳୀନ ସମୁଦ୍ରର ଲୁଣିପାଣି ପ୍ଲାବନରୁ ରକ୍ଷା କରିବା ପାଇଁ ଭୂଆବନ୍ଧର ସୃଷ୍ଟି ବୋଲି ଐତିହାସିକ ପ୍ରବାଦ ଅଛି । କାଳକ୍ରମେ ସମୁଦ୍ର, ବାଲୁକାସ୍ତୂପ ଓ ଚଡ଼ା ଛାଡ଼ି ଯେତିକି ଦକ୍ଷିଣକୁ ଘୁଞ୍ଚିଘୁଞ୍ଚି ଯାଉଛି, ସେତିକି ଭୋଗରାଇ ଭୂଖଣ୍ଡର କାୟାବିସ୍ତାର ଲାଭ କରିଛି ଏବଂ ନଦୀ ମୁହାଣ ମଧ ସେତିକି ଆଗେଇ ଆଗେଇ ଯାଇଛି । ଏହି ଅଗ୍ରଗତି, ନଦୀର ଗତି ପଥରେ ବହୁ ପରିବର୍ତ୍ତନ ମଧ ଆଣି ଦେଇଛି । ଫଳରେ ପରବର୍ତ୍ତୀ କାଳରେ, ଉତ୍ତର ଦିଗରୁ ସୁବର୍ଣ୍ଣରେଖାର ବନ୍ୟା ଦାଉରୁ ନବଜାତ ଦକ୍ଷିଣ ଭୋଗରାଇ ଭୂଖଣ୍ଡକୁ ରକ୍ଷା କରିବାପାଇଁ, ଭୂଆବନ୍ଧକୁ ଅଧିକ ଦୃଢ଼ ଏବଂ ନଦୀ କୂଳେକୂଳେ ଦକ୍ଷିଣମୁଖୀ କରି କ୍ରମେ ବିସ୍ତୃତ କରିବାର ଆବଶ୍ୟକତା ଦେଖାଯାଇଛି । ଏହି ଐତିହାସିକ ଭୂଆବନ୍ଧ (ଅଧୁନା Bhograi Embankment)ର ଉତ୍ତରାଂଶ ସହିତ, ଦକ୍ଷିଣରେ ସମୁଦ୍ର ସୀମା ପର୍ଯ୍ୟନ୍ତ



Digitized by srujanika@gmail.com

ଅଞ୍ଚଳକୁ ମିଶାଇ, ଭୋଗରାଇର ରାଜନୀତିକ ମାନଚିତ୍ର ଅଙ୍କିତ ହୋଇଛି । ଏହା ମଧ୍ୟ ଖୁବ୍ ବେଶିଦିନର କଥା ନୁହେଁ । ପ୍ରଥମେ ଏହି ଭୋଗରାଇ ଅଞ୍ଚଳ, ଜଳେଶ୍ୱର ଅଞ୍ଚଳ ବାଲିଆପାଳ ଅଞ୍ଚଳ ବସ୍ତା ସର୍କଲର ପୁଲିସ୍ ଓ ରାଜସ୍ୱ ଶାସନ ଅଧୀନରେ ଥିଲା । ପରେପରେ ବାଲିଆପାଳ ଥାନା ଓ ଜଳେଶ୍ୱର ଥାନାର ଉତ୍ପତ୍ତି ହୁଏ ଏବଂ ଭୋଗରାଇ ଅଞ୍ଚଳ ବାଲିଆପାଳ ଥାନା ଅଧୀନରେ ଦୀର୍ଘଦିନ ଧରି ରହିଆସିଥିଲା । ଦକ୍ଷିଣ ଭୋଗରାଇର ଲୋକବସତି ପୂର୍ଣ୍ଣ ବିକାଶ ଲାଭ କଲାପରେ, ଭୋଗରାଇ ତା'ର ସ୍ୱତନ୍ତ୍ର ଅସ୍ତିତ୍ୱ ଲାଭ କରିଛି ।

ଭୋଗରାଇର ନୂତନ ସୃଷ୍ଟି ଏହି ସମୃଦ୍ଧ ଅଞ୍ଚଳଟିକୁ ଉତ୍ତର ପଶ୍ଚିମ ଦିଗରେ ଭୂଆବନ୍ଧ ଦକ୍ଷିଣ ଦିଗରେ ବାବା ଚନ୍ଦନେଶ୍ୱର ଓ ଭୁଷଣ୍ଡେଶ୍ୱର, ଏକ ସୁରକ୍ଷିତ ଅଞ୍ଚଳ ରୂପେ ପ୍ରାକୃତିକ ବିପଦଆପଦରୁ ରକ୍ଷା କରି ଚାଲିଛନ୍ତି । ଅତୀବ ଗୌରବର ବିଷୟ, ଏହି ମହାନ୍ ଦେବାଦେବୀମାନଙ୍କର ଶୁଭାଶିଷ ବଳରେ ଆଜି ଏକବିଂଶ ଶତାବ୍ଦୀ, ରତ୍ନଗର୍ଭା ଭୋଗରାଇ ମା' କୋଳରେ ପ୍ରାତଃ ସ୍ମରଣୀୟ ଦାନବୀର ସ୍ୱର୍ଗତଃ ମଦନମୋହନ ଦାସ, ବିଶ୍ୱବିଶ୍ରୁତ ଐତିହାସିକ ପ୍ରଫେସର ମନ୍ମଥନାଥ ଦାସ, ପ୍ରଖ୍ୟାତ ଆଧ୍ୟାତ୍ମବାଦୀ ଓ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଗାଳ୍ପିକ ଶ୍ରୀଯୁକ୍ତ ମନୋଜ ଦାସ, ସୁସାହିତ୍ୟିକ ଇନ୍ଦୁଭୂଷଣ କର ଓ ମଧୁସୂଦନ ଦାସ, ପ୍ରାବନ୍ଧିକ ଓ ଔପନ୍ୟାସିକ ଡ.ରମାକାନ୍ତ ବେହେରା, ପ୍ରସିଦ୍ଧ ନାଟ୍ୟକାର ଓ ଶିଶୁ ସାହିତ୍ୟିକ ସର୍ବେଶ୍ୱର ପଣ୍ଡା, ବିଶିଷ୍ଟ ନାଟ୍ୟକାର ଡ.କାର୍ତ୍ତିକେଶ୍ୱର ପାତ୍ର, ବିଦଗ୍ଧ କବି ଶ୍ରୀଯୁକ୍ତ ମୁରାରୀମୋହନ ସାହୁ, ଖ୍ୟାତନାମା ଚାରୁଚିତ୍ରଶିଳ୍ପୀ ସର୍ବଶ୍ରୀ ଗୌରାଙ୍ଗ ସୋମ୍, ବୀଣା ସୋମ୍, ଅନନ୍ତ ପଣ୍ଡା ଓ ଅସୀମ ବସୁ ଦକ୍ଷ ଅଭିଜ୍ଞ ପ୍ରଶାସକ, ରାୟବାହାଦୁର ମନ୍ମଥନାଥ ବସୁ, କାଳିକିଙ୍କର ସାମଲ ଗଗନବିହାରୀ ଚାନ୍ଦ, ଓଡ଼ିଶା ବିଖ୍ୟାତ ସଂସ୍କୃତ ଭାଷ୍ୟକାର ପଣ୍ଡିତ ପୁଣ୍ଡରୀକାକ୍ଷ ମିଶ୍ର ପ୍ରଖ୍ୟାତ ସମାଜସେବୀ ଏବଂ ପ୍ରତିଭାଧର ମୃତ୍ୟୁଞ୍ଜୟ ଜେନା, ଜ୍ଞାନେନ୍ଦ୍ରନାଥ ସୋମ୍ ଏବଂ ଗଣେଶ କିଙ୍କର ମହାନ୍ତି, ବିଶିଷ୍ଟ ଆଇନଜ୍ଞ ଚାରୁଚନ୍ଦ୍ର ରାୟ ମହାଶୟ, ବିଶିଷ୍ଟ ସମାଜସେବୀ ତଥା ଆଇନଜୀବୀ ଶଶିକାନ୍ତ ଭଞ୍ଜ, ଆଦର୍ଶ ଶିକ୍ଷାବିତ୍ ରାମନାରାୟଣ ମହାନ୍ତି, ଲାଲମୋହନ ପ୍ରଧାନ, ମଦନ ମୋହନ ମହାନ୍ତି, ରଜନୀକାନ୍ତ କର, ସତୀଶ ଚନ୍ଦ୍ର ରାୟ, ସୁଧୀର କୁମାର ଘୋଷ, ଯଜ୍ଞେଶ୍ୱର ଗିରି, ଜୟକୃଷ୍ଣ ମହାନ୍ତି, ସୁରେନ୍ଦ୍ର ନାଥ ମହାନ୍ତି, ବଳଭଦ୍ର ମହାନ୍ତି, ସିନ୍ଧୁ ବାବାଜୀ, ଲକ୍ଷ୍ମୀଚରଣ ଗିରି, ହୃଦୟଲାଲ ବସୁ, ଯଦୁନାଥ ଦାସ, ରାଧାକାନ୍ତ ମିଶ୍ର, ଉପେନ୍ଦ୍ର ଦତ୍ତ, ଶୀତଳ ଜେନା, ଦୁର୍ଗା ଦାସପଟ୍ଟନାୟକ, ପଞ୍ଚାନନ ଦାସ, ଡ.ଅତୁଲଚନ୍ଦ୍ର ପ୍ରଧାନ, ଡ.କାଳୀକୁମାର ଦାସ, ଭାଗବତ ଦାସ, ସେଖ୍ ଓହାୟେଦ୍, ତରୁଣ କୁମାର ସିଂହ; ଚର୍ମ କାରିଗରୀ ବିଦ୍ୟା ବିଶାରଦ ମଧୁସୂଦନ



Digitized by srujanika@gmail.com

ମହାନ୍ତି, ଝୋଟଶିଳ୍ପ ବିଶାରଦ ସୁରେଶ ଚନ୍ଦ୍ର ଘୋଷ, ନୃତତ୍ତ୍ୱବିତ୍ ହରିଶ ଚନ୍ଦ୍ର ଦାସ, ଖ୍ୟାତନାମା ଯନ୍ତ୍ରୀ ପ୍ରଶାନ୍ତ କୁମାର କର; ଉଚ୍ଚ ତାଲିମପ୍ରାପ୍ତ ଚିକିତ୍ସକ ଡାକ୍ତର ଅସିତ କୁମାର କର ଓ ଦେବବ୍ରତ ପାଣିଗ୍ରାହୀ ପ୍ରମୁଖ ବହୁ ଚିହ୍ନିତ କୃତୀ ସନ୍ତାନଙ୍କୁ ଜନ୍ମଦେଇ କୋଳ ଉଜ୍ଜ୍ୱଳ କରିପାରିଛି ।

ମଧ୍ୟଯୁଗରୁ ଏହି ଭୋଗରାଇ, ଉତ୍କଳର ବହୁ କୀର୍ତ୍ତିମନ୍ତ ରାଜା ମହାରାଜାଙ୍କର ବୀରତ୍ୱର କୀର୍ତ୍ତି ତାର ବକ୍ଷରେ ବହନ କରିଚାଲିଛି । ବର୍ତ୍ତମାନ ଯୁଗର ଭୋଗରାଇ ବାସୀଙ୍କ ପୂର୍ବପୁରୁଷମାନେ ରାଜ୍ୟର ସୀମାନ୍ତରକ୍ଷୀ ଭାବରେ ଅସୀମ ସାହସ ଓ ବୀରତ୍ୱର ସହ ବିଶାଳ ଉତ୍କଳ ସାମ୍ରାଜ୍ୟକୁ ଜାଗ୍ରତପ୍ରହରୀ ରୂପେ ରକ୍ଷା କରିଆସିଛନ୍ତି । ଗଂଗସମ୍ରାଟ ଚୋଡ଼ଗଂଗଦେବ, ଅନଙ୍ଗଭୀମଦେବ, ନରସିଂହ ଦେବ ଏବଂ ସୂର୍ଯ୍ୟବଂଶର କପିଳେନ୍ଦ୍ରଦେବ, ପୁରୁଷୋତ୍ତମ ଦେବ, ପ୍ରତାପରୁଦ୍ର ଦେବ ଓ ମୁକୁନ୍ଦଦେବ ପ୍ରମୁଖ ରାଜାମାନଙ୍କ ରାଜତ୍ୱ କାଳରେ ସୁବର୍ଣ୍ଣରେଖା ପୂର୍ବଭାଗରେ ଗଂଗାକୂଳରେ ରାଇବଣିଆ ଦୁର୍ଗ ଆଗକୁ ଗଡ଼ମନ୍ଦାର ଦୁର୍ଗ ମଧ୍ୟ ନିର୍ମାଣ କରାଇଥିଲେ ଏବଂ ଶତସହସ୍ର ଓଡ଼ିଆ ପାଇକ ସୈନ୍ୟ ଓ ରାଜ କର୍ମଚାରୀମାନଙ୍କୁ ଏସବୁ ଦୁର୍ଗମାନଙ୍କରେ ମୁତୟନ କରାଯାଇଥିଲା । ତତ୍ ସଂଗେସଂଗେ ସେମାନଙ୍କର ରକ୍ଷଣାବେକ୍ଷଣ ଓ ଚଳଣି ସକାଶେ ରସଦ ଆଦି ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଯୋଗାଇବା ପାଇଁ, ଶ୍ରମିକ ଓ ବ୍ୟବସାୟୀ ଗୋଷ୍ଠୀର ବହୁ ସଂଖ୍ୟକ ଉତ୍କଳୀୟ ଲୋକଙ୍କୁ ରାଜ୍ୟର ବିଭିନ୍ନ ସ୍ଥାନରୁ ଅଣାଯାଇ ଏହି ସବୁ ଅଞ୍ଚଳରେ ଥଇଥାନ କରାଯାଇଥିଲା । ଆଜି ଅବଶ୍ୟ ଏହି ଗଡ଼ମନ୍ଦାର ଦୁର୍ଗର ଚିହ୍ନବର୍ଣ୍ଣ ନାହିଁ । କାଳର ଅତଳଗର୍ଭରେ ନିଶ୍ଚିହ୍ନ ହୋଇଯାଇଛି ।

ଦୀର୍ଘକାଳ ଧରି ଉକ୍ତ ସୀମାନ୍ତ ଅଞ୍ଚଳରେ ଏହି ଉତ୍କଳୀୟ ବୀରକୁଳ, କଳିଙ୍ଗ ସାମ୍ରାଜ୍ୟକୁ ସୁରକ୍ଷା କରି ଆସିଲା ପରେ ଭୋଗରାଇ, ରାମନଗର ସମୁଦ୍ରତଟଠାରୁ ଆରମ୍ଭ କରି ମୋହନପୁର, ଏଗ୍ରା, ପଟାସପୁର, ଦାଁତନ, ଭାଗବାନପୁର ପ୍ରଭୃତି ସୀମାନ୍ତ ଅଞ୍ଚଳରେ ସେମାନଙ୍କର ବଂଶଧରମାନେ କ୍ରମେ ସ୍ଥାୟୀ ବସତି ସ୍ଥାପନ କଲେ ଏବଂ ସ୍ଥାୟୀ ପ୍ରଜାଭାବରେ ଭୂମି କର୍ଷଣ କଲେ । କଣବା କମର୍ଦ୍ଦା ଇଲାକା ତତ୍କାଳୀନ ବାଣିଜ୍ୟ ବ୍ୟବସାୟର କେନ୍ଦ୍ରରୂପେ କାର୍ଯ୍ୟ କରୁଥିଲା । ଏଠାରେ ଏକ ଖଜଣାଖାନା ମଧ୍ୟ ରହିଥିଲା । ପରବର୍ତ୍ତୀ ସମୟରେ ଏହି ଅଞ୍ଚଳ ବୀରକୁଳ ନାମରେ ଖ୍ୟାତି ଅର୍ଜନ କରିଥିବାର ଐତିହାସିକ ପ୍ରବାଦ ରହିଛି । ଦିନେ ସମଗ୍ର ଭୋଗରାଇ ଅଞ୍ଚଳ ଏହି ବୀରକୁଳ ପ୍ରଗଣାର ଅନ୍ତର୍ଭୁକ୍ତ ଥିଲା । ସମଗ୍ର ଭୋଗରାଇ ଖଣ୍ଡର ପ୍ରଧାନ ଅର୍ଥକାରୀ ଫସଲ ବୀରକୁଳି ପାନ ସାରା ଭାରତରେ ଖ୍ୟାତି ଅର୍ଜନ କରିଛି ।



Digitized by srujanika@gmail.com

ଉତ୍ତର ଓ ପୂର୍ବ ଦିଗରୁ ମୋଗଲ ଓ ପଠାଣ ଆକ୍ରମଣ ବିରୁଦ୍ଧରେ ପ୍ରତିରକ୍ଷା ଓ ପ୍ରତିରୋଧ, ଉତ୍କଳ ସୀମାନ୍ତରେ ଗଢ଼ି ତୋଳିବା ସକାଶେ ଏହି ଦୁର୍ଗ ଓ ଗଡ଼ମାନ ବିଭିନ୍ନ ସମୟରେ ନିର୍ମାଣ କରାଯାଇଥିଲା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଉତ୍କଳଖଣ୍ଡ ଇଂରେଜ ଅଧିକୃତ ହେବା ପରଠାରୁ ଏସବୁର ଆବଶ୍ୟକତା ଆଉ ଦେଖାଯାଇ ନଥିଲା । ଓଡ଼ିଆ ରାଜାମାନଙ୍କର ରାଜୁତି ଲୋପ ହେବା ସଂଗେସଂଗେ ଏହି ଦୁର୍ଗ ଗଡ଼ମାନଙ୍କର ଅସ୍ତିତ୍ୱ ମଧ୍ୟ ଲୋପ ପାଇଗଲା । ପରେ ଇଂରେଜ ଜାତି ନିଜର ଶାସନଗତ ସୁବିଧା ଓ ପ୍ରୟୋଜନ ଅନୁସାରେ ଗଂଗାନଦୀ ପର୍ଯ୍ୟନ୍ତ ବିସ୍ତୃତ ଓଡ଼ିଶାର କଳେବର କାଟି ଖର୍ବକରି ବର୍ତ୍ତମାନ ଓଡ଼ିଶାର ମାନଚିତ୍ର ଅଙ୍କନ କଲେ ଏବଂ ବିସ୍ତୀର୍ଣ୍ଣ ସୀମାନ୍ତ ଅଞ୍ଚଳକୁ ଦ୍ୱିଖଣ୍ଡିତ କରି ସିଂହଭାଗ ପଡ଼ୋଶୀ ବଂଗଳା ସହ ମିଶାଇ ଦେଲେ । କିନ୍ତୁ ବହୁ ପରିବର୍ତ୍ତନ ଓ ବିଭାଜନ ସତ୍ତ୍ୱେ କେବଳ ଭୋଗରାଇ ଉପାନ୍ତଖଣ୍ଡ ଏହି ସୀମାନ୍ତବାସୀ ବୀରକୁଳର ବୀରତ୍ୱର ଗାରିମାର ଚିହ୍ନରୂପେ ବୀରକୁଳ ନାମ ଆଜିସୁଦ୍ଧା ବହନ କରି ଚାଲିଛି । ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଭାରତର ସ୍ୱାଧୀନତା ସଂଗ୍ରାମରେ ବଂଗ-ଓଡ଼ିଶାର ଏହି ସୀମାନ୍ତ ଅଞ୍ଚଳର ବୀରକୁଳ ବଂଶଧରମାନଙ୍କର ନିରବଚ୍ଛିନ୍ନ ଜୀବନପଣ ସଂଗ୍ରାମର ଇତିହାସ ଆଜି ସେମାନଙ୍କର ଗୌରବମୟ ଅତୀତର କଥା ମନେ ପକାଇଦିଏ ।

ସୁବର୍ଣ୍ଣରେଖା ଓ କାଳିଆଘାଇ ନଦୀ ମଧ୍ୟରେ ବିସ୍ତୃତ ପୂର୍ବ ସୀମାନ୍ତ ଅଞ୍ଚଳରେ ତତ୍କାଳୀନ ବସତି ବାନ୍ଧି ରହିଆସିଥିବା ଅଧିବାସୀମାନଙ୍କର ପଦବୀ (Surname) ଓ ବର୍ଣ୍ଣ ପରିଚିତି ଆଜି ଗଭୀର ଭାବେ ଅନୁଧ୍ୟାନ ଓ ବିଚାରକଲେ ଏସବୁ ଇତିହାସର ବହୁ ପ୍ରମାଣ ମିଳେ । ଏମାନେ ଏଠାରେ ଆଦିମ ଅଧିବାସୀ ଭାବରେ କେବେହେଁ ନଥିଲେ । ପରବର୍ତ୍ତୀକାଳରେ ରାଜ କର୍ମରତ ବୀରପାଇକ ଓ ଖଣ୍ଡାୟତ ପ୍ରଜାମାନେ ବଂଶାନୁକ୍ରମେ କୃଷିକର୍ମରେ ନିଯୁକ୍ତ ରହି 'ରାଜୁ' ନାମରେ ପରିଚିତ ବୋଲି ପ୍ରବାଦ ଅଛି । ସେଥିପାଇଁ ଏହି ରାଜୁ ସଂପ୍ରଦାୟର ପରିବାରବର୍ଗ, ପୂର୍ବ ଓଡ଼ିଶାର ସୀମାନ୍ତ ଅଞ୍ଚଳରେ ଆଜି ଅଧିକ ସଂଖ୍ୟାରେ ବସବାସ କରିବାର ଦେଖାଯାଆନ୍ତି । ଏହି ସଂପ୍ରଦାୟର ରାଜୁ ନାମକରଣ ପଛରେ ଯଥେଷ୍ଟ ଯୁକ୍ତି ଓ ଯଥାର୍ଥତା ରହିଛି । ରାଜୁ ରାଜା ଶବ୍ଦର ଏକାନ୍ତ ଅନ୍ତରଂଗ ଓ ମଧୁର ଡାକ ବା ସମ୍ବୋଧନ ମାତ୍ର । ରାଜ ସଂପର୍କୀୟ, ରାଜଭକ୍ତ, ରାଜାନୁରକ୍ତ, ରାଜାନୁଗ୍ରହିତ ଓ ରାଜକର୍ମରେ ନିଯୁକ୍ତ, ଏହି ବୀରମାନଙ୍କର ବଂଶଧରମାନେ କାଳକ୍ରମେ ରାଜୁ ନାମରେ ଅଭିହିତ ହୋଇଥିବାର ଜଣାଯାଏ । କେତେକ ମତପୋଷଣ କରନ୍ତି, କଳାପାହାଡ଼ ଦ୍ୱାରା ଓଡ଼ିଶା ଧ୍ୱଂସ ହେବାପରେ ଆକବରଙ୍କ ନିର୍ଦ୍ଦେଶକ୍ରମେ ମାନସିଂହ ରାଜପୁତ ସୈନ୍ୟ ସହ ଓଡ଼ିଶା ଆଗମନ କଲେ ଏବଂ ବନ୍ଧୁ ରାଜ୍ୟ ଓଡ଼ିଶାକୁ ପୂର୍ବପଟରୁ



Digitized by srujanika@gmail.com

ମୁସଲମାନ ଆକ୍ରମଣରୁ ରକ୍ଷା କରିବାପାଇଁ ସୁବର୍ଣ୍ଣରେଖାର ଉଭୟ ପାର୍ଶ୍ୱରେ ରାଜପୁତ ସୈନ୍ୟମାନଙ୍କୁ ବିଭିନ୍ନ ଦୁର୍ଗ, ଗଡ଼ ଓ ଜାଗିରି ଦେଇ ବସତି କରାଇଥିଲେ । ରାଇବଣିଆର ବୈରୀଗଞ୍ଜନ ମାନ୍ଧାତା ଏହି ରାଜପୁତ ସୈନ୍ୟମାନଙ୍କ ମୁଖ୍ୟ ଥିଲେ । କାଳକ୍ରମେ ସେମାନେ ଆଞ୍ଚଳିକ ଭାଷାରେ ରାଜୁ ନାମରେ କଥିତ ହେଲେ ଏବଂ ଯୁଦ୍ଧ ବିଗ୍ରହ ଲୋପ ପାଇବାରୁ କୁଳଧର୍ମ ଭୁଲି କୃଷି, ବାଣିଜ୍ୟ ବୃତ୍ତି ଅବଲମ୍ବନ କଲେ । ସେମାନେ ଏହି ଅଞ୍ଚଳରେ ସବୁଠୁ ପ୍ରଭାବଶାଳୀ ଜାତି ଭାବେ ପ୍ରାଧାନ୍ୟ ଲାଭ କଲେ ।

ବୀରକୁଳର ଏହି ପ୍ରିୟ ସୁନାମାଟିର ଶୁଭ, ସଫଳ ନାମ ଭୋଗରାଇ ବୋଲି କେବେ କିଏ ରଖିଥିଲେ ସଠିକ୍ କହିହେବ ନାହିଁ । କିନ୍ତୁ ଭୋଗରାଇବାସୀଙ୍କ ବୁକୁରେ ଏହି ଅମୀୟଭରା ସାର୍ଥକ ନାମ, ଅସୀମ ପ୍ରୀତି ଓ ଅହଂକାର ଆଣିଦିଏ । ଅତୀତରେ ଭୋଗରାଇର ସନ୍ତାନମାନେ ଅତିଶୟ ଭୋଗବିଳାସରେ ଦିନ କାଟୁଥିଲେ ବୋଲି ସେମାନଙ୍କର ବସତିର ନାମ ଭୋଗରାଇ ହୋଇଛି ବୋଲି କେହିକେହି କହିଥାଆନ୍ତି । ଅନ୍ୟ କେତେକ, ଘନଶ୍ୟାମ-ଛାୟାବୃତ-ସ୍ଥାନଟିକୁ ରାଇ ବା ଲକ୍ଷ୍ମୀଙ୍କର ଭୋଗସ୍ଥଳୀ ରୂପେ ଆଖ୍ୟାୟିତ କରିଥାଆନ୍ତି । କିନ୍ତୁ ଇତିହାସ କହେ, ଭୋଗରାଇର ଅଧିଷ୍ଠାତ୍ରୀ ଦେବୀ 'ବିଜୟବାସୁଳୀ'ଙ୍କ ଅକଳନ୍ତି ଭୋଗରାଶିରୁ ହିଁ ଭୋଗରାଇ ନାମର ଉଦ୍ଭବ ହୋଇଛି । ଯିଏ ଯାହା କୁହନ୍ତୁ ନା କାହିଁକି, ଏହାର ପୂର୍ବସୁରୀମାନେ ଯେ ବିଶେଷ ଶ୍ରୀ ସମୃଦ୍ଧିମନ୍ତ ଥିଲେ, ଏଥିରେ ସନ୍ଦେହ ନାହିଁ । ବଂଗ-ଉତ୍କଳ ସୀମାରେ ଚିହ୍ନିତ ଏହି ଉପାନ୍ତଖଣ୍ଡରେ କେହି ଅଧିବାସୀ ବଂଗ କିମ୍ବା ଉତ୍କଳର ଗୌରବମୟ ଅତୀତକୁ ଗଢ଼ିବାରେ କେତେଦୂର ସାହାଯ୍ୟ କରିଥିବେ କି ନାହିଁ ତାହା ଆଜି ସ୍ପଷ୍ଟ ନୁହେଁ, କିନ୍ତୁ ବଂଗ ଉତ୍କଳର ମିଳିତ ସଂସ୍କୃତିର ପ୍ରଭାବ, ଭୋଗରାଇର ଜନଜୀବନ ଉପରେ ଯେ ଗଭୀର ରେଖାଅଙ୍କନ କରିପାରିଛି, ତାହା ନିଃସନ୍ଦେହ । ତେଣୁ ଭୋଗରାଇରେ ଭାରତର ସ୍ୱାଧୀନତା ଆନ୍ଦୋଳନର ତତ୍କାଳୀନ ଧାରା ବଂଗଉତ୍କଳର ମିଳିତଧାରା କହିଲେ ଅତ୍ୟୁକ୍ତି ହେବନାହିଁ ଏବଂ ତାର ପ୍ରମାଣ ଅନୁସନ୍ଧାନର ଅପେକ୍ଷା ରଖେନାହିଁ ।





Digitized by srujanika@gmail.com

# ରାଜନୀତିକ ପରିଚିତି

ବାଲେଶ୍ୱର ସହରଠାରୁ ପ୍ରାୟ ପଚାଶ ମାଇଲ ଦୂରରେ, ଦକ୍ଷିଣ-ପୂର୍ବ ଦିଗରେ ପଶ୍ଚିମବଂଗ ସୀମାକୁ ଲାଗି ଭୋଗରାଇ ଅବସ୍ଥିତ । ଏହାର ପୂର୍ବରେ ମେଦିନୀପୁର ଜିଲ୍ଲା, ପଶ୍ଚିମରେ ସୁବର୍ଣ୍ଣରେଖା ନଦୀ ଓ ବାଲିଆପାଳ ଥାନା, ଉତ୍ତରରେ ଜଳେଶ୍ୱର ଥାନା ଏବଂ ଦକ୍ଷିଣରେ ବଙ୍ଗୋପସାଗର ରହିଛି । ମୋଟ ଇଲାକାର କ୍ଷେତ୍ରଫଳ ପ୍ରାୟ ୩୧ ବର୍ଗମାଇଲ ପରିମିତ ହେବ । ୧୯୬୦ ସାଲରୁ ଏହା ଗ୍ରାମଗୋଷ୍ଠୀ ଯୋଜନାର ଅନ୍ତର୍ଭୁକ୍ତ ହୋଇ ଭୋଗରାଇ ବ୍ଲକ୍ ନାମରେ ଅଭିହିତ ହୋଇଛି । ଏହି ବ୍ଲକ୍ ଅଧୀନରେ ଥିବା ୩୫୬ଖଣ୍ଡ ରାଜସ୍ୱଗ୍ରାମକୁ ୩୧ଗୋଟି ଗ୍ରାମ ପଞ୍ଚାୟତରେ ବିଭକ୍ତ କରାଯାଇଛି । ଏହାର ସ୍ଥଳଭୂମିର ପରିମାଣ ୩୩୩୬୫ ହେକ୍ଟର ବୋଲି ଜଣାଯାଇଛି । ଭୋଗରାଇ ବ୍ଲକ୍ ଏବଂ ପୁଲିସ୍ ଥାନାର କେନ୍ଦ୍ର ଅଫିସ୍ ଜଳେଶ୍ୱରପୁର ଗ୍ରାମରେ ଅବସ୍ଥିତ । ଏଠାରେ ଭୋଗରାଇ ମହାବିଦ୍ୟାଳୟ, ସବ୍ ରେଜେଷ୍ଟ୍ରି ଅଫିସ୍, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ବିଜୁଳି ଶକ୍ତି, ପୋଷ୍ଟାଲ୍, ଟେଲିଫୋନ୍ ଓ ପଶୁପାଳନ ଆଦି ବିଭାଗୀୟ ଶାଖା ଅଫିସ୍‌ମାନ ମଧ୍ୟ ଅବସ୍ଥିତ । ବିଖ୍ୟାତ ଶ୍ୟାମସୁନ୍ଦର ସଂସ୍କୃତ ମହାବିଦ୍ୟାଳୟ ଭୋଗରାଇ ଗ୍ରାମରେ ଅବସ୍ଥିତ ।

ଭୂଆବନ୍ଧ ସାଂଗକୁ ଓଡ଼ିଶା କୋଷ୍ଟକେନାଲ ପୂର୍ବରେ ମେଦିନୀପୁର ସୀମାରୁ ବାହାରି ସମାନ୍ତରାଳ ହୋଇ ଲମ୍ବି ସୁବର୍ଣ୍ଣରେଖାରେ ମିଶିଛି । ଏହାର ଲମ୍ବ ପ୍ରାୟ ୧୬କି.ମି. ହେବ । ୧୮୬୬ ସାଲରେ ନ'ଅଙ୍କ ଦୁର୍ଭିକ୍ଷ ସମୟରେ ଓଡ଼ିଶା ଖଣ୍ଡର ଛୋଟଲାଟ (କମିଶନର) ରେଭେନ୍‌ସା ସାହେବ ରାଜ୍ୟବ୍ୟାପି ଏହି କେନାଲ୍ ଟେଷ୍ଟ ରିଲିଫ୍ କାର୍ଯ୍ୟ ରୂପେ ଖନନ କରିଥିଲେ । ଜଳେଶ୍ୱର-ଚନ୍ଦନେଶ୍ୱର ପ୍ରଧାନ ରାସ୍ତାର (M.D.R. No.1) କୋଡ଼ିଏ କି.ମି. ଲମ୍ବ ଏକ ଅଂଶ ଉକ୍ତ ଜଳେଶ୍ୱରପୁର ମଧ୍ୟଦେଇ ଗତି କରିଛି । ଏହା ବ୍ୟତୀତ ଚନ୍ଦନେଶ୍ୱର ଓ କମର୍ଦ୍ଦାଠାରେ ଦୁଇଟି ମହାବିଦ୍ୟାଳୟ ମଧ୍ୟ ରହିଛି । ବ୍ଲକ୍ ମଧ୍ୟରେ ଆଠଟି ଆଲୋପାଥିକ୍, ଦୁଇଟି ହୋମିଓପାଥିକ୍ ଏବଂ ଗୋଟିଏ କବିରାଜଖାନା ପ୍ରତିଷ୍ଠିତ ହୋଇପାରିଛି । ୟୁକୋ, ୟୁ.ବି.ଆଇ, କେନ୍ଦ୍ର



Digitized by srujanika@gmail.com

ସମବାୟ ଏବଂ ଗ୍ରାମ୍ୟବ୍ୟାଙ୍କର ଶାଖାମାନ ବିଭିନ୍ନ ସ୍ଥାନରେ ଖୋଲାଯାଇଛି । ଭୋଗରାଇର ଅଧିକାଂଶ ଗ୍ରାମକୁ ବିଜୁଳି ଶକ୍ତି ଯୋଗାଇ ଦିଆଯାଇଛି । ୧୯୩୭ ମସିହାଠାରୁ ୫୨ ମସିହା ପର୍ଯ୍ୟନ୍ତ ଭୋଗରାଇ ଥାନା ଉତ୍ତର ବାଲେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀର ଅନ୍ତର୍ଭୁକ୍ତ ଥିଲା ୧୯୫୨ଠାରୁ ୫୭ ଯାଏ ଦକ୍ଷିଣ ଭୋଗରାଇ ଓ ବାଲିଆପାଳ ମିଶି ଭୋଗରାଇ ନିର୍ବାଚନ ମଣ୍ଡଳୀ ରହିଥିଲା । ୧୯୫୭ଠାରୁ ୭୨ଯାଏ ସମଗ୍ର ଭୋଗରାଇ ଓ ବାଲିଆପାଳର ନଦୀକୂଳ ସଂଲଗ୍ନ ଗ୍ରାମ ପଞ୍ଚାୟତମାନ ମିଶି ଭୋଗରାଇ ନିର୍ବାଚନ ମଣ୍ଡଳୀ ଗଠିତ ହୋଇଥିଲା । ୧୯୭୨ ନିର୍ବାଚନରେ ଏହି ନିର୍ବାଚନ ମଣ୍ଡଳୀ ପୁନର୍ଗଠିତ ହୋଇ ବର୍ତ୍ତମାନର ଭୋଗରାଇ ନିର୍ବାଚନ ମଣ୍ଡଳୀ ରୂପ ଗ୍ରହଣ କରିଛି ।

ସୁବର୍ଣ୍ଣରେଖା, ଚିତ୍ରରେଖା, ଗୋଛିନ୍ଦା, ଗୁଆଶୂଳ, ଖାଳଜୋଡ଼ି, କିମ୍ବାରି, ଶିମୂଳି ଏବଂ ଭ୍ରିକିଟୀ ଆଦି ନଦୀ ଓ ଶାଖାନଦୀମାନ ଏହି ଅଞ୍ଚଳ ଦେଇ ପ୍ରବାହିତ । ଦୁଇଟି ରାଜ୍ୟର ସୀମାନ୍ତରେ ଭୋଗରାଇ ଅବସ୍ଥିତ ଥିବାରୁ ଏବଂ ସମୁଦ୍ର ଓ ସୁବର୍ଣ୍ଣରେଖା ନଦୀ ଦ୍ୱାରା ବେଷ୍ଟିତ ହୋଇଥିବାରୁ ଅଞ୍ଚଳଟି ସଦାସର୍ବଦା ସମସ୍ୟା ସଂକୁଳ ଏବଂ ପ୍ରାକୃତିକ ବିପଦଗ୍ରସ୍ତ ଅଟେ ।

ଭୋଗରାଇ ଅଞ୍ଚଳ, ରାଜୁ ସଂପ୍ରଦାୟର ଲୋକମାନଙ୍କ ଦ୍ୱାରା ବିଶେଷ ଭାବରେ ଅଧ୍ୟୁଷିତ । ଧାନ ଓ ପାନ ଭୋଗରାଇର ପ୍ରଧାନ ଉତ୍ପନ୍ନ ଫସଲ । ଏହାଛଡ଼ା କାଜୁବାଦାମ, ଚିନାବାଦାମ, ଗୁଆ ଓ ନଡ଼ିଆ ମଧ୍ୟ ଉତ୍ପନ୍ନ ହୁଏ । ଦଶ କି.ମି. ଲମ୍ବ ଭୋଗରାଇ ଉପକୂଳରେ ଯେଉଁ ଲୁଣିମାଛ ଆମଦାନୀ କରାଯାଏ, ତାର ପରିମାଣ କିଛି କମ୍ ନୁହେଁ । ଏଠା ଲୋକଙ୍କର ପ୍ରଧାନ ଜୀବିକା କୃଷି । ଦକ୍ଷିଣାଞ୍ଚଳ ଅପେକ୍ଷା ଭୋଗରାଇର ବନ୍ୟାଗ୍ରସ୍ତ ଅଞ୍ଚଳ ଉତ୍ତରାଂଶରେ ଘରତଳି ସବୁ ସାଧାରଣ ବନ୍ୟାସ୍ଥଳଠାରୁ ଯଥେଷ୍ଟ ଉଚ୍ଚରେ ଅବସ୍ଥିତ । ଗଭୀର ନଳକୂପ ସାହାଯ୍ୟରେ ଏ ଅଞ୍ଚଳରେ ଉଠା ଜଳସେଚନର ବ୍ୟବସ୍ଥା ନିଆଯାଇଛି । ବନ୍ୟା ଏବଂ ଘୂର୍ଣ୍ଣିବାତ୍ୟା ଦ୍ୱାରା ଏହି ଅଞ୍ଚଳ ପ୍ରାୟ ବିପର୍ଯ୍ୟସ୍ତ ହୁଏ ।

ଭୋଗରାଇର ଜନସାଧାରଣ ଅଧିକାଂଶ ସଂଖ୍ୟାରେ ଶିକ୍ଷିତ ଏବଂ ବିବେକ ବୁଦ୍ଧି ସଂପନ୍ନ । ଏମାନଙ୍କର ରାଜନୀତିକ, ସାଂସ୍କୃତିକ ଏବଂ ସାମାଜିକ ଚେତନା ଓ ଚିନ୍ତାଧାରା ଉନ୍ନତ ଏବଂ ଆଚରଣ ପରିମାର୍ଜିତ ତଥା ରୁଚିସଂପନ୍ନ । ଭୋଗରାଇବାସୀ ସ୍ୱଭାବତଃ ଅତିଥିପରାୟଣ । ଏମାନେ ସାହସୀ ଏବଂ କଳାପ୍ରେମୀ, ପରିଶ୍ରମୀ ଏବଂ



Digitized by srujanika@gmail.com

ଆତ୍ମନିର୍ଭରଶୀଳ । ସେମାନେ ସଂଗ୍ରାମ ପ୍ରିୟ । ଜନସଂଖ୍ୟା ଅନୁପାତରେ ଚାଷଜମିର ପରିମାଣ ଭୋଗରାଇରେ ଊଣା । ଏଣୁ କିଛି ସଂଖ୍ୟକ ଲୋକ ଜୀବିକା ଅର୍ଜନ ପାଇଁ କଲିକତା ଏବଂ ରାଉରକେଲାରେ ନିଯୁକ୍ତି ନେବାକୁ ବାଧ ହୋଇଛନ୍ତି । ଆଉ କିଛି ଅଂଶ ବ୍ୟବସାୟ ବାଣିଜ୍ୟ କରି ଚଳିଥାନ୍ତି ।

ଭୋଗରାଇର ସ୍ୱାକ୍ଷର ଓ ଶିକ୍ଷିତ ବେକାର ସଂଖ୍ୟା ଅନ୍ୟାନ୍ୟ ଅଚଂଳ ଅପେକ୍ଷା ଅଧିକ । ପାନୀୟ ଜଳର ବ୍ୟବସ୍ଥା ଏଠାରେ ସବୁଠାରୁ ନୈରାଶ୍ୟଜନକ ଏବଂ ତାର ପରିଚାଳନା ସନ୍ତୋଷଜନକ ନୁହେଁ । ପାନ ଏଠାକାର ପ୍ରଧାନ ଅର୍ଥକରୀ ଫସଲ । ସମୁଦ୍ର ଉପକୂଳ ଅଧୁନା ଝାଉଁଜଂଗଲ ଦ୍ୱାରା ବେଷ୍ଟିତ । ଉତ୍ତରାଂଶରେ ଗ୍ରାମଗୁଡ଼ିକ ବିଚ୍ଛିନ୍ନ, କିନ୍ତୁ ଦକ୍ଷିଣାଂଶରେ ଗ୍ରାମମାନ ପରସ୍ପର ସଂଲଗ୍ନ, ନିରବଚ୍ଛିନ୍ନ ଏବଂ ସମାନ୍ତରାଳଭାବେ ଅବସ୍ଥିତ ଘନ ଜନବସତି ସଂପନ୍ନ । ଭୋଗରାଇର ମା' ଭଉଣୀମାନେ ଯଥେଷ୍ଟ ପରିମାଣରେ ସ୍ୱାକ୍ଷର ଏବଂ ଅଗ୍ରସର । ଗ୍ରାମଗୁଡ଼ିକର ପରିବେଶ ସୁନ୍ଦର ଏବଂ ସ୍ୱାସ୍ଥ୍ୟ ସମ୍ମତ । ମୋଟ ଉପରେ ଭୋଗରାଇବାସୀ ରାଜ୍ୟରେ ଯେକୌଣସି ଅଞ୍ଚଳର ସହ ବିଦ୍ୟାବୁଦ୍ଧି, ଉନ୍ନତ ରୁଚି, ବ୍ୟବହାର, ଆଧ୍ୟାତ୍ମ ଭାବଧାରା ତଥା ଆଧୁନିକ ଚଳଣି ଆଦିରେ ସମକକ୍ଷ । ଆପଣାର ଐତିହ୍ୟ ଓ ପରମ୍ପରା ସହିତ ସମତାଳ ରଖି ସ୍ଥିତିକୁ ଦୃଢ଼ କରି ରଖିବା, ଆତ୍ମମର୍ଯ୍ୟାଦା ଓ ଅଧିକାର କ୍ଷୁଣ୍ଣ ହେବାକୁ ନଦେବାରେ ଭୋଗରାଇ ଜନତା ସଦା ଜାଗ୍ରତ । ବହିରାଗତ ବନ୍ଧୁ, ଅତିଥି, ରାଜକର୍ମଚାରୀ ଏବଂ ଯେକେହି ଜୀବନରେ ଥରେ ଭୋଗରାଇ ମା'ର ସ୍ନେହ କୋମଳ ହାତର ସ୍ପର୍ଶ ପାଇଛି, ସରସ ପ୍ରାଣର ସ୍ପନ୍ଦନ ଅନୁଭବ କରିଛି, ସେ ଭୋଗରାଇକୁ କେବେ ଭୁଲିପାରି ନାହିଁ ।

କେଉଁ ସୁଦୀର୍ଘ କାଳରୁ ଭୋଗରାଇ ପରିବାରବର୍ଗ ବଂଗ-ଉତ୍କଳ ଉଭୟ ପ୍ରାନ୍ତର ଆତ୍ମୀୟମାନଙ୍କ ସହ ବୈବାହିକ ବନ୍ଧନରେ ବିଶେଷ ଭାବରେ ଆବଦ୍ଧ ହେବାକୁ ଭଲପାଇ ଆସିଛନ୍ତି । ଏଠାକାର ସାମାଜିକତା, ସ୍ୱତନ୍ତ୍ର ଓ ଅନନ୍ୟ । ବଂଗୀୟ ସାହିତ୍ୟ-ସଂସ୍କୃତି ଓ ଭାଷାର ପ୍ରଭାବ ଏବେବି ଭୋଗରାଇ ମାଟିରେ କିଛି ପରିମାଣରେ ସମତ୍ୱ ସହ ବିରାଜ କରୁଛି, ତଥାପି ଓଡ଼ିଆ ହିସାବରେ ଏମାନଙ୍କର ଗର୍ବ ଗୌରବର ସୀମା ନାହିଁ ।

ନଡ଼ିଆ, କାଜୁବାଦାମ, ମସିଣା କାଠି, ଚିନାବାଦାମ ପ୍ରଭୃତି କଞ୍ଚାମାଲ ଯଥେଷ୍ଟ ପରିମାଣରେ ଏ ଅଞ୍ଚଳରେ ଜାତ ହେଉଥିଲେ ମଧ୍ୟ କୌଣସି ଏକ ଶିଳ୍ପ ଉଦ୍ୟୋଗ ସକାଶେ ସରକାରୀ ପ୍ରଚେଷ୍ଟା ଏଯାବତ୍ ଦୁର୍ଭାଗ୍ୟ କ୍ରମେ ଭୋଗରାଇରେ ଦେଖାଗଲା



Digitized by srujanika@gmail.com

ନାହିଁ । ସଡ଼କ ଯୋଗାଯୋଗ, ପାନୀୟଜଳ ଓ ଜଳସେଚନ ବ୍ୟବସ୍ଥା ଆଦିରେ ଆଜି ସୁଦ୍ଧା ଅଞ୍ଚଳଟି ଅନୁନ୍ନତ ଓ ଅବହେଳିତ ଅବସ୍ଥାରେ ଅଛି । ଭୋଗରାଇର ଦକ୍ଷିଣାଂଶକୁ ଉଠା ଜଳସେଚନର କାର୍ଯ୍ୟକ୍ରମ ଏଯାଏଁ ଛୁଇଁପାରି ନାହିଁ । ବର୍ଷା ଓ ବନ୍ୟାପାଣି ନିଷ୍କାସନ ଜନିତ ଅବ୍ୟବସ୍ଥା ହେତୁ, କୃଷି ଉତ୍ପାଦନ କାର୍ଯ୍ୟରେ ଲୋକେ ବାରମ୍ବାର କ୍ଷତିଗ୍ରସ୍ତ ହେଉଛନ୍ତି ।

ଓଡ଼ିଶାର ଏକ ସୁଦୂର ଉପାନ୍ତରେ ଭୋଗରାଇ ଅବସ୍ଥିତ ଥିବାରୁ, ଅନେକ ସମୟରେ କର୍ତ୍ତୃପକ୍ଷଙ୍କ ସ୍ୱାଭାବିକ ଦୃଷ୍ଟି ଏଠାରେ ପଡ଼େନାହିଁ । ଏ ଅଞ୍ଚଳ ଏକ ଆଂଶିକ ଉପେକ୍ଷିତ ଅଞ୍ଚଳ ରୂପେ ଗଣ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଏହିସବୁ ଅବହେଳା, ଅଭାବ ଓ ଅସୁବିଧା ସତ୍ତ୍ୱେ ଭୋଗରାଇର ଜନଜୀବନ ଉନ୍ନତ, ପ୍ରାଣବନ୍ତ ଓ ଗତିଶୀଳ ହୋଇ ଆପଣାଛାଏଁ ବହି ଚାଲିଛି ଏବଂ ଚାଲିବ, ଏ ଆତ୍ମପ୍ରତ୍ୟୟ ଭୋଗରାଇବାସୀଙ୍କର ଅବଶ୍ୟ ରହିଛି ।





Digitized by srujanika@gmail.com

# ଇତିହାସର ଆଇନାରେ

**ବିଜୟ ବାସୁଳୀ :**

ସୁବର୍ଣ୍ଣରେଖା ପିପିଲି ବନ୍ଦରାଞ୍ଚଳ ପରିତ୍ୟାଗ କରି ସମୁଦ୍ରର ବେଳାଭୂମି ସହିତ କ୍ରମେ ଦକ୍ଷିଣାଭିମୁଖୀ ହୋଇ ଅଗ୍ରସର ହେଲାବେଳେ ଭୋଗରାଇ ନାମକ ଜନପଦ ଗଢ଼ି ଉଠିଥିଲା । କିମ୍ବଦନ୍ତୀ ଅଛି, ମୋଗଲ ରାଜୁତି କାଳରେ କେହି ଜଣେ ଉତ୍କଳୀୟ ଶକ୍ତିସାଧକ ଦେବୀ ବିଶାଳାକ୍ଷୀଙ୍କର ଖଡ଼୍ଗ ଖର୍ପର ଧାରିଣୀ ଏକ ପୂର୍ଣ୍ଣାବୟବ ଦାରୁମୂର୍ତ୍ତି ଏହି ଗ୍ରାମରେ ସ୍ଥାପନ କରି ଅର୍ଚ୍ଚନା ଓ ସାଧନା କରୁଥିଲେ । କିଛି ଲୋକଙ୍କର ମତ, କଳିଙ୍ଗର କେହି ଜଣେ ବିଜୟୀ ରାଜା – ତାଙ୍କ ବିଜୟର ସ୍ମୃତିରୂପେ ଏହି ଶକ୍ତିପୀଠ ପ୍ରତିଷ୍ଠା ଲାଭ କରିଥିଲେ ଏବଂ ଦେବୀଙ୍କର ନାମ 'ବିଜୟ ବାସୁଳୀ' ରଖାଯାଇଥିଲା । ଦେବୀଙ୍କର ମନ୍ଦିର ନିର୍ମାଣ ଏ ଦୁହିଁଙ୍କ ମଧ୍ୟରୁ କିଏ କରିଥିଲେ ସଠିକ କହିହେବ ନାହିଁ । ମନ୍ଦିର ଗଠନରେ ଯେଉଁ ଇଟା, ମାଙ୍କଡ଼ା, ମୁଗୁନି ଓ ଶଙ୍ଖମଲମଲ ପଥରମାନ ବ୍ୟବହାର କରାଯାଇଛି ଏବଂ ଏହାର ଭାସ୍କର୍ଯ୍ୟ ଓ ଗଠନ କୌଶଳ ଆଦିରୁ ତାହା ଉତ୍କଳୀୟ ବୋଲି ଜଣାପଡ଼େ । ମୋଗଲ ସମ୍ରାଟ ଆକବରଙ୍କର ରାଜସ୍ୱମନ୍ତ୍ରୀ ତୋଡ଼ରମଲ୍ଲ, ତତ୍କାଳୀନ ଜଲେଶ୍ୱର ସୁବାରୁ ଏକ ବିଶାଳ ଭୂଖଣ୍ଡ ଦେବୀଙ୍କର ସେବା ପୂଜାଦି ନିର୍ବାହ ପାଇଁ ଖଞ୍ଜିଥିଲେ ଏବଂ ପ୍ରତିଦିନ ଦେବୀଙ୍କ ଆଗରେ ରାଶିକୃତ ଭୋଗ-ରାଗର ବ୍ୟବସ୍ଥା କରିଥିଲେ ବୋଲି ଐତିହାସିକ ପ୍ରବାଦ ରହିଛି । ଠାକୁରାଣୀଙ୍କର ମହିମା ଏବଂ ଗାରିମା ଆଖପାଖ ଅଞ୍ଚଳରେ ବିସ୍ତାର ଲାଭ କଲାପରେ ଶତଶତ ଭକ୍ତ ନରନାରୀ ପ୍ରତିଦିନ ଆଦି ଅକଳନ୍ତି ଭୋଗରାଗ ମଧ ମା'ଙ୍କୁ ନିବେଦନ କରୁଥିଲେ । ଜଳେଶ୍ୱରର ମୋଗଲ ସୁବେଦାର ଏହି ଭୋଗରାଇ ଅଞ୍ଚଳ ଗସ୍ତରେ ଆସି ଦେବୀଙ୍କ ନିକଟରେ ଅକଳନ୍ତି ଭୋଗ ରାଶି ଦେଖି ଚମତ୍କୃତ ହୋଇଥିଲେ ଏବଂ ସ୍ଥାନର ନାମ ପଚାରିବାରେ ତାଙ୍କର ଭାଷା ବୁଝି ନପାରି, ଉପସ୍ଥିତ ପୂଜାରୀ 'ଭୋଗରାଶି' ଆଡ଼େ ନିର୍ଦ୍ଦେଶ କରି ଭୋଗରାଶି ବୋଲି କହିଥିଲେ । ସେହିଦିନରୁ ଉକ୍ତ ଗ୍ରାମର ନାମ ସରକାରୀ ନଥିପତ୍ରରେ 'ଭୋଗରାଇ' ବୋଲି ଉଲ୍ଲେଖ ରହିଛି । ଭୋଗରାଇର ଏହି ଇତିହାସ ପ୍ରସିଦ୍ଧ ଶକ୍ତିପୀଠକୁ କେନ୍ଦ୍ରକରି ପରବର୍ତ୍ତୀ କାଳରେ ଆଖପାଖ ଜନବସତିମାନ ଗଢ଼ିଉଠିଛି ଏବଂ କାଳକ୍ରମେ ସମଗ୍ର ଅଞ୍ଚଳ ଭୋଗରାଇ ନାମରେ ପ୍ରସିଦ୍ଧି



Digitized by srujanika@gmail.com

ଲାଭ କରିଛି । ଏବେବି ଠାକୁରାଣୀଙ୍କର ଭୂସମ୍ପତ୍ତି କିଛି କମ୍ ନାହିଁ । ସ୍ଥାନୀୟ ଟ୍ରଷ୍ଟବୋର୍ଡ଼ ଠାକୁରାଣୀଙ୍କ ପୂଜାର୍ଚ୍ଚନା ଦାୟିତ୍ୱରେ ରହିଛନ୍ତି ।

**ଗଡ଼ କୀର୍ତ୍ତିଶାଳ**

ସୁବର୍ଣ୍ଣରେଖାର ଅବବାହିକାରେ ଭୋଗରାଇ ଆଗକୁ କୀର୍ତ୍ତିଶାଳ ଗ୍ରାମ ଅବସ୍ଥିତ ଥିଲା । ମୋଗଲ ସାମ୍ରାଜ୍ୟ ବେଳେ ଜଣେ ଶକ୍ତିଶାଳୀ କିରାତ ରାଜା ଏଠାରେ ଗଡ଼ ସ୍ଥାପନା କରିଥିଲେ । ଭୋଗରାଇ ଇଲାକାର ଅଧୁନା ଜୟରାମପୁର ଗ୍ରାମ ଏହି ଗଡ଼ର ପରିସରଭୁକ୍ତ ଥିବାର ଅନୁମାନ କରାଯାଏ । ଗଡ଼ର ପରିଖା ମଧ୍ୟରେ ପୋତି ପଡ଼ିଥିବା ସୁନାଦିଘି, ରୂପାଦିଘି ନାମକ ଦୁଇଟି ପୁଷ୍କରିଣୀ ଏବଂ ଅଦୂରରେ ଆହୁତି କୁଣ୍ଡର ଐତିହାସିକ ଅବସ୍ଥିତି, ଏ ଯୁଗର ଚିନ୍ତାଶୀଳ ଲୋକମାନଙ୍କର କୌତୁହଳ ବୃଦ୍ଧି କରି ଆସିଛି । ପ୍ରତ୍ନତତ୍ତ୍ୱ ବିଭାଗର ଆନୁକୂଲ୍ୟରେ ଖନନ କାର୍ଯ୍ୟ କିଛିଟା ଅଗ୍ରସର ମଧ୍ୟ ହୋଇଛି । ସେ ସମୟର କେତେକ ପ୍ରସ୍ତର ମୂର୍ତ୍ତି ଏବଂ ବ୍ୟବହୃତ ବିଭିନ୍ନ ସାମଗ୍ରୀମାନ ଆବିଷ୍କୃତ ହୋଇଛି । ରାଜା କୀର୍ତ୍ତିଶାଳଙ୍କ ନାମାନୁସାରେ ଏହି ସ୍ଥାନର ନାମ କୀର୍ତ୍ତିଶାଳ ହୋଇଥିବାର ଇତିହାସରୁ ପ୍ରମାଣ ମିଳେ । ରାଜା କୀର୍ତ୍ତିଶାଳଙ୍କର ପୂର୍ବ ଇତିହାସ କିଛି ଜଣାନାହିଁ । ସେ ମଧ୍ୟ ଜଣେ ଜଳଦସ୍ୟୁର ବଂଶଧର ହୋଇଥିବାର ଅନୁମାନ କରାଯାଏ । ଏ ମଧ୍ୟ ଖୁବ୍ ବେଶିଦିନର କଥା ନୁହେଁ ।

କଥିତ ଅଛି, କାଳକ୍ରମେ ଇଂରେଜ ଶାସନାଧୀନ ରାଜା ଜମିଦାରମାନେ ୩୧ ତାରିଖ ମାର୍ଚ୍ଚ ସୂର୍ଯ୍ୟାସ୍ତ ପୂର୍ବରୁ ଆପଣା ଆପଣାର ବାର୍ଷିକ ଦେୟ ସରକାରଙ୍କୁ ପଇଠ କରିବାର ଆଇନ ଥାଏ । ଅନ୍ୟଥା ଜମିଦାରୀ ନିଲାମରେ ଉଠୁଥିଲା । ଶେଷ କିରାତ ରାଜା କୀର୍ତ୍ତିଶାଳଙ୍କ ଅଧୀନରେ ନୂତନ ସୃଷ୍ଟ ଭୋଗରାଇର ସମସ୍ତ ଅଞ୍ଚଳ ରହିଥିଲା । ଖଜଣା ବାକି ପଡ଼ିବାରୁ ଭୋଗରାଇ ଜମିଦାରୀ ରାଜଧାନୀ କଲିକତାରେ ନିଲାମରେ ଉଠିଲା । ରାଣୀ ରେଣୁକାଦେବୀ (ପଞ୍ଚେଟ୍ ଗଡ଼ର ଆଦ୍ୟାରାଣୀ) ଉକ୍ତ ଜମିଦାରୀ ନିଲାମ ଧରିଥିଲେ । କିନ୍ତୁ ରାଜା କୀର୍ତ୍ତିଶାଳଙ୍କ କବଳରୁ ଦୀର୍ଘଦିନ ଧରି ଜମିଦାରୀ ଦଖଲ ବା ଅଧିକାର ସେ କରିପାରି ନଥିଲେ ।

ସେ ସମୟରେ ବିହାରର ସସାରାମର ଅବଦୁଲ କାଦର ବକ୍ସ ନାମକ ଜନୈକ ସେଖ୍ ପଶମ ଚଦରର ସୌଦାଗରୀ ବ୍ୟବସାୟ କଲିକତା ସହ କରୁଥାନ୍ତି । ରାଣୀ ରେଣୁକା ଦେବୀଙ୍କ ପରିବାର ସହ ସୌଦାଗରୀ ସୂତ୍ରରେ ତାଙ୍କର ବିଶେଷ ପରିଚୟ ଥିଲା । ସୁଯୋଗ କ୍ରମେ ଉକ୍ତ ସେଖ୍ ସାହେବଙ୍କ ସହାୟତାରେ ବନ୍ଧୁକ ଓ ପିସ୍ତଲ ସାହାଯ୍ୟରେ ରାଣୀ ଭୋଗରାଇରେ ପ୍ରବେଶ କରିବାକୁ ସକ୍ଷମ ହୋଇଥିଲେ । ତୀର ଧନୁର୍ଦ୍ଧାରୀ କିରାତ ରାଜାଙ୍କ



Digitized by srujanika@gmail.com

ସହ ତାଙ୍କର ଯୁଦ୍ଧ ହୋଇଥିଲା । ଯୁଦ୍ଧରେ କିରାତ ରାଜା ପରାସ୍ତ ଏବଂ ନିହତ ହେବାର ଅନୁମାନ କରାଯାଏ । କିରାତଗଡ଼ କାର୍ତ୍ତିଶାଳର ପତନ ହେଲା । ଭୋଗରାଇ ରାଜ୍ୟ ରାଣୀ ରେଣୁକା ଦେବୀଙ୍କର ଅଧିକାରକୁ ଆସିଲା । ଏହା ମାତ୍ର ଊନବିଂଶ ଶତାବ୍ଦୀର ଶେଷ ଦଶକର କଥା ।

ପଞ୍ଚେଟଗଡ଼ର ରାଣୀ ରେଣୁକା ଦେବୀ, ଭୋଗରାଇ ବିଜୟ ବାସୁଳୀ ଶକ୍ତିପୀଠ ନିକଟବର୍ତ୍ତୀ ସ୍ଥାନରେ କୁଳଦେବତା ଶ୍ୟାମସୁନ୍ଦରଙ୍କର ମୂର୍ତ୍ତି ଓ ମନ୍ଦିର ସ୍ଥାପନ ସହିତ କଚେରି ଘର ନିର୍ମାଣ କରି ବିଜେ କରିବାକୁ ଲାଗିଲେ ଏବଂ ଜମିଦାରୀର ସୁବ୍ୟବସ୍ଥା କଲେ । ଉକ୍ତ ସେଖ୍ ଅବଦୁଲ କାଦର ବକ୍ସଙ୍କୁ ମଧ୍ୟ ସେ ସମାଦରରେ ଭୋଗରାଇ ଗ୍ରାମରେ ଅବସ୍ଥାପିତ କଲେ । ଭୋଗରାଇ ଗ୍ରାମର ସ୍ୱର୍ଗତଃ ସେଖ ଉରଫ ଏବଂ ସେଖ ଉହୀମ ପ୍ରମୁଖ ହେଉଛନ୍ତି ଉକ୍ତ ସେଖ୍ ସାହେବଙ୍କ ବଂଶଧର ।

**ଭୂଷଣ୍ଡେଶ୍ୱର :**

ସମୁଦ୍ରର ଅଗ୍ରଗତି ସହିତ ସୁବର୍ଣ୍ଣରେଖା ନଦୀ ମୁହାଣ କ୍ରମେ ଦକ୍ଷିଣକୁ ବିସ୍ତୃତିଲାଭ କଲାପରେ ଉଚ୍ଚ ବାଲୁକାସ୍ତୂପ ପରିବର୍ତ୍ତେ ନଦୀ ଦେହରୁ କେତେକ ଗଭୀର ଶାଖା ଖାଲ (ସଂକୀର୍ଣ୍ଣ ନଦୀ) କିମ୍ବିରୀ, ଭିରକିଟି, ଶିମୂଳୀ ଏବଂ ପୁରୀଘାଟ ପ୍ରଭୃତି ବାହାରି ବିସ୍ତୀର୍ଣ୍ଣ ଚଡ଼ ଅଞ୍ଚଳକୁ କ୍ରମାଗତ ଭାବେ ପ୍ଲାବିତ କଲାରୁ ନିମ୍ନ କର୍ଦ୍ଦମାକ୍ତ ଭୂଖଣ୍ଡର ସୃଷ୍ଟି । ଏହି ନିମ୍ନାଞ୍ଚଳ ଘନ ଗୁଳ୍ମରାଜି ଓ କୁମ୍ଭୀର ଆଦି ଜଳଜନ୍ତୁ ଆକୀର୍ଣ୍ଣ ହୋଇ ଦୁର୍ଗମ ହୋଇ ଉଠିଥିଲା । କାଳକ୍ରମେ ଏସବୁ ସ୍ଥାନରେ ପଟୁମାଟି ଜମି ସ୍ଥାନଟି ଉଚ୍ଚ ଓ ଉର୍ବର ହୋଇ ପରବର୍ତ୍ତୀ ସମୟରେ ଅନାବାଦ ପ୍ରକାଣ୍ଡ ଏହି ଭୂଖଣ୍ଡ କ୍ରମେକ୍ରମେ ଆବାଦ ହୋଇ ଭୋଗରାଇ ପାହି ନାମରେ ପରିଚିତ ହେଲା । ଆଜି ଏହି ବିଶାଳ ଶସ୍ୟଶ୍ୟାମଳ ଅଞ୍ଚଳ, ଭୋଗରାଇ ମା'ର ଭାତଥାଳି କହିଲେ ଅତ୍ୟୁକ୍ତି ହେବନାହିଁ ।

ସେତେବେଳେ ଦୁର୍ଗମ ଶିମୂଳୀ ନଦୀ ତୀରରେ ଏକ ସମୟରେ ଏକ ଭୂଷଣ୍ଡାକାର ଶିବଲିଙ୍ଗ ଗଭୀର ଜଂଗଲ ମଧ୍ୟରେ ତୀର୍ଯ୍ୟକ୍ ଭାବରେ ଅବସ୍ଥାନ କରୁଥିବାର ଲୋକେ ଆବିଷ୍କାର କରିବସନ୍ତି । ଏହି ଶିବଲିଙ୍ଗର ଉଚ୍ଚତା ବାର ଫୁଟ ମୋଟ ବା ଗୋଲେଇ ବାରଫୁଟ ସାତ ଇଞ୍ଚ । ନିମ୍ନାଞ୍ଚଳ ବେଦୀର ଗୋଲେଇ ପ୍ରାୟ ଅଡ଼ତିରିଶ ଫୁଟ ଅଟେ । ଏହା ଏକ ବୃହଦାକାର କଳା ମୁଗୁନି ପଥରରେ ଗଢ଼ା, ଓଜନ ୧୬୦୦ କୁଇଣ୍ଟାଲ ପ୍ରାୟ ହେବ । ଲିଙ୍ଗ ଗାତ୍ରରେ ଖୋଦେଇ ହୋଇ ସୁନାର ପଇତା ଲଗା ହୋଇଥିବାର ପ୍ରମାଣ ରହିଛି । ଏହି ସର୍ବୋଚ୍ଚ ଓ ପୃଥୁଳ ପ୍ରସ୍ତର ଲିଙ୍ଗଟି ସଳଖ ନହୋଇ ଭୂମି ସହିତ ୮୦ଡିଗ୍ରୀ



Digitized by srujanika@gmail.com

କୋଣ କରି ତାର୍ଯ୍ୟକ୍ ଭାବରେ ଅବସ୍ଥିତ । କେବଳ ଭାରତରେ କାହିଁକି ପୃଥିବୀ ବକ୍ଷରେ ଏତେବଡ଼ ଶିବଲିଙ୍ଗ ଦେଖାଯାଇ ନଥିବ ।

ମୋଗଲେ ଆଜମ୍ ଆକବରଙ୍କ ଶାସନକାଳରେ ଏହି ଶିବଲିଙ୍ଗର ଆବିର୍ଭାବ ବା ପ୍ରତିଷ୍ଠା ହୋଇଥିବାର ଅନୁମାନ କରାଯାଏ । ଅବଶ୍ୟ ସେପରି କିଛି ବିଶ୍ୱାସ୍ୟ ପ୍ରବାଦ ଅଥବା ଜନଶ୍ରୁତି ସେ ସଂପର୍କରେ ଏ ଅଞ୍ଚଳରେ ନାହିଁ । ଉତ୍କଳର ନୌବାଣିଜ୍ୟର ସୁବର୍ଣ୍ଣ ଯୁଗରେ, ସୁବର୍ଣ୍ଣରେଖାର ନୌବାଣିଜ୍ୟ ଓ ପିପିଲି ବନ୍ଦରର ସୁଖ୍ୟାତି କେବଳ ବଙ୍ଗ ଉତ୍କଳ କାହିଁକି, ଦେଶ ବିଦେଶରେ ବିସ୍ତାର ଲାଭ କରିଥିଲା । ଅନୁମାନ କରାଯାଏ, ସେ ସମୟର ଜନୈକ ଶିବଭକ୍ତ ସାଧବ ଏହି ବିଶାଳ ଶିବଲିଙ୍ଗଟିକୁ ବାଣିଜ୍ୟ ସମ୍ଭାର ରୂପେ ସଂଗ୍ରହ କରି ତାଙ୍କୁ ସ୍ଥାପନ କରିବା ଉଦ୍ଦେଶ୍ୟରେ ବୋହି ଆଣିଥିଲେ । ହୁଏତ ତାଙ୍କୁ ଠିକ୍‌ଠିକ୍ ଭାବେ ପ୍ରତିଷ୍ଠା କରିପାରି ନଥିବେ । ଅଥବା ପରବର୍ତ୍ତୀ ସମୟରେ ପ୍ରବଳ ବନ୍ୟାରେ ସ୍ଥାପିତ ଲିଙ୍ଗର ଆସ୍ଥାନ ତଳର ମାଟି ଧୋଇହୋଇ ଯାଇଛି ଏବଂ ବନ୍ୟାସ୍ରୋତ ବିଶାଳକାୟ ପ୍ରସ୍ତର ଲିଙ୍ଗଟିକୁ ଭସାଇ ନପାରି ଏପରି ତେଢ଼ାକରି ରଖି ଯାଇଥିବାର ଅନୁମାନ କରାଯାଏ । ଏହି ତାର୍ଯ୍ୟକ୍ ଲିଙ୍ଗଟିକୁ ସଳଖକରି ଥୋଇବା ବଡ଼ କଷ୍ଟସାଧ । ସ୍ଥାନୀୟ ପ୍ରବଳ ଉଦ୍ୟମ ସତ୍ତ୍ୱେ ଏଯାବତ୍ ତାହା ସଂପୂର୍ଣ୍ଣ ସଫଳ ହୋଇପାରିନାହିଁ । ଠାକୁରଙ୍କର ସେବାପୂଜା ପାଇଁ ପଞ୍ଚେଟଗଡ଼ ବ୍ରାହ୍ମଣ ଏବଂ ଭୂସମ୍ପତ୍ତିର ବ୍ୟବସ୍ଥା ଗ୍ରହଣ କରିଥିଲେ ।

ପ୍ରଥମେ ଏହି ଶୈବପୀଠକୁ ଯାଇ ପ୍ରବେଶ କରିବା ସହଜ ନଥିଲା । ସଂପ୍ରତି ସହଜରେ ଯିବା ଆସିବା କରିବାର ବ୍ୟବସ୍ଥାମାନ କରାଯାଇଛି । ଭକ୍ତଜନ ସମାଗମ ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିବାର ଉଦ୍ୟମ ମଧ ହେଲା ଏବଂ ଠାକୁରଙ୍କୁ ଏକ ସୁଗଠିତ ମନ୍ଦିର ମଧରେ ଆଚ୍ଛାଦିତ କରି ରଖିବା ପାଇଁ ଏକ ଅନୁଚ୍ଚ ମନ୍ଦିର ଗଠନର କାର୍ଯ୍ୟଶେଷ ହେଲା । ଏସବୁ କାର୍ଯ୍ୟରେ ସ୍ଥାନୀୟ ଲୋକପ୍ରତିନିଧି ତଥା ସରକାରୀ କର୍ମଚାରୀମାନଙ୍କର ଉତ୍ସାହ ଓ ଉଦ୍‌ଯୋଗ ପ୍ରଶଂସନୀୟ । କିନ୍ତୁ ଏହି ଐତିହାସିକ ଦେବତାଙ୍କର ଉତ୍ପତ୍ତି ଓ ଆବିର୍ଭାବର ପ୍ରକୃତ ପ୍ରମାଣ୍ୟ ଇତିହାସ ଏଯାବତ୍ ଠିକ୍‌ଠିକ୍ ଜଣାଯାଇ ନାହିଁ ।

**ସାଗର କାଶୀ-ଚନ୍ଦନେଶ୍ୱର :**

ବଙ୍ଗ-ଉତ୍କଳର ସୀମା ସଂଲଗ୍ନ ବଙ୍ଗୋପସାଗରର ତୀର ଦେଶର ଅନତି ଦୂରର ଉତ୍ତରକୁ ବାବା ଚନ୍ଦେନେଶ୍ୱରଙ୍କ ବିଜେସ୍ଥଳୀ ବିଦ୍ୟମାନ । ଆପଣାର ଅଭୂତପୂର୍ବ ମହିମା ଓ ବିଭୂତିବଳରେ, ଏହି କୀର୍ତ୍ତିମାନ ଦେବତା ସମଗ୍ର ପଶ୍ଚିମବଂଗ ତଥା ଉତ୍କଳର ପୁରପଲ୍ଲୀରେ ସୁବିଦିତ ଏବଂ ଅଗାଧ ଭକ୍ତି ଓ ବିଶ୍ୱାସ ସହକାରେ ପୂଜିତ ହେଉଛନ୍ତି ।



Digitized by srujanika@gmail.com

ଲିଙ୍ଗରୂପୀ ମହାଦେବଙ୍କର ଆତ୍ମପ୍ରକାଶ କେଉଁ ଆଦିମ ଯୁଗରୁ ଘଟିଛି ତାହା ସଠିକ କହିହେବ ନାହିଁ ।

"ଚିନ୍ମୟାସ୍ୟା ଦ୍ୱିତୀୟାସ୍ୟ ନିଷ୍କଳସ୍ୟା ଶରୀରିଣଃ
ଉପାସନାଂ କାର୍ଯ୍ୟାର୍ଥଂ ବ୍ରହ୍ମଣୋରୂପ କଳ୍ପନା" (ରଘୁନନ୍ଦନ ସ୍ମୃତି)

ବ୍ରହ୍ମ ହେଉଛନ୍ତି ଚିନ୍ମୟ, ଅଦ୍ୱିତୀୟ, କଳାହୀନ ଏବଂ ଅଶରୀର । ଉପାସକମାନଙ୍କର କାର୍ଯ୍ୟସିଦ୍ଧି ପାଇଁ ଏହି ବ୍ରହ୍ମର ରୂପ କଳ୍ପନା କରାଯାଇଛି । ସୁତରାଂ ପୁରାଣ ପଢ଼ିଲେ ଜଣାପଡ଼େ, ବ୍ରହ୍ମମୟ ପରମାତ୍ମା ଶିବଙ୍କର ଜ୍ୟୋତି, ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ଅଣୁ ପରମାଣୁରେ ପରିବ୍ୟାପ୍ତ । ତେଣୁ ଏହା ଚକ୍ଷୁର ଅଗୋଚର ଏବଂ ନିରାକାର । ସର୍ବତ୍ର ପରିବ୍ୟାପ୍ତ ଏହି ଜ୍ୟୋତିକୁ କେନ୍ଦ୍ରୀଭୂତ କରି କ୍ଷୁଦ୍ର ଏକ ଦୀପଶିଖା ମଧ୍ୟରେ ଆତ୍ମପ୍ରକାଶ କରାଯାଇଛି । ଏହି ଦୀପଶିଖାର ଆକାର ଲିଙ୍ଗ ସଦୃଶ ହୋଇଥିବାରୁ, ତାହା ଶିବ ଜ୍ୟୋତିର ପ୍ରତୀକ ଭାବରେ ଜ୍ୟୋତିର୍ଲିଙ୍ଗ ରୂପ ପରିଗ୍ରହ କରିଛି । କାଳକ୍ରମେ ଉପାସନା ସକାଶେ, ଏକ ପ୍ରଦୀପ ଆକାର ଶକ୍ତି ବା ବେଦୀ ଉପରେ ଶିବଲିଙ୍ଗର ସାକାର ରୂପର ପ୍ରକାଶ ଘଟିଛି । ଏଣୁ ଭାରତରେ ଏବଂ ଭାରତ ବାହାରେ ବିଭିନ୍ନ ଶୈବପୀଠ ଏବଂ ମନ୍ଦିରରେ ପ୍ରତିଷ୍ଠିତ ଏବଂ ପୂଜିତ ପ୍ରସ୍ତର ଗଠିତ ଏହି ଶିବଲିଙ୍ଗମାନ କଲ୍ୟାଣମୟ ଶିବଙ୍କର ଜ୍ୟୋତିର୍ଲିଙ୍ଗଙ୍କର ପ୍ରତୀକ ମାତ୍ର । ଜଟାଜୁଟ, ତ୍ରିଶୂଳ, ଅହି ଏବଂ ଡମ୍ବରୁଧାରୀ ଶିବ ପ୍ରତିମା ବା ମୂର୍ତ୍ତି, ସୃଷ୍ଟି ସ୍ଥିତି ଲୟକାରୀ ଶଙ୍କରଙ୍କର କଳ୍ପିତ ମୂର୍ତ୍ତିରୂପେ ପ୍ରକାଶ ପାଇଥିବାର ଜଣାଯାଏ । ପୁରାକାଳରୁ ଭାରତର ନଗର ଏବଂ ଗ୍ରାମାଞ୍ଚଳରେ ଏହି ଶିବଲିଙ୍ଗମାନ ଗଭୀର ଶ୍ରଦ୍ଧା ଓ ଭକ୍ତି ସହକାରେ ଯୁଗଯୁଗ ଧରି ପୂଜିତ ହୋଇ ଆସିଛନ୍ତି । ଏହି ପ୍ରସ୍ତର ଲିଙ୍ଗ କେଉଁଠି ସ୍ୱୟଂ ବା ତାଙ୍କୁ ସ୍ଥାପନ କରାଯାଇଛି । କିନ୍ତୁ ଲିଙ୍ଗ ସର୍ବତ୍ର ଦୃଶ୍ୟମାନ ହୋଇ ରହିଥିବାର ପ୍ରମାଣ ମିଳେ । କିନ୍ତୁ ଅତୀବ ଆଶ୍ଚର୍ଯ୍ୟ, ବାବା ଚନ୍ଦନେଶ୍ୱରଙ୍କର ଲିଙ୍ଗ ବିଗ୍ରହର ଇତିହାସ । ଲିଙ୍ଗ କାହିଁ ? ଏହା ହିରଣ୍ୟ ଗର୍ଭରେ ଓ ଜଳଯନ୍ତ ମଧ୍ୟରେ ଲୁକ୍କାୟିତ । କେହି କେବେ ତାଙ୍କର ଲିଙ୍ଗ ବିଗ୍ରହ ଦର୍ଶନ କରିନାହାନ୍ତି । କିନ୍ତୁ ଗଭୀର ଭାବରେ ବିଶ୍ୱାସ କରନ୍ତି । କଳାହୀନ ଅଶରୀର ତାଙ୍କର ପ୍ରକାଶ । ଏଣୁ ଅଦ୍ୱିତୀୟ ଚିନ୍ମୟ ହୋଇ ବିରାଜ କରୁଛନ୍ତି । ଏ ପ୍ରକାର ଶୈବପୀଠର କୁତ୍ରାପି ନଜର ନାହିଁ ।

ଏ ଯୁଗର ମାନବ ପୁରୁଷାନୁକ୍ରମେ ଏହି ବିଶେଷ ବିଜେସ୍ଥଳୀଟିକୁ ପ୍ରାଣଭରି ଭଲପାଇ ଆସିଛି ଏବଂ ଏକାନ୍ତ ଆପଣାର ଭାବି ଭକ୍ତି ଏବଂ ପୂଜାର୍ଘ୍ୟ ନିବେଦନ



Digitized by srujanika@gmail.com

କରିଥାନ୍ତି । ବାବା ଚନ୍ଦନେଶ୍ୱରଙ୍କର ଆବିର୍ଭାବର କାହାଣୀ ଯେତିକି ବିଚିତ୍ର ସେତିକି ଅଦ୍ଭୁତ ଓ ଅନନ୍ୟ । ଜନଶ୍ରୁତିରୁ ଜଣାପଡ଼େ -

ଏକ ସମୟରେ ଏହି ବିଜେ ସ୍ଥାନରେ ସମୁଦ୍ରର ବାଲୁକାମୟ କ୍ଷୁଦ୍ର ଏକ ଚଳକା (ପରିତ୍ୟକ୍ତ ଚଢ଼ଭୂମି) ହୁଗୁଳା ବଣ ଦ୍ୱାରା ପରିପୂର୍ଣ୍ଣ ଥାଏ । ଚନ୍ଦନା ନାମକ ଏକ ସଂକୀର୍ଣ୍ଣ ନଦୀଝର, ସେହିବାଟେ ସମୁଦ୍ରକୁ ବହିଯାଉଥାଏ । ଲଛମୀ ନାମକ ପାର୍ଶ୍ୱବର୍ତ୍ତୀ ଗ୍ରାମର ତେଲି ଘରର ଜଣେ ଯୁବତୀ ବଧୂ ନିତି ଗାଈ ଚରାଇବାକୁ ସେହି ହୁଗୁଳା ବଣକୁ ଆସୁଥାଏ କିନ୍ତୁ ଗାଈର କ୍ଷୀର କ୍ରମଶଃ କମିଯାଉଥିବାର ଦେଖି ଶାଶୁ ବୋହୂ କ୍ଷୀର ପିଇଯାଉଛି ବୋଲି ସନ୍ଦେହ କରି ବୋହୂକୁ ନାନା ନିର୍ଯାତନା ଦେଉଥାଏ । ନାନା ଅତ୍ୟାଚାର ସହି ଭୋକ ଉପାସରେ ରହି ବୋହୂ ହୁଗୁଳା ବଣରେ ଗାଈ ଛାଡ଼ିଦେଇ ପ୍ରତିଦିନ ବସି ଆକୁଳ ହୋଇ କାନ୍ଦେ ଏବଂ କାମିନୀ କୁଳର ବରଦାତା ସେହି ଦେବାଧିଦେବ ଆଶୁତୋଷଙ୍କୁ କାକୁତି ମୀନତି ଜଣାଇ ଡାକେ । ଦିନପରେ ଦିନ, ମାସପରେ ମାସ ବିତିଯାଏ । କିଛିଦିନ ଏମିତି ବିତିଗଲାରୁ ଦିନେ ମୁହଁସଂଜରେ ବହୂ ଘରକୁ ଫେରିବାବେଳେ, ଦୁଧିଆଳୀ ଗାଈଟିକୁ ଖୋଜି ଆଉ ପାଏନାହିଁ । ହୁଗୁଳା ବଣରେ ଖୋଜିଖୋଜି ଯାଇ ଦେଖେ ଏବଂ ଆଶ୍ଚର୍ଯ୍ୟ ହୁଏ । ବଣ ମଧ୍ୟରେ ଏକ ସ୍ଥାନରେ ଗାଈଟି ସ୍ଥିର ହୋଇ ଛିଡ଼ାହୋଇଛି ଏବଂ ଗାଈର ଚିରରୁ କ୍ଷୀରତକ ଅବିରାମ ଭାବରେ ଝରିବାରେ ଲାଗିଛି । ସେଠାରେ କେବଳ ଗୋଟିଏ ବିଳ ଛଡ଼ା ଆଉ କିଛି ଦେଖିବାକୁ ମିଳିଲା ନାହିଁ । ଭକ୍ତି ଗଦ୍‌ଗଦ୍ ଚିତ୍ତରେ ବୋହୂଟି ସେଠାରେ କାନ୍ଦିକାନ୍ଦି ଅଧିଆ ପଡ଼ି ପ୍ରଭୁଙ୍କୁ ଡାକିବାରେ ଦେବାଧିଦେବ ମହାଦେବ ମହେଶ୍ୱର ସନ୍ତୁଷ୍ଟ ହୋଇ ସେହି ବୋହୂ ଲଛମୀ ଆଗରେ ନିଜକୁ ପ୍ରକଟ କରି ଦର୍ଶନ ଦିଅନ୍ତି ଏବଂ ନିଜର ମହାନ୍ ଆବିର୍ଭାବ ଘୋଷଣା କରନ୍ତି । ତାପରେ ମହାଦେବଙ୍କର ଆତ୍ମପ୍ରକାଶ ଆଉ କେହି ଚର୍ମ ଚକ୍ଷୁରେ ଦେଖିବାକୁ ପାଇନାହାନ୍ତି, କେବଳ ସେହି ଗଭୀର ଗର୍ତ୍ତଗୋଟିକ ଛଡ଼ା । ଲଛମୀ ଏବଂ ତାଙ୍କ ପରିବାର ଲୋକେ ସେହିଦିନୁ ସେ ଦେବତାଙ୍କୁ ପୂଜାକରି ଆସୁଛନ୍ତି । ଚନ୍ଦନାଝରଠାରେ ଏହି ଗର୍ତ୍ତଟି ଦେଖାଦେଇଥିବାରୁ ଏବଂ ଉକ୍ତ ଦୈବୀ ଘଟଣା ଘଟିଥିବାରୁ ଠାକୁରଙ୍କୁ 'ଚନ୍ଦନେଶ୍ୱର' ନାମରେ ନାମିତ କରାଯାଇଛି ଏବଂ ଉକ୍ତ ସ୍ଥାନଟି ହୁଗୁଳା ବଣ ଦ୍ୱାରା ଆବୃତଥିବାରୁ ସେହି କ୍ଷୁଦ୍ର ଚକଳାଟି କାଳକ୍ରମେ 'ହୁଗୁଳି' ନାମରେ ଆଖ୍ୟାୟିତ ହୋଇ ଆସିଛି ।

ଏହି ଅଦେଖା ଦେବତାଙ୍କ ଏ ଅଞ୍ଚଳ ବକ୍ଷରେ ଆବିର୍ଭାବର ସଠିକ ସମୟ କଳନା କରିବା କଠିନ । ଗଭୀର ଚିନ୍ତା ଓ ଗଣନାରୁ ଜଣାଯାଏ, ପ୍ରାୟ ଚାରିଶହ ବର୍ଷ



Digitized by srujanika@gmail.com

ତଳେ ଷୋଡ଼ଶ ଶତାବ୍ଦୀର ଏକ ସମୟରେ ଉକ୍ତ ଦୈବୀ ଘଟଣା ଘଟିଥିଲା । ମୋଗଲ ରାଜୁତି କାଳରେ ମରହଟ୍ଟା ଓ ବର୍ଗୀମାନଙ୍କ ଦ୍ୱାରା ବିକ୍ଷୁବ୍ଧ ବଂଗ, ଓଡ଼ିଶା ଓ ବିହାରର ଜନୈକ ନବାବଙ୍କ ଅମଳରେ ଏହି ମହାନ୍ ଆବିର୍ଭାବର ସମୟ କଳନା କରାଯାଇଛି । ଉର୍ଦ୍ଦୁ ହରପରେ ଲିଖିତ ଏକ ନବାବୀ ପିତ୍ତଳ ପାଞ୍ଜିରୁ ତାର କିଛି ସୂଚନା ମିଳେ ।

ଜନଶ୍ରୁତି କହେ- ସପ୍ତଦଶ ଶତାବ୍ଦୀରେ ପୁରୀରେ ଠାକୁର ରାଜା ମାହାଳିଆ ମୁକୁନ୍ଦ ଦେବ ବୈଷ୍ଣବଧର୍ମ ଗ୍ରହଣ କରନ୍ତି । ରାଜବାଟିର ଶିବପୂଜକ ଶ୍ରୀ ଅଗ୍ନିକୁମାର ଆଚାର୍ଯ୍ୟଙ୍କୁ ଉକ୍ତ ବୈଷ୍ଣବ ଧର୍ମ ଗ୍ରହଣ କରିବାକୁ ରାଜା ପୀଡ଼ାପିଡ଼ି କରନ୍ତେ, ଏକାନ୍ତ ଶିବଭକ୍ତ ଆଚାର୍ଯ୍ୟେ କାତର ହୋଇ ଖିଆପିଆ ଛାଡ଼ି ଶିବଙ୍କୁ ସ୍ତୁତି କରିବାକୁ ଲାଗିଲେ । ଏହି ଅଗ୍ନିକୁମାର ପୁରୀର ତୁଳସୀଚୌରାର ଅଧିବାସୀ ଥିଲେ । ଆଚାର୍ଯ୍ୟଙ୍କର କାତର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ, ଦେବାଧିଦେବ ମହାଦେବ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଲେ ଏବଂ ଆଦେଶ ଦେଲେ ହିମାଳୟ ପାଦଦେଶରେ ଜଣେ ସାଧୁ ସିଦ୍ଧବାବା ଅଛନ୍ତି, ସେ ପରମ ଶିବଭକ୍ତ । ତାଙ୍କର ଶିଷ୍ୟତ୍ୱ ତୁମେ ଗ୍ରହଣ କର । ପୂର୍ବ ଉପକୂଳ ମହୋଦଧି ତଟଦେଶରେ ନିର୍ଦ୍ଦିଷ୍ଟ ସ୍ଥାନରେ ଦୁହିଁଙ୍କର ସାକ୍ଷାତ ଘଟିବ । ଉଭୟଙ୍କର ମିଳନ କ୍ଷେତ୍ରରେ ଶିବଙ୍କ ଆଶ୍ରିତ ଭକ୍ତ ତେଲିଘର ବୋହୂ ଲଛମୀ ସହିତ ସେମାନଙ୍କର ଦେଖାହେବ । ଲଛମୀ ନିକଟରୁ ବାବାଙ୍କର ଆବିର୍ଭାବର ସମସ୍ତ ବୃତ୍ତାନ୍ତ ମିଳିବ । ତୁମେ ଶିବପୂଜା କରିବ । ଏହି ମିଳନ ଓ ଆବିର୍ଭାବର କ୍ଷେତ୍ର ବିଖ୍ୟାତ ଶୈବପୀଠରେ ପରିଣତ ହେବ । ଅନୁରୂପ ସ୍ୱପ୍ନାଦେଶ ହିମାଳୟବାସୀ ସାଧୁ ସିଦ୍ଧ ବାବାଙ୍କୁ ମଧ୍ୟ ହେଲା । ଆଦେଶ ପାଇ ନିଜନିଜର ଆସ୍ଥାନ ଛାଡ଼ି ଦୁହେଁ ବାହାରି ପଡ଼ିଲେ । ସମୁଦ୍ର ତଟବର୍ତ୍ତୀ ଏହି ହୁଗୁଳା ବଣ ଓ ଚନ୍ଦନଝରଠାରେ ଦୁହିଁଙ୍କର ଦେଖାସାକ୍ଷାତ ହୁଏ । ତେଲିଘର ବୋହୂ ଲଛମୀ ନିକଟରୁ ବାବାଙ୍କର ଆବିର୍ଭାବର ସମସ୍ତ କାହାଣୀ ଜାଣି ସେହିଠାରେ ଦୁହେଁ ରହିଗଲେ । ମାଳତୀ ଲତାକୁଞ୍ଜ ତଳେ ସିଦ୍ଧବାବା ଧ୍ୟାନସ୍ଥ ରହି ଉପାସନା କରୁଥିଲେ ଏବଂ ଅଗ୍ନିକୁମାର ଓରଫ ଅଗଣି ଆଚାର୍ଯ୍ୟ ଠାକୁରଙ୍କର ସେବା ପୂଜା କରିବାକୁ ଲାଗିଲେ । ଲଛମୀ ସେମାନଙ୍କୁ ସବୁମନ୍ତେ ସାହାଯ୍ୟ କଲେ ।

ସେତେବେଳେ ବଙ୍ଗଳାର ନବାବ ସଫରୁଦ୍ଦିନ୍‌ଙ୍କ ରାଜତ୍ୱ ଚାଲିଥିଲା । ମରହଟ୍ଟା ବର୍ଗୀମାନଙ୍କର ଅତ୍ୟାଚାର ଦମନ କରିବା ଉଦ୍ଦେଶ୍ୟରେ ନବାବ ସେଠାରେ ଆସି ପହଞ୍ଚିଥାନ୍ତି । ବାବାଙ୍କର ଆବିର୍ଭାବର ସମ୍ବାଦ ଏବଂ ତାଙ୍କର ମାହାତ୍ମ୍ୟ ଶୁଣି ନବାବ ୪୦ମାଣ ପରିମିତ ଜମି ଅଗଣି ଆଚାର୍ଯ୍ୟଙ୍କୁ ଠାକୁରଙ୍କର ସେବା ଓ ପୂଜାର୍ଚ୍ଚନା ସକାଶେ



Digitized by srujanika@gmail.com

ଦାନ କରିଥିଲେ । ସିଦ୍ଧବାବାଙ୍କ ଚଳଣି ପାଇଁ ମଧ୍ଯ ସେ ୧୦ମାଣ ବିଲ ଖଞ୍ଜିଥିଲେ । ସେହିଦିନରୁ ସନ୍ନିକଟସ୍ଥ ବରବରିଆ ଗ୍ରାମରେ ସିଦ୍ଧବାବାଙ୍କର ସେବା ସେଠାକାର କର ବଂଶର ବ୍ରାହ୍ମଣମାନେ କରି ଚାଲିଛନ୍ତି ।

କାଳକ୍ରମେ ଇଂରେଜ ଶାସନାଧୀନ ବାଁକୁଡ଼ାର ଭୂୟାଁ ଜମିଦାର ଶ୍ରୀ ହରିଚନ୍ଦନ ପଟ୍ଟନାୟକଙ୍କର ଜମିଦାରୀଭୁକ୍ତ ଏହି ହୁଗୁଳି ଏବଂ ତତ୍‌ସଂଲଗ୍ନ ସ୍ଥାନମାନ ହେଲା । ତାପରେ ଉକ୍ତ ବାବା ଥାନ ପଞ୍ଚେଟଗଡ଼ର ଇଲାକାଭୁକ୍ତ ହୁଏ । କଥିତ ଅଛି ପରବର୍ତ୍ତୀ ସମୟରେ ପଞ୍ଚେଟଗଡ଼ର ଜନୈକ ସୁନାମଧନ୍ୟ ଜମିଦାର ଚୌଧୁରୀ ଜିତେନ୍ଦ୍ର ନନ୍ଦନ ଦାସ ମହାପାତ୍ର ବାବାଙ୍କର ନୂତନ ମନ୍ଦିର ନିର୍ମାଣର ଶୁଭ ମନାସୁ ଥିବାବେଳେ ତାଙ୍କର ମୃତ୍ୟୁ ଘଟେ ।

ଦୀର୍ଘ ପ୍ରାୟ ଦଶପୁରୁଷ ଧରି ଅଗଣି ଆଚାର୍ଯ୍ୟଙ୍କର ବଂଶଧରମାନେ ଚନ୍ଦନେଶ୍ୱରଙ୍କର ପୂଜାର୍ଚ୍ଚନା କ୍ରମାଗତ ଭାବରେ କଲାପରେ ୧୯୦୫ ସାଲ ବନ୍ଦୋବସ୍ତର ପୂଜକ ଆଚାର୍ଯ୍ୟ ବଂଶର ପଦବୀ ଆଚାର୍ଯ୍ୟ ପରିବର୍ତ୍ତେ ପଣ୍ଡା ହୋଇଥିବାର ଉଲ୍ଲେଖ ଅଛି ।

ପରବର୍ତ୍ତୀ କାଳରେ ଏହି ହୁଗୁଳି ଗ୍ରାମ ଖଣ୍ଡିକ କେବଳ ବାବାଙ୍କର ପୂଜକ ପଣ୍ଡା ମାନଙ୍କର ପରିବାର ବର୍ଗଙ୍କ ଦ୍ୱାରା ଜନବସତି ପୂର୍ଣ୍ଣ ହୋଇ ଉଠିଛି ।

"ହୁଗୁଳି ଗ୍ରାମ ମଧ୍ୟସ୍ଥ ଜଳଯନ୍ତ୍ର ପ୍ରକାଶିତ<br>
କାମିନୀ ବରଦାତାର ବନ୍ଦେ ଶ୍ରୀ ଚନ୍ଦନେଶ୍ୱରଃ ।"

ସ୍ୱତନ୍ତ୍ର ଏହି ବନ୍ଦନା ମନ୍ତ୍ରରୁ ବାବାଙ୍କର ଆସ୍ଥାନ ଏବଂ ମହିମା ସୂଚନା ମିଳେ । ଚନ୍ଦନେଶ୍ୱରଙ୍କର କେହି ଜଣେ ଭକ୍ତକବି ଜଣାଣରେ ଗାଇଛନ୍ତି -

"ରତ୍ନାକର ତୀରବାସୀ ହେ ମହାଦେବ<br>
ରୋଗ ଯମ ଯନ୍ତ୍ରଣାରେ ଡାକୁଛି ଜୀବ<br>
ହେ ବାବା, ଡାକୁଛି ଜୀବ ।"

•

"ହୁଗୁଳା ବଣ ମଧ୍ୟରେ ଚନ୍ଦନା ଝର<br>
ଦୁଇ ନାମ ମିଶି ନାମ ନେଲ ହେ ଚନ୍ଦନେଶ୍ୱର<br>
ହୁଗୁଳି ଚନ୍ଦନେଶ୍ୱର ॥<br>
ଘେନ ଦୂରରୁ ଜୁହାର ମୋର<br>
ଆହେ ଅଦେଖା ଚନ୍ଦନେଶ୍ୱର ॥



Digitized by srujanika@gmail.com

ସଂଗୀତ ଗାଇ ବର୍ଣ୍ଣିବି, ତୁମ ମହିମା ସାଗର ହେ
ଗଞ୍ଜେଇ ଖିଆ ଗରଳ ପିଆ ଅଧ ଲଙ୍ଗଳା ଠାକୁର ହେ
ଘେନ ଦୂରରୁ ଜୁହାର ମୋର ।"

ହଜାର ହଜାର ଭକ୍ତ ନରନାରୀ ବଙ୍ଗ-ଉତ୍କଳର କେଉଁ ସୁଦୂର ପୁରପଲ୍ଲୀରୁ ଆସି ଆପଣାର ବନ୍ଧୁ ପରିଜନମାନଙ୍କର ଶୁଭ ମନାସି, ଶାନ୍ତି ସ୍ୱସ୍ତୟନ, ଅଭିଷେକ, ଚୂଡ଼ାକରଣ ପ୍ରଭୃତି ଦାନଧର୍ମ ଅବିରାମ ଭାବେ କରିଚାଲିଛନ୍ତି । ଦୁଃସାଧ ରୋଗମୁକ୍ତି ଏବଂ ସନ୍ତାନକାମୀ ଶତଶତ ସ୍ତ୍ରୀ ପୁରୁଷ ଦିନ ପରେ ଦିନ ମନ୍ଦିର ପ୍ରାଙ୍ଗଣରେ ଅଧିଆ ଦେଇ ପଡ଼ି ରହୁଛନ୍ତି ଏବଂ ଆପଣାର ଏକାନ୍ତ ଭକ୍ତି, ବିଶ୍ୱାସ ଏବଂ ନିଷ୍ଠାବଳରେ ଅଭୀଷ୍ଟ ପୂରଣ ପାଇଁ ଠାକୁରଙ୍କର କରୁଣା ଓ ଆଶୀର୍ବାଦ ଲାଗି କରୁଛନ୍ତି । ମନ୍ଦିରରେ ଦିବାରାତ୍ର ଅଗଣିତ ଭକ୍ତ ଜନତାର ଭିଡ଼ ଲାଗି ରହିଛି । ବିଶେଷତଃ କାମିନୀ କୁଳର ଆକୁଳ କଳରବ ଓ କାତର ପ୍ରାର୍ଥନାରେ ମନ୍ଦିର ସଦା ମୁଖରିତ ।

ସନାତନ ହିନ୍ଦୁ ସଂସ୍କୃତିର ଏକ ପ୍ରଧାନ କେନ୍ଦ୍ର ରୂପେ ଏହି ପ୍ରସିଦ୍ଧ ଶୈବପୀଠ ଖ୍ୟାତି ଲାଭ କରିପାରିଛି । ଆନ୍ତ ପ୍ରାଦେଶିକ କ୍ଷେତ୍ରରେ 'ସାଗର କାଶୀ ତୀର୍ଥ' ରୂପେ ପରିଚିତ ହୋଇପାରିଛି । ଭାରତ ପ୍ରସିଦ୍ଧ ସ୍ୱାସ୍ଥ୍ୟ ନିବାସ, 'ସାଗର ମାନସ କୁମାରୀ' ଦୀଘା ଏହି ସାଗର କାଶୀର ଏକାନ୍ତ ନିକଟବର୍ତ୍ତୀ ।

ପ୍ରାୟ ଦୁଇଶହ ବର୍ଷ ପୂର୍ବେ ବାବାଙ୍କର ଆଦି ମନ୍ଦିର ନିର୍ମିତ ହୋଇଥିବାର ଜଣାପଡ଼େ । ଏହି ଆଦି ମନ୍ଦିର ବେଢ଼ାର ଭଗ୍ନାବଶେଷ ଆଜି ମଧ କିଛିକିଛି ଦେଖିବାକୁ ମିଳେ । ତତ୍‌ପରେ ପଣ୍ଡା ଓ ବଦାନ୍ୟ ଭକ୍ତମାନଙ୍କ ଉଦ୍ୟମରେ ନିର୍ମିତ ବର୍ତ୍ତମାନ ମନ୍ଦିରର ପ୍ରାୟ ୭୦ବର୍ଷ ହେବ । ମନ୍ଦିରର ମୁଖଶାଳା ଆଦି ମନ୍ଦିର ନିର୍ମାଣ ପରେ ନିର୍ମିତ ହୋଇଛି । ଏଗୁଡ଼ିକ ସବୁ ଗୌଡ଼ୀୟ କଳା ଓ କୌଶଳରେ ନିର୍ମିତ । ମନ୍ଦିର ଗାତ୍ରରେ ସେପରି କିଛି ଭାସ୍କର୍ଯ୍ୟ ନାହିଁ । ମନ୍ଦିର ଗଠନ ପ୍ରସଂଗ ସ୍ମୃତିଚାରଣ କଲେ ଚନ୍ଦନେଶ୍ୱରଙ୍କର ପାର୍ଶ୍ୱବର୍ତ୍ତୀ ଗ୍ରାମର ରାଜମିସ୍ତ୍ରୀ ୰ଗୋକୁଳ ଦାସଙ୍କର କଥା ସ୍ୱତଃ ସ୍ମୃତିପଟକୁ ଆସିଯାଏ । ମୁକ୍ତିକାମୀ ଆର୍ତ୍ତଭକ୍ତମାନଙ୍କ ପାଇଁ ମନ୍ଦିର ବେଢ଼ାରେ ଧର୍ମଶାଳା, ସ୍ଥାନୀୟ ବଦାନ୍ୟ ବ୍ୟକ୍ତି ଶ୍ରୀ ସୁଧିର କୁମାର ଜେନା, ଗୋପାଳ ଚନ୍ଦ୍ର କର ଏବଂ ଗୋପାଳ ଚନ୍ଦ୍ର ସାହୁ ନିର୍ମାଣ କରି ଦେଇଛନ୍ତି । ବେଢ଼ା ମଧରେ ମନ୍ଦିରକୁ ଲାଗି ପତିତପାବନ ଶ୍ରୀ ଜଗନ୍ନାଥଙ୍କ ସୁଦୃଶ୍ୟ ମନ୍ଦିର ଅବସ୍ଥିତ । ଶଙ୍ଖାରୀ ଗ୍ରାମର ୰ମଦନ ମୋହନ ଦାସଙ୍କର ପୁତ୍ରବଧୂ ଓ ଐତିହାସିକ ପ୍ରଫେସର ମନ୍ମଥ ଦାସଙ୍କର ଜନନୀ ୰କାଦମ୍ବିନୀ ଦେବୀଙ୍କ ଦ୍ୱାରା ଏହି ମନ୍ଦିର ନିର୍ମିତ



Digitized by srujanika@gmail.com

ଏବଂ ଠାକୁରଙ୍କର ଦାରୁ ବିଗ୍ରହମାନ ପ୍ରତିଷ୍ଠିତ ହୋଇଛି । ମନ୍ଦିର ଉତ୍ତରପଟେ ବରଗଛମୂଳରେ ବିଶାଳ ପଞ୍ଚାମୃତ କୁଣ୍ଡକୁ ସରକାର ଏବେ ସୁରକ୍ଷା କରିବାର ବ୍ୟବସ୍ଥା କରିଛନ୍ତି । କୁଣ୍ଡପୋଖରୀ ମଧ୍ୟ ପ୍ରସ୍ତର ବନ୍ଧ ଦ୍ୱାରା ବେଷ୍ଟିତ ହୋଇପାରିଛି । ସେସବୁ ମିଶି ମନ୍ଦିରର ଶୋଭାବର୍ଦ୍ଧନ କରୁଛି ।

ମନ୍ଦିରର ଅନତି ଦୂର ଉତ୍ତରକୁ ରାଧାନଗରୀ ବୈଷ୍ଣବ ସଂପ୍ରଦାୟଙ୍କ ଦ୍ୱାରା ପ୍ରତିଷ୍ଠିତ ଗୌଡ଼ୀୟ ହରିସଭା ମଠ ଓ ମନ୍ଦିର ଅବସ୍ଥିତ । ଚନ୍ଦନେଶ୍ୱରଠାରୁ ଏକ ମାଇଲ୍ ଦୂରରେ ପୂର୍ବ ସୀମାନ୍ତରେ ବାଡ଼ସରିସା ଗ୍ରାମ ପ୍ରାନ୍ତରେ ଏକ ସୁନ୍ଦର ସୁଶୋଭିତ ମନ୍ଦିରରେ ଶ୍ୱେତ ମଲମଲ ପ୍ରସ୍ତର ଗଠିତ ପୂର୍ଣ୍ଣାବୟବ ଅପରୂପ 'ଲକ୍ଷ୍ମୀନାରାୟଣ' ବିଗ୍ରହ ଅବସ୍ଥାପିତ ହୋଇ ନିତିଦିନ ସେବାପୂଜା ପାଉଛନ୍ତି । ମେଳା ମହୋତ୍ସବ ଆଦି ସେଠାରେ ଲାଗିରହିଛି । ସ୍ଥାନୀୟ ଧର୍ମପ୍ରାଣ ବଦାନ୍ୟ ଭଦ୍ର ମହୋଦୟ ଶ୍ରୀ ସୁଧିର କୁମାର ଜେନାଙ୍କ ଏହା ଏକ ଅକ୍ଷୟ କୀର୍ତ୍ତି ।

ଏହି ଶ୍ରୀ ସୁଧିର କୁମାର ଜେନା ଏବଂ ରଜନୀକାନ୍ତ ଜେନା ଓ ଶ୍ରୀ କାମେଶ୍ୱର ପଣ୍ଡାଙ୍କ ପ୍ରଚେଷ୍ଟା ଏବଂ ଦାନରେ ମନ୍ଦିର ପୂର୍ବକୁ କିଛି ଦୂରରେ ଏକ ଡାକ୍ତରଖାନା ପ୍ରତିଷ୍ଠା ଲାଭ କରିଛି । ଏହି ସ୍ଥାନରେ ଭୋଳାନାଥ ଉଚ୍ଚ ଇଂରାଜୀ ବିଦ୍ୟାପୀଠ, ଜାତୀୟ ରାଜପଥ ବିଭାଗର ସ୍ଥାନୀୟ ଅଫିସ୍ ମଧ୍ୟ ଅଛି । ଏହାଛଡ଼ା ଚନ୍ଦନେଶ୍ୱର ମାର୍କେଟ ମଧ୍ୟରେ ଏକ ବିଶ୍ରାମାଗାର ମଧ୍ୟ ରହିଛି । ମନ୍ଦିର ଦକ୍ଷିଣକୁ ପଦ୍ମପୁର ଘାଟ ନିକଟସ୍ଥ ସମୁଦ୍ରତଟ ବାଲୁକାସ୍ତୂପ ଉପରେ ଏକ ବଡ଼ ଧରଣର ପାନ୍ଥଶାଳା ନିର୍ମିତ ହୋଇଛି । ଅତିଥି ଅଭ୍ୟାଗତ ଓ ପରିବ୍ରାଜକ ମାନଙ୍କର ବିଶ୍ରାମ ଓ ବ୍ୟବହାର ସକାଶେ ।

ବାବା ଚନ୍ଦନେଶ୍ୱରଙ୍କ ସ୍ଥାନ ହୁଗୁଳିକୁ ବଂଗ ଓଡ଼ିଶାର ଚତୁର୍ଦ୍ଦିଗରୁ ସାନ ବଡ଼ ରାସ୍ତାମାନଙ୍କ ଦ୍ୱାରା ସଂପୃକ୍ତ ଏବଂ ସଦାସର୍ବଦା ଯାନବାହନ ଦ୍ୱାରା ମୁଖରିତ । ଏହାଛଡ଼ା ସୀମାନ୍ତ ସାହାବାଜିପୁର ବୋର୍ଡ଼ରଠାରେ ବଂଗର ବିଭିନ୍ନ ସ୍ଥାନରୁ ଯାତ୍ରୀବାହୀ ବସ୍ ଚଳାଚଳର ବ୍ୟବସ୍ଥା ରହିଛି । ବହୁଦିନରୁ ଲକ୍ଷଲକ୍ଷ ନରନାରୀଙ୍କ ଉପସ୍ଥିତିରେ ଠାକୁରଙ୍କର ଚୈତ୍ରଚଡ଼କ ଉତ୍ସବ ବିଶେଷ ଜାକଜମକ ସହ ପ୍ରତିବର୍ଷ ଅନୁଷ୍ଠିତ ହୋଇ ଆସୁଛି । ଶାସ୍ତ୍ରବିଧାନ ଅନୁଯାୟୀ ବିଷୁବ ସଂକ୍ରାନ୍ତି ପୂର୍ବ ଦୁଇଦିନ ଠାକୁରଙ୍କର ନୀଳ ଓ ପାଟ ଉତ୍ସବ ପାଳିତ ହୁଏ । ତତ୍‌ପୂର୍ବରୁ 'କାମନା ବିବାହ' ଅନୁଷ୍ଠିତ ହୋଇଥାଏ । ଏସବୁ ବାବା ଚନ୍ଦନେଶ୍ୱରଙ୍କର ସୁଦୀର୍ଘ ପରମ୍ପରା । ଲକ୍ଷାଧିକ ସ୍ତ୍ରୀ ପୁରୁଷ ଭକ୍ତ ବେକରେ ପଇତା ପକାଇ, ପକ୍ଷକାଳ ପୂର୍ବରୁ ଏହି ଚଡ଼କ ଉତ୍ସବର ସୂଚନା ଦେଇଥାନ୍ତି ।



Digitized by srujanika@gmail.com

ଚୈତ୍ରମାସର ସତର ଦିନଠାରୁ ଏହି ଉତ୍ସବର କଳ୍ପାରମ୍ଭ ହୁଏ । ଉକ୍ତ ଦିବସରେ ପାଟଭକ୍ତ ଏବଂ ଦେଉଳିଆ ଭକ୍ତ ସର୍ବପ୍ରଥମେ ବେଦରେ ପଇତା ପକାଇ ବ୍ରତଧାରଣ କରନ୍ତି ଏବଂ ଠାକୁରଙ୍କର ଧ୍ୱଜା ପାଇଁ 'ପଡ଼ା' ବାଉଁଶ ଛେଦନ କରାଯାଏ । ମାସର ୧୮ ଦିନରେ ଘଟ ଉତ୍ତୋଳନ ଉତ୍ସବ ପାଳିତ ହୁଏ । ପାଟଯାତ୍ରାର ଆଠଦିନ ପୂର୍ବରୁ ଶ୍ରୀ ବେକଡ଼ି ଭକ୍ତ ବ୍ରତଧାରଣ କରନ୍ତି । ଇତି ମଧ୍ୟରେ ୧୬ଜଣ ବିଶିଷ୍ଟ ବାରୀ ଭକ୍ତ ବ୍ରତଧାରଣ କରିବାର ନିୟମ ରହିଛି । ବଂଶ ପରମ୍ପରାକ୍ରମେ ପାଟଭକ୍ତ, ଦେଉଳିଆ ଏବଂ ଶ୍ରୀ ବେକଡ଼ି ବ୍ରତଧାରଣ କରିବାର ପରମ୍ପରା ରହିଆସିଛି । ପଡ଼ା ବାଉଁଶକୁ ସୁସଜ୍ଜିତ କରି ଉତ୍ସବ ଶେଷଯାଏ ଧ୍ୱଜ ରୂପେ ବ୍ୟବହାର କରିବାର ରୀତି ରହିଛି । ଠାକୁରଙ୍କର ଆଲାମ ଛତା, ନାନା ପ୍ରକାର ପତାକା ଉତ୍ସବ ଓ ଶୋଭାଯାତ୍ରା ମାନଙ୍କରେ ବ୍ୟବହାର କରାଯାଇଥାଏ ।

ବାର୍ଷିକ ଚଡ଼କ ଉତ୍ସବର ପାରମ୍ପରିକ କାର୍ଯ୍ୟ ସମୂହ ଗଭୀର ଭକ୍ତି ପବିତ୍ରତା ଏବଂ ଶାସ୍ତ୍ରୀୟ ବିଧି ଅନୁଯାୟୀ ପାଳିତ ହୁଏ । ପ୍ରାରମ୍ଭରୁ ପକ୍ଷକାଳ ବ୍ୟାପି ଏଠାରେ ମେଳା ବସେ ଏବଂ ସହସ୍ର ସହସ୍ର କଣ୍ଠ ବାବା ଚନ୍ଦନେଶ୍ୱରଙ୍କୁ ଧ୍ୟାନକରି ହରିବୋଲ ଧ୍ୱନିରେ ସମଗ୍ର ମେଳା ଅଞ୍ଚଳ ତଥା ଏ ଅଞ୍ଚଳର ଜନପଦମାନ ଉଚ୍ଛୁଳି ପଡ଼େ । ବଂଗ ଓ ଉତ୍କଳ ଉଭୟ ରାଜ୍ୟରେ ଏହା ଅନ୍ୟତମ ବୃହତ୍ତମ ମେଳା ରୂପେ ଖ୍ୟାତି ଲାଭ କରିଛି । ମେଳାରେ ଲକ୍ଷଲକ୍ଷ ଲୋକଙ୍କ ସମାଗମ ପ୍ରତିଦିନ ହୋଇଥାଏ ଏବଂ ବିକାକିଣା ପାଇଁ ଶହଶହ ଦୋକାନମାନ ବସିରହେ । ଏହି ଉତ୍ସବ ଓ ମେଳା ଚନ୍ଦନେଶ୍ୱର ମେଳା ନାମରେ ସର୍ବତ୍ର ପ୍ରସିଦ୍ଧ ।

ଏହି ଚନ୍ଦନେଶ୍ୱର ମେଳା ପରିଚାଳନା କରିବା ପାଇଁ ସ୍ଥାନୀୟ ମହକୁମା ଅଫିସର, ତହସିଲଦାର, ବି.ଡି.ଓ. ଓ ପୂଜାପଣ୍ଡା ଏବଂ ସ୍ଥାନୀୟ ପ୍ରତିନିଧିମାନଙ୍କ ଦ୍ୱାରା ଗଠିତ ଏକ ମେଳା ପରିଚାଳନା କମିଟି ରହିଛି । ମେଳାରେ ପାନୀୟ ଜଳ ଓ ବିଜୁଳି ଶକ୍ତି ଯୋଗାଣ, ଜନସ୍ୱାସ୍ଥ୍ୟ ରକ୍ଷା, ଶାନ୍ତିରକ୍ଷା, ସଫାସୁତୁରା ତଥା ସଂକ୍ରାମକ ରୋଗ ଆଦିର ପ୍ରତିଷେଧ ଓ ନିରାମୟର ବ୍ୟବସ୍ଥା ସରକାର ନେଇଥାନ୍ତି । ସ୍ଥାନୀୟ ବିଭିନ୍ନ ରାଜନୀତିକ ଦଳ, ସ୍କୁଲ, କଲେଜ ଓ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ତରଫରୁ ଶତଶତ ସ୍ୱେଚ୍ଛାସେବୀ ତମ୍ବୁପକାଇ ମେଳାରେ ଶାନ୍ତି ଶୃଙ୍ଖଳା ରକ୍ଷା, ପାନୀୟ ଜଳଯୋଗାଣ ଆଦି କାର୍ଯ୍ୟରେ ପ୍ରତିବର୍ଷ ନିଜକୁ ନିୟୋଜିତ କରି ଆସିଛନ୍ତି ।

ଆଜି ନିଃସଂକୋଚରେ କୁହାଯାଇପାରେ, ସାଗରକାଶୀ ଚନ୍ଦନେଶ୍ୱର ବହୁଳାଂଶରେ ଏକ ପବିତ୍ର ତୀର୍ଥ କ୍ଷେତ୍ରରେ ପରିଣତ ହେଇଛି । ସାରା ଭାରତରେ ନହେଲେ ବି ବଂଗଳା ଏବଂ ଓଡ଼ିଶା ରାଜ୍ୟର ସର୍ବତ୍ର ଏହି ତୀର୍ଥ ସୁବିଦିତ । ଏହି ତୀର୍ଥ ପର୍ଯ୍ୟଟନରେ



Digitized by srujanika@gmail.com

ଯେତେ ଜନସମାଗମ ପ୍ରତିଦିନ ଘଟୁଛି, ଭାରତ ପ୍ରସିଦ୍ଧ ଶୈବକ୍ଷେତ୍ର କାଶୀରେ ଯେତେ ଘଟୁ ନଥିବ । କେବଳ ସେତିକି ନୁହେଁ, ଏହା ଭୋଗରାଇ ଭାଗ୍ୟରେ ଯଥେଷ୍ଟ ସୁନାମ ସହିତ ପ୍ରଭୂତ ଯଥାର୍ଥ ସହାୟତା ମଧ୍ୟ ଆଣିଦେଇଛି ।

ଆଜି ଦେଶ ବିଦେଶରୁ ଭ୍ରମଣରେ ଆସୁଥିବା ଶତଶତ ପର୍ଯ୍ୟଟକ ମାନଙ୍କ ପାଇଁ ଚନ୍ଦନେଶ୍ୱର ଏକ ଆକର୍ଷଣୀୟ ସ୍ଥାନ ହୋଇଉଠୁଛି । ଠାକୁରଙ୍କର ମହିମା ଅପାର, କରୁଣା ଅଲୌକିକ ଏବଂ ସର୍ବଜନ ବିଦିତ । ତାଙ୍କର କରୁଣା ବଳରେ ଏକ ନିପଟ ମଫସଲ ଅଞ୍ଚଳ ଚନ୍ଦନେଶ୍ୱର ଦ୍ରୁତ ଗତିରେ ଏକ ସହରର ରୂପ ପରିଗ୍ରହ କରିବାକୁ ଯାଉଛି । ତାଙ୍କର କରୁଣାମୟ ଅମୀୟଭରା ନାମରେ ଇତିହାସ ପ୍ରସିଦ୍ଧ ସଂଗ୍ରାମପ୍ରିୟ ପୁରାତନ ବୀରକୁଳ ମାଟି ଭୋଗରାଇ ଆଜି ଦେଶରେ ସର୍ବତ୍ର ସୁପରିଚିତ, ସମ୍ମାନିତ ଏବଂ ଗର୍ବୋନ୍ନତ । ପୁଣ୍ୟତୀର୍ଥ ଓ ପରିବ୍ରାଜକ କେନ୍ଦ୍ର 'ସାଗରକାଶୀ ଚନ୍ଦନେଶ୍ୱର' ଆମର ଏକ ପରମ ସଂପଦ ହୋଇଉଠିଛି । ଆଗାମୀ କାଳରେ ଏହି ଚନ୍ଦନେଶ୍ୱର ଯେ ଭୋଗରାଇର ଗୌରବମୟ ଇତିହାସକୁ ଅଧିକତର ସମୃଦ୍ଧ ଏବଂ କାଳଜୟୀ କରି ନିଶ୍ଚିତ ଥୋଇବ, ଏହା ସନ୍ଦେହାତୀତ ।

**ଶ୍ରୀ ଶ୍ରୀ ନୃସିଂହ ନାଥ ଜୀଉ :**

ଅଷ୍ଟାଦଶ ଶତାବ୍ଦୀର ୨ୟ ଦଶକରେ ଶ୍ରୀ ଶ୍ରୀ ନୃସିଂହ ନାଥ ଜୀଉଙ୍କର ଆବିର୍ଭାବ କୁସୁଡ଼ା ଗ୍ରାମରେ କୁସୁଡ଼ା ଗଡ଼ରେ ଦୈବକ୍ରମେ ଘଟିଥିଲା । ଜନୈକ ସାଧୁ ନୃସିଂହ ମୂର୍ତ୍ତିର ଏକ ଶାଳଗ୍ରାମ ଶିଳା ସ୍ଥାନୀୟ ଗଡ଼ର ତତ୍କାଳୀନ ପ୍ରତିଷ୍ଠିତ ଜମିଦାର ଶ୍ରୀ ଉଚ୍ଛବାନନ୍ଦ ସାମନ୍ତ ସିଂହାର ଦାସ ମହାପାତ୍ରଙ୍କୁ ଦାନ କରିଥିଲେ । ସାଧୁଙ୍କର ନିର୍ଦ୍ଦେଶକ୍ରମେ ଶ୍ରୀ ଦାସ ମହାପାତ୍ର ଶିଳାଟିକୁ ଅତିଶୟ ଯତ୍ନ ଏବଂ ଭକ୍ତି ସହକାରେ ପ୍ରତିଷ୍ଠା କରି ତାଙ୍କର ସେବାପୂଜା ଓ ଭୋଗରାଇର ବ୍ୟବସ୍ଥା ସକାଶ ଦୁଇଶହ ମାଣ ଭୂମି ଠାକୁରଙ୍କ ନାମରେ ଖଞ୍ଜିଥିଲେ । ବହୁ ଅନୁସନ୍ଧାନ ପରେ ପ୍ରାପ୍ତ ଓଡ଼ିଆରେ ଲେଖା ପୁରୁଣା ଏକ ତାଳପତ୍ର ଖଡ଼ିକାରୁ ଜଣାଯାଏ - ୧୭୦୯ ମସିହାରେ ଦୈବ ଘଟଣାକ୍ରମେ ଶ୍ରୀ ଶ୍ରୀ ନୃସିଂହ ନାଥଙ୍କର କୁସୁଡ଼ା ଗଡ଼ରେ ଆବିର୍ଭାବ ଘଟେ । ଶ୍ରୀ ନୀଳକଣ୍ଠ ସାମନ୍ତ ସିଂହାର ଉଚ୍ଛବାନନ୍ଦଙ୍କର ପୂର୍ବପୁରୁଷ ଥିଲେ । ତାଳପତ୍ର ଖଡ଼ିକାରୁ ଆହୁରି ଜଣାଯାଏ - ରୋପକାରୀ ଏକ ତାଳପତ୍ର ସନନ୍ଦ ବଳରେ ଜମିଦାର ଠାକୁରଙ୍କର ଭୂସଂପତ୍ତି ଜମିଦାରୀ ମାହଲ ଖଜଣା ଏବଂ ଦିଜେସ୍ଥଳୀ ଆଦିର ସମସ୍ତ ବ୍ୟବସ୍ଥା କରିଥିଲେ । କଥିତ ଉଚ୍ଛବାନନ୍ଦଙ୍କର ସାତଭାଇ ଥିଲେ । ସେମାନେ ସମସ୍ତେ ବଳବାନ୍, ସାହସୀ ଏବଂ ସ୍ୱାଧୀନଚେତା ଥିଲେ । ତତ୍କାଳୀନ ବଂଗଳା ନବାବଙ୍କର ବଶ୍ୟତା ସେମାନେ ସ୍ୱୀକାର କରୁନଥିଲେ କି ମୁଣ୍ଡ ନୁଆଁଉ ନଥିଲେ ।



Digitized by srujanika@gmail.com

ଥରେ ନବାବ ସାତ ଭାଇଙ୍କୁ ତାଙ୍କ ରାଜଧାନୀକୁ ଡକାଇ ପଠାଇ ଥିଲେ । ତୋରଣ ମୁହଁରେ ସେମାନଙ୍କର ଆସିବା ବାଟରେ ଖଣ୍ଡାମାନ ଏପରି ଭାବରେ ଝୁଲାଇ ରଖିଥିଲେ ଯେ, ଘୋଡ଼ାରୁ ଓହ୍ଲାଇ ନଗଲେ ଘୋଡ଼ାସବାର ମାନଙ୍କର ମୁଣ୍ଡ ତୋରଣ ଦ୍ୱାରରେ କଟି ତଳେ ପଡ଼ିଯିବ । ଏହା ଦେଖି ଏବଂ ବିଚାରି ପ୍ରଥମ ଛଅଭାଇ ଘୋଡ଼ା ଉପରେ ବସି ଫାଟକ ମୁହଁ ବାଟେ ପଶିଗଲେ । ସେମାନଙ୍କର ମୁଣ୍ଡ କଟି ତଳେ ଭୂମିରେ ଲୋଟିଗଲା । ସପ୍ତମ ଭ୍ରାତା ଉଚ୍ଛବାନନ୍ଦଙ୍କୁ ନବାବ ସ୍ୱୟଂ ଅଟକାଇ ତାଙ୍କର ପ୍ରାଣରକ୍ଷା କରିବା ସଂଗେସଂଗେ ସେମାନଙ୍କର ସାହସ ଓ ସ୍ୱାଭିମାନର ଭୂୟସୀ ପ୍ରଶଂସା କରିଥିଲେ ଏବଂ ଚୌଧୁରୀ ଉପାଧିରେ ଭୂଷିତ କରିବା ସହିତ ସ୍ୱାଧୀନ ଜମିଦାର ରୂପେ ତାଙ୍କୁ ସ୍ୱୀକାର କରିଥିଲେ ।

କାଳକ୍ରମେ ପ୍ରାୟ ଶତାଧିକ ବର୍ଷ ପୂର୍ବେ ଏହି ଚୌଧୁରୀ ପରିବାରର ବଂଶଧର ଶ୍ରୀ ଆଶାରାମ ଦାସ ମହାପାତ୍ର ଠାକୁରଙ୍କର ମନ୍ଦିର ଗଡ଼ ମଧ୍ୟରେ ନିର୍ମାଣ କରାଇ ସେଠାରେ ଠାକୁରଙ୍କୁ ପ୍ରତିଷ୍ଠା କରିଥିଲେ । କ୍ରମେ ନୃସିଂହନାଥଙ୍କ ସହିତ ଶ୍ରୀ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଜୀଉ ଏବଂ ରାଧିକା, ଲକ୍ଷ୍ମୀନାରାୟଣ ଏବଂ ଲକ୍ଷ୍ମୀ ଜନାର୍ଦ୍ଦନ, ଶ୍ରୀ ଶ୍ରୀ ଗୋପାଳ ଓ ଶ୍ରୀ ଦୁର୍ଗାଙ୍କର ମୂଲ୍ୟବାନ ପ୍ରସ୍ତର ନିର୍ମିତ ମୂର୍ତ୍ତିମାନ ଏବଂ ନୃସିଂହ ରଘୁନାଥ ଶିଳାଙ୍କର ସମାବେଶ ନୃସିଂହନାଥଙ୍କ ମନ୍ଦିରରେ ଘଟେ । ସମବେତ ସମସ୍ତ ଦେବଦେବୀଙ୍କ ରୀତି ମୁତାବକ୍ ସେବାପୂଜା ସକାଶେ ଜମିଦାରୀର କିଛି ଅଂଶ ମଧ ଠାକୁରଙ୍କ ନାମରେ ଖଞ୍ଜା ଯାଇଥିଲା । ଏହି ମନ୍ଦିରର ଭଗ୍ନାବଶେଷ ଆଜି ଦେଖିବାକୁ ମିଳେ । ମାତ୍ର ଠାକୁର ଏବେ ଏକ ଚାଳଘରେ ରହି ପୂଜା ପାଉଛନ୍ତି । ତାଙ୍କର ଭୂସଂପତ୍ତିର ପରିମାଣ ବର୍ତ୍ତମାନ ନିଜ ଚାଷ ଆକାରରେ ଦୁଇଶହ ଚାଳିଶ ମାଣ ହେବ ଏବଂ ଆଠଶହ ମାଣ ଖଞ୍ଜା ଜମିଦାରୀରୁ ପ୍ରାୟ ୧୨୦୦ ଟଙ୍କା ଖଜଣା ଆଦାୟ ହେଉଛି । ୧୯୫୪ ମସିହାଠାରୁ ଠାକୁରଙ୍କର ସମସ୍ତ ଆୟବ୍ୟୟ ଏବଂ ସେବାପୂଜା ଆଦିର ବ୍ୟବସ୍ଥା ଜମିଦାରଘର ବଂଶାନୁକ୍ରମିକ ଟ୍ରଷ୍ଟି ଭାବରେ କରି ଆସିଛନ୍ତି ।

ଠାକୁରଙ୍କ ପ୍ରଧାନ ଭୋଗ ହେଉଛି ଅରୁଆ ଚାଉଳର କ୍ଷୀରି ବା ପାୟସ । ଏହାଛଡ଼ା ନିତାନୀ ଉଷୁନା ଚାଉଳର ଭୋଗ ମଧ ଲାଗେ । ନୃସିଂହନାଥ ଜୀଉଙ୍କର ଜାହିରା ବା ଦୈବୀଶକ୍ତି ପ୍ରଭାବ ସମଗ୍ର ଅଞ୍ଚଳରେ ବିଦିତ । ଥରେ ଠାକୁରଙ୍କର ଚାଷ ବିଲ କାମ ବଛା ଉଛୁର ହେବାରୁ ଠାକୁର ନିଜେ ଯାଇ ଏକାଦିନେ ସମସ୍ତ ବିଲବଛା କାମ ଶେଷ କରି ଆସିଥିଲେ । ପରଦିନ ହଠାତ୍ ଠାକୁରଙ୍କ ଏବଂ ମନ୍ଦିର ଗାତ୍ରରେ କାଦୁଅ ଲାଗିଥିବାର ଦେଖାଗଲା ଏବଂ ବିଲବଛା କାମ ଶେଷ ହୋଇଥିବା ଦେଖି



Digitized by srujanika@gmail.com

ଲୋକେ ଆଶ୍ଚର୍ଯ୍ୟ ହେଲେ । ଠାକୁରଙ୍କର ସେବା ପୂଜାରେ କିଛି ତ୍ରୁଟି ବା ଅନ୍ୟାୟ ଘଟିଲେ, ମନ୍ଦିରର ନାଗସାପ ବାହାରି ଜମିଦାରଙ୍କୁ ଯାଇ ଠାକୁରଙ୍କ ପାଖକୁ ଡାକି ଆଣୁଥିଲା । ଠାକୁରଙ୍କର ପ୍ରାକ୍ତନ ପୂଜକ ଶ୍ରୀ ବୃନ୍ଦାବନ ଦାସ ଅଧିକାରୀ ଠାକୁର ପୂଜା କରିବାକୁ ଗଲାବେଳେ ଭେଳାଭେଳା ନାଗସାପ ଠାକୁରଙ୍କୁ ବେଷ୍ଟନ କରି ରହିଥିବାର ଦେଖନ୍ତି ଏବଂ ତୁଣ୍ଡ ଶବ୍ଦ କଲେ ସାପମାନ ଆପେଆପେ ମନ୍ଦିରରୁ ବାହାରି ଯାଉଥିଲେ । ଏହି ଠାକୁରଙ୍କର ଲୀଳାର ନାନାବିଧ କିମ୍ବଦନ୍ତୀ ଆଜି ସୁଦ୍ଧା ଏ ଅଞ୍ଚଳରେ ବିଦ୍ୟମାନ ରହିଛି । ୰କନ୍ଦର୍ପ ନାରାୟଣ ଏବଂ ଶ୍ରୀ କୁଞ୍ଜବିହାରୀ ଏବଂ ଶ୍ରୀ ହରିହର ଦାସ ମହାପାତ୍ର ଆଦି ଏହି କୁସୁଡ଼ା ଗଡ଼ର ଚୌଧୁରୀ ସାମନ୍ତ ସିଂହାରର ଦାସ ମହାପାତ୍ର ପରିବାରର ବଂଶଧର ଅଟନ୍ତି ।

**ବଣ ନାୟିକାଣୀ :**

ଦେବୀ ଭଗବତୀଙ୍କର ଅଷ୍ଟନାୟିକା (ସଖୀ) ମଧ୍ୟରୁ ଫୁଲବଣି ଗ୍ରାମର 'ନାୟିକାଣୀ' ହେଉଛନ୍ତି ଅନ୍ୟତମା । ଯେଉଁ ସମୟରେ ଗଡ଼ କୀର୍ତ୍ତିଶାଳର ରାଜା ଭୋଗରାଇରେ ରାଜୁତି କରୁଥିଲେ ସେ କାଳରୁ ନାୟିକାଣୀ ଫୁଲବଣିରେ ପ୍ରତିଷ୍ଠା ଲାଭକରି ପୂଜା ପାଉଛନ୍ତି ବୋଲି କଳନା କରାଯାଇଛି । କଥିତ ଅଛି, କିରାତ ରାଜା କୀର୍ତ୍ତିଶାଳ ଭୂମିଜ ଜାତିର ଅଧିବାସୀ ଥିଲେ । ନାୟିକାଣୀଙ୍କର ପୀଠ ସନ୍ନିକଟ କାଳୀଦ୍ୱାର ସ୍ଥାନଟିରେ ଏକ ସମୟରେ ଏହି ଗଡ଼ର ଦ୍ୱାରଦେଶ ବା ଇଲାକା ମଧ୍ୟକୁ ପ୍ରବେଶ ପଥ ଥିଲା ବୋଲି ଅନୁମାନ କରାଯାଏ । ରାଜା କୀର୍ତ୍ତିଶାଳ ନାୟିକାଣୀଙ୍କୁ ତାଙ୍କ ରାଜ୍ୟର ଦକ୍ଷିଣ ଦ୍ୱାରରେ ରାଜ୍ୟର ସୁରକ୍ଷା ପାଇଁ ପ୍ରତିଷ୍ଠା କରିଥିଲେ ।

ନାୟିକାଣୀଙ୍କର ପୂର୍ବର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ସମୁଦ୍ରର ବାଲୁକାସ୍ତୂପ ନିକଟବର୍ତ୍ତୀ ଏହି ସ୍ଥାନଟି ପୂର୍ବେ କୁଚିଳା ଜଂଗଲରେ ପରିପୂର୍ଣ୍ଣ ଥିଲା ଏବଂ ଏହି କୁଚିଳା ଜଂଗଲ ମଧ୍ୟରେ ଠାକୁରଙ୍କର ବିଜୟସ୍ଥଳୀ ଆଗରୁ ରହିଅଛି । ଏବେ ମଧ୍ୟ କିଛିକିଛି କୁଚିଳା ଗଛ ଦେବୀପୀଠ ପାଖେ ଦେଖାଯାଏ । ଘୋର ବନାକୀର୍ଣ୍ଣ ସ୍ଥାନରେ ତାଙ୍କର ଆବିର୍ଭାବ ହେତୁ ଦେବୀ 'ବଣ ନାୟିକାଣୀ' ନାମରେ ଅଭିହିତ ହୋଇ ଆସିଛନ୍ତି ।

ଦେବୀପୀଠ ପୂର୍ବକୁ ଲାଗି ଖାସ ଜଂଗଲି ଫୁଲର ବଣରୁ ସଂଗୃହୀତ ରାଶିରାଶି ଫୁଲ ଦେବୀଙ୍କ ଉପରେ ଢଳା ଯାଉଥିଲା । ପଶ୍ଚିମକୁ ଲାଗି ଜଂଗଲରୁ ଟୁକୁରି ଟୁକୁରି ସଂଗୃହୀତ ସୁସ୍ୱାଦୁ ଫଳ ଦେବୀଙ୍କର ଭୋଗରାଗ ସକାଶେ ହାଜିର କରାଯାଉଥିଲା । ପଶ୍ଚିମାଂଶ ସମୁଦ୍ରତଟ ଯାଏ ଖୋଲା ମେଲା ପଡ଼ିଥାଏ । ଦକ୍ଷିଣରୁ ସମୁଦ୍ର ଆଡୁ ଜଳ ଦସ୍ୟୁମାନଙ୍କର ଆକ୍ରମଣରୁ ଭୋଗରାଇ ଅଞ୍ଚଳକୁ ରକ୍ଷା କରିବାପାଇଁ କିରାତ ବଂଶୀୟ



Digitized by srujanika@gmail.com

ଶାସକମାନେ ରଣକୋଠିମାନ ଅଦୂର ସମୁଦ୍ର ତଟରେ ନିର୍ମାଣ କରି ଆଦିମ ଜାତିର ସୈନ୍ୟମାନଙ୍କୁ ମୁତୟନ କରିଥିଲେ । ଏହି ବଣ ଦେବୀପୀଠର ଉତ୍ତର ଚକଳା ସମତଳ ଓ କର୍ଷଣ ଉପଯୋଗୀ ରହିଥାଏ । ଉପରୋକ୍ତ କାରଣ ଦୃଷ୍ଟେ କାଳକ୍ରମେ ଏହି ସ୍ଥାନମାନଙ୍କର ନାମକରଣ ଯଥାକ୍ରମେ ଫୁଲବଣି ଖାସ, ଟୁକୁରି ହାକିରା, ରଣକୋଠା ଓ ଚକ ଫୁଲବଣି ରଖାଯାଇଥିବାର ଅନୁମାନ କରାଯାଏ । ପ୍ରଥମେ ଭୂମିଜ ଜାତିର ସ୍ତ୍ରୀଲୋକମାନେ ଠାକୁରାଣୀଙ୍କର ସେବାପୂଜା କରୁଥିଲେ । କିରାତ ରାଜା ଅମଳରୁ ଏହି ରୀତି ଚଳି ଆସୁଥିବା ପରି ଜଣାଯାଏ । କାଳକ୍ରମେ ଏହି ଗଡ଼ କୀର୍ତ୍ତିଶାଳର ପତନ ପରେ ଭୋଗରାଇ ଅଞ୍ଚଳର ପଞ୍ଚେଟଗଡ଼ର ଜମିଦାର ଅଧୀନକୁ ଆସିଲା । ପଞ୍ଚେଟଗଡ଼ର ରାଣୀ ରେଣୁକକା ଦେଈଙ୍କର ବଂଶଧର ଚୌଧୁରୀ ଗୋପେନ୍ଦ୍ର ନନ୍ଦନ ଦାସମହାପାତ୍ର ଦେବୀଙ୍କର ସେବା ପୂଜାରେ ସଂସ୍କାର ଆଣି ଭୋଗରାଗ ଆଦି ସକାଶ ଭୋଗରାଇ ପାହିର ୨୦ମାଣ ଭୂମି ଦେବୀଙ୍କ ନାମରେ ଖଞ୍ଜି ଦେଇଥିଲେ ଏବଂ ପୂଜକ ଓ ସେବାୟତ ଭାବରେ ଶଙ୍ଖାରୀ ଗ୍ରାମର ପଣ୍ଡା ବଂଶର ଜନୈକ ପୂର୍ବସୂରୀଙ୍କୁ ନିଯୁକ୍ତ କରିଥିଲେ । ସେ କାଳରୁ ଅଦ୍ୟାବଧି ଉକ୍ତ ପଣ୍ଡା ସେବାୟତମାନେ ଦେବୀଙ୍କର ସେବାପୂଜା କରି ଆସୁଛନ୍ତି ।

ଆଦ୍ୟରୁ ଏହି ଦେବୀପୀଠ ଉପରେ କୌଣସି ଆଚ୍ଛାଦନ ବା ମନ୍ଦିର ନଥିଲା । ଖୋଲା ଆକାଶ ତଳେ ସମୁଚ୍ଚ ବାଲିଆଡ଼ିଆ ଉପରେ କୁଚିଳା ଜଂଗଲ ମଧ୍ୟରେ ସେ ବିଜେ କରୁଥିଲେ । ଏହା ଦେଖି ପରବର୍ତ୍ତୀ କାଳରେ ଫୁଲବଣୀ ଗ୍ରାମର ବିଖ୍ୟାତ ଭୂମ୍ୟଧିକାରୀ ଶ୍ରୀ କୃଷ୍ଣପ୍ରସାଦ ପ୍ରଧାନ ପକ୍କାକାନ୍ଥ ବିଶିଷ୍ଟ ଘରଟିଏ ନିର୍ମାଣ କରାଇ ଦେଇଥିଲେ । ସେ ପ୍ରାୟ ଶହେ ବର୍ଷର କଥା ହେବ । କିନ୍ତୁ ଆଜି ସେହି ପୁରୁଣା ପକ୍କାକାନ୍ଥ ଉପରେ ଚାଳ ଛପରଟିଏ ମାତ୍ର ଛିଡ଼ା ହୋଇଥିବାର ଦେଖାଯାଏ । ଠାକୁରାଣୀଙ୍କର ଘରତଳି ଚଟାଣର ଯତ୍ନ ମଧ୍ୟ ଏଯାବତ୍ ନିଆଯାଇ ପାରିନାହିଁ ।

ଦେବୀ ନାୟିକାଣୀଙ୍କର ଜାହିରା କିନ୍ତୁ କମ୍ ନୁହେଁ । ପ୍ରବାଦ ଅଛି, ପୂର୍ବେ ତାଙ୍କର ବାହନ ବାଘମାନଙ୍କୁ ଡାହୁଣୀରେ ବନ୍ଧା ହେଲା ଭଳି ପୀଠ ସାମନାରେ ଦେଖାଯାଉଥିଲା । କ୍ଷୀରିଭୋଗ କେହି ମନାସିଲେ ନାୟିକାଣୀ ତାଙ୍କର ଅଭୀଷ୍ଟ ପୂରଣ କରୁଥିଲେ । କାହାରି ଗାଈଗୋରୁ ନିରୁଦ୍ଦିଷ୍ଟ ହେଲେ କିମ୍ବା ହଜିଗଲେ ନାୟିକାଣୀ ନିଶ୍ଚୟ ମିଳାଇ ଦେଉଥିଲେ । ଦୁଧ, ଅରୁଆ, ନଡ଼ିଆ ଓ ଚିନି ମିଶା କ୍ଷୀରିଭୋଗ ଦେବୀଙ୍କ ପ୍ରିୟ ଭୋଗ ଅଟେ । ଏହାଛଡ଼ା ମାଛ ମାଂସ ମଧ୍ୟ ଭୋଗ ଲାଗୁଥାଏ ଦେବୀଙ୍କ



Digitized by srujanika@gmail.com

ଠାରେ । ପୂର୍ବେ ଛାଗବଳି ଦିଆଯାଉଥାଏ । ଏବେ ଛାଗବଳି ଆଉ ଦିଆଯାଏ ନାହିଁ । କ୍ଷୀରି ଭୋଗମାନି ଅସାଧ କାର୍ଯ୍ୟମାନ ଲୋକେ ଦେବୀଙ୍କ କୃପାରୁ ସାଧନ କରିପାରୁଥିଲେ ।

ଏସବୁ ଦୈବୀ ମାହାତ୍ମ୍ୟ ବିଷୟରେ କିମ୍ବଦନ୍ତୀ ଆଜି ଅନେକ ବିଶ୍ୱାସ ଯିବେ ନାହିଁ । କିନ୍ତୁ ଏହି ଦେବଦେବୀ ମାନଙ୍କର ମହିମାମୟ ଅତୀତକୁ କେନ୍ଦ୍ରକରି ଆମ ଦେଶର ଗୌରବମୟ ଅତୀତ ଗଢ଼ି ଉଠିଛି । ଆମର ସତ୍ୟନିଷ୍ଠ ଦୈବବିଶ୍ୱାସୀ ପୂର୍ବସୂରୀ ମାନଙ୍କର ବଳିଷ୍ଠ ସଫଳ ଜୀବନଧାରା ଭିତ୍ତି ଉପରେ ଛିଡ଼ା ହୋଇ ଆମେ ଆଜି ଜୀବନଯୁଦ୍ଧ କରିଚାଲିଛୁଁ, କିନ୍ତୁ ଆଜିର ବସ୍ତୁବାଦୀ ସଭ୍ୟ ଦୁନିଆ ଏ ସମସ୍ତକୁ ଏକାନ୍ତ ପୁରୁଣା, କଳଙ୍କିଯୁକ୍ତ କୁସଂସ୍କାର ଓ ଅନାବଶ୍ୟକ ମଣି ଦୂରକୁ ଫିଙ୍ଗିବାରେ ଲାଗିଛି । ଆମର ଅତୀତ ବା ପ୍ରାକ୍ତନ, ଯେତେ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ସେଥିପ୍ରତି ତାଙ୍କର ମୋହ ବା ଆସ୍ଥା ନାହିଁ । ତେଣୁ ଅତୀତର ମହିମାମୟୀ ନାୟିକାଣୀ ଆଜି ଅବହେଳିତ ଓ ଆଂଶିକ ପରିତ୍ୟକ୍ତ ଶିଳାଖଣ୍ଡ ମାତ୍ର । ତାଙ୍କପାଇଁ ସୁନ୍ଦର ମନ୍ଦିରଟିଏ ଗଢ଼ିବାର ଆବଶ୍ୟକତା କେହି ଅନୁଭବ କରନ୍ତି ନାହିଁ । କିନ୍ତୁ ଥୋକେ ଲୋକଙ୍କର ପୂର୍ବର ବିଶ୍ୱାସ ଓ ଭକ୍ତି ଆଜିବି ଅତୁଟ ରହିପାରିଛି । ଏଣୁ ଗାଁ, ଗାଁରୁ କ୍ଷୀରିଭୋଗର ଭାର କେବେ ଅଭାବ ନାୟିକାଣୀଙ୍କଠି ଦେଖାଯାଏ ନାହିଁ ।

ଫୁଲବଣି ଗ୍ରାମ ପ୍ରସିଦ୍ଧ ନାୟିକାଣୀଙ୍କ ପୀଠଗ୍ରାମ, ଏବେ ଭୋଗରାଇର ବିଦ୍ୟାନଗରୀ ରୂପେ ପରିଚିତ ।





Digitized by srujanika@gmail.com

# ସ୍ୱପ୍ନ-ସଫଳତା-ସନ୍ଦେଶ

ଯେଉଁ ସାଗର ଓ ସୁବର୍ଣ୍ଣରେଖା ବାରମ୍ବାର ଉଦ୍‌ଗାର କରି ଏହି ସୁନାମାଟି ଭୋଗରାଇକୁ ଜନ୍ମ ଦେଇଛି, ରାଶିରାଶି ପଟୁମାଟିରୂପୀ ସୁନାବାଲି ଢାଳି ଏହାର ଅଙ୍ଗ ପ୍ରତ୍ୟଙ୍ଗ ସମୂହ ପୁଷ୍ଟ କରୁଛି, ସେହି ସାଗର ଓ ସୁବର୍ଣ୍ଣରେଖା ଭୋଗରାଇର ଏକମାତ୍ର ପ୍ରାକୃତିକ ସଂପଦ ଅଟେ ଏବଂ ବିପଦ ମଧ୍ୟ । ନଦୀ ପୁନଃପୁନଃ କୂଳ ଲଙ୍ଘନ କରି ଗାଁ ମାଟି, ଘରଦ୍ୱାର ଫସଲ ଧୋଇ ନେଇଯାଏ । ପଟୁ ରାଶି ଅଞ୍ଚଳ ବକ୍ଷରେ ବିଞ୍ଚି ଦେଇଯାଏ । ସାଗର ବୁକୁରେ ଲଘୁଚାପ ସୃଷ୍ଟିହୋଇ ବେଗବତୀ ବାତ୍ୟା ବହିଆସେ । ଗଛପତ୍ର, ଘରଦ୍ୱାର ଚୁରମାର କରିଦିଏ । ଲବଣାକ୍ତ ଉତ୍ତାଳ ତରଙ୍ଗ କେବେକେବେ ଭିତରକୁ ପଶିଆସି ଫସଲ ଓ ମାଟିକୁ ନଷ୍ଟକରେ । କିନ୍ତୁ ଦୁହିଁଙ୍କର ପ୍ରଶସ୍ତ ବକ୍ଷରେ ସବୁଦିନେ ତରଣୀମାଳ ରାତିଦିନ ଖଚିତ ହୋଇ ଘୂରିବୁଲେ ଜୀବିକା ଉଦ୍ଦେଶ୍ୟରେ । ଏହି ସାଗର ଓ ସ୍ରୋତସ୍ୱିନୀ ବାଲୁକା ଓ ପଟୁମାଟିକୁ ଘେରି ଭୋଗରାଇର ସନ୍ତାନ ତାଙ୍କର ସ୍ୱପ୍ନନୀଡ଼ ଶତାବ୍ଦୀ ଶତାବ୍ଦୀ ଧରି ରଚନା କରିଚାଲିଛନ୍ତି । ମୁଠାମୁଠା ପଟୁକୁ ଘାଣ୍ଟି ଚକଟି, ଆଞ୍ଜୁଳା ଆଞ୍ଜୁଳା ବାଲିକୁ ଆଡ଼େଇ ଭିଡ଼େଇ ସୁନାର ଫସଲ ସର୍ଜନା କରି ଜୀବନ ପରେ ଜୀବନ ବିତେଇ ଆସୁଛନ୍ତି । ଜୀବନଯନ୍ତ୍ରଣା ଭୁଲିବାକୁ ସାଗର ଦେଇଛି ତାଙ୍କୁ ଉନ୍ନତ ମସ୍ତକ, ବିଶାଳ ହୃଦୟ ଓ ଆଧ୍ୟାତ୍ମଚେତନା । ସୁବର୍ଣ୍ଣରେଖା ଦେଇଛି ସହିଷ୍ଣୁତା, ନିର୍ଭୀକତା ଓ ବଦାନ୍ୟତା । ଏଗୁଡ଼ିକ ଭୋଗରାଇବାସୀଙ୍କର ଚରିତ୍ରର ଅମୂଲ୍ୟ ସଂପଦ ହୋଇ ରହିଛି । ଏସବୁକୁ ଧରି ଭୋଗରାଇ ତାର ସ୍ୱପ୍ନ ସାଗରର ସୀମା କ୍ରମେ ବିସ୍ତାର କରିଚାଲିଛି, କେବେ ଥମିଯିବାର ଜଣାନାହିଁ । ଜୀବନଯୁଦ୍ଧରେ କ୍ଷତବିକ୍ଷତ ହୋଇ ରକ୍ତାକ୍ତ ହୋଇ ଉଠିଥିଲେ ମଧ୍ୟ ନୂଆନୂଆ କୌଶଳ ଉଦ୍ଭାବନ କରି ସେ ସଂଗ୍ରାମ କରିଛି କିନ୍ତୁ ପଛକୁ ହଟିଯାଇଥିବାର କେହି ପ୍ରମାଣ ଦେଇ ପାରିବ ନାହିଁ ।

ଭୋଗରାଇ ଜୀବନର ଏହି ସୁଦୀର୍ଘ ସଂଗ୍ରାମରେ ସେପରି କେହି ତାଙ୍କୁ ସାହାଯ୍ୟ କରିନାହିଁ, କେବଳ ପରମେଶ୍ୱର ବାବା ଚନ୍ଦନେଶ୍ୱରଙ୍କ ବ୍ୟତୀତ । ଆଜି ଯାହାକିଛି ଭୋଗରାଇ ମାଟି ଓ ଭୋଗରାଇ ଗଗନର ଆଖିରେ ଧରାଦିଏ, ସେସବୁ ତାର ଆପଣାର



Digitized by srujanika@gmail.com

ଲହୁଲୁହ ଏବଂ ଝାଳର ସର୍ଜନା, ଏକାନ୍ତ ନିଜସ୍ୱ । ଇତିମଧ୍ୟରେ, ଭୋଗରାଇର ବହୁ ମାତୃଭକ୍ତ କୃତୀ ସନ୍ତାନ ଭୋଗରାଇଁ ମା' କୋଳରେ ଆଖିବୁଜି ଦେଲେଣି । ସେମାନଙ୍କ ଅକ୍ଷୟ ତ୍ୟାଗବଳରେ ଭୋଗରାଇ ମାଟି ଅଧିକ ଶକ୍ତ, ସମର୍ଥ ଓ ଦୃପ୍ତ ହୋଇ ପାରିଛି ।

ଅବଶ୍ୟ ଏକଥା ଅନସ୍ୱୀକାର୍ଯ୍ୟ ଯେ, ସ୍ଥାନୀୟ ଭୂମ୍ୟଧିକାରୀ ଦୁଇଜଣ ପଞ୍ଚେଟଗଡ଼ ଏବଂ ବି.ଏଲ. ମୁଖାର୍ଜୀ ଟ୍ରଷ୍ଟ ଇଷ୍ଟେଟଙ୍କ ପ୍ରଚେଷ୍ଟାରେ ସର୍ବପ୍ରଥମେ ଏକ ସଂସ୍କୃତ ଶିକ୍ଷାୟତନ (ଭୋଗରାଇ) ଏବଂ ଏକ ଦାତବ୍ୟ ଚିକିତ୍ସାଳୟ (କଖଡ଼ା) ଭୋଗରାଇରେ ଆରମ୍ଭ ହୋଇଥିଲା । ତା'ପରେ ଜିଲ୍ଲା ସ୍ୱାୟତ୍ତ ଶାସନ ତରଫରୁ ପ୍ରାଇମେରୀ ଶିକ୍ଷାର ପ୍ରସାର, ପାନୀୟ ଜଳଯୋଗାଣ ଏବଂ ଗମନାଗମନର ସୁବିଧା ସହିତ ମ୍ୟାଲେରିଆ, ହଇଜା, ବସନ୍ତ ପ୍ରଭୃତି ମହାମାରୀର ପ୍ରତିଷେଧ ଓ ଚିକିତ୍ସା ମାଧ୍ୟମରେ ବାହାରୁ ଭୋଗରାଇ ସହିତ ସଂପର୍କ ସ୍ଥାପନ ହେଲା । ବହିର୍ଜଗତ ସହ ଯୋଗାଯୋଗ କ୍ଷେତ୍ରରେ ୧୯୨୨ଠାରୁ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଗଠିତ ଜିଲ୍ଲାବୋର୍ଡ଼ ଶତାବ୍ଦୀର ଦ୍ୱିତୀୟ ଏବଂ ତୃତୀୟ ଦଶକ କାଳ ମଧ୍ୟରେ ଜଳେଶ୍ୱର ସହ ଭୋଗରାଇକୁ ସର୍ବପ୍ରଥମେ ସଂଯୋଗ କଲେ । ସେତେବେଳେ କଂଗ୍ରେସ ସଂଗଠନ ହିଁ କେବଳ ବନ୍ୟା, ମହାମାରୀ ଆଦି ବିପଦ ବେଳେ ଭୋଗରାଇବାସୀଙ୍କ ପାଖରେ ଛିଡ଼ା ହୋଇ ଆଶ୍ୱାସନା ଦେବାର ଦେଖାଯାଇଛି । ଜିଲ୍ଲାବୋର୍ଡ଼ ତରଫରୁ ଗ୍ରାମେଗ୍ରାମେ ସ୍କୁଲ, ସଂସ୍କୃତ ଟୋଲ୍, ପାନୀୟ ଜଳପାଇଁ କୂଅ ଏବଂ ଭୋଗରାଇଠାରେ ଗୋଟାଏ ଦାତବ୍ୟ ଚିକିତ୍ସାଳୟ ସ୍ଥାପିତ ହେଲା । ମାରାତ୍ମକ ମ୍ୟାଲେରିଆ, ମହାମାରୀ ରୂପେ ସମସ୍ତଙ୍କୁ ଅନ୍ତଃସାରଶୂନ୍ୟ କରି ପକାଉଥାଏ । ହଇଜା, ବସନ୍ତ, ମ୍ୟାଲେରିଆ ସହ କ୍ରମାଗତ ଭାବେ ଜିଲ୍ଲାବୋର୍ଡ଼ ଲଢ଼ି, ତାର ପ୍ରକୋପ ବହୁଳାଂଶରେ କମାଇ ଦେଇଥିଲେ । ପ୍ରାକ୍-ସ୍ୱାଧୀନତା କାଳରେ କତିପୟ କଂଗ୍ରେସ ନେତା ଏବଂ ସେମାନଙ୍କ ଦ୍ୱାରା ପରିଚାଳିତ ଜିଲ୍ଲାବୋର୍ଡ଼ ଓ ଲୋକାଲ ବୋର୍ଡ଼ ସହାୟତାରେ ଭୋଗରାଇ ଜନତା ବାହାର ଦୁନିଆ ସହ ସଂପର୍କ ସ୍ଥାପନ କରିବାକୁ ସକ୍ଷମ ହୋଇ ପାରିଥିଲେ । କିନ୍ତୁ ତତ୍‌ପୂର୍ବରୁ ଭୋଗରାଇର ସମଗ୍ର ଅର୍ଥନୀତି, ଭୋଗରାଇବାସୀଙ୍କ ଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ ହୋଇ ଆସିଥିଲା । ଭୋଗରାଇ ତାର ପାରିପାର୍ଶ୍ୱିକ ପ୍ରାକୃତିକ ଦୁର୍ଦ୍ଦଶା ଏବଂ ନିଜର କ୍ରମବର୍ଦ୍ଧମାନ ଜନଶକ୍ତି ଆଡ଼େ ଅନାଇ ଶହଶହ ବର୍ଷଧରି ନିରବରେ କେବଳ ସୁନେଲି ସ୍ୱପ୍ନ ଦେଖିନାହିଁ, ନିଜେ ବୁଦ୍ଧି ଖଟାଇ ଶ୍ରମଦେଇ ଲଢ଼ି ସଫଳତା ମଧ୍ୟ କମ୍ ହାସଲ କରିନାହିଁ । ଉତ୍ତରାଂଶରେ ଧାନ ଏବଂ ଦକ୍ଷିଣାଂଶରେ ପାନ, ନଈ ଦରିଆର ମାଛ ସହିତ କାଜୁ, ନଡ଼ିଆ ପ୍ରଭୃତି ଭୋଗରାଇ ପୁଅ ଛାତିରେ କମ୍ ଦମ୍ ଆଣି ଦେଇନାହିଁ ।



Digitized by srujanika@gmail.com

ତାର ମନବଳ ସବଳ ରଖିବାରେ ଏସବୁ ସମ୍ବଳ ସହାୟ ହୋଇ ଆସିଛି । ପରମୁଖାପେକ୍ଷିତାକୁ ଭୋଗରାଇବାସୀ ସବୁବେଳେ ଉପେକ୍ଷା କରି ଆସିଛନ୍ତି । ସ୍ୱାଧୀନତା ଜନ୍ମର ବହୁପୂର୍ବରୁ ଭୋଗରାଇ ତାର ନିଜର ମହିମାରେ ମହିମାନ୍ୱିତ । ଏମାନେ ନିଜର ଦିଗଟିକୁ ଯେପରି ଦେଖନ୍ତି, ଅନ୍ୟର ସମସ୍ୟାଟିକୁ ମଧ୍ୟ ସମାନ ସହାନୁଭୂତି ସହ ଦେଖି ଆସିଛନ୍ତି । ପୁଣି ସମସ୍ତଙ୍କୁ ଆଦର ଅଭ୍ୟର୍ଥନା ଜଣାଇବା ଏଠା ଲୋକଙ୍କ ଜନ୍ମଗତ ସ୍ୱଭାବଗତ ଅଭ୍ୟାସ । ଅତିଥି ଅଭ୍ୟାଗତ ଏମାନଙ୍କ ଠାରେ ପରମ ବନ୍ଧୁ ।

'ଧାନର ଧନୀ କୃଷ୍ଣ ପ୍ରଧାନ, ମାନର ଧନୀ ନେତ୍ର ପଇଡ଼ା, ଦାନର ଧନୀ ମଦନ ଦାସ, ଧନର ଧନୀ ବିଶୁ ପଇଡ଼ା, ବୁଦ୍ଧିର ଧନୀ ଜୟ ସାମଲ, ଧର୍ମର ଧନୀ ଗୋପାଳ ବାବୁ ।' ଦିନଥିଲା ଯେତେବେଳେ ଭୋଗରାଇର କତିପୟ କୃତୀ ସନ୍ତାନଙ୍କ ସଂପର୍କରେ ଲୋକମୁଖରେ ଏହି ସାର୍ଥକ 'ବୋଲି'ଟି ସଦା ଖେଳି ବୁଲୁଥିଲା । ଏହା ଖୁବ୍ ବେଶି ଦିନର କଥା ନୁହେଁ । ମାତ୍ର ଶହେବର୍ଷ ପୂର୍ବେ ବୁଦ୍ଧି, ଧର୍ମ ଓ କର୍ମନିଷ୍ଠା, ଧନଦୌଲତ, ପରାକାଷ୍ଠା, ଆତିଥେୟତା, ମାନମହତ ଓ ଦାନଧର୍ମ ଆଦି ମହତଗୁଣରେ ସମୃଦ୍ଧ ଭୋଗରାଇବାସୀଙ୍କର ସାମାଜିକ ପ୍ରତିଷ୍ଠାର ସୂଚନା ଏଥିରୁ ମିଳେ । ଏହା କିଛି ମିଛ ନୁହେଁ ।

**ଶ୍ରୀକୃଷ୍ଣ ଚନ୍ଦ୍ର ପ୍ରଧାନ :** ଫୁଲବଣୀ ଖାସଙ୍କର ଅଚଳାଚଳ ଭୂସଂପତ୍ତି ଥିଲା । ସେଥିରୁ ସେ ପ୍ରଚୁର ପରିମାଣର ଧାନ ଉତ୍ପନ୍ନ କରୁଥିଲେ । ଦଶମାଣ ପରିମିତ ଭୂମିରେ ନିର୍ମିତ ଅମାର ଓ କରେଇ ମଧ୍ୟ ତାଙ୍କର ଉତ୍ପନ୍ନ ଫସଲ ରଖିବାକୁ ନିଅଣ୍ଟ ପଡୁଥିବାର ପ୍ରବାଦ ଅଛି । କୃଷ୍ଣ ପ୍ରଧାନଙ୍କ କୈଳାସ, ଗୋବିନ୍ଦ ଓ କମଳଲୋଚନ ବୋଲି ଆଉ ତିନିଜଣ ସହୋଦର ଥିଲେ । ସେମାନେ ସମସ୍ତେ ମଧ୍ୟ କରିତ୍‌କର୍ମା ବ୍ୟକ୍ତିଥିଲେ । ତାଙ୍କ ବଂଶର ସୁପୁତ୍ର ନରେନ୍ଦ୍ରନାଥ, ଶ୍ୟାମାଚରଣ ସମାଜରେ ପ୍ରତିଷ୍ଠାବାନ ବ୍ୟକ୍ତି ଭାବେ ଗଣ୍ୟ । ତାଙ୍କର ନାତି ଜୟନ୍ତ, ଜିତେନ୍ଦ୍ର, ଅନ୍ନଦା, ବିଜୟ ଏବଂ ଅତୁଲ ପ୍ରସାଦ ଆଜି ଉଚ୍ଚ ଶିକ୍ଷା ପାଇ ଏବେ ଉଚ୍ଚପଦରେ ଅଧିଷ୍ଠିତ ଅଛନ୍ତି । ଫୁଲବଣୀ ପ୍ରଧାନ ବଂଶ ଏକ ଅଭିଜାତ ବଂଶ ରୂପେ ସର୍ବତ୍ର ପରିଚିତ ।

**ଶ୍ରୀ ନେତ୍ରାନନ୍ଦ ପରିଡ଼ା :** ତାରାପୁରଙ୍କର ଭୂସମ୍ପତ୍ତି ମଧ୍ୟ କମ୍ ନଥିଲା । ତାରାପୁରସ୍ଥ ନିଜ ବାସଭବନଠାରୁ ଶଗଡ଼ିମୁହିଁ ପର୍ଯ୍ୟନ୍ତ ଦୂରପଥ ଯିବାକୁ ହେଲେ ନିଜର ଛଡ଼ା ସେ ଆଉ କାହାରି ଜମି ଉପରେ ପାଦ ପକାଉ ନଥିଲେ ବୋଲି ଶୁଣାଯାଏ । ଯେକୌଣସି ବ୍ୟକ୍ତି ତାଙ୍କ ଘରୁ ଆସି ଅଭୁକ୍ତ ବା ଅସମ୍ମାନିତ ହୋଇ ଫେରୁନଥିଲେ ।



Digitized by srujanika@gmail.com

ଅତିଥି ଅଭ୍ୟାଗତ ଓ ବନ୍ଧୁ ପରିଜନମାନଙ୍କ ସକାଶେ ତାଙ୍କର ଦ୍ୱାର ସଦା ଉନ୍ମୁକ୍ତ ଥିଲା । ସେମାନଙ୍କର ସମାଦର ସେ ବିଂଶାଧିକ ସୁସ୍ୱାଦୁ ବ୍ୟଞ୍ଜନ ଦ୍ୱାରା କରୁଥିଲେ । ସେ ଅତ୍ୟଧିକ ସମ୍ମାନୀ ଏବଂ ଅଭିମାନୀ ବ୍ୟକ୍ତି ଥିଲେ । ପୁଅର ବିବାହରେ ଦଶଖଣ୍ଡ ଗ୍ରାମର ବରଯାତ୍ରୀର ଏକମାଇଲ ଲମ୍ବ ଏକ ଶୋଭାଯାତ୍ରା, ଶହେ ଖଣ୍ଡି ସବାରୀ ସହିତ ସୁଦୂର ପିଛାବଣୀ ଗ୍ରାମଯାଏ ନିଜ ବ୍ୟୟରେ ସେ ଘେନିଯାଇଥିଲେ । ପୁତ୍ରବଧୂ 'ପହିଲା ବହୂ' ହୋଇ ଆସିଲାବେଳେ ଶତାଧିକ ଭାର ମିଠେଇ ମଧ୍ୟ ଗ୍ରାମର ଏମଣ୍ଡରୁ ସେମୁଣ୍ଡ ଲମ୍ବି ଚାଲିଥିଲା । ଶେଷଯାଏ ଆତିଥେୟତା ଏବଂ ସମ୍ମାନକୁ ଜଗି ତାଙ୍କର ସମସ୍ତ ସମ୍ପତ୍ତି ସେ ନିଜ ଜୀବଦ୍ଦଶାରେ କ୍ଷୟ କରି ଦେଇଥିଲେ ମହାସୁଲ ରୂପେ । କିନ୍ତୁ ତାଙ୍କର ଆତ୍ମସମ୍ମାନ କେବେ ସେ ଜୀବନରେ କ୍ଷୁଣ୍ଣ ହେବାକୁ ଦେଇନାହାନ୍ତି । ଅତିଥି ଭଗବାନ ସଦୃଶ । ଏହି ଅତିଥିଙ୍କୁ ନିଜ ଘରେ ପରମବନ୍ଧୁ ଭାବରେ ପାଇବା ସକାଶେ ଭୋଗରାଇ ପ୍ରାଣ ସଦା ବ୍ୟାକୁଳ । ଅତିଥି ସତ୍କାର, ଏହି ମହତ ଗୁଣଟି ଯେପରି ଭୋଗରାଇର ରକ୍ତରେ ମିଶି ରହିଛି । ସେଥିପାଇଁ ସମୟ ଅସମୟ, ଜଣା ଅଜଣା, ଶତ୍ରୁ ମିତ୍ର ସାଧୁ ବା ତସ୍କରର ବିଚାର ସେମାନେ କରନ୍ତି ନାହିଁ । ଏଠାର ଦରିଦ୍ରତମ ବ୍ୟକ୍ତି ମଧ୍ୟ ପଛେ ନିଜେ ନ ଖାଇବ, ପଡ଼ିଶା ଘରୁ ଧାର ଉଧାର କରି ନ୍ୟୂନ ହେବ, ହେଲେ ତା'ର ଅତିଥିର ଅମର୍ଯ୍ୟାଦା କେବେ କରିବ ନାହିଁ । କିଛି ନହେଲେ ବି ତବକା ଚୂଲୁମେ, ପାନଖିଲେ, କଞ୍ଚା ପାଣି ଗିଲାସେରୁ ସେ ତାର ଅତିଥିକୁ ବଞ୍ଚିତ କରିବ ନାହିଁ । ଉତ୍ତର ବାଲେଶ୍ୱର ତଥା ଭୋଗରାଇ ଜନ ଜୀବନର ପାରସ୍ପରିକ ବୀର୍ଯ୍ୟବାନ, ଖାନଦାନୀ ଅତିଥି ପରାୟଣତାର ମୂର୍ତ୍ତ ପ୍ରତୀକ ଥିଲେ ସେ । ତାଙ୍କର ଦ୍ୱିତୀୟ ପୁତ୍ର କାହ୍ନୁ ଜଣେ ସ୍ୱାଧୀନତାସଂଗ୍ରାମୀ ଥିଲେ ।

ଶ୍ରୀ ମଦନମୋହନ ଦାସ - ଶଙ୍ଖାରୀ, ଏ ମହାପୁରୁଷଙ୍କ କଥା ପୂର୍ବରୁ ଉଲ୍ଲେଖ କରାଯାଇଛି । ଏ ମଧ୍ୟ ୨୪ ପରଗଣା ତଥା ନିଜ ଅଞ୍ଚଳ ସ୍ଥିତ ବହୁକ୍ଷେତ ଓ ଖମାରର ମାଲିକ ଥିଲେ । ତାଙ୍କର ଶ୍ରମ ଓ ସଂପତ୍ତିରୁ ଅର୍ଜିତ ଅର୍ଥ ସେ ଅକାତରରେ ଦୁଃଖୀ ଆର୍ତ୍ତ, ରୋଗ ଓ ବିପଦଗ୍ରସ୍ତ ଲୋକମାନଙ୍କ ସେବାରେ ଖର୍ଚ୍ଚ କରୁଥିଲେ । ସର୍ବସାଧାରଣର ବ୍ୟବହାର ସକାଶେ ନିଜ ଅଞ୍ଚଳ ଓ ବାହାରେ ଅନେକ ଗୁଡ଼ିଏ ପୁଷ୍କରିଣୀ ଖୋଳାଇଥିଲେ ଏବଂ ମନ୍ଦିର ନିର୍ମାଣ କରାଇଥିଲେ । ତାଙ୍କର ଏତାଦୃଶ ଦାନ, ଧର୍ମ, କର୍ମ ସ୍ୱତଃ ଏବଂ ପ୍ରକୃତିଗତ ଥିଲା । ତାଙ୍କର ଏହି ନିଷ୍କାମ ଦାନ ବିଷୟରେ ବହୁ କୌତୂହଳ ଓ ଚମକପ୍ରଦ କାହାଣୀ ଏ ଅଞ୍ଚଳରେ ପ୍ରଚଳିତ ଅଛି । ପ୍ରବାଦ ରହିଛି - ମଦନବାବୁଙ୍କ ତିରୋଧାନ ପରେ ସେ କାଶୀ ରାଜାଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ । ବାବା ଚନ୍ଦନେଶ୍ୱରଙ୍କ



Digitized by srujanika@gmail.com

କୃପାରୁ ତାହା ମଧ୍ୟ ପରୀକ୍ଷା କରି ଦେଖାଯାଇଛି । ତାଙ୍କରି ପୁଣ୍ୟବଳରେ ଶଙ୍ଖାରୀ ଦାସ ବଂଶର ତିନି ପୁରୁଷର ଇତିହାସ କେବଳ ସ୍ୱଦେଶରେ ନୁହେଁ, ଦେଶ ବିଦେଶରେ ମହିମାନ୍ୱିତ ଏବଂ ଗୌରବ ମଣ୍ଡିତ ହୋଇପାରିଛି ।

ଶ୍ରୀ ଜୟନାରାୟଣ ସାମଲ - ହାଡ଼ିଗୁଛିଆ, ପ୍ରାରମ୍ଭରୁ ସେ ଜଣେ ବୁଦ୍ଧିମନ୍ତ ଫନ୍ଦିବାଜ ଏବଂ ଦୁର୍ଦ୍ଧର୍ଷ ବ୍ୟକ୍ତି ଥିଲେ । ତାଙ୍କର ବୁଦ୍ଧି ଓ କୌଶଳ ଆଗରେ ଅଞ୍ଚଳର ସେ ସମୟରେ କେହି ଟେକି ପାରୁନଥିଲେ । ସହାୟହୀନ ବିପଦଗ୍ରସ୍ତ ଲୋକେ ତାଙ୍କଠାରୁ ଯୁକ୍ତି ଓ ପରାମର୍ଶ ଲୋଡୁଥିଲେ । ତାଙ୍କର ଜ୍ୟେଷ୍ଠା କନ୍ୟା ଶ୍ରୀମତୀ କାଦମ୍ବିନୀଙ୍କୁ ସେ ମଦନବାବୁଙ୍କ ଏକମାତ୍ର ପୁତ୍ର ମଧୁବାବୁଙ୍କୁ ବିବାହ ଦେଇଥିଲେ । ଶ୍ରୀ କାଳୀକିଙ୍କର ସାମଲ ଏବଂ ଡାକ୍ତର ବିମଳା କିଙ୍କର ତାଙ୍କର ଦୁଇ ପୁତ୍ର ଏବଂ ପ୍ରଫେସର ମନ୍ମଥ ନାଥ ଦାସ ଓ ଶ୍ରୀ ମନୋଜ କୁମାର ଦାସ ତାଙ୍କର ଦୌହିତ୍ର ଅଟନ୍ତି ।

ବାବୁ ଶ୍ରୀ ଗୋପାଳ ଚନ୍ଦ୍ର ଦାସ ମହାପାତ୍ର - ବାଜିପୁର, ସେ କାଳରେ ଏ ମହାଶୟ ଜଣେ ଧର୍ମ ପରାୟଣ ଓ ମାନ୍ୟଗଣ୍ୟ ବ୍ୟକ୍ତି ରୂପେ ଖ୍ୟାତଥିଲେ । ବାଲଙ୍କିବାଡ଼ର ଗୋପାଳ ବାବୁ ବୋଲି ସେ ସୁପରିଚିତ । ଦେବ ଦ୍ୱିଜରେ ତାଙ୍କର ଅସୀମ ଭକ୍ତି ଓ ଶ୍ରଦ୍ଧା ଥିଲା । ସଦାବେଳେ ଦେବସେବା ଏବଂ ଧର୍ମାଚରଣରେ ବ୍ୟସ୍ତ ରହୁଥିଲେ ଏବଂ ଜଣେ ପରମଭକ୍ତି ମାର୍ଗର ଲୋକ ଥିଲେ । ତାଙ୍କର କୁଳଦେବତା ଶ୍ରୀ ଶ୍ରୀ ରାଧାକୃଷ୍ଣ ଜୀଉ ଅତି ଜାଗ୍ରତ ଦେବତା ଅଟନ୍ତି । ସେ ତାଙ୍କ ସଂଗେ କଥା ଭାଷା ହେଉଥିଲେ । କଥିତ ଅଛି, ଥରେ ତାଙ୍କର ଗଭୀର ଭକ୍ତି ଏବଂ କାତର ପ୍ରାର୍ଥନାରେ ଏକ ବିପଦପୂର୍ଣ୍ଣ ମକଦ୍ଦମାରେ ଠାକୁର ସ୍ୱୟଂ କୋର୍ଟରେ ହାଜର ହୋଇ ସାକ୍ଷ୍ୟ ଦାନ କରିଥିଲେ । ଆଉ ଥରେ ତାଙ୍କର ସମଗ୍ର ଗୃହ ଅଗ୍ନି ଦଗ୍ଧ ହୋଇଗଲେ ମଧ୍ୟ ଘର ଚୌବନ୍ଦି ମଧ୍ୟରେ ଥାଇ ଠାକୁର ଏବଂ ଠାକୁରଘର ଅକ୍ଷତ ରହିପାରିଥିଲା । ସଦାବର୍ତ୍ତ, ମେଳା ମହୋତ୍ସବ ସଦାବେଳେ ତାଙ୍କଘରେ ଲାଗିଥାଏ । ତାଙ୍କୁ ଦେଖିଲେ ଲୋକେ ବାବୁ ବୋଲି ଚେଆର ଛାଡ଼ି ଦେଉଥିଲେ । ସମସ୍ତେ ତାଙ୍କୁ ସ୍ୱତଃ ଭକ୍ତି ଓ ସମ୍ମାନ ଜଣାଉଥିଲେ । ତାଙ୍କ ବଂଶର ରାଧାନାଥ ବାବୁ ସର୍କଲ ପ୍ରେସିଡେଣ୍ଟ କାମ ଆଜୀବନ କରିଥିଲେ । ନାତି ଯଜ୍ଞେଶ୍ୱର ବାବୁ ସ୍ୱଦେଶୀ ଆନ୍ଦୋଳନରେ ପୁଲିସ୍ ଗୁଳିରେ ଆହତ ହୋଇ ମୃତ୍ୟୁବରଣ କରିଥିଲେ ।

ଏମାନେ ସମସ୍ତେ ସ୍ୱାଧୀନତା ଆନ୍ଦୋଳନର ପୃଷ୍ଠପୋଷକ ଥିଲେ । ଭୋଗରାଇର ଏହିସବୁ ପ୍ରତିଭାବାନ ସ୍ୱନାମଧନ୍ୟ ବ୍ୟକ୍ତିମାନେ ସ୍ୱ ସ୍ୱ ସାଧନା ଓ କର୍ମନିଷ୍ଠା



Digitized by srujanika@gmail.com

ବଳରେ ଧନୀ, ମାନୀ, ଜ୍ଞାନୀ, ଦାନୀ ଏବଂ ଧାର୍ମିକ ରୂପେ ସର୍ବତ୍ର ପୂଜା ପାଇ ଆସିଛନ୍ତି । ଏକ ସମୟରେ ସେମାନେ ସମାଜରେ ଆଦର୍ଶ ବ୍ୟକ୍ତିଥିଲେ ଏବଂ ଭୋଗରାଇ ମାଟିକୁ ଶକ୍ତି, ସହାୟତା ଏବଂ ସୁନାମ ଆଣି ଦେଇଥିଲେ ।

ଶ୍ରୀ ବିଶ୍ୱନାଥ ପରିଡ଼ା - ଚୌଘନୀ, ପ୍ରଥମ ଜୀବନରେ ଜଳେଶ୍ୱର ହାଟକୁ କାନ୍ଧରେ ଲୁଣ ଭାର ବୋହି ବିକ୍ରୟ କରୁଥିଲେ । ତା'ପରେ ତାଙ୍କର ଗଭୀର ଶ୍ରମ ଓ ନିଷ୍ଠା ବଳରେ ସେ ମହାଜନୀ ବ୍ୟବସାୟ କରି ପ୍ରଚୁର ଧନ ଉପାର୍ଜନ କରିପାରିଥିଲେ । ସ୍ୱୋପାର୍ଜିତ ଧନ ବଳରେ ସେ ପ୍ରଚୁର ଜମିଜମା ଓ ଜମିଦାରୀ କରିଥିଲେ ଏବଂ ନିଜ ଗ୍ରାମରେ ହାଇସ୍କୁଲ ଏବଂ ଡାକ୍ତରଖାନା ବସାଇଥିଲେ । ଉତ୍ତର ଜୀବନରେ ତାଙ୍କର ଉପାର୍ଜିତ ଅର୍ଥ ସେ ସର୍ବସାଧାରଣ କାର୍ଯ୍ୟରେ ଦାନ କରିଥିଲେ । ତାଙ୍କର ଆଜାନୁଲମ୍ବିତ ବାହୁ, ଦୀର୍ଘ ନାକ ଓ କାନ ଓ ସୁକାନ୍ତିରୁ ତାଙ୍କର ସୌଭାଗ୍ୟର ସୂଚନା ମିଳୁଥିଲା । ଶ୍ରୀଯୁକ୍ତ ପରିଡ଼ା ଇଂରେଜ ସରକାରଙ୍କର ଏକାନ୍ତ ଅନୁଗତ ଥିଲେ । ସରକାର ତାଙ୍କୁ ରାୟ ବାହାଦୂର ପଦବୀରେ ଭୂଷିତ କରିଥିଲେ । କଥିତ ଅଛି - ୧୯୪୭ ଅଗଷ୍ଟ ୧୫ତାରିଖ ଠିକ୍ ପରେପରେ ଇଂରେଜମାନଙ୍କ ପାଇଁ ଗଭୀର ଶୋକରେ ତାଙ୍କର ତନୁ ଗଲା ।

ଏହି ଖାନଦାନୀ ବଂଶମାନଙ୍କର କୃତୀ ସନ୍ତାନମାନଙ୍କ ଛଡ଼ା ଭୋଗରାଇରେ ଆହୁରି ଅନେକ ବୁନିଆଦି ପରିବାର ଅଛନ୍ତି, ଯେଉଁମାନଙ୍କର ଗୌରବମୟ ଅତୀତର ଅସୀମ କର୍ମ ପ୍ରବଣତା, ନିଷ୍ଠା ଏବଂ ତ୍ୟାଗବଳ ଭୋଗରାଇର ସାମଗ୍ରିକ ଐତିହ୍ୟ, ସଂସ୍କୃତି ଓ ଅର୍ଥନୀତିକୁ ଅଧିକତର ସମୃଦ୍ଧ ଏବଂ ଦୃଢ଼ କରି ଗଢ଼ିବାରେ ବିଶେଷ ଭାବେ ସହାୟକ ହୋଇପାରିଛି । ସେମାନଙ୍କ ମଧ୍ୟରୁ ଦହମୁଣ୍ଡା-ପାଣିଗ୍ରାହୀ, ଉତ୍ତର ବାରବାଟିଆ ଜେନା, ମଲାରୁଣୀ-ପଟ୍ଟନାୟକ, ନହରା-ଜେନା, ବାଉଁଶଡିହା-କମର୍ଦ୍ଦା-କାଳାହୀ-ପ୍ରହରାଜପୁର ଓ କୁମୁଡ଼ା-ଚୌଧୁରୀ, ବଧିଆ-ମହାନ୍ତି, ପୁରୁଷୋତ୍ତମପୁର-ମହାପାତ୍ର, ଚକେଇସବ ଓ ଖଳାବାଡ଼ିଆ-ପରିଡ଼ା, ଦାରୁହା ଜେନା, କଟିସାହି-ମହାନ୍ତି, ବେଲଦା ପତି, ମହାଗବ-ସୋମ୍, ଦୁବସାହି-ପାତ୍ର, କୁଳିନ୍ଦା-ଘଡ଼ାଇ, ପୁଟିଣା-ମହାପାତ୍ର, ବାହାର୍ଦ୍ଦା-ରାଉତ, ଦୁଡ଼ପଳ-ଜେନା, ରାଣୀଗୁଡ଼ା-ମହାପାତ୍ର, ଦାହୁଣଦା-ଘୋଷାଲ, ଦେହୁଡ଼ଦା-ମହାଶୟ, ସରସ୍ୱତୀପୁର-ମଠାଧିକାରୀ, ଦେଉଳା-ମହାପାତ୍ର, ଗିରି ଓ ମହାନ୍ତି, ଭୋଗରାଇ-ସେଖ୍, ବେହେରା, ମହାନ୍ତି ଓ ଦେ, ଈଶ୍ୱରପୁର-ଚଣ୍ଡିପୁର-କର, ଫୁଲବଣୀ-ମଲାରୁଆଁ-ଚନ୍ଦ, ଶ୍ରଦ୍ଧାପୁର-ନାୟକ, ବିଚିତ୍ରପୁର-ଦାସ ଓ ପାତ୍ର, ବାଇତପୁର-ଭଞ୍ଜ, ଶିଆଳିଆ-ଗିରି, ହାମ୍ବରିଆ-ଦକ୍ଷିଣ ବାରବାଟିଆ-ପାତ୍ର, ଜୟରାମପୁର-ଜେନା, ଘୋଷ ଓ ମିଶ୍ର, କୁନାରଜାଲିନା-ଖରସୁଆଁ-



Digitized by srujanika@gmail.com

ଘଣ୍ଟିଲୋଡ଼ି-ମହାନ୍ତି, ବାଡ଼ସରିସା-ମହାନ୍ତି, ଜେନା, ଜମଡ଼ା-ପ୍ରଧାନ, କଖଡ଼ା-ବସୁ ଓ ଘୋଷ, ଶ୍ୟାମାନନ୍ଦିପୁର-ପ୍ରଧାନ, ହୁଗୁଳି-ପଣ୍ଡା, ସରବଣୀ-ଭଞ୍ଜ, ଆଗୁହାବୃତ୍ତି-ଗିରି, କମର୍ଦ୍ଦା-ପ୍ରଧାନ ଓ ଭୂୟାଁ, ଦୁବସାହି-ପାତ୍ର, ଗୋପୀନାଥପୁର-ପ୍ରଧାନ, ଗମ୍ଭାରିଆ-ସେନାପତି, ଖରିଦଚକ-ଜେନା, ମହମ୍ମଦପୁର-ଦାସ, ମହାଗବ ରାଧାନଗରୀ- ସୋମ, ଅଧିକାରୀ ଏବଂ ନରସିଂହପୁର- ଜେନା ପରିବାର ଆଦି ଅନ୍ୟତମ ଅଟେ ।

'କାଳସ୍ୟ କୁଟିଳାଗତିଃ' ଅବଶ୍ୟ ଏମାନଙ୍କ ମଧ୍ୟରୁ ଅଧିକାଂଶ ପରିବାର ଆଜି ହୃତଗୌରବ ହୋଇ ପଡ଼ିଛନ୍ତି ।

ଏତଦ୍‌ବ୍ୟତୀତ, ଜମିଦାର ବି.ଏଲ୍. ମୁଖାର୍ଜୀ ଟ୍ରଷ୍ଟ ଇଷ୍ଟେଟ ଏବଂ ପଞ୍ଚେଟ୍‌ଗଡ଼ର ବଦାନ୍ୟ ସାହାଯ୍ୟ ସହାନୁଭୂତି ଏ ଦିଗରେ ଯଥେଷ୍ଟ ପରିମାଣରେ ଭୋଗରାଇ ଭାଗ୍ୟରେ ଘଟିଛି ।

ସ୍ୱାଧୀନତାପ୍ରାପ୍ତି ପରେ ବସନ୍ତର ମୃଦୁମଳୟର ସ୍ପର୍ଶ ଭୋଗରାଇ ମାଟି ଲାଭ କଲା । ତାର ସ୍ୱପ୍ନ କଷ୍ଟଲୋକକୁ ଛାଡ଼ି ଆହୁରି ଊର୍ଦ୍ଧ୍ୱକୁ ଗଲା । ଅନେକ କ୍ଷେତ୍ରରେ ସୁନା ଫସଲ ଦେଖାଦେଲା । ଦେଶସେବା ନାମରେ ପାଗିବାର ପୁଅମାନେ ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ସେମାନଙ୍କର ସ୍ୱପ୍ନ ବାସ୍ତବାୟିତ ହୋଇ ଉଠିଲା । ଦେଶସାରା ଆଶା ଭରସା ସୃଷ୍ଟି ହେଲା । ସମସ୍ତେ ମାତି ଉଠିଲେ । ଗଣତନ୍ତ୍ରର ରଥଚକ୍ର ଗଡ଼ି ଚାଲିଲା । ଶିକ୍ଷାର ପ୍ରସାର ସଂଗେସଂଗେ ସମୟର ଧାରା କ୍ରମେ ବଦଳିବାକୁ ଲାଗିଲା ।

ଶିକ୍ଷିତ ଯୁବକମାନେ ରାଜନୀତି କ୍ଷେତ୍ରରେ ପ୍ରବେଶ କରିବାକୁ ଲାଗିଲେ । ଅଧିକ ସମ୍ଭାବନା ଓ ପ୍ରତିଶ୍ରୁତି ମୋହରେ ପୁରାତନ ଅପରୀକ୍ଷିତ ନୂତନକୁ ବାଟ ଛାଡ଼ିଦେଲେ । ଉଦାରତାର ବଶବର୍ତ୍ତୀ ହୋଇ କାନ୍ଧରେ ତାଙ୍କୁ ବୋହି ଚାଲିଲେ । ଆଦ୍ୟରେ ଉତ୍ସାହରେ କିଛି କାର୍ଯ୍ୟ ମଧ୍ୟ ହେଲା । ଭୋଗରାଇ ପ୍ରତିନିଧିର ଲୁହ ଓ ଲହୁର ପ୍ରତିଶ୍ରୁତି ପୂର୍ଣ୍ଣ ଭାଷଣରେ ଭୋଗରାଇ ମାଟି କୋଣେକୋଣେ ଭରି ଉଠିଲା । ଜାତୀୟ କଂଗ୍ରେସ ଏବଂ ଶ୍ରୀମତୀ ଇନ୍ଦିରାଙ୍କ ପ୍ରତି ଅହେତୁକ ଶ୍ରଦ୍ଧା ଓ ବିଶ୍ୱାସ ସମସ୍ତଙ୍କୁ ମୋହଗ୍ରସ୍ତ କରି ରଖିଲା କିନ୍ତୁ ଏକାନ୍ତ ନିର୍ଭରଶୀଳ, ନିରୀହ ଭୋଗରାଇବାସୀଙ୍କର ସୁଖ ସ୍ୱପ୍ନ ତୁଟିଗଲା । ଚେଇଁ ଦେଖିଲେ ସେମାନଙ୍କର ସଯତ୍ନ ରୋପିତ ବେଡ଼ା ସବୁ ଫସଲ ଖାଇ ସଫା କରିଦେଇଛି । ଘିଅ ମହୁର ସ୍ରୋତ ପରିବର୍ତ୍ତେ ପ୍ରବଞ୍ଚନା ପ୍ରତାରଣା ଓ ଭ୍ରଷ୍ଟାଚାରର ଗରଳ ଚାରିଆଡ଼େ ବ୍ୟାପି ତାଙ୍କର ସୁନାମାଟିକୁ ବିଷାକ୍ତ କରିଦେଇଛି । ଗରଳ ତେଜରେ ପୁରାତନ କାନ୍ଧ ବ୍ୟଥାରେ ଜର୍ଜର ହୋଇ ଉଠିଛି ।



Digitized by srujanika@gmail.com

ସାଧାରଣ ଲୋକଙ୍କ ପକ୍ଷେ ଅବସ୍ଥା କ୍ରମେ ଅସହ୍ୟ ହୋଇ ଉଠିଛି । ଭୋଗରାଇ ମା'ର ଦୁଃଖ ଆଜି କହିଲେ ନସରେ । ବିରୋଧୀ ଶକ୍ତିଗୁଡ଼ିକ ପ୍ରତିବାଦ କରିବାର ତାକତ ହରାଇ ବସିଛନ୍ତି । ତାଙ୍କୁ ବି ସେଭଳି କେହି ବିଶ୍ୱାସ କରୁନାହାନ୍ତି । ଦୁରବସ୍ଥା କେବଳ ଏଠେଇଁ ଅଟକି ରହିନାହିଁ, ଦେଶସେବା ଏବଂ ପ୍ରଗତି କ୍ଷେତ୍ରରେ ଦୁର୍ନୀତି ଦାନବର ତାଣ୍ଡବଲୀଳା ସମସ୍ତଙ୍କ ପ୍ରାଣକୁ ଅଥୟ କରିଦେଲାଣି ।

କୁହାଯାଇଛି - "Youth is a blunder" କିନ୍ତୁ ଦେଶର ଯୁବଗୋଷ୍ଠୀକୁ ଏ କ୍ଷେତ୍ରରେ ଦୋଷ ଦିଆଯାଇପାରେନା । ଅବସ୍ଥା ଚକ୍ରରେ ପଡ଼ି ସେମାନେ ଆଜି ବିପଥଗାମୀ । ତାଙ୍କୁ ଠିକଣାବାଟକୁ ଆଣି ସୁନାଗରିକ କରି ଗଢ଼ିତୋଳିବା ଦେଶର ତୁଙ୍ଗ ନେତାମାନଙ୍କର କର୍ତ୍ତବ୍ୟ । ଏହି ଆତ୍ମବିସ୍ମୃତି ଯୁବ ସଂପ୍ରଦାୟଙ୍କୁ ନେତାଜୀ ସୁଭାଷଚନ୍ଦ୍ର ବାରମ୍ବାର ଚେତାଇ କହିବାରେ ଶୁଣାଯାଇଛି - ଦେଶକୁ ଉଦ୍ଧାର କରିବାର ଶକ୍ତି, ସାମର୍ଥ୍ୟ କେବଳ ଯୁବକମାନଙ୍କର ଅଛି । ଏକଥା ସେମାନଙ୍କୁ ଭଲକରି ବୁଝିବାକୁ ହେବ । ଅତ୍ୟାଚାର, ଅନାଚାର ଓ ଅବିଚାର ବରୁଦ୍ଧରେ ବୀରପରି ଅଗ୍ରସର ହୋଇ ନିର୍ଭୀକ ଭାବରେ ବାଧାଦିଅ । ଅନ୍ୟଥା ନିଜର ମନୁଷ୍ୟତ୍ୱର ଅପମାନ କରିବ । ଏହି ଶକ୍ତି ତୁମେ ନିଷ୍କାମ କର୍ମଯୋଗ ଦ୍ୱାରା ପାଇପାରିବ । କ୍ଷତିଗ୍ରସ୍ତ, ବିପନ୍ନ, କାରାରୁଦ୍ଧ ବା ଲାଞ୍ଛିତ ହେଲେ ସେହି ତ୍ୟାଗ, ସେହି ଲାଞ୍ଛନା ତୁମକୁ ମନୁଷ୍ୟତ୍ୱର ଗୌରବମୟ ଆସନରେ ପ୍ରତିଷ୍ଠିତ କରିବ । ଯେଉଁଦିନ ସେ ଆତ୍ମବିଶ୍ୱାସ ଫେରିପାଇବେ ସେମାନେ ଭବିଷ୍ୟତର ଉତ୍ତରାଧିକାରୀ ହେବେ । ଯେଉଁଦିନ ସେମାନଙ୍କ ଆତ୍ମବିସ୍ମୃତି ଘୁଞ୍ଚିବ ଓ ଆତ୍ମବିଶ୍ୱାସ ଫେରିବ, ସେମାନେ ମରଣଜୟୀ ହେବେ ଏବଂ ଅସାଧ ସାଧନ କରିପାରିବେ । ଏହା ଚିରନ୍ତନ ଏବଂ ସତ୍ୟ ।

ଏବେ ତାଙ୍କର ବା ଦୋଷ କ'ଣ । ତାଙ୍କ ଜୀବନରେ କର୍ମଯୋଗୀ, ବୀତସ୍ପୃହ, ତ୍ୟାଗବୀର ମହାପୁରୁଷ ମାନଙ୍କର ସତ୍‌ସଂଗ ସେମାନେ ପାଇଲେ ନାହିଁ । କଂଗ୍ରେସ ସବୁଦିନେ ଏକ ଷୋଳକ୍ଷଣ୍ଟ ପାର୍ଟି ହୋଇ ରହିଗଲା ସବୁ ଶ୍ରେଣୀ ଓ ସବୁ ଚରିତ୍ରର ଲୋକର ଆଶ୍ରୟସ୍ଥଳ ହୋଇ । ସମସ୍ତେ ତାକୁ ଉପଭୋଗ କଲେ । ଏକ କେଡାରଭିତ୍ତିକ ପାର୍ଟି ଭାବରେ ରାଜନୀତିକ ସ୍ୱୀକୃତି ସେ ଏଯାଏ ପାଇଲା ନାହିଁ । ଏବର ଶିକ୍ଷିତ ଯୁବକମାନଙ୍କୁ ଉପଯୁକ୍ତ ତାଲିମ ମଧ ଦିଆଗଲା ନାହିଁ । ତେଣୁ କ୍ଷମତାର ମୋହ ଏବଂ ଅର୍ଥର ଲାଳସା ତାଙ୍କୁ ସ୍ୱାଭାବିକ ଭାବେ ଭସାଇ ନେଉଛି ଏବଂ ମହାନ୍ କଂଗ୍ରେସର ପାଦତଳୁ ମାଟି ଧୀରେଧୀରେ ଖସି ଯାଉଛି । କିନ୍ତୁ ଆମ ନେତାମାନଙ୍କର ସେ ଦିଗରେ ଭ୍ରୂକ୍ଷେପ ନାହିଁ ।



Digitized by srujanika@gmail.com

ପଢ଼ାଇ ଶିଖାଇ କଂଗ୍ରେସର ମହାନ୍ ଆଦର୍ଶ, ସେବା ଓ ତ୍ୟାଗର ଇତିହାସ ଏବଂ ପରମ୍ପରା ସେମାନଙ୍କ ଜୀବନରେ ପ୍ରତିଫଳିତ କରିବାକୁ ପଡ଼ିବ । ଯେପରିକି କଂଗ୍ରେସର ଉଦାର ଭାବଧାରାରେ ସେମାନଙ୍କର ହୃଦୟ ଉଦ୍‌ବୁଦ୍ଧ ଏବଂ ବିକଶିତ ହୋଇଉଠିବ । ଦାୟିତ୍ୱରେ ଥିବା କଂଗ୍ରେସରୁ ବର୍ଷୀୟାନ୍ ଏବଂ ଗରୀୟାନ୍ ନେତାମାନେ ଏଥିପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିବାର ଆବଶ୍ୟକତା ଜରୁରୀ ହୋଇପଡ଼ିଛି ।

ଏହି ଉଚ୍ଛୃଙ୍ଖଳ ଅବସ୍ଥାର ସଂଶୋଧନ ଏବଂ ପରିବର୍ତ୍ତନ ଯଦି ଆମେ ଚାହିଁବା, ତେବେ ଆଉ ଅପେକ୍ଷା କରିବା ଉଚିତ ହେବନାହିଁ । ସଂଶୋଧନ ବା ପରିବର୍ତ୍ତନ କିଛି ଆପେଆପେ ଆସିବ ନାହିଁ । ସେଥିପାଇଁ ବିଶେଷ ଚେଷ୍ଟାର ପ୍ରୟୋଜନ ରହିଛି । ଏହି ପରିବର୍ତ୍ତନର ଗତିକୁ ଦ୍ରୁତତର କରିବାକୁ ହେବ । ପୁଣି ଡେରି କଲେ ଜାତିର ଭବିଷ୍ୟତ,ଏକ ମହାନ୍ ସଂପଦ, ଅକାଳରେ ଅଯଥା ନଷ୍ଟ ହୋଇଯିବ । କଷ୍ଟାର୍ଜିତ ସ୍ୱାଧୀନତା ବିପନ୍ନ ହେବା ସଂଗେସଂଗେ ଦେଶ ଧ୍ୱଂସର ସମ୍ମୁଖୀନ ହେବ ।





Digitized by srujanika@gmail.com

# ରାଜନୀତି ଓ ପ୍ରତିନିଧିତ୍ୱ

୧୯୪୫ ଶେଷ ଭାଗରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରିସମାପ୍ତି ସଂଗେସଂଗେ ଇଂରେଜ ସରକାର ଜେଲ୍ ଫାଟକ ଖୋଲିଦେଲେ । ତତ୍କାଳୀନ ବଡ଼ଲାଟ୍ ଲର୍ଡ଼ ମାଉଣ୍ଟ ବ୍ୟାଟେନ୍ ଗାନ୍ଧିଜୀ ସମେତ ସବୁ କଂଗ୍ରେସ ନେତାଙ୍କୁ ନେଇ ସିମ୍ଲା କନ୍‌ଫରେନ୍‌ସରେ ବସିଲେ । ସେତେବେଳକୁ ଇଂଲଣ୍ଡରେ କନଜାରଭେଟିଭ ଦଳର ଚର୍ଚ୍ଚିଲ୍ ସରକାର ବଦଳିଯାଇ ପ୍ରଗତି ଏବଂ ସମ୍ବେଦନଶୀଳ ଲେବର ପାର୍ଟିର ଅଟଲି ସରକାର ଗଠିତ ହୋଇସାରିଥାଏ । ନୀତିଗତ ଭାବେ ଇଂରେଜ ସରକାର ଭାରତର ପୂର୍ଣ୍ଣ ସ୍ୱାଧୀନତା ଦାବି ଗ୍ରହଣ କଲେ । ଏକ ଅସ୍ଥାୟୀ ଅନ୍ତବର୍ତ୍ତୀ କାଳୀନ ସରକାର ଲର୍ଡ଼ ମାଉଣ୍ଟ ବ୍ୟାଟେନ୍‌ଙ୍କ ତତ୍ତ୍ୱାବଧାନରେ କଂଗ୍ରେସ ଓ ମୁସ୍‌ଲିମ୍ ଲିଗ୍‌ର କ୍ଷମତାଶାଳୀ ତୁଙ୍ଗ ପ୍ରତିନିଧିମାନଙ୍କୁ ନେଇ ଗଠିତ ହେଲା । ବିଭିନ୍ନ ରାଜ୍ୟ ସ୍ତରରେ ମଧ୍ୟ ପ୍ରତିନିଧିମୂଳକ ଅସ୍ଥାୟୀ ସରକାରମାନ ନିର୍ବାଚିତ ହେଲେ । ଇତି ମଧ୍ୟରେ ବହୁ ବିଚାର ଏବଂ ବିବେଚନା ପରେ ୧୯୪୭ ଅଗଷ୍ଟ ବେଳକୁ ଭାରତକୁ ଦ୍ୱିଧାଭକ୍ତ କରି ହିନ୍ଦୁସ୍ଥାନ ଓ ପାକିସ୍ତାନର ପ୍ରକୃତ ରୂପରେଖ ପ୍ରକାଶିତ ହେଲା ଏବଂ ଶାସନ କ୍ଷମତା ଇଂରେଜ ସରକାରଙ୍କ ହାତରୁ ହସ୍ତାନ୍ତରିତ ହେଲା । ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ନେତୃତ୍ୱରେ ନିର୍ବାଚିତ ଲୋକ ପ୍ରତିନିଧି ସରକାର କେନ୍ଦ୍ର ଓ ରାଜ୍ୟମାନଙ୍କରେ ପ୍ରତିଷ୍ଠିତ ହେଲେ । ହିନ୍ଦୁସ୍ଥାନରେ ନୂତନ ଭାରତ ସରକାର ଗଠନ କରିବାକୁ କେହି କଂଗ୍ରେସକୁ ବିରୋଧ କଲେନାହିଁ ।

ଆମ ଓଡ଼ିଶା ରାଜ୍ୟରେ ଏତିକିବେଳେ ନିର୍ବାଚିତ ଷାଠିଏ ଜଣିଆ ବିଧାନସଭାରେ ଶ୍ରୀ ହରେକୃଷ୍ଣ ମହତାବ ପ୍ରଥମେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଇଥିଲେ । ଭାରତୀୟ ସମ୍ବିଧାନ ଗଢ଼ିବା ସକାଶେ ସମ୍ବିଧାନ ପ୍ରସ୍ତୁତକାରୀ ସଭା (Constituent Assembly) ଦିଲ୍ଲୀରେ ବସିଲା । ବିଶିଷ୍ଟ ଆଇନଜ୍ଞ ଡ.ଆମ୍ବେଦକର, ଡ.ଜୟକାର ଏବଂ ବୁଲାଭାଇ ଦେଶାଇ ପ୍ରମୁଖଙ୍କ ନେତୃତ୍ୱରେ ପ୍ରସ୍ତୁତ ନୂତନ ସମ୍ବିଧାନକୁ ଏହି ସଭା ସର୍ବସମ୍ମତି କ୍ରମେ ଗ୍ରହଣ କଲେ । ସ୍ୱାଧୀନ ଭାରତବର୍ଷ ଏକ ସାର୍ବଭୌମ, ଗଣତାନ୍ତ୍ରିକ ସଂଯୁକ୍ତ ପ୍ରଜାତନ୍ତ୍ର ରାଷ୍ଟ୍ରରେ ପରିଣତ ହେଲା । ସମ୍ବିଧାନାନୁଯାୟୀ ସାବାଳକ ଭୋଟ ମାଧ୍ୟମରେ ୧୯୫୨ ମସିହାରେ ସର୍ବପ୍ରଥମ ଭାରତବ୍ୟାପୀ କେନ୍ଦ୍ର ଓ ରାଜ୍ୟମାନଙ୍କରେ ସାଧାରଣ ନିର୍ବାଚନ କରାଗଲା ।



Digitized by srujanika@gmail.com

ସାତଲକ୍ଷ ଲୋକ ବାସକରୁଥିବା ନିର୍ବାଚନ ମଣ୍ଡଳୀରୁ ଜଣେ କରି ଲୋକସଭା ସଦସ୍ୟ ଏବଂ ଏକଲକ୍ଷ ଲୋକଥିବା ନିର୍ବାଚନ ମଣ୍ଡଳୀରୁ ଜଣେକରି ରାଜ୍ୟ ବିଧାନସଭା ସଦସ୍ୟ ନିର୍ବାଚନ କରାଗଲା । ନୂତନ ସମ୍ବିଧାନ ଅନୁଯାୟୀ ଆମ ରାଜ୍ୟରେ ଷାଠିଏ ଜଣ ବିଧାନସଭା ପ୍ରତିନିଧି ସ୍ଥାନରେ ୧୪୦ଜଣ ପ୍ରତିନିଧି ନିର୍ବାଚିତ ହେଲେ ।

୧୯୩୫ 'ଭାରତ ଆଇନ' (35 India Act) ବଳରେ ସମଗ୍ର ଉତ୍ତର ବାଲେଶ୍ୱର (ବସ୍ତା, ସିଂଲା, ବାଲିଆପାଳ, ଜଳେଶ୍ୱର ଏବଂ ଭୋଗରାଇ) ଅଞ୍ଚଳରୁ ୧୯୩୭ ମସିହାରେ ସ୍ୱାଧୀନ ପ୍ରାର୍ଥୀ ଶ୍ରୀ ଶ୍ରୀନାଥ ଚନ୍ଦ୍ର ଦାସଙ୍କୁ ପରାସ୍ତ କରି କଂଗ୍ରେସ ପ୍ରାର୍ଥୀ ଶ୍ରୀ ଚାରୁଚନ୍ଦ୍ର ରାୟ ମହାଶୟ ନିର୍ବାଚିତ ହୋଇଥିଲେ । ୧୯୩୯ରେ ଶ୍ରୀ ବିଶ୍ୱନାଥ ଦାସଙ୍କ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲାପରେ ଚାରୁବାବୁ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ମହାରାଜାଙ୍କର ମିଳିତ ମନ୍ତ୍ରୀମଣ୍ଡଳରେ ଯୋଗଦେଲେ । ଏହି ମନ୍ତ୍ରୀମଣ୍ଡଳ ଇଂରେଜ ସରକାରଙ୍କର ହାତବାରିସି ରୂପେ ୧୯୪୫ ଯାଏ ଚାଲିଥିଲା । ଏତିକିବେଳେ ଆମ ଭୋଗରାଇରେ ଚାରୁବାବୁଙ୍କ ନେତୃତ୍ୱରେ ଏବଂ ସର୍ବଶ୍ରୀ ମଦନମୋହନ ମହାନ୍ତି, ଯଜ୍ଞେଶ୍ୱର ଗିରି, ସୁରେନ୍ଦ୍ର ନାଥ ମହାନ୍ତି ଏବଂ ଜୟକୃଷ୍ଣ ମହାନ୍ତିଙ୍କ ସହାୟତାରେ ଜଳେଶ୍ୱରପୁରଠାରେ ଏକ ହାଇସ୍କୁଲ ପ୍ରତିଷ୍ଠାଲାଭ କରିଥିଲା । ତାପରେ ୧୯୪୫ଠାରୁ ୧୯୫୨ଯାଏ ଶ୍ରୀଯୁକ୍ତ କରୁଣାକର ପାଣିଗ୍ରାହୀ ଅପ୍ରତିଦ୍ୱନ୍ଦ୍ୱୀ ଭାବେ ଏହି ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୁଅନ୍ତି । କରୁଣାକର ବାବୁ ଜିଲ୍ଲା କଂଗ୍ରେସର ସଭାପତି ଥାଇ ଜଣେ ଶକ୍ତିଶାଳୀ ଦେଶ ସେବକ ହିସାବରେ ସମଗ୍ର ରାଜ୍ୟରେ ଖ୍ୟାତି ଅର୍ଜନ କରିଥିଲେ ଏବଂ ଆଜୀବନ ନିଜକୁ ସର୍ବ ସାଧାରଣଙ୍କ ସେବାରେ ଉତ୍ସର୍ଗ କରିଥିଲେ । ୧୯୫୨ ମସିହାରେ ବିଧାନସଭା ନିର୍ବାଚନ ମଣ୍ଡଳୀ ପୁନର୍ଗଠିତ ହୋଇ ବାଲିଆପାଳ ସହ ଦକ୍ଷିଣ ଭୋଗରାଇ ମିଶି ଭୋଗରାଇ ନିର୍ବାଚନ ମଣ୍ଡଳୀ ଏବଂ ଉତ୍ତର ଭୋଗରାଇ ସହ ଜଳେଶ୍ୱର ମିଶି ଜଳେଶ୍ୱର ନିର୍ବାଚନ ମଣ୍ଡଳୀ ଗଠିତ ହୁଏ । ସ୍ୱାଧୀନ ପ୍ରାର୍ଥୀ ଶ୍ରୀ ଶଶୀକାନ୍ତ ଭଞ୍ଜ, ଭୋଗରାଇରୁ ଏବଂ କଂଗ୍ରେସ ପ୍ରାର୍ଥୀ ଶ୍ରୀ କରୁଣାକର ପାଣିଗ୍ରାହୀ ଜଳେଶ୍ୱରରୁ ପ୍ରଥମ ସାଧାରଣ ନିର୍ବାଚନରେ ବିଜୟୀ ହେଲେ । ଏମାନେ ସ୍ୱାଧୀନତାସଂଗ୍ରାମୀ ତଥା ଅତ୍ୟନ୍ତ ଯୋଗ୍ୟ ପ୍ରତିନିଧି ଥିଲେ । ଏହି ସମୟରେ ଜଳେଶ୍ୱରପୁର ହାଇସ୍କୁଲକୁ ସରକାର ହାତକୁ ନିଅନ୍ତି । ଜଳେଶ୍ୱର-ବାଟଗ୍ରାମ ରାସ୍ତାର ଉନ୍ନତି ସାଧନ, ଦେଉଳାରେ ଡାକ୍ତରଖାନା, ବନ୍ୟା ପ୍ରତିକାର ଦିଗରେ କେତେକ ସୁଚିନ୍ତିତ ପଦକ୍ଷେପ ଏତିକିବେଳେ ନିଆଯାଇଥିଲା । ସେତିକିବେଳେ ଜିଲ୍ଲା ବୋର୍ଡ଼ ଏବଂ ଜିଲ୍ଲା ଉନ୍ନୟନ ବୋର୍ଡ଼ ମଧ୍ୟ ଜିଲ୍ଲା ତମାମ ସଫଳତା ସହ ସାଧାରଣ ଉନ୍ନୟନ କାର୍ଯ୍ୟ ଚଳାଇଥାନ୍ତି । ମୁଁ ୧୯୫୩ଠାରୁ ୫୬ଯାଏ ବାଲେଶ୍ୱର ସଦର ଲୋକାଲ ବୋର୍ଡ଼ର



Digitized by srujanika@gmail.com

ଦାୟିତ୍ୱ ବହନ କରି ଏବଂ ସମଗ୍ର ଉତ୍ତରବାଲେଶ୍ୱର, ବିଶେଷକରି ଭୋଗରାଇର ପ୍ରାଥମିକ ଶିକ୍ଷାର ପ୍ରଭୂତ ଉନ୍ନତି ବିଧାନ କରିଥିଲି । ୧୯୫୭ ସାଧାରଣ ନିର୍ବାଚନରେ ଭୋଗରାଇ ନିର୍ବାଚନ ମଣ୍ଡଳୀ ପୁନରାୟ ସମଗ୍ର ଭୋଗରାଇ ସହ ନଦୀକୂଳବର୍ତ୍ତୀ ବାଲିଆପାଳର ଗ୍ରାମ ପଞ୍ଚାୟତ ମାନଙ୍କୁ ନେଇ ପୁନର୍ଗଠିତ ହୁଏ ଏବଂ ମୁଁ ଭୋଗରାଇରୁ ନିର୍ବାଚିତ ହେଲି । ସେ ସମୟରେ ବାଟଗ୍ରାମ-ଚନ୍ଦନେଶ୍ୱର ରାସ୍ତାର ଉନ୍ନତି ଘଟେ । ଜଳେଶ୍ୱରପୁରଠାରେ ଏକ ଇ.ଟି. ସ୍କୁଲ, ନଡ଼ିଆ ଚାରା ବଗିଚା ପ୍ରତିଷ୍ଠା ହେବା ସଂଗେସଂଗେ କଖଡ଼ା ଓ କମର୍ଦ୍ଦା ହାଇସ୍କୁଲ, ଅନଳିଆ ମି.ଇ. ସ୍କୁଲ ସରକାର ହାତକୁ ନିଅନ୍ତି । ୧୯୬୧ ମଧ୍ୟବର୍ତ୍ତୀକାଳୀ ନିର୍ବାଚନରେ ଓ ୧୯୬୭ ସାଧାରଣ ନିର୍ବାଚନରେ ପ୍ରଜା ସୋସିଆଲିଷ୍ଟ ଦଳରୁ ଶ୍ରୀ ପ୍ୟାରୀମୋହନ ଦାସ ଭୋଗରାଇରୁ ନିର୍ବାଚିତ ହେଲେ ।

୧୯୬୨, ଭୋଗରାଇ ସେଡୋ (shadow) ବ୍ଲକ୍ ଷ୍ଟେଜ-ଏକ ବ୍ଲକ୍‌ରେ ପରିଣତ ହେଲା ଏବଂ ମୁଁ ଉକ୍ତ ପଞ୍ଚାୟତ ସମିତିର ଚେୟାରମେନ୍ ନିର୍ବାଚିତ ହେଲି । ତତ୍‌ପୂର୍ବରୁ ଦୁଇବର୍ଷ କାଳ ଶ୍ରୀ ଶଶୀକାନ୍ତ ଭଞ୍ଜ ଏହି ସେଡୋ ବ୍ଲକ୍‌ର ଚେଆରମେନ୍ ଥିଲେ । ୧୯୬୨ରେ ଶ୍ରୀ ଭଞ୍ଜ ଜିଲ୍ଲା ପରିଷଦର ଭାଇସ୍ ଚେୟାରମେନ୍ ନିର୍ବାଚିତ ହେଲେ । ଉକ୍ତ ସମୟରେ ବିଧାନସଭାରେ ବିରୋଧୀଦଳର ପ୍ରତିନିଧିତ୍ୱ ସତ୍ତ୍ୱେ ମୋର ଏବଂ ଶଶୀବାବୁଙ୍କର ସହଯୋଗ ମୂଳକ ପ୍ରଚେଷ୍ଟାରେ ନିର୍ବାଚନ ମଣ୍ଡଳୀର ବିଭିନ୍ନ କ୍ଷେତ୍ରରେ ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା ।

ଏତିକିବେଳେ, ଭୋଗରାଇ ବ୍ଲକ୍‌ର ୧୦ଟି ଗ୍ରାମପଞ୍ଚାୟତ ପୁନର୍ଗଠିତ ହୋଇ ୨୧ଟି ଗ୍ରାମ ପଞ୍ଚାୟତରେ ପରିଣତ ହେଲା । ବାଟଗ୍ରାମ-ଚନ୍ଦନେଶ୍ୱର ପ୍ରଧାନ ରାସ୍ତାର ଉନ୍ନୟନ କାମ ପ୍ରବଳ ପ୍ର ରୋଧ ସତ୍ତ୍ୱେ ଆଗେଇ ଚାଲିଲା ।

୧୯୬୭ ସାଧାରଣ ନିର୍ବାଚନରେ ଜନକଂଗ୍ରେସ ଦଳ ଛାଡ଼ି, ଶ୍ରୀ କାର୍ତ୍ତିକେଶ୍ୱର ପାତ୍ର କଂଗ୍ରେସ ଦଳରେ ଯୋଗଦେଲେ ଏବଂ ସେ କଂଗ୍ରେସ ପ୍ରାର୍ଥୀ ଭାବେ ନିର୍ବାଚନରେ ବିଜୟୀ ହେଲେ । ୧୯୭୪ ସାନି ନିର୍ବାଚନରେ ମଧ୍ୟ ସେ ବିଜୟଲାଭ କଲେ । ୧୯୭୨ରୁ ୭୭ ପୁନଶ୍ଚ ମୁଁ ପଞ୍ଚାୟତ ସମିତିର ଦାୟିତ୍ୱ ଗ୍ରହଣ କଲି । ଏହି ସମୟକାଳ ମଧ୍ୟରେ ଆଖିଦୃଶିଆ ବହୁବିଧ ଉନ୍ନତିମୂଳକ କାର୍ଯ୍ୟ ଭୋଗରାଇ ବ୍ଲକ୍ ଇଲାକା ମଧ୍ୟରେ ସାଧିତ ହୋଇଛି । ଚନ୍ଦନେଶ୍ୱର ବାଟଗାଁ ରାସ୍ତାକାମ ସମାପ୍ତି ସହିତ କମର୍ଦ୍ଦା-ବାଲିଆପାଳ, ଦେଉଳା-ଭୋଗରାଇ, ଚନ୍ଦନେଶ୍ୱର-ସାହାବାଜିପୁର ଓ ଚନ୍ଦନେଶ୍ୱର-ପଦ୍ମପୁର ରାସ୍ତା ସମୂହର ଉନ୍ନତି ଘଟିଛି । ଭୋଗରାଇ ଗ୍ରାମାଞ୍ଚଳର ବିଦ୍ୟୁତ୍‌କରଣ, ଉତ୍ତର ଭୋଗରାଇରେ ଗଭୀର ନଳକୂପ ଜରିଆରେ ଉଠାଜଳସେଚନର ବ୍ୟବସ୍ଥା, ଭୋଗରାଇ ସଂସ୍କୃତ



Digitized by srujanika@gmail.com

ମହାବିଦ୍ୟାଳୟ ପ୍ରତିଷ୍ଠା ଆଦି ବହୁ ସାଧାରଣ ଓ ଅସାଧାରଣ ଉନ୍ନୟନ କାର୍ଯ୍ୟ ଏତିକିବେଳେ ସାଧିତ ହୋଇଛି ।

୧୯୭୭ ନିର୍ବାଚନରେ ଶ୍ରୀ ସୁଶାନ୍ତ କୁମାର ଚାନ୍ଦ ଜନତାଦଳରୁ ନିର୍ବାଚିତ ହୋଇ ଆସିଲେ ଓ ରାଜ୍ୟ ପଞ୍ଚାୟତ ସମିତିର ଚେୟାରମେନ୍ ନିର୍ବାଚନ ବାତିଲ୍ କରାଗଲା । ୧୯୮୦ ସାନି ନିର୍ବାଚନରେ ଶ୍ରୀ କାର୍ତ୍ତିକେଶ୍ୱର ପାତ୍ର ତୃତୀୟଥର ପାଇଁ ନିର୍ବାଚିତ ହୋଇ ଆସିଲେ ଏବଂ ସେ ଓଡ଼ିଶା ଏଗ୍ରୋ ଇଣ୍ଡଷ୍ଟ୍ରିଜ୍ କର୍ପୋରେସନ୍‌ରେ ଚେୟାରମେନ୍ ଭାବେ ଦାୟିତ୍ୱ ଗ୍ରହଣ କଲେ । ୧୯୮୫ ସାଧାରଣ ନିର୍ବାଚନରେ ପରବର୍ତ୍ତୀ ସାଧାରଣ ନିର୍ବାଚନ ଗୁଡ଼ିକରେ ଜନତା ଦଳର ପ୍ରାର୍ଥୀ ଡା.କମଳା ଦାସ ଦୁଇଥର ଏବଂ ବିଜୁଜନତା ଦଳର ପ୍ରାର୍ଥୀ ଭାବେ ଅନନ୍ତ ଦାସ ଦୁଇଥର ଭୋଗରାଇ ନିର୍ବାଚନମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି ।

ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ୧୯୪୭ରୁ ୫୨ ଯାଏ 'ଭାରତୀୟ ସମ୍ବିଧାନ ନିର୍ମାଣ ସଭାରେ ବାଲେଶ୍ୱର ଜିଲ୍ଲାରୁ ପ୍ରତିନିଧିତ୍ୱ କରିଥିଲେ । ତାପରେ ୧୯୫୨-୫୭ ଏବଂ ୧୯୫୭-୬୨ ପର୍ଯ୍ୟନ୍ତ ଶ୍ରୀ ଭାଗବତ ପ୍ରସାଦ ସାହୁ ଓ ଶ୍ରୀ କାହ୍ନୁଚରଣ ଜେନା ଯୁଗ୍ମଭାବରେ ବାଲେଶ୍ୱର ଜିଲ୍ଲାରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୧୯୬୭-୭୨ ସମୟରେ ବାଲେଶ୍ୱର ଲୋକସଭା ସଦସ୍ୟ ଭାବରେ ଶ୍ରୀ ସମରେନ୍ଦ୍ର କୁଣ୍ଡୁ ପ୍ରଜା ସୋସିଆଲିଷ୍ଟ ଦଳରୁ ନିର୍ବାଚନ ଜିତିଥିଲେ । କିନ୍ତୁ ୧୯୭୨-୭୭ ନିର୍ବାଚନରେ ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର ବହୁ ଭୋଟରେ ତାଙ୍କୁ ପରାସ୍ତ କରି ନିର୍ବାଚିତ ହେଲେ । ୧୯୭୭ ମସିହା ନିର୍ବାଚନରେ କଂଗ୍ରେସ ଦଳରେ ସମୂହ ପରାଜୟ ପରିଲକ୍ଷିତ ହେଲା ଏବଂ ଶ୍ରୀ ସମରେନ୍ଦ୍ର କୁଣ୍ଡୁ ଦ୍ୱିତୀୟଥର ପାଇଁ ଜନତାଦଳ ତରଫରୁ ବାଲେଶ୍ୱର ନିର୍ବାଚନ ମଣ୍ଡଳୀରୁ ଲୋକସଭା ସଦସ୍ୟ ଭାବେ ନିର୍ବାଚିତ ହୋଇ ଭାରତର ବୈଦେଶିକ ବ୍ୟାପାରର ରାଷ୍ଟ୍ରମନ୍ତ୍ରୀ ପଦ ଅଳଙ୍କୃତ କରିଥିଲେ । ଏହାପରେ ୧୯୮୦-୮୫ ଏବଂ ୧୯୮୫ରେ ବିଶିଷ୍ଟ ସମାଜସେବୀ ଶ୍ରୀ ଚିନ୍ତାମଣି ଜେନା ବାଲେଶ୍ୱରରୁ ଲୋକସଭାରେ ପ୍ରତିନିଧିତ୍ୱ କରି ଥିଲେ ।

ଭୋଗରାଇର ଜନସଂଖ୍ୟା ବର୍ତ୍ତମାନ ଏକାଏକ ଭାବରେ ଦୁଇଗୋଟି ବିଧାନସଭା ନିର୍ବାଚନମଣ୍ଡଳୀ ଗଠନ କରିବାକୁ ସମର୍ଥ । ଏହି ଜନସଂଖ୍ୟାର ଶତକଡ଼ା ଅଶୀଭାଗ ଲୋକ ଅଳ୍ପ ବହୁତ ଶିକ୍ଷିତ । ଏଣୁ ଶିକ୍ଷିତ ବେକାର ସଂଖ୍ୟା ବଢ଼ିବଢ଼ି ଚାଲିଛି । ସେମାନଙ୍କର କର୍ମସଂସ୍ଥାନ ପାଇଁ ସେଭଳି କିଛି ଉଦ୍ୟୋଗ କି ସୁବିଧା ସୁଯୋଗ ଆଜି ସୁଦ୍ଧା ଏ ଅଞ୍ଚଳରେ ସୃଷ୍ଟି ହୋଇପାରି ନାହିଁ । ଶିକ୍ଷିତ ବେକାର ମାନଙ୍କର ଆତ୍ମନିଯୁକ୍ତି କ୍ଷେତ୍ରରେ ବ୍ୟବସ୍ଥା ମଧ୍ୟ ଅପ୍ରତୁଳ । ରାଜନୀତିକ ହସ୍ତକ୍ଷେପ ସମସ୍ୟାକୁ ଅଧିକ ଜଟିଳ ଓ



Digitized by srujanika@gmail.com

ପ୍ରତିକୂଳ କରୁଛି । ସାଧାରଣ ଲୋକଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ଯୋଜନାବଦ୍ଧ ଭାବରେ ଯେତିକି ସହାୟତା ମିଳୁଛି ତାର ସଦୁପଯୋଗ ଅଧିକାଂଶ କ୍ଷେତ୍ରରେ ହୋଇପାରୁ ନାହିଁ । ସାଧାରଣ ଲୋକଙ୍କର ସ୍ୱଭାବଗତ ଦୋଷ ଦୁର୍ବଳତା ଅବଶ୍ୟ ରହିଛି । ଏହି ଅର୍ଥବ୍ୟୟ କ୍ଷେତ୍ରରେ କିନ୍ତୁ କର୍ତ୍ତୃପକ୍ଷଙ୍କର ଯଥେଷ୍ଟ ଅବହେଳା ରହୁଥିବାର ଲକ୍ଷ୍ୟ କରାଯାଇଛି । ଏଣୁ ଅବସ୍ଥାର ଉନ୍ନତି ପରିବର୍ତ୍ତେ ସେମାନଙ୍କର ଅବନତ ଅବସ୍ଥା ଦେଖିଲେ ଦୁଃଖ ଆସେ । ଯୋଗାଯୋଗ ଓ ପରିବହନ ବ୍ୟବସ୍ଥା ଆଦିରେ ନ୍ୟୂନତା ଅସହ୍ୟ ହୋଇ ଉଠିଛି । ବନ୍ୟା, ବର୍ଷା, ଲୁଣପାଣି ନିୟନ୍ତ୍ରଣ ଏବଂ ନିଷ୍କାସନ କ୍ଷେତ୍ରରେ ବନ୍ଧବାଡ଼ ଓ ପୋଲ ନିର୍ମାଣ ତଥା ନାଳ, ଖାଳ, ଖନନ ଆଦିରେ ବିଗତ ଦିନରେ ଆଖି ଦୃଶିଆ ଉନ୍ନତି ହୋପାରିନାହିଁ । ସମୁଦ୍ର ଓ ନଦୀପାଣି ପୂର୍ବପରି କ୍ଷତି କରିଚାଲିଛି । ଏ ଦିଗରେ ରାଜ୍ୟରେ ଇଂଜିନିୟର ବନ୍ଧୁମାନଙ୍କର ଅପାରଗତା ଏବଂ ବ୍ୟର୍ଥତା ପ୍ରମାଣିତ ହୋଇସାରିଛି । ଆଭ୍ୟନ୍ତରୀଣ ବନ୍ୟା ନିୟନ୍ତ୍ରଣ ସକାଶେ କୌଣସି ଏକ କାର୍ଯ୍ୟକର ଯୋଜନା କର୍ତ୍ତୃପକ୍ଷ ଏଯାବତ୍ ନେଇପାରିଲେ ନାହିଁ, ଏହା ଯଥେଷ୍ଟ ପରିତାପର ବିଷୟ । ଦୁର୍ଗତ ଚାଷୀକୂଳକୁ ଦ୍ୱିତୀୟ ଫସଲ ଉତ୍ପାଦନର ସୁଯୋଗ କିଛି ପରିମାଣରେ ମିଳିଥିଲେ ସୁଦ୍ଧା ଦକ୍ଷିଣ ଭୋଗରାଇ ସେଥିରୁ ସଂପୂର୍ଣ୍ଣ ବଞ୍ଚିତ । ପୁଣି ରାଜ୍ୟର ବିଜୁଳି ବିଭ୍ରାଟ ଏକ ବାଧକ ରୂପେ ଉପସ୍ଥିତ ହୋଇ ପରିସ୍ଥିତିକୁ ଅଧିକ ଜଟିଳ କରିଛି । ଅର୍ଥନୈତିକ କ୍ଷେତ୍ରରେ ଅଦ୍ୟାବଧି ଯେତିକି ଉନ୍ନତି ଦେଖିବାକୁ ମିଳେ, ତାହା ବହୁଳାଂଶରେ କେବଳ ସ୍ଥାନୀୟ ଅଧିବାସୀମାନଙ୍କର ବିଦ୍ୟା, ବୁଦ୍ଧି, ବିପୁଳ ଶ୍ରମ, ଅସୀମ ଧୈର୍ଯ୍ୟ ତଥା ମଣିଷ ପରି ବଞ୍ଚି ରହିବାର ପ୍ରବଳ ଉଦ୍ୟମର ଫଳଶ୍ରୁତି ସ୍ୱରୂପ ।

ଶିକ୍ଷାର ପ୍ରସାର ସଂଗେସଂଗେ ଭୋଗରାଇର ପୁଅ ଝିଅମାନେ ପାଠ ପଢ଼ି ଶିକ୍ଷିତ ଓ ସଚେତ ହେଲେ ପ୍ରତିନିଧିତ୍ୱ ମଧ କ୍ରମେ ଶିକ୍ଷିତ ଲୋକଙ୍କ ପାଖକୁ ସଳଖି ଯିବାର ଲକ୍ଷ୍ୟ କରାଯାଇଛି । ମାତ୍ର ପ୍ରତିନିଧିତ୍ୱ କ୍ଷେତ୍ରରେ ନିଷ୍ଫଳ ଅପାରଗ ଲୋକର ଆବିର୍ଭାବ ସମ୍ଭବ ହୋଇଛି । ଆଞ୍ଚଳିକ ଅଗ୍ରଗତି ମୂର୍ଚ୍ଛିତ ହୋଇପଡ଼ିଛି, ଶୁଭ୍ର ଶିକ୍ଷିତ ଯୁବକମାନଙ୍କ ପ୍ରାଣରେ ହତାଶା ଓ କଳଙ୍କର ରେଖା ଟାଣି ଚାଲିଛି । ଅଭୟ ଓ ଭ୍ରାତୃଭାବ ପରିବର୍ତ୍ତେ ଘୃଣା ଓ ଭୟ ଲୋକଙ୍କ ମନରେ ଜାତ ହୋଇଛି । ଆମର ନେତୃବୃନ୍ଦଙ୍କ ଧାରଣା, ଭାତ ବୁଣିଲେ କୁଆର ଅଭାବ ହେବନାହିଁ । ନିର୍ବାଚନରେ ଜନ ସମର୍ଥନ ଲାଭ କରିବାପାଇଁ ସେମାନେ କାମ କରିବା ପରିବର୍ତ୍ତେ ଅର୍ଥ ସଂଗ୍ରହରେ ଲାଗିଛନ୍ତି । ଦୁର୍ନୀତି ଏବଂ ଅପାରଗତା, ଶାସନ ଓ ରାଜନୀତିର ମେରୁଦଣ୍ଡକୁ କଳୁଷିତ ଓ ଦୁର୍ବଳ କରିଦେଇଛି । ଶାସକ ଓ ଶାସନକଳ ପ୍ରତି କାହାରି ଭୟ ବା ସମ୍ମାନବୋଧ ରହୁନାହିଁ । ମୂଳରୁ ଚୂଳଯାଏ, ପ୍ରାୟ



Digitized by srujanika@gmail.com

ସବୁ କ୍ଷେତ୍ରରେ ଯେକୌଣସି କାମ ପାଇଁ ସମସ୍ତଙ୍କୁ ଲାଞ୍ଚର ଆଶ୍ରୟ ନେବାକୁ ପଡୁଛି । ରାଜନୈତିକ, ସାମାଜିକ ଏବଂ ଅର୍ଥନୈତିକ ନ୍ୟାୟ ଓ ବିଚାରଧାରା, ଦୁର୍ନୀତିର ବାଟଧରି ଆଗେଇ ଚାଲିଛି । ରାଷ୍ଟ୍ରୀୟ ଓ ସମାଜ ଜୀବନ ଦିନକୁ ଦିନ ପଙ୍ଗୁ ହୋଇ ପଡୁଛି । ଫଳରେ ରାଷ୍ଟ୍ର ଓ ସମାଜ ନିର୍ମାଣ କାର୍ଯ୍ୟରେ ପ୍ରକୃତ ସାଧୁ ଓ କୁଶଳୀ କର୍ମୀ ତାର ଉପଯୁକ୍ତ ସ୍ଥାନ ଆଜି ଖୋଜି ପାଉନାହିଁ । ସ୍ୱାଧୀନତାସଂଗ୍ରାମ ବଳରେ ଦେଶମାତାର ସ୍ୱପ୍ନ-ସୁନୀଳ ଯେଉଁ ଆନନ୍ଦମୟୀ ମୂର୍ତ୍ତି ଆମ ଦେଶର ଅମୃତ ସନ୍ତାନମାନେ ସେମାନଙ୍କ ହୃଦୟରେ ରଚନା କରି ତାକୁ ବହୁ ନିଷ୍ଠା ଓ ସାଧନା ଦେଇ ଲାଳନ ପାଳନ କରି ଆସିଥିଲେ, ସେ ମୂର୍ତ୍ତି ଆଜି ବେଦନା, କଳଙ୍କ ଓ ଅକ୍ଷମତାରେ ନିସ୍ତେଜ ଏବଂ ପାଣ୍ଡୁର ଦେଖାଯାଉଛି । ଜନସମାଜର ସବୁ କ୍ଷେତ୍ରରେ ହତାଶା ଏବଂ ଉଗ୍ର ବିଶୃଙ୍ଖଳା ବୀଭତ୍ସ ଭାବରେ ପ୍ରକଟ ହେବାରେ ଲାଗିଛି । ଜୀବନର ମୂଲ୍ୟବୋଧ ସମସ୍ତେ ହରାଇ ବସିଛନ୍ତି । ଭାରତ ବର୍ଷର ଦ୍ରୁତ ନିମ୍ନଗାମୀ ଏହି ଅଶୁଭ ଶକ୍ତିହାତରୁ ଜାତିକୁ ଆଜି କିଏ ରକ୍ଷା କରିବ, ସେ ଆହ୍ୱାନ ଆସିଛି । ଚେଷ୍ଟାକଲେ ଶିକ୍ଷିତ ଏବଂ ବୁଦ୍ଧିମନ୍ତ ସନ୍ତାନମାନେ ହିଁ କେବଳ ଏହି ଆହ୍ୱାନକୁ ହାତକୁ ନେଇ ପାରିବେ । ସେମାନେ ଯେଉଁଠି ଯେଉଁ କ୍ଷେତ୍ରରେ ଯେଉଁ ଅବସ୍ଥାରେ ଥାନ୍ତୁ ନା କାହିଁକି, ସମୂହ ଧ୍ୱଂସମୁଖରୁ ଦେଶକୁ ଫେରାଇ ରକ୍ଷା କରିବାରେ ଏକମାତ୍ର ସମର୍ଥ । କର୍ତ୍ତବ୍ୟ ଭୁଲି ଅବସ୍ଥାର ସୁଯୋଗ ନେଇ, ନିଜର ହୀନ ବିଦ୍ୟାବୁଦ୍ଧି ବଳରେ ଯେତେ କୋଠା ଆମେ ବାନ୍ଧୁ, ଯେତେ ବିଳାସ କକ୍ଷ ଆମେ ରଚନା କରୁ, ବ୍ୟାଙ୍କର ଅଙ୍କ ଯେତେ ବଢ଼ାଇ ଚାଲୁ, ନିରୀହ ଦେଶବାସୀଙ୍କ ରକ୍ତଶୋଷଣ କରି ନିଜର ପରିବାର, ବନ୍ଧୁ, ପରିଜନର ଜୀବନଯାତ୍ରା ପଥକୁ ରଂଗ ତୂଳୀ ଧରି ସ୍ୱପ୍ନିଳ କରି ତୋଳୁ ପଛେ, ଦେଶ ମା'ର ସେ ଲୁହ ଲହୁ ଆମକୁ କେବେ କ୍ଷମା କରିବ ନାହିଁ । ଦିନ ଆସିବ, ଝଡ଼ ଉଠିବ, ପ୍ଲାବନ ବହିବ, କଡ଼କଡ଼ ହୋଇ ଆକାଶରୁ ବିଜୁଳି ଖସିବ, ଥରଥର ଭୂମିକମ୍ପରେ ଜନ୍ମମାଟି ଫାଟି ଚିରି ଭାଗଭାଗ ହୋଇଯିବ । କେହି ରକ୍ଷା ପାଇବେ ନାହିଁ, ଦୁଃସାଧ୍ୟ ବ୍ୟାଧି ନିଜକୁ ଏବଂ ଆତ୍ମୀୟ ସ୍ୱଜନକୁ ଗ୍ରାସିବ । ସେଦିନ ଆଉ ବେଶି ଡେରି ନାହିଁ । କର୍ତ୍ତବ୍ୟ ପ୍ରତି ଏ ଯେଉଁ ଦାରୁଣ ଅବହେଳା ଆମେ ଦେଖାଉଛୁ, ଦାୟିତ୍ୱ ଓ ବିବେକ ପ୍ରତି ଭ୍ରୂକ୍ଷେପ ନକରି ଆମେ ଯେ ଆଖିବୁଜା ମାଡ଼ି ଚାଲିଥାଉ, ଆମର ଗତି କେଉଁଆଡ଼େ ? ଆଗକୁ ନା ନିମ୍ନକୁ ? ଚିନ୍ତାର ଲୋଚନ ଫେଡ଼ି, ଟିକିଏ ନିରୀକ୍ଷଣ କରି ଦେଖିଲେ ଜଣାଯିବ ଯେ ଆମେ ସଭିଏଁ କାହାର ଦାୟାଦ । ଆମର ପ୍ରାକୃତିକ ଦୃଶ୍ୟ ସମୃଦ୍ଧ ଶୈଶବ, ଆଜି ବାର୍ଦ୍ଧକ୍ୟ ପାଣ୍ଡୁର କୃତ୍ରିମତା ଭିତରେ ହଜିଯିବାକୁ ବସିଛି । ଆମର ଗୌରବ ଉଜ୍ଜ୍ୱଳ

Digitized by srujanika@gmail.com

ଅତୀତ ଆମର ମହାନ୍ ପିତୃପୁରୁଷ ମାନଙ୍କ ସ୍ୱପ୍ନମାନସର ରାଜ୍ୟକୁ ଭାଂଗିରୁଜି ନଷ୍ଟ କରିଦେବାର ଅଧିକାର ଆମର ନାହିଁ ।

ଭୋଗବିଳାସ, ଏକ ପ୍ରକାର ଆଳସ୍ୟ । ଆଳସ୍ୟରୁ ପାପର ଉତ୍ପତ୍ତି । ଆଳସ୍ୟରୂପକ କ୍ଲେଦରୁ ନିଜକୁ ମୁକ୍ତକରି ଜାଗିଉଠି ଆମେ ନିଶ୍ଚୟ ଛିଡ଼ା ହେବୁ । ଛିଡ଼ାହୋଇ ଆଗକୁ ମାଡ଼ି ଚାଲିବୁ । ସମୟକୁ ଭୁଲ୍ ବୁଝିବା ଠିକ୍ ହେବନାହିଁ । ସତ୍ୟଯୁଗ ତା'ର ସମସ୍ତ ଆଲୋକ ସମ୍ଭାର ଧରି ଆମ ଦ୍ୱାରଦେଶରେ ଉପସ୍ଥିତ ହୋଇ ବାରମ୍ବାର ଧକ୍କା ଦେବାରେ ଲାଗିଛି । ଆପଣାର ନକଲି ଜୀବନର ସମସ୍ତ ମିଥ୍ୟା ଆଭରଣ, ଆବର୍ଜନା, ଆଡ଼ମ୍ବର ଓ କୃତ୍ରିମତାକୁ ଦୂରକୁ ଫିଙ୍ଗି ଉନ୍ନତବକ୍ଷ ଓ ଉନ୍ନତ ମସ୍ତକରେ ଆଗେଇ ଗଲେ ଦେଖିବା, ଚଲାପଥରେ ମଧୁବର୍ଷଣ ହେବ ।

ସୂର୍ଯ୍ୟକୁ ଦେଖୁଛୁ । ରାତିଦିନ, ତନ୍ଦ୍ରାହୀନ ଭାବରେ ଅନ୍ଧକାର ଭେଦକରି ସେ ଆଗେଇ ଚାଲିଛନ୍ତି ବୋଲି ତାଙ୍କର ଏତେ ଅକ୍ଷୟ ମାଳ ଶୁଭ୍ର ତେଜରାଶି । ସୂର୍ଯ୍ୟ ହିଁ ଆମର ତେଜୋଦୀପ୍ତ, ଶୁଭ୍ର, ସୁନ୍ଦର, ଅତୀତ । ତାଙ୍କୁ ଭୁଲିଗଲେ ବର୍ତ୍ତମାନ ଆମର ନିଷ୍ଫଳ ଏବଂ ଭବିଷ୍ୟତ ଅନ୍ଧକାରମୟ । ତେଣୁ ପାପର ପାଚେରି ଭାଂଗିଦେବାକୁ ହେବ । ଅଳୀକ ମୋହ ଜାଲ ଛିଣ୍ଡି, ସତ୍ୟଯୁଗକୁ ବନ୍ଦନା କରି ଘରକୁ ଆଣିବାକୁ ହେବ । ତା'ହେଲେ ଅନାବିଳ ମହତ୍ତର ଅତିମାନସ ଜୀବନ ଆମକୁ ପ୍ରାପ୍ତ ହେବ । ଭାରତମାତାଙ୍କ ଜୟଗାନରେ ନିଜକୁ ଓ ଭବିଷ୍ୟତକୁ ଭରିଦେବୁ । ପ୍ରମାଣ କରିବୁ, ଆମର ଅତୀତ ତୁଳନାରେ ଆମେ କିଛି କମ୍ ନୋହୁଁ । ଆମେ ସମସ୍ତେ ତାଙ୍କର ଉପଯୁକ୍ତ ଦାୟାଦ; ଆମେ ସମସ୍ତେ ଆଲୋକର ଉପାସକ ।





Digitized by srujanika@gmail.com

# ଭାଷା-ସାହିତ୍ୟ ଓ ସଂସ୍କୃତି

ପୂର୍ବରୁ କୁହାଯାଇଛି ଭୋଗରାଇର ଭାଷା, ସାହିତ୍ୟ ଏବଂ ସଂସ୍କୃତି ଉତ୍କଳୀୟ ଏବଂ ପଡ଼ୋଶୀ ବଂଗୀୟ ଭାଷା-ସାହିତ୍ୟ ଏବଂ ସଂସ୍କୃତି ମିଶ୍ରଣରୂପେ ଚାଲି ଆସୁଥିଲା । ଏଠାର ଭାବଧାରା ଉପରେ ମଧ ବଂଗୀୟ ପ୍ରଭାବ କିଛି କମ୍ ନଥିଲା । କେବଳ ଭୋଗରାଇ ଏବଂ ଉତ୍ତର ବାଲେଶ୍ୱର ନୁହେଁ, ତମାମ ମେଦିନୀପୁର ଜିଲ୍ଲାର ଭାଷା, କଳା ଏବଂ ସଂସ୍କୃତି, କେବଳ ବଂଗୀୟ କିମ୍ବା କେବଳ ଉତ୍କଳୀୟ ହୋଇ ରହିନାହିଁ । ଉଭୟର ମିଶ୍ରଣରେ ଏହା ଗଢ଼ିଉଠିଛି ।

ସଂସ୍କୃତି କେବଳ ଅତୀତ ବା ପରମ୍ପରା ନୁହେଁ । ବୁଢ଼ା ବାପା, ଅଜା, ତେପନ ପୁରୁଷ ଅମଳରୁ ଚଳି ଆସୁଥିବା ଏକ ଚଳଣି, ଏକ ଅଭ୍ୟାସ, ଏକ ମୂଲ୍ୟବୋଧ, ନିରବଛିନ୍ନ ଐତିହ୍ୟର ସଂପ୍ରସାରଣ । ଅନେକଙ୍କଠୁଁ ସାଉଁଟି ଠୁଳ କରିବାର ଏକ ଅଖଣ୍ଡ ଶକ୍ତି ।

ଏହି ସୀମାନ୍ତ ଅଞ୍ଚଳରେ, ବଂଗଳା ଭାଷାର କୃତ୍ତିବାସୀ ରାମାୟଣ, କାଶି ଦାସୀ ମହାଭାରତ, କୃଷ୍ଣ ଦାସ କବିରାଜଙ୍କ ଚୈତନ୍ୟ ଚରିତାମୃତ ଏବଂ ଓଡ଼ିଆ ଭାଷାର ଜଗନ୍ନାଥ ଦାସ ଭାଗବତ, ଯୁଗପତ୍ ଆଦୃତ ଓ ପୂଜିତ ହୋଇଆସିଛି । ଏଠାରେ କଥିତ ଭାଷା କିଞ୍ଚିତ୍ ପରିମାଣରେ ବିକଳ (Distorted) ଆକାର ନେଇଥିଲେ ମଧ ବ୍ୟବହାରିକ ଭାଷା କ୍ଷେତ୍ରରେ ଓଡ଼ିଆ ଭାଷାର ସର୍ବାଧିକ ପ୍ରଭାବ ଦେଖାଯାଏ । ସରକାରୀ ଭାଷା କେବଳ ଉଭୟ ସ୍ଥାନରେ ଅଲଗା । ଦୀର୍ଘକାଳ ଧରି କାଳଜୟୀ ବଂଗୀୟ କବି ଓ ଲେଖକ ମାନଙ୍କର ମୂଲ୍ୟବାନ୍ ଗ୍ରନ୍ଥମାନ ମଧ ଏଠା ଲୋକଙ୍କର ସୁଖପାଠ୍ୟ ହୋଇ ଆସିଛି । ବିଶେଷକରି ବଂଗୀୟ ବୈଷ୍ଣବ କବିମାନଙ୍କର ବଂଗଳା ଭାଷାରେ ରଚିତ ସୁମଧୁର ସଂକୀର୍ତ୍ତନର ପ୍ରଭାବ ଏ ଅଞ୍ଚଳରେ ଲୋକମାନଙ୍କ ପାଖରେ ଏକ ସ୍ୱତନ୍ତ୍ର ଆସନ ଦଖଲ କରିବସିଛି । ଭାଷା ସାହିତ୍ୟ କ୍ଷେତ୍ରରେ ବଂଗୀୟ ସାହିତ୍ୟକୁ ଏମାନେ ଉଚ୍ଚତର ମର୍ଯ୍ୟାଦା ଦେଇ ଆସିଛନ୍ତି । ଏମାନଙ୍କ କଥିତ ଭାଷାରେ ସେପରି କୌଣସି ପାଣ୍ଡିତ୍ୟ ନାହିଁ । ତାହା ଅପ୍ରାକୃତିକ ବା କିଛି କଳ୍ପିତ ମଧ ନୁହେଁ । ଏଠାର ଭାଷା ଶିଳ୍ପ ନୈପୁଣ୍ୟ ନଥିଲେ ମଧ ଯେଉଁ ଭାଷାରେ ସେମାନେ କଥା କହନ୍ତି, ପାଣ୍ଡିତ୍ୟ, ଗବେଷଣା ବିଷୟ ଚିନ୍ତା କରନ୍ତି, ସେହିଟା ସେମାନଙ୍କର ସ୍ୱାଭାବିକ ଭାଷା, ତାହା ଭାବହୀନ ବା ପ୍ରାଣହୀନ ନୁହେଁ ।



Digitized by srujanika@gmail.com

ଏକ ବିକଳ ଆଞ୍ଚଳିକ ଓଡ଼ିଆ ଭାଷାରେ ସେମାନେ କଥା କହନ୍ତି । ଶୁଦ୍ଧ ବଂଗଳା କହିବା, ଲେଖିବା ଓ ପଢ଼ିବାରେ ଏମାନେ ଅନେକେ ପ୍ରଥମରୁ ଅଭ୍ୟସ୍ତ । ଏହାର ଆଉ ଏକ କାରଣ ମଧ୍ୟ ରହିଛି । କଲିକତା ନଗରୀ ସହିତ କର୍ମ ସଂସ୍ଥାନ ଏବଂ ଜୀବିକା ଅର୍ଜନ ସକାଶେ ଏହି ଅଞ୍ଚଳବାସୀଙ୍କର ଦୀର୍ଘଦିନର ବିଶେଷ ସଂପର୍କ ରହିଆସିଛି । ଓଡ଼ିଆରେ ଲେଖାପଢ଼ା କିନ୍ତୁ ଏହି ବିଚ୍ଛିନ୍ନ ଅଞ୍ଚଳରେ ପ୍ରବାସୀ ଓଡ଼ିଆମାନଙ୍କଠାରେ ଦେଖାଯାଏ ନାହିଁ । ବଂଗଳା ଭାଷାକୁ ସହଜ ଓ ଉଚ୍ଚତର ମଣି ଓଡ଼ିଆ ଭାଷା-ସାହିତ୍ୟ ପ୍ରତି ତାଙ୍କର ଅବହେଳା ଦେଖାଯାଏ ।

ପୂର୍ବେ ଏ ଅଞ୍ଚଳର ଯାତ୍ରା, ପାଲା, ନାଟକ ଏବଂ ସଂକୀର୍ତ୍ତନମାନ କେବଳ ବଂଗଳା ଭାଷାକୁ ଆଶ୍ରୟ କରି ଚାଲିଥିଲା । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରସାର କ୍ଷେତ୍ରରେ ଏ ଅଞ୍ଚଳ ପ୍ରତି ନିରବଚ୍ଛିନ୍ନ ଉଦ୍ୟମ ଅତୀତରେ କରାଯାଇପାରି ନାହିଁ । ତାର ପ୍ରମାଣ ସୁସ୍ପଷ୍ଟ । ମଧୁସୂଦନ, ଫକୀରମୋହନ, ରାଧାନାଥ ଓ ଗୋପବନ୍ଧୁ ପ୍ରମୁଖ ଓଡ଼ିଆ ଭାଷା-ସାହିତ୍ୟ ଓ ସଂସ୍କୃତିର ବାହକମାନଙ୍କର ସୁଦୃଷ୍ଟିକୁ ଦୁର୍ଭାଗ୍ୟ କ୍ରମେ ଏ ଅଞ୍ଚଳ ସେତେଟା ଆସିପାରି ନାହିଁ । ବିଶାଳ ଉତ୍କଳ ଏବଂ ବିଚ୍ଛିନ୍ନ ଉତ୍କଳ ଏବଂ ଏସ.ଆର.ସି. ଆନ୍ଦୋଳନ ସମୟରେ ଠାବେଠାବେ ସାମୟିକ ଭାବେ ଯାହା ଯେତିକି ହୋଇପାରିଛି, ସେତିକି ବଂଗୀୟ ପ୍ରଭାବରୁ ଓଡ଼ିଶା ସୀମାନ୍ତକୁ ମୁକ୍ତ ରଖିବା ଦିଗରେ ଯଥେଷ୍ଟ ନୁହଁ । ସ୍ୱାଧୀନତା ପ୍ରାପ୍ତି ପରେ ଅବଶ୍ୟ ଆମେ ଯେ ପ୍ରକୃତ ଓଡ଼ିଆ, ଭାଷା ଆମର ଓଡ଼ିଆ, ସାହିତ୍ୟ ଆମର ଓଡ଼ିଆ ଏବଂ ଆମ ଭାବଧାରା କେବଳ ଓଡ଼ିଆ ଭାଷା ଆଶ୍ରୟୀ, ଏହି ଚିନ୍ତା କ୍ରମେ ଏ ଅଞ୍ଚଳକୁ ବିଶେଷ ଭାବରେ ପ୍ରଭାବିତ କରିଛି । ଏ ଦିଗରେ ସରକାରୀ ଓ ବେସରକାରୀ ଅନୁଷ୍ଠାନ ଓ କର୍ତ୍ତୃପକ୍ଷଙ୍କର ଉଦ୍ୟମ ଯଥେଷ୍ଟ ନହେଲେ ମଧ୍ୟ କିଛି କମ୍ ନୁହେଁ । ଓଡ଼ିଆ ଖବରକାଗଜ, ପତ୍ରପତ୍ରିକାମାନ ଏବେ ବହୁଳ ସଂଖ୍ୟାରେ ଏ ଅଞ୍ଚଳକୁ ବୋହି ଆସୁଛି । ଓଡ଼ିଆ ରଂଗମଞ୍ଚ, ଅପେରା, ପାଲା, ଦାଶକାଠିଆ, ଓଡ଼ିଆ ଭଜନ, ଛାନ୍ଦ, ଚମ୍ପୁ ଓ ଓଡ଼ିଶୀ ସଂଗୀତ, ନୃତ୍ୟ ମୂର୍ଚ୍ଛନାରେ ଅବହେଳିତ ସୀମାନ୍ତ ମୁଖରିତ ହୋଇଉଠିଛି । 'ଫକୀରମୋହନ ସାହିତ୍ୟ ପରିଷଦ' 'ଉତ୍ତର ଓଡ଼ିଶା ସାହିତ୍ୟ ଓ ସଂସ୍କୃତି ପରିଷଦ' ଏବଂ ବିଶେଷକରି 'ଦୀନକୃଷ୍ଣ ସ୍ମୃତି ପରିଷଦ' ଆନୁକୂଲ୍ୟରେ ମଝିରେ ମଝିରେ ଓଡ଼ିଆ ସାହିତ୍ୟ ସମାରୋହ, ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ପ୍ରତି ଅଞ୍ଚଳବାସୀଙ୍କର ଚେତନା ଧୀରେଧୀରେ ଜାଗ୍ରତ କରିବାରେ ଲାଗିଛି । ଏହି ସୀମାନ୍ତର ପୁଅ ଝିଅମାନେ ଓଡ଼ିଆ ଭାଷାରେ ଲେଖନୀ ଧରି କବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, ଗୀତ ଓ ଇତିହାସ ଲେଖିବା ବେଶ୍ ଆରମ୍ଭ କରିଛନ୍ତି ଏବଂ ଦେଶ ବିଦେଶରେ ଖ୍ୟାତି ଅର୍ଜନ ମଧ୍ୟ



Digitized by srujanika@gmail.com

କଲେଣି । ଏମାନଙ୍କ ସଂଖ୍ୟା ମଧ କମ୍ ନୁହେଁ । କ୍ରମେ ଏସବୁର ପ୍ରସାର ଫଲ୍‌ଗୁ ଧାରାପରି ପଡ଼ୋଶୀ ବଂଗ ଇଲାକା ମଧରେ ପ୍ରବେଶ କରି ଦିନକୁ ଦିନ ବେଶ ପ୍ରଭାବ ବିସ୍ତାର କରିବାରେ ଏବଂ ଆଦୃତ ହେବାରେ ଲାଗିଛି, କିନ୍ତୁ ଏତକ ଯଥେଷ୍ଟ ନୁହେଁ । ଏଇ ଐତିହାସିକ ସୀମାନ୍ତର ପ୍ରତ୍ୟେକ ଭାଇ ଭଉଣୀ ଯେତେଦିନ ଯାଏ ନିଜକୁ ଅବଲୀଳା କ୍ରମେ ଓଡ଼ିଆ ବୋଲି ଏକାନ୍ତ ଭାବେ ଭାବି ପାରୁ ନାହାନ୍ତି ଏବଂ ଆପଣାର ଅମୂଲ୍ୟ ଭାଷା, ସାହିତ୍ୟ, ସଂସ୍କୃତି ଓ କଳାକୁ ଏକାନ୍ତ ନିଜର ଭାବି ତାର ପ୍ରସାର ଏବଂ ସ୍ଥିତି ଦିଗରେ ସଚେଷ୍ଟ ହେଉନାହାନ୍ତି, ସେତେଦିନ ଯାଏ ଆମେ ନିଜକୁ ଓଡ଼ିଆ କହି ଏବଂ ଆମେ ଓଡ଼ିଶାର ଅଂଶ ବିଶେଷ ଭାବି କିଛି ଲାଭ ନାହିଁ ।

ଆମର ଜୀବନ ସଂଗୀତ ନିଛକ ଓଡ଼ିଆ ଭାଷାରେ ହିଁ ଗୀତ ହେବା ଏକାନ୍ତ ଆବଶ୍ୟକ । ସେଥିପାଇଁ ଓଡ଼ିଆ ସାହିତ୍ୟ, ନୃତ୍ୟ-ସଂଗୀତ ଓ ନାଟକ ସମାରୋହମାନ ବାରମ୍ବାର ଏ ଅଞ୍ଚଳର ଗ୍ରାମେଗ୍ରାମେ ଅନୁଷ୍ଠିତ ହେବା, ଓଡ଼ିଶାର ଚାରୁକଳା, ସ୍ଥାପତ୍ୟ ଓ ସାହିତ୍ୟର ପ୍ରଦର୍ଶନୀମାନ ଏଠାରେ ପ୍ରଦର୍ଶିତ ହେବା ଏବଂ ପତ୍ରପତ୍ରିକା, ଖବରକାଗଜ ପ୍ରଭୃତି ମାଧ୍ୟମରେ ଅଞ୍ଚଳର ଦାବି ତଥା ଉନ୍ନୟନ ଓ ସାହିତ୍ୟ ପ୍ରଚାରିତ ହେବା ଏକାନ୍ତ ଆବଶ୍ୟକ । କେବଳ ମାତ୍ର ସଦିଚ୍ଛା ନୁହେଁ, ଏଥି ସକାଶେ ରୀତିମତ ସଂଗ୍ରାମର ପ୍ରୟୋଜନ ରହିଛି । ଓଡ଼ିଆ ଜାତିର ସବୁକିଛି ଏ ଅଞ୍ଚଳରେ ଜୀବନ୍ତ ରଖିବାକୁ ହେଲେ ଏସବୁ କ୍ଷେତ୍ରରେ ଓଡ଼ିଶାର କୃତୀ ସନ୍ତାନମାନଙ୍କର ପ୍ରସ୍ତରମୂର୍ତ୍ତିମାନ ମଧ ସମ୍ମାନର ସହ ସ୍ଥାନ ପାଇବା ଉଚିତ । ଆମର ନିଜସ୍ୱ ଓଡ଼ିଆ ସମ୍ବାଦପତ୍ର, ପତ୍ରପତ୍ରିକା ପ୍ରକାଶ ଦିଗରେ ଅବହେଳା ରହିଛି । ସେଦିଗରେ ଉଦ୍ୟମ ହେବା ଏକାନ୍ତ ଜରୁରୀ ହୋଇପଡ଼ିଛି । ଓଡ଼ିଆ ସାହିତ୍ୟ, ନୃତ୍ୟ, ସଂଗୀତ ଓ ନାଟକ ଏକାଡେମୀ, ତଥା ସାହିତ୍ୟ ଏବଂ ସାଂସ୍କୃତିକ ସାରସ୍ୱତ ଅନୁଷ୍ଠାନ ଗୁଡ଼ିକର ଭୂମିକା ଏ ଦିଗରେ ଅଧିକ ବ୍ୟାପକ ଓ ଗୁରୁତ୍ୱପୂର୍ଣ୍ଣ କରି ତୋଳିବା ଆବଶ୍ୟକ ହୋଇଉଠିଛି । ସ୍ଥାନୀୟ ବାତାବରଣ ଏଥି ସକାଶେ ଯେ ଯଥେଷ୍ଟ ଅନୁକୂଳ ଏଥିରେ ସନ୍ଦେହ ନାହିଁ ।

❑❑❑



Digitized by srujanika@gmail.com

# ସାରସ୍ୱତ ପ୍ରତିଭା

ବଂଗ ଓଡ଼ିଆ ସୀମାନ୍ତ ଗ୍ରାମର ଲୋକ ମୁଁ । ୧୯୩୬ ପୂର୍ବରୁ ମୋ ଗ୍ରାମ ପାଖର ବହୁତ ଓଡ଼ିଆ ଗାଁକୁ ବଂଗଦେଶ ଗ୍ରାସିଗଲା । ମୁଁ ମଧ ଓଡ଼ିଆ ସାହିତ୍ୟ ସଂସ୍କୃତି ସହ ବଂଗଳା ସାହିତ୍ୟକୁ ସାଂସ୍କୃତିକ ଓ ଭାଷା, ଆଚାର ବ୍ୟବହାର ବାଲ୍ୟାବସ୍ଥାରୁ ଜାଣି ଆସିଲି । ୧୯୪୨ରୁ ୧୯୪୬ ପର୍ଯ୍ୟନ୍ତ ବିଭିନ୍ନ ଜେଲ୍‌ରେ ହଜାର ହଜାର ଓଡ଼ିଆ ସଂଗ୍ରାମୀଙ୍କ ସଙ୍ଗଲାଭ କରିଥିଲି । ଦୀନକୃଷ୍ଣ, କାନ୍ତକବି, ଗୋପାଳକୃଷ୍ଣ, ରାଧାନାଥ, ଉପେନ୍ଦ୍ରଭଞ୍ଜଙ୍କ ରଚନା ପଢ଼ିଥିଲି । ସେମାନଙ୍କର ସଂଗୀତ, ଚମ୍ପୁ, ଓଡ଼ିଶୀ, ଛାନ୍ଦ ସ୍ୱରରେ ବୋଲି ଶିଖିଲି ଏବଂ କ୍ରମେ ଜଣେ ସଂପୂର୍ଣ୍ଣ ଓଡ଼ିଆ ପାଲଟିଗଲି । ଓଡ଼ିଆ ଜାତିର ବଡ଼ ଦେବତା ଜଗନ୍ନାଥଙ୍କୁ ଯାଇ ଜେଲ୍‌ରୁ ଫେରି ସାକ୍ଷାତ କରି ପ୍ରଣାମ କଲି । ଶ୍ରୀକ୍ଷେତ୍ରରେ ଓଡ଼ିଆ, ସାହିତ୍ୟ, ସଂସ୍କୃତି ଓ ଚାଲିଚଳଣି ଉପରେ ଦରଦ ଜମିଲା । ତା'ପରେ ଉତ୍ତର ଦିଗ ବଂଗଳାକୁ ନଅନାଇ ଦକ୍ଷିଣ ଦିଗର ମାଟି ମା' ଆଡ଼କୁ ଅନାଇ ବସିଲି ଓ ମାତିଗଲି । ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଲା ପରେ ପ୍ରଳୟଙ୍କରୀ ମହାବାତ୍ୟା, ବନ୍ୟା, ଦୁର୍ଭିକ୍ଷର କରାଳ କାଣ୍ଡ, ଇରମ ଗୁଳିକାଣ୍ଡ ଓ ଜେଲ୍‌ଖାନାର ଅତ୍ୟାଚାର କଷଣ ମୁଁ ଅଂଗରେ ନିଭାଇଥିଲି । ମୋର ତରୁଣ ପ୍ରାଣରେ ତୀବ୍ର ପ୍ରତିକ୍ରିୟା ଜାଗି ଉଠିଲା । ଉତ୍ତର ବାଲେଶ୍ୱରର କରାଳ ଦୁର୍ଭିକ୍ଷର କରୁଣ ଚିତ୍ର ସ୍ୱଚକ୍ଷୁରେ ଦେଖି ମୋର ଉତ୍ତପ୍ତ ଆତ୍ମାର ଆର୍ତ୍ତନାଦ ଗୀତ ଆକାରରେ ବାହାରି ଆସିଲା । ଏହି ଦୁର୍ଭିକ୍ଷ ଗୀତ ମୁଁ ଗୋପନରେ କଲିକତାରୁ ଛପାଇଆଣି ବାହାରେ ଥିବା ସଂଗ୍ରାମୀମାନଙ୍କୁ ବାଣ୍ଟିଦେଲି ଏବଂ ନିଜେ ଗାଇ ବୁଲିଲି । ସେତେବେଳ ପାରଳା ରାଜାଙ୍କ ମିଳିତ ମନ୍ତ୍ରୀମଣ୍ଡଳ ଚାଲିଥାଏ । ଓଡ଼ିଶାର ସବୁ ଧାନ ଚାଉଳ ବଂଗଦେଶକୁ ବୋହି ନିଆଗଲା ଅଧିକ ଅର୍ଥ ଲାଭ ଆଶାରେ । ଏଣେ ସମଗ୍ର ଉତ୍ତର ବାଲେଶ୍ୱର ଅଞ୍ଚଳ ହା ଅନ୍ନ ଚିତ୍କାର କରୁଥାଏ । ଏହି ମିଳିତ ସରକାରଙ୍କର ବୈମାତୃକ ବ୍ୟବହାରରେ ବ୍ୟଥିତ ହୋଇ ମୋର ଦୁର୍ଭିକ୍ଷ ଗୀତରେ ମୁଁ ମନ୍ତ୍ରୀମଣ୍ଡଳର ନେତା ପଣ୍ଡିତ ଗୋଦାବରୀଶ ମିଶ୍ର ଓ ନୀଳକଣ୍ଠ ଦାଶଙ୍କୁ ତୀବ୍ର ସମାଲୋଚନା କରିଥିଲି । ଇରମ ଗୁଳିକାଣ୍ଡରେ ଡି.ଏସ୍.ପି. କୁଞ୍ଜବିହାରୀ ମହାନ୍ତିଙ୍କ ଦ୍ୱାରା ନିଷ୍ଠୁର ଶୀତଳ ଗଣନର ହତ୍ୟା ବିଷୟ ଅତି କରୁଣ ଭାବରେ ସଂଗୀତରେ ପ୍ରକାଶ କରି ଲେଖିଥିଲି -



Digitized by srujanika@gmail.com

କୁଣ୍ଡିଆ କ'ଣ ନକଲା / ଶତ ଯୁବତୀର ସିନ୍ଥିର ସିନ୍ଦୂର ନିମିଷେ ଲିଭାଇ ଦେଲା ଇତ୍ୟାଦି । ଜେଲ୍‌ଖାନାରେ ସଂଗ୍ରାମୀମାନଙ୍କ ଉପରେ ଅତ୍ୟାଚାର କଷଣ କଥା ମୋ କଲମ ମୁନରେ ଡେଇଁ ଉଠିଥିଲା । ଭାରି ମଜା ଏ ଜେଲ୍‌ଖାନା ଛତିଶ ଫାଟକ କାରଖାନା । ସ୍ୱାଧୀନତା ପ୍ରାପ୍ତି ପରେ ୧୯୪୮ ମସିହାରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଉତ୍କଳକେଶରୀ ମହତାବଙ୍କ ବାଲିଆପାଳ ଗସ୍ତବେଳେ ତାଙ୍କର ସ୍ୱାଗତ ବନ୍ଦନା ସଂଗୀତ ଦରଦ ଭରା କଣ୍ଠରେ ଗାଇ ଉଠିଥିଲି - 'ଜୟ ମହତାବ ଓଡ଼ିଆ ଗୌରବ ଜୟ ଉତ୍କଳକେଶରୀ' ଇତ୍ୟାଦି । ଏହି ଲିଖିତ ସଂଗୀତ ଗାନ ଇଂରେଜ ସରକାର ଓ ସ୍ୱାଧୀନ ଭାରତ ସରକାରଙ୍କର ରେକର୍ଡ଼ଭୁକ୍ତ ହୋଇଥିଲା । ବାଲେଶ୍ୱରର ସ୍ୱାଧୀନୋତ୍ତର ସଂଗ୍ରାମୀମାନଙ୍କର କାହାଣୀ ପୁସ୍ତକ ରୂପେ ପ୍ରକାଶ କରିବାକୁ ସିଦ୍ଧାନ୍ତ ନେଇଥିଲି । ତହିଁପୂର୍ବରୁ ମୋ ଜାଣିବାରେ ଭୋଗରାଇର ବାବା ଚନ୍ଦନେଶ୍ୱର ମହାଦେବଙ୍କ ଆବିର୍ଭାବ ଓ ବନ୍ଦନାମାନ ସ୍ୱର୍ଗତ ଜଗବନ୍ଧୁ ସିଂ ଓ ନିତ୍ୟାନନ୍ଦ ପାଣିଙ୍କ ଦ୍ୱାରା ପ୍ରକାଶ ପାଇଥିଲା । ପଲ୍ଲୀକବି ୰ଚନ୍ଦ୍ରମୋହନ ଧଳ ଓ ବିଜୟ ଦାସ ଆଦିଙ୍କ କୃତ ଚଟିବହିମାନ ପ୍ରକାଶ ପାଇଥାଏ । ଏଣୁ ଉତ୍ତର ବାଲେଶ୍ୱର ମାଟିର ଆଦ୍ୟ କବି, ଲେଖକ ବା ସାହିତ୍ୟକାର କିଏ ଜାଣିବା ସହଜ ନୁହେଁ ।

ବିଶିଷ୍ଟ ଶିକ୍ଷାବିତ୍ କୁବେର ଚନ୍ଦ୍ର ପାତ୍ର, ରାଧାମାଧବ ଗିରି, ହରେକୃଷ୍ଣ ଦେ, ବାଲିଆପାଳଙ୍କ କଲମରୁ ସେତେବେଳେ କବିତା, ନାଟକ, ଗଳ୍ପ ଆକାରରେ ସାହିତ୍ୟ ଝରୁଥିଲା । ବସ୍ତାର ବିକର୍ତ୍ତନ ମହାପାତ୍ର ଜଣେ କବି ଓ ପାଲାଗାୟକ ଭାବେ ବିଶେଷ ଖ୍ୟାତି ଲାଭ କରିଥିଲେ । ଅଞ୍ଚଳରେ ବୁଲିବୁଲି ସେ ପାଲା ଗାଉଥିଲେ । ରାଇବଣିଆର ଭଗବାନ ପାତ୍ର, ଜଳେଶ୍ୱରର ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ବନମାଳି ସେନାପତି, ବ୍ରଜେନ୍ଦ୍ରନାଥ ଦତ୍ତ ଆଦିଙ୍କର ଲେଖା ସାହିତ୍ୟ ସୃଷ୍ଟି ଜନମାନସକୁ ମଣ୍ଡନ କରୁଥିଲା । ଭୋଗରାଇର ଅକାଳ ମୃତ୍ୟୁବରଣ କରିଥିବା କହ୍ନେଇ ଦାସଙ୍କର ଦରଦଭରା ମର୍ମଭେଦୀ 'କହ୍ନେଇ କଥାଘର' ଗଳ୍ପମାଳା ପଢ଼ି ଲୋକେ ସ୍ତମ୍ଭିତ ହୋଇଥିଲେ । ଚାରୁକଳା ଶିଳ୍ପୀ ଭାବରେ ସମଗ୍ର ଭାରତରେ ଗୌରାଙ୍ଗ ସୋମ୍ ଓ ବୀଣା ସୋମ୍ ଚହଳ ସୃଷ୍ଟି କରିଥିଲେ । ତାହା ପଛକୁ ସିନେ ଚିତ୍ରଶିଳ୍ପୀ ଅସୀମ ବସୁ ଓ ଚିତ୍ରକର ଅନନ୍ତ ପଣ୍ଡା ରାଜ୍ୟରେ ପ୍ରଭୂତ ଖ୍ୟାତିର ଅଧିକାରୀ ହୋଇ ପାରିଛନ୍ତି । ସର୍ବହରାର କବି ଅସୀମ ବସୁ, ଔପନ୍ୟାସିକ ଭୂପେନ ମହାପାତ୍ରଙ୍କ ଖ୍ୟାତି ରାଜ୍ୟସାରା କିଛି କମ୍ ନୁହେଁ । ପ୍ରାବନ୍ଧିକ ଭାବେ ଶ୍ରୀହରି ମହାନ୍ତି ଓ ଡ. ରମାକାନ୍ତ ବେହେରାଙ୍କ ସୃଷ୍ଟିମାନ ଦିଗନ୍ତ ବିସ୍ତାରିତ ହେଲା । ବିଦଗ୍ଧ କବି ମୁରାରୀମୋହନ ସାହୁଙ୍କ କବିତାମାଳା ଓ ଗାଳ୍ପିକ କଥା ଔପନ୍ୟାସିକ ମଧୁସୂଦନ ଦାସଙ୍କ ରମ୍ୟରଚନା ଜନଗଣମନ ହରଣ କରିଛି । ତହିଁ ପୂର୍ବରୁ ରଜନୀକାନ୍ତ କର, ରଜନୀକାନ୍ତ



Digitized by srujanika@gmail.com

ଦେ, ପୂର୍ଣ୍ଣଚନ୍ଦ୍ର ଦତ୍ତ, କେଦାରନାଥ ଗୋସ୍ୱାମୀ ଓ ସର୍ବେଶ୍ୱର ପଣ୍ଡାଙ୍କ ରଚିତ ନାଟକମାନ ଉପାନ୍ତ ଖଣ୍ଡରେ ଅଭିନୀତ ହେବାକୁ ଲାଗିଲା । ପରେପରେ କୁମାର ଚକ୍ରବର୍ତ୍ତୀ, ବିଭୂତି ଭୂଷଣ ମଲ୍ଲିକ, ସୁକୁମାର ଦାସ, କାର୍ତ୍ତିକେଶ୍ୱର ପାତ୍ର, ନିଶିକାନ୍ତ ମହାନ୍ତି, ଶ୍ରୀକୁମାର, କିଶୋରୀ କିଙ୍କରୀ ଦାସ, ବନବିହାରୀ ଦାସ, ଗୌତମବୁଦ୍ଧ ଦାସ ଓ ସତ୍ୟଶିବ ଦାସ ପ୍ରମୁଖ ବହୁ ପ୍ରତିଭାଧର ସାହିତ୍ୟିକ, ନାଟ୍ୟକାର, ସ୍ତମ୍ଭକାର, ଗାଳ୍ପିକ ଓ କବି ଭାବେ ଏ ଅଞ୍ଚଳରେ ଜନ୍ମଗ୍ରହଣ କରି ଯଥେଷ୍ଟ ସୁନାମର ଅଧିକାରୀ ହୋଇପାରିଛନ୍ତି । ସୁସାହିତ୍ୟିକ ଡ. ଶ୍ରୀକାନ୍ତ ପାତ୍ର, ବିପିନବିହାରୀ ବିଶ୍ୱାଳ, ପୂର୍ଣ୍ଣ ସେନାପତି ଜଳେଶ୍ୱରର ମଉଡ଼ମଣି ରୂପେ ନିଜନିଜକୁ ପରିଚିତ କରିପାରିଛନ୍ତି । ପ୍ରୋକ୍ତ ସାହିତ୍ୟିକମାନଙ୍କର ଗଳ୍ପ, କବିତା, ନାଟକର ପସରା ଚାରିଆଡ଼େ ମେଲି ଯାଇଥିଲା । ସୁସାହିତ୍ୟକ ଭାବେ ଇନ୍ଦୁଭୂଷଣ କର ଓ ଡ.ହରିଶ୍ଚନ୍ଦ୍ର ଦାସଙ୍କ ସାହିତ୍ୟକୃତି ଦେଶ ବିଦେଶରେ ଆଦୃତ ହୋଇପାରିଛି ।

ସମୟଥିଲା ଯେତେବେଳେ ବାଲେଶ୍ୱର ସଂସ୍କୃତି ଓ ସାହିତ୍ୟ ଅତି ତୁଙ୍ଗରେ ପହଞ୍ଚି ପାରିଥିଲା । ଭକ୍ତକବି ଦୀନକୃଷ୍ଣ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଜାତୀୟ କବି ବାଞ୍ଛାନିଧି ମହାନ୍ତି, ଫକୀରମୋହନ, ରାଧାନାଥ, କୁନ୍ତଳା କୁମାରୀଙ୍କ କବିତା, ସଂଗୀତ, ଗଳ୍ପ, ଉପନ୍ୟାସ ଆଦି ପ୍ରକାଶ ପାଇ ସାରା ରାଜ୍ୟକୁ ଦୋହଲାଇ ଦେବା ସଂଗେସଂଗେ ଆମର ସାରସ୍ୱତ ଭଣ୍ଡାରକୁ ମଣ୍ଡନ କରିଥିଲା । ପରେପରେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଦୁଇ ଭାଇ ପ୍ରଫେସର ମନ୍ମଥ ନାଥ ଦାସ ଓ ମନୋଜ ଦାସ ଏବଂ ହରିଶ୍ଚନ୍ଦ୍ର ବରାଳଙ୍କ ବଳିଷ୍ଠ ଗଳ୍ପ, ଉପନ୍ୟାସ, ଆଦି ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥିଲା ।

ରାଜ୍ୟ ଓ ରାଷ୍ଟ୍ରୀୟ ପ୍ରଶାସନିକ କ୍ଷେତ୍ରରେ ବିଂଶ ଶତାବ୍ଦୀରେ ରାୟ ବାହାଦୁର, ମନ୍ମଥ ବସୁ, କାଳିକିଙ୍କର ସାମଲ, ରାମ ନାରାୟଣ ମହାନ୍ତି, ପ୍ରଶାନ୍ତ କର, ମନ୍ମଥ ନାଥ ଦାସ, କାର୍ତ୍ତିକ ମହାପାତ୍ର, ମହେଶ୍ୱର ବାଗ, କମଳା ଦାସ, ଚିନ୍ତାମଣି ଜେନା, କୈଳାସ ଚନ୍ଦ୍ର ମହାନ୍ତି, ମୁକୁନ୍ଦ ଦାସ, ନନ୍ଦକିଶୋର ଦାସ, ହରିଶ ଚନ୍ଦ୍ର ବରାଳ, ଗୋବିନ୍ଦ ସେନାପତି, ସୋବେଶ ଚନ୍ଦ୍ର ରାୟ, ସମରେନ୍ଦ୍ର କୁଣ୍ଡୁ, ସୁଦର୍ଶନ ନନ୍ଦ ଆଦି ପ୍ରତିଭାର ବ୍ୟକ୍ତିମାନେ ଦିଲ୍ଲୀ ତଥା ରାଜ୍ୟରେ ସୁଉଚ୍ଚ ପଦବୀମାନଙ୍କରେ ଅଧିଷ୍ଠିତ ରହି ବାଲେଶ୍ୱରର ସୁନାମ ବଢ଼ାଇଛନ୍ତି । ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର ଓଡ଼ିଶା କଂଗ୍ରେସର ନେତୃତ୍ୱ ବେଶ୍ କିଛିଦିନ ନେଇ ବିଶ୍ୱ ଦରବାରରେ ରାଷ୍ଟ୍ରୀୟ କଂଗ୍ରେସର ଜଣେ ସୁଦକ୍ଷ କୂଟନୀତିଜ୍ଞ ତଥା ରାଜନୀତିଜ୍ଞ ଭାବରେ କାଳ କଟାଇବାରେ ସକ୍ଷମ ହୋଇଥିଲେ ।





Digitized by srujanika@gmail.com

# ସାଂସ୍କୃତିକ ଆନ୍ଦୋଳନ

ଓଡ଼ିଶାର ମହାନ୍ ନେତା ଡ.ହରେକୃଷ୍ଣ ମହତାବ 'ପ୍ରଜାତନ୍ତ୍ର ପ୍ରେସ' ସ୍ଥାପନ କଲାପରେ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ବ୍ୟାପକ ଆନ୍ଦୋଳନ ଆରମ୍ଭ କଲେ । ରାଜ୍ୟର ସମସ୍ତ ଅବଜ୍ଞାତ ଯୁବ ସାହିତ୍ୟିକ, କଳାକାର, ସଂଗୀତଜ୍ଞ ଓ ନୃତ୍ୟଶିଳ୍ପୀମାନଙ୍କୁ ଏକଜୁଟ ହେବାକୁ ଆହ୍ୱାନ ଦେଲେ । ରାଜ୍ୟସାରା ବୁଲିବୁଲି ସାହିତ୍ୟ ସାଂସ୍କୃତିକ ଅନୁଷ୍ଠାନମାନ ଗଢ଼ିବା ସହ ସେଗୁଡ଼ିକୁ ପ୍ରୋତ୍ସାହନ ଓ ସାହାଯ୍ୟ ଯୋଗାଇଲେ । ପ୍ରଜାତନ୍ତ୍ର ପରିସରରେ ବିଷୁବ ମିଳନ ଆସର ଆରମ୍ଭ କଲେ । ରାଜ୍ୟର ସମସ୍ତ ସାଂସ୍କୃତିକ ଅନୁଷ୍ଠାନର ସଦସ୍ୟ ତଥା ସାହିତ୍ୟିକମାନେ ଏହି ଅବସରରେ ପ୍ରତିବର୍ଷ ଏକତ୍ରିତ ହେବାକୁ ଲାଗିଲେ । ସାରା ରାଜ୍ୟରେ ସଂସ୍କୃତିର ପୁନଃ ଜାଗରଣ ଓ ସାହିତ୍ୟ କ୍ଷେତ୍ରରେ ପ୍ରବଳ ଉତ୍ସାହ ଦେଖାଦେଲା । ଏତିକିବେଳେ ମହତାବଙ୍କ ପ୍ରରୋଚନାରେ ବାଲେଶ୍ୱରରେ ଫକୀରମୋହନ ସାହିତ୍ୟ ପରିଷଦ ଗଢ଼ାଗଲା । ଜଳେଶ୍ୱରରେ ଦୀନକୃଷ୍ଣ ସ୍ମୃତି ପରିଷଦ ଗଢ଼ି ଉଠିଲା । ଜିଲ୍ଲାର ସମସ୍ତ କବି ସାହିତ୍ୟିକ ବନ୍ଧୁମାନେ ଏହି ଦୁଇ ଅନୁଷ୍ଠାନକୁ ଘେରି ନିଜ ନିଜର ସାହିତ୍ୟ କୃତିମାନ ପ୍ରକାଶ କରିବାକୁ ଲାଗିଲେ । ପୁସ୍ତକ ପ୍ରକାଶନରେ ମଧ୍ୟ କିଛିକିଛି ସାହାଯ୍ୟ ବାହାରୁ ଆସିଲା । ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ପ୍ରବଳ ଉତ୍ସାହ ଜିଲ୍ଲା ତମାମ ଦେଖାଦେଲା । ବିଭିନ୍ନ ସ୍ଥାନରେ ଛୋଟବଡ଼ ସାହିତ୍ୟ ଅନୁଷ୍ଠାନମାନ ଗଢ଼ି ଉଠିଲା । ଭୋଗରାଇରେ ଡକ୍ଟର ହରେକୃଷ୍ଣ ମହତାବ ସାହିତ୍ୟ ଏକାଡେମୀ କତିପୟ କବି, ସାହିତ୍ୟିକମାନଙ୍କ ଦ୍ୱାରା ଆତ୍ମପ୍ରକାଶ କଲା । ତହିଁପୂର୍ବରୁ 'ଉତ୍ତର ଓଡ଼ିଶା ସାହିତ୍ୟ ପରିଷଦ' ତରଫରୁ ବଂଗ ଓଡ଼ିଶା ସୀମାନ୍ତ ସାହାବାଜିପୁର ଓ ବାଡ଼ସରିସାଠାରେ ସାଂସ୍କୃତିକ ଅନୁଷ୍ଠାନମାନ ପ୍ରଦର୍ଶିତ ହୋଇଥିଲା । ଏଥିରେ ରାଜ୍ୟସ୍ତରୀୟ ସାହିତ୍ୟିକ ଓ କଳାକାରମାନେ ଯୋଗ ଦେଇଥିଲେ । ମହତାବଙ୍କ ପରେ ଭର୍ତ୍ତୃହରି ମହତାବ ପ୍ରଜାତନ୍ତ୍ର ଅନୁଷ୍ଠାନ ତରଫରୁ କିଛି କିଛି ସାହାଯ୍ୟ ସହାନୁଭୂତି କିଛି ବର୍ଷ ଦେଖାଇଛନ୍ତି । ବାଲିଆପାଳର ସୁନାରୁଇଠାରେ ମହତାବଙ୍କ ପ୍ରେରଣାରେ ଏକ ସାଂସ୍କୃତିକ ଅନୁଷ୍ଠାନ ଗଢ଼ାଯାଇଛି । ଭୋଗରାଇର ଶ୍ରଦ୍ଧାପୁର ଠାରେ ବେଳାଭୂମି ସାଂସ୍କୃତିକ ପରିଷଦ ଓ ପାଳସିଆ ଠାରେ 'ଶାମୁକା ସାହିତ୍ୟ ସଂସଦ' ଓ ଜୟରାମପୁରଠାରେ ଅନ୍ୟ ଏକ ସାହିତ୍ୟ ଅନୁଷ୍ଠାନ ଗଢ଼ି ଉଠିଛି । ପ୍ରତିବର୍ଷ ଏହି



Digitized by srujanika@gmail.com

ଅନୁଷ୍ଠାନଗୁଡ଼ିକ ସାହିତ୍ୟ ଓ ସାରସ୍ୱତ ଉତ୍ସବମାନ ଆୟୋଜନ କରି କବି ଓ ସାହିତ୍ୟିକମାନଙ୍କୁ ସମ୍ବର୍ଦ୍ଧନା ଦେବା ସଂଗେସଂଗେ କବିତାପାଠ ଓ ସାହିତ୍ୟ ଚର୍ଚ୍ଚା କରିଆସିଛନ୍ତି । ଦୀନକୃଷ୍ଣ ସ୍ମୃତି ପରିଷଦ, ମହତାବ ସାହିତ୍ୟ ଏକାଡେମୀ ଓ ଫକୀରମୋହନ ସାହିତ୍ୟ ପରିଷଦ ଏମାନଙ୍କ ଜନ୍ମତିଥିରେ ଏଭଳି ଉତ୍ସାହବ୍ୟଞ୍ଜକ ସାହିତ୍ୟ, କବିତା ପାଠ ଓ ସମ୍ବର୍ଦ୍ଧନା ଉତ୍ସବମାନ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଆସିଛନ୍ତି ।

ଭୋଗରାଇ ଗ୍ରାମରେ ଜମିଦାର ଅମଳରୁ ଏକ ସାଂସ୍କୃତିକ ରଂଗମଞ୍ଚ ଗୃହଦେବତା ଶ୍ୟାମସୁନ୍ଦରଙ୍କ ନାମରେ ଗଢ଼ାଯାଇଥିଲା । ସେଠାରେ ରାସ ଉତ୍ସବବେଳେ ପ୍ରତିବର୍ଷ ସ୍ଥାନୀୟ ଶିଳ୍ପୀମାନେ ମଞ୍ଚାଭିନୟ କରି ଆସୁଛନ୍ତି । ଏହି ରଂଗମଂଚ ଏବେ ସରକାରୀ ଅନୁଦାନପ୍ରାପ୍ତ ହୋଇ ଏକ ସ୍ଥାୟୀ ଗୃହରେ ପରିଚାଳିତ ହେଉଛି ଏବଂ ସାହିତ୍ୟିକମାନଙ୍କୁ ପ୍ରୋତ୍ସାହନ ଯୋଗାଇ ଆସୁଅଛି ।

ଭୋଗରାଇର ପ୍ରାଜ୍ଞ ବ୍ୟକ୍ତିମାନେ ମିଶି 'ପ୍ରଜ୍ଞା' ନାମରେ ଏକ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିଛନ୍ତି ବେଶ୍ କିଛିଦିନ ହେଲା । ଏଠାରେ ସାହିତ୍ୟ ଚର୍ଚ୍ଚାଠାରୁ ଆରମ୍ଭ କରି ସମ୍ବର୍ଦ୍ଧନା ଓ କବିତା ଆସର ମଧ ପ୍ରତିବର୍ଷ ଘଟିଥାଏ ।

ଭୋଗରାଇର ନାରାୟଣପୁରଠାରେ ବିଦଗ୍ଧ କବି ମୁରାରୀମୋହନ ସାହୁଙ୍କ ଉଦ୍ୟମରେ ସ୍ୱାମୀ ସ୍ୱରୂପାନନ୍ଦ ସ୍ମୃତି ପରିଷଦ ଗଠିତ ହୋଇଛି । ସେଠାରେ ସ୍ୱରୂପାନନ୍ଦଙ୍କର ସ୍ମୃତିଚାରଣ ସହ ପ୍ରତିବର୍ଷ ତାଙ୍କର ଜନ୍ମତିଥି ସାହିତ୍ୟାନୁଷ୍ଠାନ ମଧ ଆୟୋଜିତ ହୋଇଆସୁଛି ।

ପୂର୍ବରୁ ସ୍ୱର୍ଗତଃ କୃପାସିନ୍ଧୁ ମିଶ୍ର ଓ ପୀତାମ୍ବର ପୁଷ୍ଟି ଆଦି ଦେଶୀୟ ଭାଷାରେ ନାଟକ ଯାତ୍ରା ପାଲା ଲେଖି ଗାଁ ଗଣ୍ଡାରେ ଗାନ କରୁଥିଲେ । ପରେ ସ୍ୱର୍ଗତ ରଜନୀକାନ୍ତ କର, ରଜନୀକାନ୍ତ ଦେ, ଭାଗବତ ଦାସ, କେଦାର ଗୋସ୍ୱାମୀ, ଆଦ୍ୟନାଥ ପଣ୍ଡା, ଦୁଲାଲ୍ ପଣ୍ଡା ଓ ଗଂଗାଧର ପ୍ରଧାନ, ପୂର୍ଣ୍ଣଚନ୍ଦ୍ର ଦତ୍ତ ଓ ଧନଞ୍ଜୟ ପାତ୍ର ଆଦି ରଂଗମଂଚ ଓ ଖୋଲାମଂଚ ପାଇଁ ନାଟକ ଆଦି ଲେଖି ପ୍ରଚାର କଲେ ଭୋଗରାଇ ଅଞ୍ଚଳରେ । ପ୍ରଖ୍ୟାତ ଲେଖକ ମନୋଜ ଦାସଙ୍କ ପରେ କବି ମୁରାରୀ ସାହୁ, ମଧୁସୂଦନ ଦାସ, ରମାକାନ୍ତ ବେହେରା, ଶ୍ରୀହରି ମହାନ୍ତି, କାର୍ତ୍ତିକେଶ୍ୱର ପାତ୍ର, ସର୍ବେଶ୍ୱର ପଣ୍ଡା, ସୁକୁମାର ଦାସ କଲମ ଧରି ନାଟକ, ଉପନ୍ୟାସ, ଗଳ୍ପ, କବିତା ଓ ପ୍ରବନ୍ଧମାନ ରଚନା କରି ଗଗନ ପବନ ମୁଖରିତ କରିବାକୁ ଲାଗିଲେ ଭୋଗରାଇ ମାଟିରେ । ଜଳେଶ୍ୱରରେ ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ବନମାଳି ସେନାପତି, ବିଭୂତି ଭୂଷଣ ମଲ୍ଲିକ୍, ବ୍ରଜେନ୍ଦ୍ର ନାଥ ଦତ୍ତ, ନର ନାରାୟଣ ଷଡ଼ଙ୍ଗୀ



Digitized by srujanika@gmail.com

ବାଲିଆପାଳର କୁବେର ପାତ୍ର, ହରେକୃଷ୍ଣ ଦେ, କୁମାର ଚକ୍ରବର୍ତ୍ତୀ ପ୍ରମୁଖ କଲମ ଧରି ମୁଖର ହୋଇ ଉଠିଲେ । ଉତ୍ତର ବାଲେଶ୍ୱରର ସବୁଆଡ଼େ ଆଖପାଖର ସାହିତ୍ୟିକମାନଙ୍କୁ ନେଇ ସାହିତ୍ୟ ଓ କବିତା ଆସରମାନ ଅନୁଷ୍ଠିତ ହେବାକୁ ଲାଗିଲା । କବିତା, ଛୋଟଛୋଟ ଗଳ୍ପ, ନାଟକ, ପ୍ରବନ୍ଧ, ପଦ୍ୟ ଓ ସଂଗୀତ ରଚନାରେ ଯୁବକ ଓ ମହିଳାମାନଙ୍କ ମଧ୍ୟରେ କ୍ରମେ ପ୍ରବଳ ଉତ୍ସାହ ସୃଷ୍ଟିହେଲା । ମଝିରେ ମଝିରେ ରାଜ୍ୟର ଖ୍ୟାତନାମା ସାହିତ୍ୟିକମାନେ ମନୋଜବାବୁ, ବ୍ରଜନାଥ ରଥ, ପ୍ରସନ୍ନ ପାଟଶାଣୀ ସମେତ ଏହି ସାହିତ୍ୟାନୁଷ୍ଠାନମାନଙ୍କରେ ଯୋଗଦେଇ ଯୁବ ସ୍ରଷ୍ଟାମାନଙ୍କୁ ଉତ୍ସାହିତ କଲେ । ଏହି ଆନ୍ଦୋଳନର ଫଳଶ୍ରୁତି ସ୍ୱରୂପ ଉତ୍ତର ବାଲେଶ୍ୱର ମାଟିରେ ସାହିତ୍ୟ ସଂସ୍କୃତିର ପ୍ରସାର ପ୍ରବଳ ମାତ୍ରାରେ ଘଟିଛି ଏଥିରେ ସନ୍ଦେହ ନାହିଁ ।

ସୁଖର କଥା ନିଜ ଆଡୁ ଚଳଚ୍ଚିତ୍ର ନିର୍ମାଣ କ୍ଷେତ୍ରରେ କେତେକ ଉତ୍ସାହୀ ବନ୍ଧୁଙ୍କର ଆଗ୍ରହ ପ୍ରକାଶ ପାଇଲା । କ୍ରମେ ଶ୍ରୀ ହିମାଂଶୁ ଦାସ, କାର୍ତ୍ତିକ ପାତ୍ର, ସୁମନ୍ତ ଦେ, ଗୋପାଳ ସାହୁ ଆଦି ଲେଖକ, ପ୍ରଯୋଜକ ଓ ନିର୍ଦ୍ଦେଶକ ପାଲଟିଗଲେ । ଏଥିପାଇଁ ଏମାନେ ବହୁ ଶ୍ରମ ଓ ଅର୍ଥ ବିନିଯୋଗ କରିଥାନ୍ତି ମଧ୍ୟ । ହିମାଂଶୁ ଦାସ ଏ ଦିଗରେ ବିଶେଷ ଯତ୍ନବାନ ଥିଲେ । ସେ ଅନେକ ଚଳଚ୍ଚିତ୍ରରେ ଅଭିନୟ ଓ ନିର୍ଦ୍ଦେଶନା ଦେଇ ସୁନାମର ଅଧିକାରୀ ହୋଇପାରିଥିଲେ ।

କିଛିବର୍ଷ ହେଲା ଜଳେଶ୍ୱରର ଶିଖରପୁରର ଚକହରିଠାରେ ଗାନ୍ଧି ସ୍ମାରକୀ ମନ୍ଦିର ଗଠନ କରାଯାଇଛି । ଉକ୍ତ ଗ୍ରାମର ଶ୍ରୀ ନକୁଳ ଓଝା ଆଦି କିଛି ଗାନ୍ଧିବାଦୀ ଲୋକ ପ୍ରତିବର୍ଷ ସହିଦ୍ ଦିବସ, ଗାନ୍ଧି ଜୟନ୍ତୀ ପାଳନ ପ୍ରବଳ ଉତ୍ସାହର ସହ କରି ଚାଲିଛନ୍ତି ।

ଏହି ଉତ୍ସବ ମାନଙ୍କରେ ସାହିତ୍ୟ କବିତାପାଠ ସଭା ଓ ସାହିତ୍ୟିକମାନଙ୍କୁ ସମ୍ବର୍ଦ୍ଧନା ମାନ ଦିଆଯାଉଛି । ନକୁଳ ଓଝା ଜଣେ ଅତି ସାଧାରଣ ଲୋକ । ହଠାତ୍ ତାଙ୍କ ହୃଦୟରେ ଗାନ୍ଧିଭାବର ଉଦ୍‌ବେଳନ ଘଟି ଆଖପାଖ ସମସ୍ତଙ୍କୁ ଉଚ୍ଚାଟ କରି ପକାଇଛି । କାଠରେ ଏକ ଗାନ୍ଧିମୂର୍ତ୍ତି ଗଠନ କରି ତାକୁ ମୁଣ୍ଡରେ ବୋହି ଗାନ୍ଧିଜୀଙ୍କ ପରି ଖଦଡ଼ ପିନ୍ଧି ସାରା ଭାରତ ବୁଲି ଗାନ୍ଧିଭାବ ପ୍ରଚାର କରିବାରେ ସେ ବ୍ୟସ୍ତ । ଚାରିଆଡ଼େ ତାଙ୍କୁ ସାହାଯ୍ୟ ଓ ସମ୍ବର୍ଦ୍ଧନା ମିଳୁଛି । ତାଙ୍କୁ ସୁସାହିତ୍ୟିକ ଶ୍ରୀକାନ୍ତ ପାତ୍ର, ବିପିନ ବିହାରୀ ବିଶ୍ୱାଳ ଓ ଲକ୍ଷ୍ମଣ ଜେନା ଆଦି ସାହାଯ୍ୟ କରୁଛନ୍ତି । ବାଲିଆପାଳଠାରେ ଜୟନାରାୟଣ ମହାନ୍ତିଙ୍କ ଉଦ୍ୟମରେ ଏକ ସୁଦୃଶ୍ୟ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଲାଭ କରିଛି । ସ୍ୱାଧୀନତା ପ୍ରାପ୍ତି ପରେ ଧାର୍ମିକ ଓ ଆଧ୍ୟାତ୍ମିକ ଚେତନାର ପ୍ରସାର ଏ ଅଞ୍ଚଳରେ ଜୋରସୋର୍ ସର୍ବତ୍ର ଚାଲିଛି । ଠାକୁର



Digitized by srujanika@gmail.com

ଅନୁକୂଳ ଚନ୍ଦ୍ର, ଶ୍ରୀମଦ୍ ସ୍ୱାମୀ ନିଗମାନନ୍ଦ, ଶ୍ରୀମା ଓ ଶ୍ରୀମା ଅରବିନ୍ଦ, ସ୍ୱାମୀ ସ୍ୱରୂପାନନ୍ଦ ଓ ସତ୍ୟସାଇବାବାଙ୍କ ଭଳି ଧାର୍ମିକଗୁରୁ ଓ ଯୁଗାବତାରମାନଙ୍କର ଅନୁଗାମୀମାନେ ଚାରିଆଡ଼େ ବୁଲି ଭଜନ ମଣ୍ଡଳୀ ଓ ଅନୁଷ୍ଠାନମାନ ଗଢ଼ି ଅଧିବେଶନ ଜରିଆରେ ଧାର୍ମିକ ଓ ନୈତିକ ଚେତନା ଜନମାନସରେ ସୃଷ୍ଟି କରିବାକୁ ସମର୍ଥ ହୋଇପାରିଛନ୍ତି । ଏହା ଏକ ଶୁଭ ସୂଚନା । ସଂସାର ଜୀବନରେ ଶାନ୍ତି ଶୃଙ୍ଖଳା ବଜାୟ ରଖି ମହତ୍ତର ଜୀବନଯାପନ କରିବା ଦିଗରେ ଲୋକମାନଙ୍କୁ ଆକର୍ଷିତ କରାଯାଉଛି । ଏସବୁ ସତ୍ତ୍ୱେ ମଣିଷ ଭୌତିକ ସୁଖ ଓ ପ୍ରତିଷ୍ଠା ସକାଶେ ଅର୍ଥ ଓ କ୍ଷମତା ହାସଲ କରିବା ଦିଗରେ ଯେକୌଣସି ଅପକର୍ମ କରିବାକୁ ପଛାଉ ନାହାଁନ୍ତି । ସମାଜ ଜୀବନ କ୍ରମେ କଳୁଷିତ ହୋଇ କାମିନୀ କାଞ୍ଚନ, ମଦ ଓ ଦୁର୍ନୀତି ଦିଗରେ ଲୋକମାନଙ୍କର ଆକର୍ଷଣ କ୍ରମେ ବଢ଼ିବଢ଼ି ଚାଲିଛି । ପରିଣାମରେ ଅମୂଲ୍ୟ ମଣିଷ ଜୀବନମାନ ଅକସ୍ମାତ୍ ଅକାଳରେ ଶହଶହ ସଂଖ୍ୟାରେ ହତାହତ ହେବାରେ ଲାଗିଛି ପ୍ରତିଦିନ । ଏ ଦୁଃଖ ରଖିବାର ସ୍ଥାନ ନାହିଁ ।





Digitized by srujanika@gmail.com

# ମହାନ୍ ଆଗନ୍ତୁକମାନଙ୍କ ଆଗମନ

ଭାରତୀୟ ମୁକ୍ତି ସଂଗ୍ରାମ ବେଳେ (୧୯୨୧-୧୯୪୫) ଓଡ଼ିଶା ଓ ପଶ୍ଚିମବଂଗର ମହାନ୍ ସଂଗ୍ରାମୀମାନେ ଉତ୍ତର ବାଲେଶ୍ୱର ମାଟିରେ ପଦାର୍ପଣ କରିଥିଲେ ମୁକ୍ତିଯୁଦ୍ଧର ସଂଗଠନ କରିବାକୁ । ଗ୍ରାମେଗ୍ରାମେ ବୁଲି ଏମାନେ ସ୍ୱେଚ୍ଛାସେବକ ବାହିନୀ ଗଠନ କରି ଦ୍ୱାରେଦ୍ୱାରେ ସ୍ୱରାଜର ବାର୍ତ୍ତା ପ୍ରଚାର କରୁଥିଲେ । ସେତିକିବେଳେ ଏ ସୀମାନ୍ତ ଅଞ୍ଚଳ ଏକ ଅନ୍ଧାରିଆ ରାସ୍ତାଘାଟ ଶୂନ୍ୟ ଦୁର୍ଗମ ଅଞ୍ଚଳ ଥିଲା । ବାହାରୁ କେହି ଆସିବା ଅତୀବ କଷ୍ଟସାଧ ଥିଲା । ମୁକ୍ତି ସଂଗ୍ରାମର ବୀର ଯୋଦ୍ଧାମାନେ ପ୍ରଯୋଜନ ମଣି ଅଞ୍ଚଳର ଗ୍ରାମେଗ୍ରାମେ ପ୍ରବେଶ କରିବାକୁ ଲାଗିଲେ । ମୁକ୍ତିଯୁଦ୍ଧର ଆଲୋକବର୍ତ୍ତିକା ଧରି ଅଞ୍ଚଳର ଅନ୍ଧକାର ଦୂର କରିବାକୁ ଆଗେଇ ଆସିଲେ । ଅହିଂସା ସମରର ସଂଗୀତ ଗାଇଗାଇ ଗ୍ରାମମାନଙ୍କରେ ଅଭୂତପୂର୍ବ ଆଲୋଡ଼ନ ଜନମାନସରେ ସୃଷ୍ଟି ହେବାକୁ ଲାଗିଲା । ଜନ୍ମମାଟି ଭାରତ ଆମର ଦେଶ, ବିଦେଶୀ ଶକ୍ତି ଇଂରେଜ ଜାତି ଆମକୁ କବଳିତ କରି ଶୋଷଣ କରୁଛି । ଏହା ବରଦାସ୍ତ କରାଯିବ ନାହିଁ । ଆମର ଲୋଡ଼ା ସ୍ୱରାଜ୍ୟ । ଗାନ୍ଧିଜୀ ଓ କଂଗ୍ରେସ ଏଥି ସକାଶେ ଡାକରା ଦେଉଛନ୍ତି । ସତ୍ୟ ଓ ଅହିଂସା ସଂଗ୍ରାମରେ ଭାଗୀ ହେବାକୁ । ଏଥିରେ ସବୁ ଦେଶବାସୀଙ୍କୁ ଯଥାସାଧ ଅଂଶଗ୍ରହଣ କରି ସଂଗ୍ରାମ କରିବାକୁ ହେବ । ଦରକାର ପଡ଼ିଲେ ସବୁ ପ୍ରକାରର ଅତ୍ୟାଚାର ସହିବାକୁ ପଡ଼ିବ, ପ୍ରାଣ ଦେବାକୁ ପଡ଼ିବ ।

ଜନ୍ମଭୂମିର ମୁକ୍ତି ସକାଶେ ୧୯୦୦-୧୯୧୫ ମଧ୍ୟରେ ସଶସ୍ତ୍ର ବିପ୍ଲବରେ ଏ ଅଞ୍ଚଳର କତିପୟ ଲୋକ ସରିକ୍ ଥିବାର ଜଣାଯାଏ । କିନ୍ତୁ କଂଗ୍ରେସର ଗଣ ଆନ୍ଦୋଳନରେ ସେମାନେ ସହଭାଗୀ ହୋଇଥିଲେ । ମୁକ୍ତି ଯୋଦ୍ଧାମାନଙ୍କର ଉଦ୍ଦାତ୍ତ କଣ୍ଠର ଡାକରା ଜାଗରେ ଭାରତବାସୀ, ହେର, ମୁକ୍ତି ସୂର୍ଯ୍ୟ ପୂର୍ବଭାଗେ ଝଲସି ଉଠେ ଆଦି ଅନ୍ଧକାରଗ୍ରସ୍ତ ସହସ୍ର ଗ୍ରାମୀଣ ପ୍ରାଣକୁ ଆକୁଳ କରି ପକାଇଲା 'ଭାରତ ମାତାକୀ ଜୟ - ମହାତ୍ମା ଗାନ୍ଧିକୀ ଜୟ' ଧ୍ୱନିରେ ଅଞ୍ଚଳର ଅମଡ଼ା ବାଟଘାଟମାନ ଅନୁରଣିତ ହୋଇଉଠିଲା । ନୀଳାମ୍ବର ଦାସ, ହରେକୃଷ୍ଣ ମହତାବ, ରାଣୀ ସୁଭଦ୍ରାଦେବୀ, ସର୍ଦ୍ଦାର ସୁରେନ୍ଦ୍ର, କରୁଣାକର ପାଣିଗ୍ରାହୀ, ନନ୍ଦକିଶୋର, ଗୌରଚନ୍ଦ୍ର ଓ ରବୀନ୍ଦ୍ରମୋହନ ଆଦି



Digitized by srujanika@gmail.com

ମୁକ୍ତି ସଂଗ୍ରାମୀମାନେ ସର୍ବତ୍ର ଧସେଇ ପଶିଆସି ଅହିଂସା ମନ୍ତ୍ରରେ ପଲ୍ଲୀବାସୀଙ୍କୁ ଶିକ୍ଷା ଦେଇ ଅସହଯୋଗ, ବିଦେଶୀ ବର୍ଜନ ଓ ଲୁଣମରା ଆନ୍ଦୋଳନ ସକାଶେ ପ୍ରସ୍ତୁତ କରିବାକୁ ଲାଗିଲେ । ପୁଲିସ୍ ଲାଠିମାଡ଼, ଗିରଫଦାରୀ ଜେଲ ଓ ଜୋରିମାନା ଆଦି ଅତ୍ୟାଚାରରେ ଶତଶତ ପ୍ରାଣ ଉତ୍ତପ୍ତ ହୋଇ ଉଠିଲା । ଭୋଗରାଇ, ବାଲିଆପାଳ, ଜଳେଶ୍ୱର, ସିଙ୍ଗଲା ଓ ରକ୍ତତୀର୍ଥ ବାଲେଶ୍ୱର ମାଟି ମୁକ୍ତି ଆନ୍ଦୋଳନରେ ଫାଟି ପଡ଼ିବାକୁ ଲାଗିଲା । ଶ୍ରୀନାଥ ରାଜ, ଗଗନଭଞ୍ଜ, ବଟକୃଷ୍ଣ ସେନାପତି, ନରେନ୍ଦ୍ର ଜେନା, ଶ୍ରୀକାନ୍ତ ପାଳ, ଭଗବାନ ଦତ୍ତ, ପ୍ୟାରୀମୋହନ ଦାସ, ରାଧାଶ୍ରୀରାମ ଦାସ, ପଦ୍ମନାଭ କାସ୍ତ, ଶଚୀନ୍ଦ୍ର ତଗର, କିଶୋରାମ ଦାସ, ଜଗନ୍ନାଥ ଦାସ ଅଧିକାରୀ ଆଦି କୋମଳମତି ବାଳକମାନେ ସଂଗ୍ରାମରେ ଶହଶହ ସଂଖ୍ୟାରେ ଝାସ ଦେଲେ । ଲକ୍ଷ୍ମୀପାଟଣା, ବାରବାଟିଆ, ଦୁଡ଼ପଲ, ବୋଲଙ୍ଗ, ବାଲିଆପାଳ, ଇଞ୍ଚୁଡ଼ି, ଶ୍ରୀଜଙ୍ଗ, ରାଇବଣିଆ ଅଞ୍ଚଳ ଦୁର୍ଗ ପାଲଟିଗଲା । ୧୯୩୦ରୁ ୧୯୩୩ ଯାଏ ବିଦେଶୀବର୍ଜନ, ଅସହଯୋଗ ଓ ଲୁଣମରା ଆନ୍ଦୋଳନ ଲାଗିରହିଲା । ସ୍ୱଦେଶୀ ଆନ୍ଦୋଳନ ଯୋଗୁଁ ଜନପଦବାସୀ ଭାଇଭଉଣୀମାନେ ଚଳଚଞ୍ଚଳ ହୋଇ ଉଠିଲେ ।

ହରିଜନ ମୁକ୍ତି ଆନ୍ଦୋଳନ ୧୯୩୪ରେ ଗାନ୍ଧିଜୀ ଆରମ୍ଭ କଲେ । ସେ ଏକ ଅଭୂତପୂର୍ବ ଅନୁଭୂତି ଭାରତର ମୁକ୍ତି ସଂଗ୍ରାମ କାଳରେ ।

୧୯୩୯ରେ ମିତ୍ରଶକ୍ତି ଓ ନାଜିଶକ୍ତି ମଧ୍ୟରେ ୨ୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । କଂଗ୍ରେସ ଯୁଦ୍ଧ ବିରୋଧୀ ଅଭିଯାନରେ ଦେଶସାରା ଆରମ୍ଭ କଲେ 'ବ୍ୟକ୍ତିଗତ ସତ୍ୟାଗ୍ରହ' । ଏହି ଆନ୍ଦୋଳନରେ ହରେନ୍ଦ୍ର ଘୋଷ, ଗଙ୍ଗାନାରାୟଣ ଦାସ, ଈଶ୍ୱର ଗିରି, ଭଜହରି ଦାସ ଓ ପ୍ୟାରୀମୋହନ ଦାସ ପ୍ରମୁଖ ସତ୍ୟାଗ୍ରହ କରି ଜେଲ୍ ଗଲେ ।

୧୯୪୨ ଅଗଷ୍ଟ ମାସ ଗାନ୍ଧିଜୀ ଓ କଂଗ୍ରେସ ଅନ୍ତିମ ସଂଗ୍ରାମର ଡାକରା ଦେଲେ ଭାରତଛାଡ଼ ଆନ୍ଦୋଳନ । ଏହି ସଂଗ୍ରାମର ଡାକରା ଭାରତର କୋଟି ପ୍ରାଣକୁ ସ୍ପର୍ଶ କଲା । ହିଂସା ଅହିଂସାର ବାଛ ବିଚାର ରହିଲା ନାହିଁ । ନେତାଜୀ ସୁଭାଷ ବୋଷଙ୍କ ପରିଚାଳିତ ଆଜାଦ୍ ହିନ୍ଦ ଫୌଜ ପୂର୍ବ ଭାରତମାଟିକୁ ଦୋହଲାଇ ମାଡ଼ି ଆସିଲା । ଇଂରେଜ ସରକାରର ଶାସନ କଳ ଅଚଳ ହୋଇଗଲା । ସବୁ ଶିକ୍ଷା, ବ୍ୟବସାୟ, ଅନୁଷ୍ଠାନମାନ ବନ୍ଦ ହୋଇଗଲା । ପ୍ରବଳ ଯୁବଶକ୍ତିର ଅଭ୍ୟୁଦୟ ଦେଶସାରା ଦେଖାଦେଲା । ଗୁଳିଗୋଳା ଚାଲିଲା । ଶତଶତ ପ୍ରାଣ ବନ୍ଧୁକ ଆଗରେ ଓ ଫାଶୀ ଖୁଣ୍ଟରେ ମୁରୁଛି ଦେଲେ । ଇରମ୍, ଖୈରା, ଧୁଷୁରୀ ଓ ଲକ୍ଷ୍ମଣନାଥ ଓ ଲୁଣିଆରେ ରକ୍ତତାଣ୍ଡବ ଖେଳିଗଲା । ଶହଶହ ସଂଗ୍ରାମୀଙ୍କ ପିଠି ଫାଟି ରକ୍ତ ବୋହିବାକୁ ଲାଗିଲା ।



Digitized by srujanika@gmail.com

ଶହଶହ ସଂଖ୍ୟାରେ ମୁକ୍ତି ସଂଗ୍ରାମୀମାନେ ଜେଲ୍ ଗଲେ । ଉଗ୍ର ସଂଗ୍ରାମୀମାନେ ପ୍ରାଣର ମାୟା ଛାଡ଼ି ଭୂମିଗତ ରହି ଇଂରେଜ ସରକାର ଓ ଇଂରେଜମାନଙ୍କ ହିଂସା ବିପ୍ଲବରେ ଲାଖି ରହିଲେ । ଆମ ଅଞ୍ଚଳରେ ଏହି ସଂଗ୍ରାମ ବ୍ୟାପକ ରୂପ ଧାରଣ କଲା । ପୂର୍ବରୁ ଜେଲ୍ ଖଟିଥିବା ସଂଗ୍ରାମୀମାନଙ୍କ ସହ ରାମକୃଷ୍ଣ, ବିଜୟ, ଶ୍ରୀକାନ୍ତ, ସୁଧାଂଶୁ, ନାରାୟଣ, ନରହରି, ବୃନ୍ଦାବନ, ମହେନ୍ଦ୍ର, ମନୋରଂଜନ, ତ୍ରିଲୋଚନ, ସୁବାସ, ପୀତାମ୍ବର ପ୍ରଭୃତି ଯୁବକମାନେ ମାତି ଜେଲ୍ ଗଲେ । ପ୍ୟାରୀଭାଇ, ଗୌରଚନ୍ଦ୍ରବାବୁ ଓ ମୁଁ ସକ୍ରିୟ ଭାବେ ଏ ଅଞ୍ଚଳରେ ରହି ସଂଗ୍ରାମର ବହ୍ନିକୁ ପ୍ରଜ୍ୱଳିତ କରି ଚାଲିଥିଲାବେଳେ ପଶ୍ଚିମବଂଗରୁ ବଲାଇ ଲାଲ୍ ମହାପାତ୍ର, ପୁଲିନ୍ ଚୌଧୁରୀ ଆଦି ଆମ ଅଞ୍ଚଳରେ ପ୍ରବେଶ କରି ଇନ୍ଧନ ଯୋଗାଇ ଦେଲେ ।

ଏତିକିବେଳେ ୧୯୪୨ ଅକ୍ଟୋବରରେ ମହାବାତ୍ୟା ଓ ୪୩ରେ ପ୍ରଳୟଙ୍କରୀ ବନ୍ୟା ଉତ୍ତର ବାଲେଶ୍ୱର ଓ ମେଦିନିପୁର ଜିଲ୍ଲା ବକ୍ଷଦେଇ ବହି ପ୍ରବଳ ଧ୍ୱଂସଲୀଳା ସୃଷ୍ଟି କଲା । ହଜାର ହଜାର ମଣିଷ ଗୋରୁଗାଈ ପୋକ ମାଛି ପରି ଖାଦ୍ୟ ବିନା ରାସ୍ତାକଡ଼ରେ ପଡ଼ି ମଲେ । ଇଂରେଜ ସରକାର ହିଂସାରେ ଭ୍ରୂକ୍ଷେପ କଲେନାହିଁ ।

୧୯୪୫ରେ ଯୁଦ୍ଧ ବିରତି ଘଟିଲା । ଦୁର୍ଭିକ୍ଷ ସମୟରେ ବେସରକାରୀ କିଛି ସେବା ଅନୁଷ୍ଠାନଠାରୁ ବେଶ୍ କିଛି ରିଲିଫ୍ ସାମଗ୍ରୀ ମିଳିଥିଲା ଆମ ଲୋକଙ୍କୁ । ଓଡ଼ିଆ ରିଲିଫ୍ ସୋସାଇଟି, ମାରୱାଡ଼ି ରିଲିଫ୍ ସୋସାଇଟି, ରାମକୃଷ୍ଣ ମିଶନ ଆଦି ଅଞ୍ଚଳରେ ବୁଲି ରିଲିଫ୍ ବାଣ୍ଟିଥିଲେ । ଠକର ବାପା, ପ୍ରଖ୍ୟାତ ସମାଜସେବୀ ଲକ୍ଷ୍ମୀନାରାୟଣ ସାହୁ, ଈଶ୍ୱର ଲାଲ ବ୍ୟାସ ଆଦି ଅଞ୍ଚଳ ପରିକ୍ରମା କଲେ । ଗଂଗାନାରାୟଣ ଦାସ, ପରମାନନ୍ଦ ପଟ୍ଟନାୟକ ଓ ମହେନ୍ଦ୍ର ମହାନ୍ତି ଆଦି ଶଂଖାରୀ, ଲକ୍ଷ୍ମୀପାଟଣା ଓ ଆମ୍ବଚୁଆରେ ରିଲିଫ୍ କେନ୍ଦ୍ରମାନ ଖୋଲି ବସିଲେ । ଗୋଛିଦାଠାରେ ଚରଖା ସଂଘ ତରଫରୁ ଏକ ସୂତାକଟା ଖଦି କେନ୍ଦ୍ର ଖୋଲାଗଲା, କଂଗ୍ରେସ ଅଫିସ୍ ନାଁରେ ସରବଣିରେ ମଧ୍ୟ । ଗୋପାଳ ଦାସ ଦାୟିତ୍ୱରେ ଥିଲେ । ସମାଜସେବୀ ଶଶୀକାନ୍ତ ଭଞ୍ଜ ଏସବୁ ସେବା କାର୍ଯ୍ୟର ଯୋଗାଯୋଗ ଓ ପରିଚାଳନା କରୁଥିଲେ ।

ସ୍ୱାଧୀନତା ପରେ ଭାରତ ଏକ ସାର୍ବଭୌମ ଗଣତନ୍ତ୍ର ରାଷ୍ଟ୍ରରୂପେ ନିଜର ସମ୍ବିଧାନ ଗଢ଼ି ପ୍ରତିଷ୍ଠା ଲାଭ କଲା । ୧୯୫୧-୫୨ରେ ସାବାଳକ ଭୋଟ ଜରିଆରେ ପ୍ରଥମ ସାଧାରଣ ନିର୍ବାଚନ ଆରମ୍ଭ ହେଲା । ସେତେବେଳେ ଲୋକସଭା ଓ ବିଧାନସଭା ନିର୍ବାଚନ ପ୍ରଚାର କରିବାକୁ ମହତାବ ବାବୁ, ବିଜୁବାବୁ, ନନ୍ଦିନୀ ଦେବୀ, ଜାନକୀ ବାବୁ ଏ ଅଞ୍ଚଳ ବକ୍ଷରେ ପଦାର୍ପଣ କରିଥିଲେ । ରାଜ୍ୟର ମନ୍ତ୍ରୀ ଭାବରେ ନଳିନୀବାବୁ,



Digitized by srujanika@gmail.com

ପ୍ରହ୍ଲାଦ ମଲ୍ଲିକ୍, ବୃନ୍ଦାବନ ନାଏକ, ଲାଲା ରଣଜିତ୍ ସିଂ ବରିହା, ଦୀନବନ୍ଧୁ ସାହୁ, ନିରଞ୍ଜନ ପଟ୍ଟନାଏକ, ଲିଙ୍ଗରାଜ ପାଣିଗ୍ରାହୀ, ବସନ୍ତ ମଂଜରୀ ଦେବୀ, ବସନ୍ତ ବିଶ୍ୱାଳ, ଭୈରବ ମହାନ୍ତି ଓ ରାଜବଲ୍ଲଭ ମିଶ୍ର ଆଦି ଆସିଥିଲେ । ଅନୁଷ୍ଠାନ ମଣ୍ଡନ କରିବାକୁ ପ୍ରସନ୍ନ ପାଟ୍ଟଶାଣୀ, ବ୍ରଜନାଥ ରଥ, ସତ୍ୟନାରାୟଣ ଦାସ, ମୌ. ମହମ୍ମଦ ହନିଫ୍ ଓ ରବି ରାୟ ଆସିଥିଲେ । ଆସିଥିଲେ ପଶ୍ଚିମବଂଗରୁ ତ୍ରୈଲୋକ୍ୟନାଥ ପ୍ରଧାନ ଓ ଆଭା ମାଇତି ଆଦି । କଂଗ୍ରେସ ନେତ୍ରୀ ଭାବରେ ମାଳତୀ ଚୌଧୁରୀ ଓ ଗୋଦାବରୀ ଦେବୀ, ନନ୍ଦିକଶୋର ଦାସ, କରୁଣାକର ପାଣିଗ୍ରାହୀ, ସର୍ଦ୍ଦାରଜୀ, ନୀଳାମ୍ବର ଦାସ ଓ ରବିନ୍ଦ୍ର ମୋହନ ଦାସ ଭୋଗରାଇ ଆସିବା ବେଳେ ଆଚାର୍ଯ୍ୟ ବିନୋବା ଭାବେ ଭୂଦାନ ଆନ୍ଦୋଳନ ସମୟରେ ନାମ୍ପ ଓ ଲକ୍ଷଣନାଥ ଆସିଥିଲେ ।

ବିଂଶ ଶତାବ୍ଦୀର ବିଭିନ୍ନ ସମୟରେ ମହାନ୍ ଅତିଥିମାନେ ଉତ୍ତର ବାଲେଶ୍ୱର ଅଞ୍ଚଳର ବିଭିନ୍ନ ସ୍ଥାନ ଗସ୍ତକରି ସେମାନଙ୍କର ମୂଲ୍ୟବାନ ବକ୍ତବ୍ୟମାନ ରଖି ଆମର ଧୂଳିମାଟିକୁ ରଂଜିତ ଓ ରସାଣିତ କରି ଜନପଦବାସୀଙ୍କ ମନକୁ ଦେଶାତ୍ମବୋଧ, ସମାଜସେବା ଓ ରାଜନୈତିକ ଚେତନାରେ ଉଦ୍‌ବୁଦ୍ଧ କରିଥିଲେ । ଆଜି ଏକବିଂଶ ଶତାବ୍ଦୀର ଆଦ୍ୟଭାଗରେ ଛିଡ଼ାହୋଇ ଆମେ କିଛିଟା ଅବହେଳିତ ହୋଇଥିଲେ ମଧ୍ୟ ଭାରତବାସୀ ଭାବରେ ନିଜକୁ ପ୍ରମାଣିତ କରିବାରେ କିଛି ଅସୁବିଧା ହୋଇନାହିଁ । ଆଜି ଆମେ ଯଥେଷ୍ଟ ସଚେତନ, ଯୋଗ୍ୟ, ସ୍ୱାବଲମ୍ବୀ ହୋଇପାରିଛୁ । ସବୁକ୍ଷେତ୍ରରେ ଆମର ମାନସିକ ଅଭ୍ୟୁଦୟ ହୋଇଛି । ଆମର ଦାବି ହାସଲ କରିବାକୁ ଆମେ ପଛରେ ନାହୁଁ, ଅନ୍ୟାନ୍ୟ ରାଜ୍ୟବାସୀଙ୍କ ତୁଳନାରେ ।





Digitized by srujanika@gmail.com

# ଲୋକଗୀତ, ସଂଗୀତ ଓ ନାଟ୍ୟକଳା

ପୂର୍ବରୁ ଉଲ୍ଲେଖ କରାଯାଇଛି, ପଡ଼ୋଶୀ ବଂଗୀୟ ସଂସ୍କୃତି ଓ ଭାଷାର ପ୍ରଭାବ ସୀମାନ୍ତ ଅଞ୍ଚଳ ଭୋଗରାଇରେ ପ୍ରଥମରୁ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିଲା । ତେଣୁ ଏଠାର ଲୋକସଂସ୍କୃତି ଲୋକଗୀତ, ସଂଗୀତ ଓ ନାଟ୍ୟକଳା ଆଜି ମଧ୍ୟ ପ୍ରଥମେ ବଂଗୀୟ କବି, ଗୀତିକାର ଏବଂ ନାଟ୍ୟକାର ମାନଙ୍କ ଦ୍ୱାରା ରଚିତ ବଂଗଳା ଭାଷାରେ ପ୍ରଚଳିତ ଓ ଆଦୃତ ହୋଇ ଆସିଅଛି । ବଂଗଳା ଭାଷାରେ ଲିଖିତ ଚଣ୍ଡୀ ମଂଗଳ, ମନସା ମଂଗଳ, ସଂକୀର୍ତ୍ତନ, ଶୀତଳା ମଂଗଳ, ଷଠିଘର ଗୀତ ପ୍ରଭୃତି ଲୋକଗୀତ ଏବଂ ବିଦ୍ୟାସୁନ୍ଦର ଟପ୍‌ପା, ବିଲ୍ୱମଂଗଳ, ବାନାମ୍ବର ପାଲା, କୃଷ୍ଣଲୀଳା, ନିମାଇ ସନ୍ନ୍ୟାସ, ଶକୁନ୍ତଳା ଓ ସୁଭଦ୍ରା ହରଣ ପ୍ରଭୃତି ଗୀତିନାଟ୍ୟ, ବଂଗଳା ଯାତ୍ରା ଓ ପାଲାଗାୟକମାନେ ଗ୍ରାମେଗ୍ରାମେ ବୁଲି ଗାନ କରୁଥିଲେ । ପ୍ରାକ୍ କଂଗ୍ରେସ ଯୁଗରୁ ଏସବୁର ବହୁ ପ୍ରଚାର ଥିଲା । ପରେପରେ ବଂଗଳାର ସୁପ୍ରସିଦ୍ଧ ସ୍ୱଦେଶୀ କବି ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ମଧ୍ୟ ଲୋକଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିବାପାଇଁ ସୁଦୂର ଦେଶରୁ ଆସି ଭୋଗରାଇ ଏବଂ ଉତ୍ତର ବାଲେଶ୍ୱର ଅଞ୍ଚଳରେ ବୁଲି ମନମୁଗ୍ଧକର ବିଭିନ୍ନ ସ୍ୱଦେଶ-ପ୍ରେମ-ଉଦ୍ରେକକାରୀ ସଂସ୍କାରମୂଳକ ଗୀତିନାଟ୍ୟମାନ ପ୍ରଦର୍ଶନ କରି ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ । ସେସବୁ ଅମର ସଂଗୀତ, ଏବେ ସୁଦ୍ଧା ଅଞ୍ଚଳବାସୀଙ୍କ ମୁହଁରେ ଜନପ୍ରିୟ ସଂଗୀତ ଆକାରରେ ଅବକାଶ ବେଳେ ପ୍ରକାଶ ପାଇଥାଏ ।

କାଳକ୍ରମେ ଏହି ବଂଗଳା ଭାଷାରେ ରଚିତ ବହୁ ପୌରାଣିକ ଏବଂ ଐତିହାସିକ ନାଟକମାନ ବଂଗ ଦେଶୀୟ ଅପେରା ଦଳଦ୍ୱାରା ଏ ଅଞ୍ଚଳରେ ବ୍ୟାପକ ଭାବରେ ଅଭିନୀତ ହେବାକୁ ଲାଗିଲା ଏବଂ ପ୍ରବଳ ଉତ୍ସାହ ସୃଷ୍ଟି କଲା । ଅବସ୍ଥା ଏପରି ହେଲା, ଭୋଗରାଇ ଅଭ୍ୟନ୍ତରରେ ବାସ କରୁଥିବା ଗ୍ରାମବାସୀମାନେ ସେସବୁକୁ ଆପଣାର ଭାବି, ନିଛକ ଅନୁକରଣ କରି ଗ୍ରାମ୍ୟ ଅପେରା ଓ ରଂଗମଂଚମାନ ବିପୁଳ ଅର୍ଥବ୍ୟୟ କରି ଗଢ଼ିବାକୁ ଲାଗିଲେ ଏବଂ ବଂଗଳା ନାଟକମାନ ଚାରିଆଡ଼େ ଅଭିନୀତ ହେବାକୁ ଲାଗିଲା । ମାତ୍ର ଷାଠିଏ ସତୁରି ବର୍ଷ ପୂର୍ବେ ମଧ୍ୟ ଏହି ଭୋଗରାଇ ଅଞ୍ଚଳରେ ଲୋକରୀତି, ନାଟ୍ୟକଳା ଆଦିରେ ଓଡ଼ିଆ ଭାଷାର ସତ୍ତା ଅନୁଭୂତ ହୋଇନାହିଁ ।



Digitized by srujanika@gmail.com

ଆନନ୍ଦ ବିଷୟ, ଅବସ୍ଥା କ୍ରମେ ଦ୍ରୁତ ବଦଳିବାକୁ ଲାଗିଲା । ଶ୍ରୀ କୃପାସିନ୍ଧୁ ମିଶ୍ର ଏବଂ ପିତାମ୍ବର ପୃଷ୍ଟି ପ୍ରମୁଖ ବହୁ ଓଡ଼ିଆ ନାଟ୍ୟକାର ବାହାରି ବଂଗଳା ନାଟକକୁ ସ୍ଥାନୀୟ କଥିତ ଭାଷାରେ ଭାଂଗି, ଭାଷାନ୍ତର କରି ଏବଂ ନିଜେ ନୂଆନୂଆ ନାଟକମାନ ଓଡ଼ିଆ ଭାଷାରେ ଲେଖି ପ୍ରଚାର କଲେ । ଚଣ୍ଡୀ ମଂଗଳ, ମନସା ମଂଗଳ, ଷଠି ଗୀତ, ଭାରତ ଗୀତ ପ୍ରଭୃତି ମଧ ଭାଷାନ୍ତରିତ କରି ଓଡ଼ିଆରେ ପ୍ରଚାର କରାଗଲା । କିନ୍ତୁ ବହୁ ଚେଷ୍ଟାକରି ମଧ ବଂଗଳା ସଂକୀର୍ତ୍ତନ ଏବଂ ଶ୍ରୀ ଚୈତନ୍ୟ ରଚିତ ଗୀତିନାଟ୍ୟକୁ ଭାଷାନ୍ତର ଏଯାଏ କରାଯାଇ ପାରିନାହିଁ । ସେଗୁଡ଼ିକ ପୂର୍ବପରି ସମଗ୍ର ଅଞ୍ଚଳରେ ବଂଗଳା ଭାଷାରେ ଅଭିନୀତ ହୋଇ ଚାଲିଛି, ଆଗ୍ରହ ସହକାରେ ।

ସେ ସମୟରେ ଶୁଦ୍ଧ ଓଡ଼ିଆରେ ଲେଖା କୌଣସି ନାଟକ ପାଲା ବା ଲୋକଗୀତି ଏ ଅଞ୍ଚଳରେ ଆଦୌ ପ୍ରଚଳିତ ନଥିଲା । ପ୍ରାକ୍ ସ୍ୱାଧୀନତା ଯୁଗରେ, ଏପରିକି ବିଂଶ ଶତାବ୍ଦୀର ତୃତୀୟ ଦଶକ କାଳରେ ପୂଜାପାର୍ବଣ ଏବଂ ମେଳା ମହୋତ୍ସବ ଆଦିରେ ବଂଗଳା ଅପେରାମାନଙ୍କରେ ଭିଡ଼ ଭୋଗରାଇର ସର୍ବତ୍ର ଥିଲା । ସେମାନେ ଆପଣାର ସୁଦକ୍ଷ ଅଭିନୟ ଦ୍ୱାରା ଜନମାନସରେ ଗଭୀର ଉନ୍ମାଦନା ସୃଷ୍ଟି କରୁଥିଲେ । ବଂଗ-ଉତ୍କଳ ସୀମାନ୍ତ ଗ୍ରାମମାନଙ୍କରେ ସେ ସମୟରେ ଯେତେଗୁଡ଼ିଏ ଅପେରା ବା ରଂଗମଞ୍ଚ ଗଢ଼ି ଉଠିଥିଲା ସେ ସବୁଥିରେ ବଂଗଳା ଭାଷା ଏବଂ ବଂଗୀୟ ନାଟ୍ୟକଳା ବିରାଜୁଥିଲା । ସେ କାଳରେ ସମକାଳୀନ ବିଶିଷ୍ଟ କୀର୍ତ୍ତନ ଗାୟକ ଭାବରେ ଶ୍ରୀ ହରିହର ମଣ୍ଡଳ (ଗାଙ୍ଗଡ଼ା) ସଂଗୀତ ଓସ୍ତାଦ ଏବଂ ଗାୟକ ଭାବେ ଶ୍ରୀ ଭୂତକବି ଏବଂ ଶ୍ରୀ ଆଦ୍ୟାଚରଣ ପଣ୍ଡା, କୁଶଳୀ ଅଭିନେତା ନାଟ୍ୟ ନିର୍ଦ୍ଦେଶକ ଭାବେ ଶ୍ରୀ ଗୋଷ୍ଠବିହାରୀ ମଣ୍ଡଳ, ଆଦ୍ୟାଚରଣ ପଣ୍ଡା, ଜଗଦୀଶ ପାଣିଗ୍ରାହୀ, ଭୂତେଶ୍ୱର ପଣ୍ଡା ଓ ହିମାଂଶୁ ପଣ୍ଡା ପ୍ରମୁଖ ଯଥେଷ୍ଟ ସୁଖ୍ୟାତି ଅର୍ଜନ କରିଥିଲେ । ଏମାନେ ସମସ୍ତେ ଓଡ଼ିଆ ଅଟନ୍ତି । ମାତ୍ର ଶତାବ୍ଦୀର ତୃତୀୟ ଦଶକରେ, ଶ୍ରୀ ଆଦ୍ୟା ଚରଣ ପଣ୍ଡାଙ୍କ ନିର୍ଦ୍ଦେଶନାରେ ଚୌକି ଏବଂ ଚଣ୍ଡୀପୁର ପ୍ରଭୃତି ଗ୍ରାମରେ ଅପେରା ଏବଂ କଖଡ଼ା ଗ୍ରାମରେ ରଂଗମଂଚ ଅଭିନୟ, ବଂଗଳା ଭାଷାରେ ଆରମ୍ଭ ହୁଏ । ସେତେବେଳେ ସୀମାନ୍ତ ଅଞ୍ଚଳର ଖ୍ୟାତନାମା କଳାକାର ଶ୍ରୀ ସୁରପତି ବସୁ, ମନ୍ମଥ କୁମାର କର, ଗୌରାଙ୍ଗ ସୁର, ନିତ୍ୟାନନ୍ଦ ପାଣି, ବରଦାକାନ୍ତ ସେନ, ଶ୍ରୀନିବାସ ଶତପଥୀ, ବିଶ୍ୱପତି ବସୁ, ପ୍ରିୟନାଥ ମହାନ୍ତି ଏବଂ ହରେକୃଷ୍ଣ ପ୍ରଧାନ ପ୍ରମୁଖ, ତାଙ୍କର ସାଥୀ ଥିଲେ । ସେକାଳରେ ପୌରାଣିକ ଏବଂ ଐତିହାସିକ ନାଟକମାନ ମଞ୍ଚସ୍ଥ କରିବାକୁ ଲୋକେ ଆଗ୍ରହୀ ଥିଲେ । କୌଣସି ସାମାଜିକ ନାଟକ ମଫସଲରେ ମଞ୍ଚସ୍ଥ



Digitized by srujanika@gmail.com

ହେବାର କାହିଁ ଦେଖାଯାଇ ନାହିଁ । ଓଡ଼ିଆ ନାଟକ ବା ଓଡ଼ିଆ ଭାଷାରେ ଅନୂଦିତ ନାଟକ ପରିବେଷଣ ବା ପ୍ରଚାର ଅଞ୍ଚଳ ବକ୍ଷରେ କ୍ୱଚିତ୍ ଦେଖିବାକୁ ମିଳୁଥାଏ । ଓଡ଼ିଶାରେ ରହି, ନିଜେ ଓଡ଼ିଆ ହୋଇ, ଓଡ଼ିଆ ଭାଷାରେ ଶିକ୍ଷାଲାଭ କରି ମଧ ବଂଗଳା ଭାଷାର ମଧୁରତା, ଲାଳିତ୍ୟ ଏବଂ ରଚନା ନୈପୁଣ୍ୟ ପ୍ରତି ଆମର ପ୍ରଗାଢ଼ ଶ୍ରଦ୍ଧା ଏବଂ ଆସକ୍ତି ରହିଥିବାର ଦେଖା ଯାଉଥିଲା ।

### ଓଡ଼ିଆ ରଂଗମଂଚ ଏବଂ ନାଟକ

ସମୟ କ୍ରମେ ଗଡ଼ି ଚାଲିଲା । ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଓଡ଼ିଆ ଭାଷା ଓ ଭାବ ପ୍ରତି ଆମ ଲୋକଙ୍କର ଚେତନା କ୍ରମେ ଅଳ୍ପ ଅଳ୍ପ ବଢୁଥାଏ । ଓଡ଼ିଆରେ ରଚିତ ନାଟକ ଅଞ୍ଚଳରେ କ୍ରମେ ପ୍ରବେଶ କରିବାକୁ ଆରମ୍ଭ କଲା । ଶ୍ରୀ ରଜନୀକାନ୍ତ କର, ରଜନୀକାନ୍ତ ଦେ, ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦତ୍ତ, କେଦାରନାଥ ଗୋସ୍ୱାମୀ, ଫନୀଭୂଷଣ ଦେ, ଦୁଲାଲ ପଣ୍ଡା, ପ୍ରସନ୍ନ କୁମାର ପରିଡ଼ା ପ୍ରମୁଖ ବିଶିଷ୍ଟ ନାଟ୍ୟମୋଦୀମାନେ ପ୍ରସିଦ୍ଧ ବଂଗଳା ନାଟକମାନ ବିଶୁଦ୍ଧ ଓଡ଼ିଆ ଭାଷାରେ ଅନୁବାଦ କରି ମଞ୍ଚସ୍ଥ କରିବାକୁ ଆଗ୍ରହୀ ହୋଇ ଉଠିଲେ । କିଛିକିଛି ନାଟକ ସେମାନେ ସ୍ୱୟଂ ରଚନା କଲେ ମଧ । ଭୋଗରାଇ ଏବଂ ଦେଉଳା, ଉଭୟ ସେତେବେଳେ ପଞ୍ଚେଟ ଗଡ଼ ଜମିଦାରଙ୍କ ଇଲାକାଭୁକ୍ତ ଥିଲା । ଚୌଧୁରୀ ଶ୍ରୀଯୁକ୍ତ ଗୋପେନ୍ଦ୍ର ନନ୍ଦନ ଦାସ ମହାପାତ୍ରଙ୍କ ସହାୟତା ଓ ପୃଷ୍ଠପୋଷକତାରେ ୧୯୨୨ ସାଲରେ ଭୋଗରାଇ କଚେରି ପ୍ରାଙ୍ଗଣରେ 'ଶ୍ୟାମସୁନ୍ଦର ରଂଗମଞ୍ଚ' ସର୍ବପ୍ରଥମେ ଭୋଗରାଇ ମାଟିରେ ଜନ୍ମଲାଭ କରେ । ପ୍ରଖ୍ୟାତ ନକଲନବୀଶ ଏବଂ ଶେରସ୍ତାଦାର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମହାନ୍ତିଙ୍କ ପରିଚାଳନାରେ ଏହି ରଂଗମଞ୍ଚର ବିକାଶ ସାଧିତ ହୁଏ । ଏହି କୃଷ୍ଣ ବାବୁଙ୍କର କରଣୀ ଛଟାରେ ହସ୍ତଲିଖିତ ଆଦର୍ଶ ହୁଣ୍ଡି, ତମସୁକ ଆଦି ନାନା କିସମର ଦଲିଲମାନ ସେ ସମୟରେ ଛପା ପୁସ୍ତକ ଆକାରରେ ପ୍ରାଇମେରୀ ସ୍କୁଲମାନଙ୍କରେ ପଠିତ ହେଉଥିଲା । ଏହି ରଂଗମଞ୍ଚରେ ତତ୍କାଳୀନ ନାଟ୍ୟମୋଦୀ ଶ୍ରୀ ଦୀନବନ୍ଧୁ ପାତ୍ର, ବଙ୍କିମ ଚନ୍ଦ୍ର ଭଞ୍ଜ, କ୍ଷେତ୍ରମୋହନ ଦାସ, ଜଟି ଜେନା ଓ ରଜନୀକାନ୍ତ କର ପ୍ରମୁଖ ସଂଗୀତ ଏବଂ ନାଟକମାନ ସେ ସମୟରେ ପରିବେଷଣ କରୁଥିଲେ । ତରୁଣ ଶିକ୍ଷକ ଶ୍ରୀ ରଜନୀକାନ୍ତ କର ଜଣେ ପ୍ରତିଭାବାନ ବ୍ୟକ୍ତି ଥିଲେ । ଓଡ଼ିଆ ଭାଷାରେ ତାଙ୍କର ବିଶେଷ ବ୍ୟୁତ୍ପତ୍ତି ଥିଲା । ବଂଗଳା ଭାଷାରେ ଲିଖିତ ନାଟକମାନ ଓଡ଼ିଆ ଭାଷାରେ ସୁନ୍ଦର ଅମିତ୍ରାକ୍ଷର ଛନ୍ଦରେ ସେ ଅନୁବାଦ କରୁଥିଲେ ଏବଂ ନିଜେ ଅଭିନୟ ମଧ କରୁଥିଲେ । ତାଙ୍କ ଚେଷ୍ଟାରେ ସର୍ବପ୍ରଥମେ ଓଡ଼ିଆ ଭାଷାରେ ନାଟ୍ୟାଭିନୟ ଏହି ରଂଗମଂଚରେ ଭୋଗରାଇରେ ଅନୁଷ୍ଠିତ ହୁଏ ।



Digitized by srujanika@gmail.com

ପରେପରେ ଦେଉଳାଠାରେ ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ଏବଂ ଶ୍ରୀ ରମେଶ ଚନ୍ଦ୍ର ଦାସ ମହାପାତ୍ର ପ୍ରମୁଖଙ୍କ ଉଦ୍ୟମରେ 'ଅନନ୍ତ ପୁରୁଷୋତ୍ତମ' ରଂଗମଂଚ ଜନ୍ମଲାଭ କଲା । ସ୍ଥାନୀୟ ଅବସର ବିନୋଦନ କ୍ଲବ ଏହି ରଂଗମଞ୍ଚର ଜନ୍ମଦାତା ଥିଲେ । ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି, ଶ୍ରୀ ଦାସ ମହାପାତ୍ର, ଶ୍ରୀ କାଳିଚରଣ ଗୋସ୍ୱାମୀ, ଶ୍ରୀ କେଦାରନାଥ ଗୋସ୍ୱାମୀ ଓ ଶ୍ରୀ ଗୋପୀମୋହନ ପଟ୍ଟନାୟକ ପ୍ରଭୃତି ଦକ୍ଷ କଳାକାରମାନେ ଏହି ରଂଗମଂଚରେ ଅଭିନୟ କରୁଥିଲେ । ଏହି ସୌଖିନ ରଂଗମଂଚ ଦୁଇଟି ସର୍ବପ୍ରଥମେ ଓଡ଼ିଆ ଭାଷାରେ ରଚିତ ଏବଂ ଅନୂଦିତ ନାଟକମାନ ସର୍ବସାଧାରଣରେ ମଞ୍ଚସ୍ଥ ଓ ପରିବେଷଣ କରିବାକୁ ଆରମ୍ଭ କଲେ । ୧୯୪୫ରେ କମର୍ଦ୍ଦା ମ.ଇ. ସ୍କୁଲରେ ହେଡ୍‌ମାଷ୍ଟର ଶ୍ରୀ ଶଶୀକାନ୍ତ ଭଞ୍ଜ କାଳିନ୍ଦୀ ବାବୁଙ୍କର 'ଅବରଚିତା' ଓଡ଼ିଆରେ ନାଟ୍ୟରୂପ ଦେଇ ସର୍ବପ୍ରଥମ ଅଭିନୀତ କରାଇଥିଲେ । ତହିଁପରେ କଖଡ଼ା 'କାଳୀମାତା କ୍ଲବ୍' ସହ ସଂଯୁକ୍ତ ବିଳାସୀ କଳାକାରମାନେ 'ଉଦୟନ କ୍ଲବ୍' ଗଠନ କରି ଶ୍ରୀ ସୁରପତି ବସୁ, ସୁବଳ ଚନ୍ଦ୍ର ଦେ, ମନ୍ମଥ କୁମାର କର ଏବଂ ମୋ ଉଦ୍ୟମରେ ସର୍ବପ୍ରଥମେ ଓଡ଼ିଆରେ ଅଭିନୟ ଆରମ୍ଭ ହୁଏ । କ୍ରମେ ଫୁଲବଣି, କଚୁଆଡ଼ି, ଦହମୁଣ୍ଡା, ସରବଣି ଓ ଶ୍ରଦ୍ଧାପୁର ପ୍ରଭୃତି ସ୍ଥାନରେ ରଂଗମଂଚମାନ ଗଠନ କରାଯାଇ ଓଡ଼ିଆ ନାଟକ ପରିବେଷିତ ହେଲା । ଆଗ୍ରହାତିଶଯ୍ୟରେ ପ୍ରଥମେ ପ୍ରଥମେ ଏହି ରଂଗମଂଚ ମାନଙ୍କରେ ବର୍ଷର ସବୁ ଋତୁରେ ଘନଘନ ନାଟକମାନ ଅଭିନୀତ ହେଉଥାଏ । କିନ୍ତୁ ଅଧୁନା ସେମାନଙ୍କର ବାର୍ଷିକ ଉତ୍ସବରେ ବର୍ଷକେ ଥରେ କେବଳ ସେମାନେ ନାଟକ ପରିବେଷଣ କରିଥାନ୍ତି । ଏହାଛଡ଼ା ସ୍ଥାନୀୟ କଲେଜ, ହାଇସ୍କୁଲ ଏପରିକି ମାଇନର ସ୍କୁଲ ଏବଂ ବିଭିନ୍ନ ଗ୍ରାମ୍ୟ କ୍ଲବ୍ ଆଦିରେ ସାମୟିକ ଭାବେ ରଂଗମଂଚରେ ଓଡ଼ିଆରେ ନାଟ୍ୟାଭିନୟ ହୋଇଆସୁଛି ।

କାଳକ୍ରମେ ଭୋଗରାଇ ଅଞ୍ଚଳକୁ ବାହାରୁ ପ୍ରବେଶ କରିବାର ପଥ ସମୂହ ସୁଗମ ହେଲା ଉତ୍ତାରୁ ସୁଦୂର ବାଲେଶ୍ୱର ବାହାରୁ ପ୍ରତିଷ୍ଠିତ 'ଜନତା ରଂଗମଞ୍ଚ' ଏବଂ 'ଅନ୍ନପୂର୍ଣ୍ଣା ରଂଗମଂଚ' ମଧ୍ୟ ଏ ଅଞ୍ଚଳରେ ବୁଲି ଏବଂ ନାଟକ ମଞ୍ଚସ୍ଥ କରି ଏଠାରେ ଲୋକଙ୍କୁ ଏବଂ କଳାକାରମାନଙ୍କୁ ଚମତ୍କୃତ ଏବଂ ଉତ୍ସାହ ଯୋଗାଇବାକୁ ଲାଗିଲେ ।

ଗ୍ରାମେ ଗ୍ରାମେ ଓଡ଼ିଆରେ ଅପେରା ପାର୍ଟିମାନ ବିପୁଳ ସଂଖ୍ୟାରେ କ୍ରମେ ଗଢ଼ିଉଠିଲା । ସରବଣି ଗ୍ରାମରେ ଏକ ସମୟରେ ଏକ ପ୍ରସିଦ୍ଧ ଯାତ୍ରା ପାର୍ଟି ଗଢ଼ି ଉଠିଥିଲା । ଶ୍ରୀ ଦ୍ୱାରିକାନାଥ ଭଞ୍ଜ ଉକ୍ତ ପାର୍ଟିରେ ଜଣେ କୃତୀ କଳାକାର ଥାଇ ଅନ୍ୟାନ୍ୟ ଅନେକ ଯାତ୍ରା ଦଳରେ ନିର୍ଦ୍ଦେଶନା ଦେଉଥିଲେ । ଓଡ଼ିଆ ମିଉଜିକ୍, ଓଡ଼ିଆ ଭଜନ, ଚମ୍ପୁ,



Digitized by srujanika@gmail.com

ଓଡ଼ିଶୀ ଓ ଛାନ୍ଦ ଗୀତ ସହ ଓଡ଼ିଶୀ ନୃତ୍ୟ ଏ ଅଞ୍ଚଳରେ କ୍ରମେ ଜନପ୍ରିୟ ହୋଇ ଉଠିଲା । କଟକ, ବରହମପୁର, ଖୋର୍ଦ୍ଧା, ନଗେଶପୁର, ସାଗୁଅ, ତାରପୁର, ଉତ୍ତରକୂଳ, ମାଜପୁର, ଭଦ୍ରଖ, ଅଭଣା, ରାଢ଼ଙ୍ଗ, ଇଛାପୁର, ସାତଶଙ୍ଖ ଓ ତୁଳସୀ ଗଣନାଟ୍ୟ ପ୍ରଭୃତି ପାର୍ଟି ଓଡ଼ିଶାର ସ୍ୱନାମଧନ୍ୟ କୁଶଳୀ କଳାକାରମାନଙ୍କୁ ନେଇ ଗଠିତ ବିଖ୍ୟାତ ଅପେରା ଦଳମାନ ଆଜକୁ ପ୍ରାୟ ତିରିଶ ବର୍ଷ ଧରି ଅଞ୍ଚଳରେ ଆସି ଖୋଲା ମଇଦାନରେ ଅଭିନୟ ଦେଖାଇ ଆସୁଛନ୍ତି । ସେମାନଙ୍କର ଓଡ଼ିଆ ମ୍ୟୁଜିକ୍, ଡୁଏଟ୍ ଏବଂ ଓଡ଼ିଶୀ ନୃତ୍ୟ ଜନମନ ହରଣ କରିନିଏ । ଏହା ବ୍ୟତୀତ ଦାସକାଠିଆ, ଗୋଟିପୁଅ ନାଚ ଏବଂ ପାଲା ମଝିରେ ମଝିରେ ଆସି ବିଭିନ୍ନ ସ୍ୱରର ଗୀତ ମାଧ୍ୟମରେ ପୁରାଣ ଏବଂ ଶାସ୍ତ୍ର ଆଲୋଚନା କରିଥାନ୍ତି । ଯାହାଫଳରେ ଏଠାରେ ଲୋକସଂସ୍କୃତି ଉପରେ ବଂଗଳା ଭାଷାର ପ୍ରଭାବ ଏକାବେଳକେ ହ୍ରାସ ପାଇଗଲା ଏବଂ ଓଡ଼ିଆ ସଂସ୍କୃତି, ଭାଷା, ଗୀତ, ନୃତ୍ୟ ଏବଂ ନାଟ୍ୟକଳାର ପ୍ରଭାବ ଆଜି ସର୍ବତ୍ର ଦେଖାଦେଇଛି । ବଂଗଳା ନାଟକ ବର୍ତ୍ତମାନ ଭୋଗରାଇରେ ମଞ୍ଚସ୍ଥ କରିବାକୁ ଲୋକେ ଲଜ୍ଜାବୋଧ କରନ୍ତି । ବଂଗଳା ନାଟକର ଅନୁବାଦ ଆଉ ସେତେ ହେଉନାହିଁ । ଓଡ଼ିଶାର ଜଣେ ଶ୍ରେଷ୍ଠ ନାଟ୍ୟକାର ଶ୍ରୀ ରଘୁନାଥ ପଣ୍ଡାଙ୍କର ବିଭିନ୍ନ ରସର ଜନପ୍ରିୟ ନାଟକମାନ ଓଡ଼ିଶାର ଅପେରା ଦଳଗୁଡ଼ିକ ଆଗ୍ରହର ସହ ଅଭିନୟ କରି ଚାଲିଛନ୍ତି । ଶ୍ରୀ କାର୍ତ୍ତିକେଶ୍ୱର ପାତ୍ର, ଧନଞ୍ଜୟ ପାତ୍ର, ନିଶିକାନ୍ତ ମହାନ୍ତି, ପୂର୍ଣ୍ଣଚନ୍ଦ୍ର ଦତ୍ତ, ଭାଗବତ ଚନ୍ଦ୍ର ଦାସ, ରାଖାଲ ଚନ୍ଦ୍ର ପ୍ରଧାନ ଓ କେଦାର ନାଥ ଗୋସ୍ୱାମୀ ପ୍ରମୁଖ ନାଟ୍ୟକାରମାନଙ୍କର ରଚିତ ନାଟକମାନ ସଫଳତାର ସହ ଗ୍ରାମେଗ୍ରାମେ ଅଭିନୀତ ହେଉଛି ।

ଭୋଗରାଇର ବିଶିଷ୍ଟ ନାଟ୍ୟମୋଦୀମାନଙ୍କର ସହାୟତାରେ ହୁଡ଼ାପାଳ, ଚନ୍ଦନେଶ୍ୱର ଏବଂ କମର୍ଦ୍ଦାଠାରେ ଖ୍ୟାତନାମା କୁଶଳୀ କଳାକାର ସର୍ବଶ୍ରୀ ଗଂଗାଧର ପ୍ରଧାନ, ନିଆସୀ ଚନ୍ଦ, ଭବେନ୍ଦ୍ରନାଥ ପଟ୍ଟନାୟକ, ଭଗବାନ ଚନ୍ଦ୍ର ପାଳ, ଅରୁଣ ବେହେରା, କମଳ ଲୋଚନ ବେହେରା, ପଦ୍ମଲୋଚନ ଜେନା, ବଂଶୀଧର ଜେନା, ରମାନାଥ ମଲ୍ଲିକ ଏବଂ ଫଣୀଭୂଷଣ ପଣ୍ଡାଙ୍କ ମିଳିତ ଉଦ୍ୟମରେ ପ୍ରତିଷ୍ଠିତ ଅପେରା ଦଳ ଗଢ଼ାଯାଇ ଓଡ଼ିଶା, ବଂଗ ଏବଂ ବିହାର, ସର୍ବତ୍ର ବୁଲି ପ୍ରଭୂତ ଅର୍ଥ ଓ ଯଶ ଉପାର୍ଜନ କରିବାରେ ସମର୍ଥ ହୋଇ ପାରିଛନ୍ତି ।

ଶ୍ରୀ ଗଂଗାନାରାୟଣ ସେନାପତି ଓ ଶ୍ରୀ ଜଗବନ୍ଧୁ ସିଂହଙ୍କ ରଚିତ ବାବା ଚନ୍ଦନେଶ୍ୱରଙ୍କ ଚିତ୍ର ଅଞ୍ଚଳର ସବୁଠାରେ ଏକ ଜଣାଶୁଣା ଲୋକଗୀତିରେ ପରିଣତ ହୋଇଛି । ଏହା ବ୍ୟତୀତ ପଲ୍ଲୀକବି ଶ୍ରୀ ଚନ୍ଦ୍ରମୋହନ ଧଳ ଏବଂ ଶ୍ରୀ ବିଜୟ କୁମାର



Digitized by srujanika@gmail.com

ଦାସ ପ୍ରଭୃତିଙ୍କର ପ୍ରକାଶିତ ବିଭିନ୍ନ ଗୀତିକାବ୍ୟ ମାନ ଅଞ୍ଚଳରେ ବିଶେଷ ଜନପ୍ରିୟ ଏବଂ ଆଦୃତ ହୋଇଆସିଛି ।

ଓଡ଼ିଶୀ, ଚମ୍ପୁ, ଛାନ୍ଦ, ଜଗନ୍ନାଥ ଭଜନ, ଦାସକାଠିଆ, ପାଲାଗାଆଣ, ଗୋଟିପୁଅ ନାଚ ଓ ଗୀତ ଏବଂ ଓଡ଼ିଶୀ ନୃତ୍ୟର ରଚନା, ଛନ୍ଦ, ସ୍ୱର ସଂଯୋଜନା ଓ ଓଡ଼ିଶୀ ବାଦ୍ୟବୃନ୍ଦ, ଯେପରି ଓଡ଼ିଶାର ଏକାନ୍ତ ଆପଣାର ଏବଂ ନିଜସ୍ୱ ସୃଷ୍ଟି ଓ ଅନନ୍ୟ, ସେହିପରି କୀର୍ତ୍ତନ, ଶ୍ୟାମା ସଂଗୀତ, ରବୀନ୍ଦ୍ର ସଂଗୀତ, ବାଉଲ, ଭାଟିଆଲୀ, କଥକତା ତଥା ତର୍ଜ୍ଜା ଲଢ଼ାଇ ଆଦିର ରଚନା, ସ୍ୱର ସଂଯୋଜନା ଓ ଛନ୍ଦ ବଂଗଳାର ଏକାନ୍ତ ଆପଣାର ସୃଷ୍ଟି (Origin) ଏବଂ ଅନନ୍ୟ ।

ଶତାବ୍ଦୀର ତୃତୀୟ ଓ ଚତୁର୍ଥ ଦଶକ ମଧ୍ୟରେ ଭୋଗରାଇର ଜଣେ ଲବ୍ଧପ୍ରତିଷ୍ଠିତ ସଂଗୀତ ସ୍ୱରକାର ଏବଂ କଣ୍ଠଶିଳ୍ପୀ ରୂପେ ଶ୍ରୀ ରାଧାନାଥ ଶତପଥୀଙ୍କୁ ଏଠାରେ ସ୍ମରଣ ନକଲେ ଅଧ୍ୟାୟଟି ଅପୂର୍ଣ୍ଣ ରହିବ । ଏ ମହାଶୟଙ୍କ ଜନ୍ମ କଖଡ଼ା ଗ୍ରାମରେ ୧୯୩୦ ସାଲରେ, ଏକ ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରେ । ଗାନ୍ଧର୍ବ ବିଦ୍ୟାରେ ପିଲାକାଳରୁ ସେ ଜଣେ ସୁଦକ୍ଷ ଓ ପାରଙ୍ଗମ ବ୍ୟକ୍ତି ଥିଲେ । ତାଙ୍କର ଆଦ୍ୟ ଗୁରୁଥିଲେ ପ୍ରଥିତଯଶା ସଂଗୀତଜ୍ଞ ଓସ୍ତାଦ୍‌ଜୀ ଶ୍ରୀ ଆଦ୍ୟାଚରଣ ପଣ୍ଡା । ଶ୍ରୀ ଶତପଥୀଙ୍କ କଣ୍ଠରୁ ଓଡ଼ିଆ, ବଂଗଳା ଏବଂ ହିନ୍ଦୀରେ ଭଜନ, କୀର୍ତ୍ତନ, ଆଧୁନିକ, ଖେଆଲ ଠୁଙ୍ଗରୀ ଏବଂ ଧ୍ରୁପଦ ଆଦି ରାଗରାଗିଣୀ ଓ ସଂଗୀତ ଯେ ଥରେ ଶୁଣିଛି ସେ ମୁଗ୍ଧ ହୋଇଛି, କେବେ ଭୁଲିପାରି ନାହିଁ । ତାଙ୍କ ଜୀବନ ବସନ୍ତକାଳରେ କେତେକ ବର୍ଷ ମାତ୍ର ଓଡ଼ିଶା, ବଂଗଳାରେ ପ୍ରତିଷ୍ଠିତ ବିଭିନ୍ନ କଳାକେନ୍ଦ୍ର ଓ ରଂଗମଂଚମାନଙ୍କରେ ପ୍ରଖ୍ୟାତ ସ୍ୱର ଏବଂ କଣ୍ଠଶିଳ୍ପୀ ଭାବରେ ସେ ପ୍ରସିଦ୍ଧି ଲାଭ କରି ଯାଇଛନ୍ତି । ଏକାଧାରରେ ସେ ଜଣେ ଦକ୍ଷ ସଂଗୀତ ରଚକ, ସ୍ୱର ସଂଯୋଜକ, ଗାୟକ, ସଂଗୀତ ନିର୍ଦ୍ଦେଶକ ତଥା ସୁଅଭିନେତା ଥିଲେ । ଦୁର୍ଭାଗ୍ୟକ୍ରମେ ମାତ୍ର ୩୫ବର୍ଷ ବୟଃକ୍ରମ କାଳରେ ସେ ହଠାତ୍ ପାଗଳ ହୋଇଗଲେ ଏବଂ ଅକର୍ମଣ୍ୟ ଅବସ୍ଥାରେ ଅବହେଳିତ ହୋଇ ରହିଥିଲେ । ତାଙ୍କର ଅଭିଶପ୍ତ ପାଗଳାମୀ ସହିତ ଭୋଗରାଇର ସଂଗୀତ କଳା କ୍ଷେତ୍ରରେ ଏକ ଗୌରବମୟ ଅଧ୍ୟାୟର ଅବସାନ ଘଟିଛି । ୧୯୮୬ ମସିହା ସେପ୍ଟେମ୍ବର ମାସ ୧୪ ତାରିଖରେ ଶ୍ରୀ ଶତପଥୀଙ୍କର ଦେହାନ୍ତ ଘଟିଲା ।

ତାଙ୍କ ବ୍ୟତୀତ ଯନ୍ତ୍ର ସଂଗୀତରେ ଶ୍ରୀ ଫଣୀଭୂଷଣ ପଣ୍ଡା, ଜୀବନକୃଷ୍ଣ ମଣ୍ଡଳ ଏବଂ ସଂଗୀତ ଶିକ୍ଷା କ୍ଷେତ୍ରରେ ଶ୍ରୀ ବୃନ୍ଦାବନ ଦାସ ଅଧିକାରୀ, ଗୌରାଙ୍ଗ ସାମଲ, ସୁରେନ୍ଦ୍ର ମହାନ୍ତି, ବେଣୁଧର ପଟ୍ଟନାୟକ, ଘନଶ୍ୟାମ ଜେନା, ଭାସ୍କର ସାମଲ, ହାଡ଼ିବନ୍ଧୁ ଦାସ,



Digitized by srujanika@gmail.com

ପଞ୍ଚାନନ ଗିରି, ପ୍ରଫୁଲ୍ଲ ଗିରି, ପ୍ରଫୁଲ୍ଲ ସୁର, ଝାଡ଼େଶ୍ୱର ସେନାପତି, ରୋହିଣୀ ମହାନ୍ତି, ଅଯୋଧ୍ୟା ରାମ ମଣ୍ଡଳ ଏବଂ ବିଶେଷକରି ଶ୍ରୀ ଶ୍ରୀପତି ମହାନ୍ତି ପ୍ରମୁଖଙ୍କ ଅବଦାନ କିଛି କମ୍ ନୁହେଁ ।

ଓଡ଼ିଆ ସଂସ୍କୃତି, ଭାଷା-ସାହିତ୍ୟ, ସଂଗୀତ, ଲୋକଗୀତି ଓ ମଞ୍ଚ ନାଟ୍ୟକଳା ଆଦିର ବହୁଳ ପ୍ରସାର ଓ ପ୍ରଚାର ସତ୍ତ୍ୱେ ଭୋଗରାଇ ସୀମାନ୍ତବାସୀ ବିଳାସୀ କଳାପ୍ରେମୀମାନେ ପ୍ରଭୂତ ଅର୍ଥ ବ୍ୟୟ କରି ସୁଦୂର କଲିକତାରୁ ବିଖ୍ୟାତ ଅପେରା ଦଳମାନଙ୍କୁ ଅନେକ ସମୟରେ ଆଣି ବଂଗଳା ନାଟ୍ୟାଭିନୟ ଦେଖି ଅବସର ବିନୋଦନ କରିବାର ଲୋଭ ଏଯାଏ ଛାଡ଼ି ପାରିନାହାନ୍ତି ।





Digitized by srujanika@gmail.com

# ବୈଷ୍ଣବୀୟ ଧର୍ମଚେତନା

ପରମ ପ୍ରେମମୟ ଅବତାର ଶ୍ରୀ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ଆଦର୍ଶ ଏବଂ ବୈଷ୍ଣବ ଧର୍ମର ପ୍ରଚାରର ସୌଭାଗ୍ୟ ମହାପ୍ରଭୁଙ୍କର ଆଦେଶ କ୍ରମେ ଉତ୍ତର ବାଲେଶ୍ୱର ତଥା ଭୋଗରାଇ ଅଞ୍ଚଳରେ ଘଟିଥିବାର ଜଣାଯାଏ । ମହାପ୍ରଭୁଙ୍କର ତିରୋଧାନ ପରେ, ସପ୍ତଦଶ ଶତାବ୍ଦୀ ଅନ୍ତେ, ଶ୍ରୀ ଆନନ୍ଦ ବଲ୍ଲଭ ଗୋସ୍ୱାମୀ ଉକ୍ତ ମହାରାଜ ସଂକୀର୍ତ୍ତନ ଦଳ ସହ ସର୍ବପ୍ରଥମେ ଉତ୍ତର ବାଲେଶ୍ୱରର ଗ୍ରାମାଞ୍ଚଳରେ ପ୍ରବେଶ କରିଥିଲେ ବୋଲି ଇତିହାସରୁ ପ୍ରମାଣ ମିଳେ । ଇତିହାସ ଅନୁଧାନ କଲେ ଆହୁରି ଜଣାଯାଏ ଯେ, ସେ ସମୟରେ ଓଡ଼ିଶାର ରାଜା ଶ୍ରୀ ପୁରୁଷୋତ୍ତମ ଦେବ ଗୁପ୍ତସା ନିକଟବର୍ତ୍ତୀ ଗଡ଼ପଦା ଅଞ୍ଚଳରେ ଶ୍ରୀ ସର୍ବେଶ୍ୱର ଭଞ୍ଜ ନାମକ ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ ପୂଜାପାଠ ଏବଂ ଧର୍ମାଚରଣ କରିବା ସକାଶେ ପ୍ରାୟ ପନ୍ଦରଶହ ମାଣ ଭୂମି ଦାନ କରି ବସତି କରାଇଥିଲେ । କାଳକ୍ରମେ ଉକ୍ତ ଭଞ୍ଜ ବଂଶ ଭୂମ୍ୟଧିକାରୀ ଥାଇ ଭୂୟାଁ ନାମରେ ପରିଚିତ ଥିଲେ । ମୋଗଲ ବାଦସାହା ଔରଙ୍ଗଜେବଙ୍କ କାଳରେ ମୁସଲମାନ ଅଧିକୃତ ଓଡ଼ିଶା ଅଂଶର ସୁବେଦାର ଅହମ୍ମଦ ବେଗ୍ ତତ୍କାଳୀନ ଭୂୟାଁ ବଂଶର ବଂଶଧର ଶ୍ରୀ ସର୍ବେଶ୍ୱର ଭଞ୍ଜଙ୍କୁ ଇସଲାମ ଧର୍ମଗ୍ରହଣ ନକଲେ ଜମିଦାରୀ ଉଚ୍ଛେଦର ଧମକ ଦେଇ ତାଙ୍କୁ ଧର୍ମାନ୍ତର କରାଇଥିବାର ଉଲ୍ଲେଖ ରହିଛି । ଏହିପରି ଭାବରେ ଗଡ଼ପଦାର ହିନ୍ଦୁ ଜମିଦାର ଭୂୟାଁ ବଂଶ ବ୍ରାହ୍ମଣରୁ ଏବର ମୁସଲମାନ ପାଲଟିଥିଲେ । ଏବଂ ଇସଲାମ ଧର୍ମର ପ୍ରଭାବ କ୍ରମେ ସମଗ୍ର ଅଞ୍ଚଳରେ ବିସ୍ତାରଲାଭ କରିବାକୁ ଯାଆନ୍ତେ, ଠିକଣା ସମୟରେ ଶ୍ରୀମାନ ମହାପ୍ରଭୁଙ୍କ ପ୍ରେରିତ ଶ୍ରୀ ଆନନ୍ଦବଲ୍ଲଭ ଗୋସ୍ୱାମୀଙ୍କ ସଂକୀର୍ତ୍ତନ ଦଳ ଗ୍ରାମେଗ୍ରାମେ ବୁଲି ହିନ୍ଦୁ-ବୈଷ୍ଣବ ଧର୍ମର ଆଦର୍ଶ ପ୍ରଚାର ଆରମ୍ଭ କରିଥିଲେ । ଏହି ପ୍ରଚାରକ ଦଳର ଗଭୀର ନିଷ୍ଠା ଏବଂ ଅଧ୍ୟବସାୟ ବଳରେ ସମଗ୍ର ଉତ୍ତର ବାଲେଶ୍ୱର ଇସଲାମ ଧର୍ମ କବଳରୁ ରକ୍ଷା ପାଇ ପାରିଥିଲା ଏବଂ ସମସ୍ତେ ପବିତ୍ର ପ୍ରେମମୟ ବୈଷ୍ଣବ ଧର୍ମରେ ଆକୃଷ୍ଟ ହୋଇଥିଲେ । ଏଣୁ, ଏହି ଅଞ୍ଚଳରେ ବ୍ରାହ୍ମଣମାନଙ୍କ ଦ୍ୱାରା ହିନ୍ଦୁ ଦେବଦେବୀମାନଙ୍କର ପୂଜା ଅର୍ଚ୍ଚନା ସହିତ ବୈଷ୍ଣବ ସଂପ୍ରଦାୟ ଦ୍ୱାରା ଶ୍ରୀମାନ ମହାପ୍ରଭୁଙ୍କ ପ୍ରଚାରିତ ନାମଯଜ୍ଞ, ଅନ୍ନଯଜ୍ଞ ଏବଂ ହରିନାମ ସଂକୀର୍ତ୍ତନ ଆଦି ବହୁଳ ଭାବରେ ପ୍ରଚାରିତ ହେବାର ଦେଖାଯାଏ । ସମାଜର ସବୁ ଶ୍ରେଣୀର ହିନ୍ଦୁ ବୈଷ୍ଣବ ଧର୍ମ ଗ୍ରହଣ କରିବାରେ କୌଣସି ବାଧା ବା ଅସୁବିଧା



Digitized by srujanika@gmail.com

ନଥିଲା କି ନାହିଁ । ଏପରିକି ହିନ୍ଦୁ ସମାଜର ତଳ ସ୍ତରର ପତିତ ଶ୍ରେଣୀର ଲୋକଙ୍କୁ ମଧ ପବିତ୍ର ପ୍ରେମପ୍ଲୁତ ବୈଷ୍ଣବ ଧର୍ମ ଦୀକ୍ଷାଦେଇ ଏକାକାର ଏବଂ ଏକାସନ କରାଯାଇ ପାରିଥିଲା । 'ବାରଜାତି, ତେର ଗୋଲା, ବୈଷ୍ଣବ ହେଲେ ସବୁ ଗଲା' ଏହି ପ୍ରଚଳିତ ପ୍ରବଚନର ସତ୍ୟତା ଏବଂ ଯଥାର୍ଥତା ଆଜି ବୈଷ୍ଣବ ସମାଜରେ ପ୍ରତ୍ୟକ୍ଷ ଭାବରେ ବେଶ୍ ଦେଖିବାକୁ ମିଳେ । ମହାପ୍ରଭୁଙ୍କର ପ୍ରଚାରିତ 'ହରେକୃଷ୍ଣ ହରେରାମ' ନାମର ବନ୍ୟାରେ ହିନ୍ଦୁଧର୍ମର ଭିନ୍ନଭିନ୍ନ ଜାତ୍ୟଭିମାନ ବୁଡ଼ି ଭାସିଗଲା । ଅସ୍ପୃଶ୍ୟତା ଈଶ୍ୱର ଏବଂ ମାନବତା ପ୍ରତି ଏକ ଅପରାଧ । ପତିତ ଉଦ୍ଧାରଣ ଶ୍ରୀ ଗୌରହରିଙ୍କର ବୈଷ୍ଣବ ଧର୍ମ ପ୍ରଭାବ ବିସ୍ତାର ହେତୁ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ମେଦିନୀପୁର, ଉତ୍ତର ବାଲେଶ୍ୱର ତଥା ଭୋଗରାଇ ଅଞ୍ଚଳରେ ଅସ୍ପୃଶ୍ୟ ଶ୍ରେଣୀର ଲୋକଙ୍କ ପ୍ରତି ଉଚ୍ଚବର୍ଣ୍ଣର ହିନ୍ଦୁମାନଙ୍କର ସାଧାରଣ ଭାବରେ ସେତେ ବୈର ବା ଘୃଣା ଭାବ ଦେଖାଯାଏ ନାହିଁ ।

ସେହିଦିନଠାରୁ ବୈଷ୍ଣବ ଧର୍ମରେ ଦୀକ୍ଷିତ ଏବଂ ଅନୁପ୍ରାଣିତ ଲୋକ ଅଞ୍ଚଳର ସବୁ ଗ୍ରାମରେ ଶାନ୍ତି, ପ୍ରେମ ଓ ଭ୍ରାତୃପୂର୍ଣ୍ଣ ବାତାବରଣ ମଧରେ ବସବାସ କରି ଆସିଛନ୍ତି ଏବଂ ହରିନାମ ଜପ, ଭଜନ, ମନନ, ଚିନ୍ତନ ଓ କୀର୍ତ୍ତନ ସହ ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଦାରୁ ବିଗ୍ରହମାନ ସ୍ଥାନେସ୍ଥାନେ ମଠ, ମନ୍ଦିର ଓ ମାହାଲ ଆଦିରେ ପ୍ରତିଷ୍ଠା କରି ସେବା, ମେଳା ଓ ମହୋତ୍ସବ ଆଦି ପାଳନ ମାଧମରେ ପବିତ୍ର ଜୀବନଯାପନ କରି ଚାଲିଛନ୍ତି ।

କଥିତ ଅଛି, ପରବର୍ତ୍ତୀ କାଳରେ ଶ୍ରୀ ଆନନ୍ଦ ବଲ୍ଲଭ ଗୋସ୍ୱାମୀଙ୍କର ଉତ୍ତର ପୁରୁଷ ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଭୋଗରାଇ, ରାଧାନଗରୀ ଏବଂ ଗୋପୀବଲ୍ଲଭପୁର ପ୍ରଭୃତି ସ୍ଥାନରେ ଯେଉଁ ମଠମାନ ସ୍ଥାପନ କରିଥିଲେ, ସେଗୁଡ଼ିକ ବୈଷ୍ଣବ ଧର୍ମ ପ୍ରଚାର ଏବଂ ଦୀକ୍ଷା କ୍ଷେତ୍ରରେ ପୀଠ ରୂପେ ଖ୍ୟାତି ଲାଭ କରଛି । ଏମାନେ ଶ୍ୟାମାନନ୍ଦୀ ସଂପ୍ରଦାୟର ବୈଷ୍ଣବ ବୋଲାଇଥାନ୍ତି ।

ସେହିଦିନଠାରୁ ଶିବପୂଜା, ବିଭିନ୍ନ ଦେବଦେବୀ ପୂଜା, ଲକ୍ଷ୍ମୀନାରାୟଣ ଓ ରାଧାକୃଷ୍ଣଙ୍କର ଜୟନ୍ତୀ ଉତ୍ସବ, ପୁରାଣମତେ ପାଳନ ସହିତ ବୈଷ୍ଣବୀୟ ଢଂଗରେ ମେଳା ମହୋତ୍ସବର ଅନୁଷ୍ଠାନ ଏବଂ ଭଗବାନ ଶ୍ରୀକୃଷ୍ଣ ଓ ଶ୍ରୀମନ ମହାପ୍ରଭୁଙ୍କର ଲୀଳା କୀର୍ତ୍ତନ ପାଲା ଗ୍ରାମେଗ୍ରାମେ ଲାଗିରହିଛି । ସର୍ବଶ୍ରୀ କୃଷ୍ଣଦାସ କବିରାଜ, ଗୋବିନ୍ଦ ଦାସ ଓ ନରୋତ୍ତମ ଦାସ ଆଦି ବଂଗୀୟ ବୈଷ୍ଣବପଦ କର୍ତ୍ତା ଓ କବିମାନଙ୍କର ରଚିତ ଏବଂ ଗୀତ, ରସାନନ୍ଦ ନାମାମୃତ - ସଂକୀର୍ତ୍ତନର ମୂର୍ଚ୍ଛନାରେ ଅଞ୍ଚଳର ଗଗନ ପବନ ଏବଂ ଲକ୍ଷଲକ୍ଷ ପ୍ରାଣ ସଦାସର୍ବଦା ଆମୋଦିତ ଏବଂ ମୁଖରିତ ହୋଇ ଉଠୁଛି ।





Digitized by srujanika@gmail.com

# ଆର୍ଥନୀତିକ ବ୍ୟବସ୍ଥା ଓ ଅଗ୍ରଗତି

ଧାନ ଏବଂ ପାନ, ଭୋଗରାଇର ଦୁଇ ପ୍ରଧାନ ଉତ୍ପନ୍ନ ଫସଲ । ଏହାଛଡ଼ା ନଡ଼ିଆ, କାଜୁବାଦାମ, ଚିନାବାଦାମ, ଖଡ଼ି, ଇକଡ଼ ଓ ମସିଣାକାଠି ପ୍ରଭୃତି ମଧ ଜାତ ହୁଏ । ଭୋଗରାଇ ଉପକୂଳ-ସମୁଦ୍ରରୁ ବର୍ଷସାରା ଲୁଣି ମାଛ ମରାଯାଏ । ଏହିସବୁ ଉତ୍ପାଦନ ଦ୍ୱାରା ଭୋଗରାଇ ମୂଳତଃ ତାର ଆର୍ଥିକ ମେରୁଦଣ୍ଡ ସୁଦୀର୍ଘ କାଳରୁ ଗଢ଼ି ଆସିଅଛି । ଉତ୍ତର ଭୋଗରାଇର କେତେକାଂଶରେ ଯେଉଁ ପରିମାଣରେ ଖଡ଼ି ଏବଂ ଇକଡ଼ ଚାଷ ହୁଏ, ତାହା ସମଗ୍ର ଭୋଗରାଇର ପାନବରଜ ଗଢ଼ିବାରେ ଚାହିଦା ମେଣ୍ଟାଇଥାଏ । ଏବେ ଏହି ଖଡ଼ି, ଇକଡ଼ ଏ ଅଞ୍ଚଳର ଅନ୍ୟ ଏକ ଅର୍ଥକରୀ ଫସଲ ଭାବରେ ଛିଡ଼ା ହୋଇପାରିଛି । ଭୋଗରାଇର ଅର୍ଥନୀତି ଗଠନରେ ଏହି ଖଡ଼ି, ଇକଡ଼ ଆମଦାନୀର ଅବଦାନ ମଧ କମ୍ ନୁହେଁ ।

**ଧାନଚାଷ :**

ସମଗ୍ର ଭୋଗରାଇର ଭୂମିର ପରିମାଣ ପ୍ରାୟେ ସାଢ଼େ ତେତ୍ରିଶ ହଜାର ହେକ୍ଟର, ଅର୍ଥାତ୍ ଅଠାଅଶୀ ହଜାର ଏକର ହେବ । ସେଥି ମଧରୁ ଭୂଆବନ୍ଧର ଉତ୍ତରପଟ ମୁକ୍ତ ଅଞ୍ଚଳର ଚାଷଜମି ପ୍ରାୟ ତେତ୍ରିଶ ହଜାର ଏକର ଏବଂ ସୁରକ୍ଷିତ ଦକ୍ଷିଣ ଭୋଗରାଇରେ ପ୍ରାୟ କୋଡ଼ିଏ ହଜାର ଏକର ପରିମିତ ଅଟେ । ଦକ୍ଷିଣ ଭୋଗରାଇର ବାଲିଆଡ଼ିଆର ରକବା ନଅ ବା ଦଶ ହଜାର ଏକରରୁ କମ୍ ନୁହେଁ । କେବଳ ଭୋଗରାଇ ପାହିର ଚାଷଜମିର ପରିମାଣ ଦଶହଜାର ଏକର ଯାଏ ହେବ । ଏହିପରି ପ୍ରାୟ ଷାଠିଏ ହଜାର ଏକର ଚାଷୋପଯୋଗୀ ଭୂମିରେ ଲଗାତାର ବନ୍ୟାବିପତ୍ତି ଏବଂ ଜଳ ନିଷ୍କାସନର ନାନା ଅସୁବିଧା ସତ୍ତ୍ୱେ ବର୍ଷାକାଳୀନ ଆଉସ ଧାନ ଅମଳ ହୋଇଆସୁଛି । ଉଭୟପଟର ଚାଷଜମିର ମାନ ଉର୍ବର ହୋଇଥିବାରୁ ଧାନଚାଷ ପାଇଁ ତାହା ଉତ୍କୃଷ୍ଟ । ରବିଋତୁରେ ଦକ୍ଷିଣ ଭୋଗରାଇର କେତେକାଂଶ ଏବଂ ଉତ୍ତରାଂଶର ନଦୀକୂଳ ଅଞ୍ଚଳରେ, ଗହମ, ଆଶୁଧାନ, ଝୋଟ, ଛଣ, ଚିନାବାଦାମ, ସୋରିଷ, ମୁଗ ଏବଂ ମସୁର ଡାଲି ଓ ପନିପରିବା ଆଦି ମଧ ଉତ୍ପନ୍ନ ହୋଇଥାଏ । ଖରା ଋତୁରେ



Digitized by srujanika@gmail.com

ଉତ୍ତର ଭୋଗରାଇର ପ୍ରାୟ ଅର୍ଦ୍ଧାଧିକ ପରିମାଣ ଚାଷଭୂମିରେ ବିଶେଷକରି ଧୂଆ ଅଞ୍ଚଳରେ ଗଭୀର ଏବଂ ଅଗଭୀର ନଳକୂପ ସାହାଯ୍ୟରେ ଅଧିକ ଅମଳକ୍ଷମ ଧାନଚାଷ କିଛି ବର୍ଷ ହେବ କରାଯାଇ ପାରୁଛି । ଖାଦ୍ୟରେ ସନିର୍ଭର ହୋଇ ନଥିଲେ ମଧ୍ୟ ସାରା ବର୍ଷର ଉତ୍ପନ୍ନ ଧାନ, ଭୋଗରାଇର ବିପୁଳ ଜନତାକୁ ତାର ପ୍ରଧାନ ଖାଦ୍ୟ ଭାତ, ପ୍ରାୟ ଯୋଗାଇଥାଏ ।

ଉତ୍ତର ଭୋଗରାଇର ଜନସଂଖ୍ୟା ଦକ୍ଷିଣ ଭୋଗରାଇର ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ହୋଇଥିବାରୁ ସେଠାକାର ଚାଷୀମାନେ ଉତ୍ପନ୍ନ ବଳକା ଧାନ ଏବଂ ଖଡ଼ି, ଇକଡ଼, ଦକ୍ଷିଣ ଭୋଗରାଇର ଲୋକଙ୍କୁ ବିକ୍ରୟ କରି ମୁଖ୍ୟତଃ ଜୀବିକା ନିର୍ବାହ କରିଥାଆନ୍ତି ।

**ପାନଚାଷ :**

ଦେଖିବାକୁ ଗଲେ, ଭୂଆବନ୍ଧର ଉଭୟ ପଟର ସ୍ଥଳଭୂମିର ପରିମାଣ ପରସ୍ପର ପ୍ରାୟ ସମାନ ହେବ । ଦକ୍ଷିଣ ଭୋଗରାଇର ଜନସଂଖ୍ୟା ତୁଳନାରେ ତାର ଚାଷଜମିର ପରିମାଣ ଯଥେଷ୍ଟ ଊଣା । ଏ ଅଞ୍ଚଳର ପ୍ରଧାନ ଅର୍ଥକରୀ ଫସଲ ହେଉଛି ପାନ । ପ୍ରାୟ ଦଶହଜାର ଏକର ବିସ୍ତୃତ ବାଲିଆଡ଼ିଆ, ପଡ଼ିଆ ବା ଅନାବାଦି ପଡ଼ି ରହିନାହିଁ । ଶତଶତ ବର୍ଷ ପୂର୍ବରୁ ଏଠାର ଅଧିବାସୀମାନେ ସ୍ତୂପାକାର ବାଲିଆଡ଼ିଆକୁ ସମତଳ କରି ସେଥିରୁ କାଜୁବାଦାମ ସହ ପାନ ଉତ୍ପାଦନ କରି ଆସୁଛନ୍ତି । ପାନ ଏକ ଅଭିନବ ଏବଂ ସୁକୁମାର କୃଷି ଅଟେ । ଏହି ଏକକ କୃଷିକୁ କେନ୍ଦ୍ରକରି ଏକ ବହୁମୁଖୀ କୃଷି ବ୍ୟବସାୟ ଅଞ୍ଚଳବ୍ୟାପୀ ଗଢ଼ି ଉଠିଛି । ଏହି କୃଷି ଏବଂ କୃଷିଜାତ ବ୍ୟବସାୟ ସହ ବହୁ ଜନବଳ ଏବଂ ଆବଶ୍ୟକୀୟ ଦ୍ରବ୍ୟ ଏବଂ ଯନ୍ତ୍ରମାନ ଯୁକ୍ତ ଏବଂ ସଦାସର୍ବଦା ବ୍ୟବହୃତ ହୋଇଥାଏ । ବାଉଁଶ, ଖଡ଼ି, ଇକଡ଼, ଦଉଡ଼ି, ଯୁଣ, ପାଣିବୁହା କଳ ଏଥି ମଧ୍ୟରୁ ପ୍ରଧାନ । ପାନ ଗଛର ସାର ଭାବରେ ଏଠାର ପାନ ବରଜିଆମାନେ ସାଧାରଣତଃ ସୋରିଷପିଡ଼ିଆ ଓ ଗୋବର ଖତ ବ୍ୟବହାର କରିଥାନ୍ତି । ଏଥିପାଇଁ ପ୍ରତିବର୍ଷ ପ୍ରଚୁର ପରିମାଣରେ ବାଉଁଶ ଏବଂ ଖଡ଼ି, ଇକଡ଼ ଆବଶ୍ୟକ ହୋଇଥାଏ । ଏଣୁ ସ୍ଥାନୀୟ ଗ୍ରାମବାସୀମାନଙ୍କର ବାଉଁଶ ଓ ଖଡ଼ି, ଇକଡ଼ ଏକ ଲାଭଜନକ ଉତ୍ପନ୍ନ ଫସଲ ଅଟେ । ପାନଘର ବା ପାନ ବରଜ ଗଢ଼ିବା, ପାନ ଗଛ ପୋତିବା, ସାର, ମାଟି ଓ ପାଣି ନିୟମିତ ଦେବା, ପାନ ଭାଂଗିବା ଏବଂ ପାନ ଗଛତଳକୁ ଓହ୍ଲାଇବା, ପାନ ବରଜ



Digitized by srujanika@gmail.com

ଛାଇବା ଆଦି ପରିଚର୍ଯ୍ୟା କାମରେ ଯଥେଷ୍ଟ ସମୟ, ଶ୍ରମ ଓ ଜନବଳ ଦରକାର ହୁଏ । ବାଉଁଶ ଏବଂ ଖଡ଼ି, ଇକଡ଼ର ବ୍ୟବହାର ଏଥିରେ ସର୍ବାଧିକ । ଏବେ ସ୍ଥାନେସ୍ଥାନେ ଲୁହାଟ୍ୟୁବ୍ ଏବଂ ବଣ ବାଉଁଶ ବ୍ୟବହାର କରାଯାଉଥିବାର ମଧ ଶୁଣାଯାଏ । ପାନଗଛରୁ ସାବଧାନତାର ସହ ପାନପତ୍ର ଭାଂଗି ତାକୁ ଦେଶ ବିଦେଶର ବଜାରକୁ ପଠାଇବା ଯାଏ ବାଉଁଶପତ୍ରରେ ପ୍ରସ୍ତୁତ ଏକପ୍ରକାର ଝୁଡ଼ି, ଟୋକେଇ ତଥା ପାଛିଆର ପ୍ରୟୋଜନ ହୁଏ । ଏହି ବାଉଁଶ କାମ କରି ଏଠାର ଏକ ଶ୍ରେଣୀର ଲୋକେ ଖାସ ପୋଷି ହେଉଛନ୍ତି । ପାନ ବରଜ ବସାଇବା, ପାନ ଗଛର ପରିଚର୍ଯ୍ୟା ଏବଂ ପାନପତ୍ରକୁ ଭାଂଗି ଉତ୍ତମ ରୂପେ ନାଛି, ଡେମ୍ଫ କାଟି, ପାଣିରେ ଧୋଇ, ଝୁଡ଼ି ବା ଟୁକୁରୀରେ ସଜାଇ ପୂରାଇବା ପର୍ଯ୍ୟନ୍ତ କାର୍ଯ୍ୟସବୁ ଯିଏ ଠିକ୍ ଭାବେ ନ ଜାଣିଛି, ସିଏ କରିପାରିବ ନାହିଁ । ଏଣୁ ଏଠାରେ ଲୋକମାନେ ଏ ଦିଗରେ କୁଶଳୀ କାରିଗର ଅଟନ୍ତି ।

ପୂର୍ବେ ଏ ଅଞ୍ଚଳରେ ବାସ କରୁଥିବା ବାରୋଇ ବଙ୍ଗାଳି ନାମକ ଏକ ଶ୍ରେଣୀର ଲୋକ କେବଳ ଏହି ପାନ ଉତ୍ପାଦନ କରୁଥିଲେ । ସେମାନଙ୍କର ସଂଖ୍ୟା ମଧ ଅତି ଅଳ୍ପ ଥିଲା କିନ୍ତୁ କ୍ରମେ ସ୍ୱଳ୍ପ ପରିମିତ ଭୂମିରୁ ଉତ୍ପନ୍ନ ଏହି ପାନ ଫସଲରୁ ଯଥେଷ୍ଟ ଆୟ ଓ ଲାଭ ଦେଖାଦେବାରୁ ଅଞ୍ଚଳର ସର୍ବାଧିକ ସଂଖ୍ୟକ ଲୋକ ଏହି ପାନଚାଷ ସହ ଏବେ ବ୍ୟସ୍ତ ରହୁଥିବାର ପରିଲକ୍ଷିତ ହୁଏ । ପାନବରଜ ପ୍ରତିଷ୍ଠା ସକାଶେ ଅଧିକ ପରିମାଣ ଭୂମିର ଆବଶ୍ୟକତା ନାହିଁ । ସାମାନ୍ୟ ପାଞ୍ଚରୁ ପଚିଶ ଡିସିମିଲ୍ ଭୂମିରୁ ପାନ ଚାଷ କରି ଗୋଟିଏ ମଧମ ଧରଣର ପରିବାର ଆଜିକାଲି ବେଶ୍ ପୋଷି ହୋଇ ପାରୁଛନ୍ତି । ଭୋଗରାଇର ସମୁଦ୍ର ବାଲି ସୁନାପାଲଟି ଯାଇଛି ।

ପାନଚାଷ ପାଇଁ ଭୋଗରାଇର ଜୟରାମପୁର, ନିମାତପୁର, ବାରବାଟିଆ, ଜଳସୁହୁରିଆ, ବୀରକୂଳ, ସୁହୁରିଆ, ନରସିଂହପୁର, ଗମ୍ଭାରିଆ, ତେଘରୀ, ନସରାବାଜ, ମନ୍ଦାରସାହି ଓ ଭୋଗରାଇ ଆଦି ମାହାଲ ବିଶେଷ ଭାବେ ପରିଚିତ । ଏହି ମାହାଲ ଗୁଡ଼ିକରୁ ଉତ୍ପନ୍ନ ପାନପତ୍ରର ଗୁଣ ଓ ଜୀବନୀଶକ୍ତି ଅନନ୍ୟ ।

ପଚାଶ ଗୋଟି ପାନପତ୍ରକୁ ତଳ ଓର ଲମ୍ୱ କରି ସଜାଇ ଗୋଛା କରି ରଖାଯାଏ । ଏହି ପାନ ଗୋଛାକୁ କଡ଼ାଏ ପାନ ବୋଲି ଗଣାଯାଏ । ଏହିପରି ଅଶୀକଡ଼ା (ଚାରିହଜାର) ପାନ ହେଲେ, ଏକପଣ ପାନ ହୁଏ । ସମୁଦ୍ର କୂଳର ଜଳବାୟୁ ସାଧାରଣତଃ ଭଲଜାତିର ପାନଚାଷ ପାଇଁ ବିଶେଷ ଉପଯୋଗୀ ଅଟେ ।



Digitized by srujanika@gmail.com

ଓଡ଼ିଶାରେ ବିଭିନ୍ନ କିସମର ପାନ ଚାଷ କରାଯାଏ । ପୁରୀ, ଗଞ୍ଜାମ ଏବଂ ଦକ୍ଷିଣ ଉପକୂଳ ତାମିଲନାଡୁ, ଆନ୍ଧ୍ର ଆଦି ରାଜ୍ୟରେ ଏକ ପ୍ରକାର ଅଣଓସାରିଆ ନାତି ଲମ୍ବ ପାନ ଜାତ ହୁଏ । ତାକୁ ଛାଞ୍ଚିପାନ ବୋଲି କୁହାଯାଏ । ଦକ୍ଷିଣ ଭାରତ ଉପକୂଳରେ ସାରିସାରି ଶାଖାହୀନ ଗଛମୂଳରେ ପାନଗଛ ମାନ ରୋପଣ କରାଯାଇ ଗଛରେ ମଡ଼ାଇ ଚାଷ କରାଯାଏ । ଆମ ଭୋଗରାଇ, ବାଲିଆପାଳ ଓ ରାମନଗର ଆଦି ଅଞ୍ଚଳରେ ଯେଉଁ ପାନ ଚାଷ କରାଯାଏ, ସେସବୁ ପାନ ଉତ୍ତର ଏବଂ ପଶ୍ଚିମ ଭାରତରେ ବିଶେଷ ଭାବେ ପ୍ରଚଳିତ ଏବଂ ଆଦୃତ ହୋଇଆସିଛି । ଏହା ଏକ ବିଶେଷ ଜାତିର ପାନ । ଏହି ପାନ 'ବୀରକୁଳି' ପାନ ନାମରେ ଅଭିହିତ । କେବଳ ମାଟି ଓ ସ୍ଥାନ ଭେଦରେ ପାନର ରଂଗ, ସ୍ୱାଦ ଏବଂ ଜୀବନୀଶକ୍ତି ଆଦି ବିଚାରରେ ଫରକ ରହିଛି । ବାଲିପାନ ଅପେକ୍ଷା କଳା ଦୋରସା ବା ଅଠିଲା ମାଟିରୁ ଜାତ ପାନର ମାନ ନ୍ୟୁନ ଅଟେ । ତାର ମୂଲ୍ୟ ମଧ୍ୟ ବାଲିପାନ ତୁଳନାରେ ନିମ୍ନ । ଏହି ପାନ ଅପେକ୍ଷାକୃତ ଅଧିକ କଳା ଏବଂ ପାଟିକୁ ବହଳିଆ ଏବଂ ଝାଞ୍ଜୁଆ ଲାଗେ । ଏଗୁଡ଼ିକ ଆଶୁପତନଶୀଳ । ଏପ୍ରକାର ପାନଚାଷ ସକାଶେ ଖରଚ ଅନେକ ପରିମାଣରେ ଊଣା ହୋଇଥାଏ ।

**ପାନ ବ୍ୟବସାୟ :**

କେବଳ ପାନ ଉତ୍ପନ୍ନ କରି ଅଞ୍ଚଳର ଲୋକେ କ୍ଷାନ୍ତ ନୁହଁନ୍ତି । ତାକୁ ସୁବିନ୍ୟସ୍ତ କରି ବାହାର ରାଜ୍ୟମାନଙ୍କୁ ରପ୍ତାନୀ କରିବା ଦିଗରେ ବହେ ବେପାରୀ ମଧ୍ୟ ନିଜନିଜ ମଧ୍ୟରୁ ସୃଷ୍ଟି ହେଲେଣି । ପୂର୍ବେ ଯେତେବେଳେ ରାସ୍ତାଘାଟର ସୁବିଧା ନଥିଲା, ବାଲି ଏବଂ କାଦୁଅରେ ଚାଲିଚାଲି ପାଦ ଥକି ଯାଉଥିଲା, ସେତେବେଳେ ପାନଚାଷୀମାନେ ଜଳେଶ୍ୱର ବଜାରରେ ପାନ ଅଡ଼ତ ଖୋଲିଥିବା ଉତ୍ତରପ୍ରଦେଶର ମାତ୍ର କେତେଜଣ ପାନ ବ୍ୟବସାୟୀଙ୍କ ନିକଟକୁ ମୁଣ୍ଡରେ ପାନବୋଝ ବୋହିନେଇ ବିକୁଥିଲେ ଏବଂ ଦେଉଳା ହାଟରୁ ବ୍ୟବସାୟୀମାନେ ଗୋରୁଗାଡ଼ି ଯୋଗେ ପାନ ବୋହିନେଇ ରେଳ ଯୋଗେ ଚାଲାଣ କରୁଥିଲେ । ଅବଶ୍ୟ ସେତେବେଳେ ପାନଚାଷର ସେଭଳି ପ୍ରସାର ନଥିଲା କି ଆମଦାନି ମଧ୍ୟ ନଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ରାସ୍ତାଘାଟର ଉନ୍ନତି ବିଧାନ ସହିତ ପାନର ମଧ୍ୟ ବ୍ୟବହାର ଦେଶ ତମାମ ଦେଖାଦେଲା । ଫଳରେ ପାନଚାଷର ବହୁଳ ପ୍ରସାର, ସର୍ବତ୍ର ଲୋକଙ୍କ ଦୃଷ୍ଟିକୁ ଆକୃଷ୍ଟ କଲା । ଏବେ କେବଳ ଭୋଗରାଇରେ ଯେଉଁ ପରିମାଣ ପାନ ଉତ୍ପନ୍ନ ହେଉଛି, ତାର ମୂଲ୍ୟ ସପ୍ତାହକେ ୫କୋଟି



Digitized by srujanika@gmail.com

ଟଙ୍କାରୁ କମ୍ ନୁହେଁ । ରପ୍ତାନି ଉପଯୋଗୀ ପାନ ବିକାକିଣା କରିବାପାଇଁ ନୂଆଗାଁ ଠାରେ ଏକ ସ୍ୱତନ୍ତ୍ର ପାନ ମାର୍କେଟ ଖୋଲାଯାଇଛି । ଏଠାରେ ସପ୍ତାହରେ ଦୁଇଥର ପାନ ବଜାର ବସେ, ଅନ୍ତର୍ବର୍ତ୍ତୀ ହାଟ ମାନଙ୍କରୁ ମଧ ପାନ ସଂଗ୍ରହ କରାଯାଏ । କେହିକେହି ବ୍ୟବସାୟୀ ସ୍ୱକୀୟ ବାସଭବନରେ ମଧ ପାନ ଅଡ଼ତମାନ ଖୋଲିଥାନ୍ତି । ଭୋଗରାଇର ସମସ୍ତ ପାନ ଚାଷୀ ଏବଂ ବେପାରୀମାନେ ଏହି ପାନ ଅଡ଼ତିଆମାନଙ୍କୁ ସେମାନଙ୍କର ପାନ ବିକ୍ରୟ କରିଥାନ୍ତି । ଏହି ଅଡ଼ତିଆ ବା ବ୍ୟବସାୟୀମାନେ ପ୍ରାୟ ସମସ୍ତେ ସ୍ଥାନୀୟ ଲୋକ । ସେମାନେ ସୁଦୂର ଟାଟାନଗର, କୋଲକାତା, ନାଗପୁର, ବନାରସ ଏବଂ ମୁମ୍ବାଇ ଆଦି ସହରକୁ ପାନକୁ ଟ୍ରକ୍ ବା ଟ୍ରେନ୍ ଯୋଗେ ପଠାଇଥାନ୍ତି । ଏମାନଙ୍କ ମଧ୍ୟରୁ ଅନେକେ ମଧ ଉକ୍ତ ସହରମାନଙ୍କରେ ପାନ ଅଡ଼ତମାନ ଖୋଲି ବସିଛନ୍ତି ।

ପାନ ଏକ ପଚନଶୀଳ ଫସଲ ହେଲେ ମଧ ଭୋଗରାଇର ବୀରକୁଳି ପାନର ଚାହିଦା ଦେଶରେ ସର୍ବାଧିକ । କାରଣ ବୀରକୁଳି ପାନର ରଂଗ ଏବଂ ସ୍ୱାଦୁ ଆଖି ଓ ମୁଖରୋଚକ ଏବଂ ମାସାବଧିକାଳ ନ ପଚି ସେହିପରି ତଟକା ରହିପାରେ । ଏହି ପାନଚାଷ ଏବଂ ବ୍ୟବସାୟ ସହ ଏଠାର ଅଧିକାଂଶ ଜନତା ଓତଃପ୍ରୋତଃ ଭାବେ ସଂପୃକ୍ତ ଏବଂ ବିଶେଷ ଭାବରେ ଯୁକ୍ତ ଏବଂ ଉପକୃତ । ଏହି ଦରଦାମ୍, ବେକାରୀ ଏବଂ ଜନ୍ମହାର ବୃଦ୍ଧି ଯୁଗରେ 'ପାନ' ଭୋଗରାଇବାସୀଙ୍କୁ ସବୁମନ୍ତେ ସହାୟତା ଯୋଗାଇ ଆସିଛି । କୋଟିକୋଟି ଟଙ୍କା ଭୋଗରାଇ ମାଟିକୁ ବହିଃରାଜ୍ୟ ମାନଙ୍କରୁ ମାସକୁ ମାସ ବୋହି ଆସୁଛି । ପାନଚାଷୀ ବା ବ୍ୟବସାୟୀମାନେ ସବୁଦିନେ ପରମୁଖାପେକ୍ଷୀ ନୁହଁନ୍ତି । ଏମାନଙ୍କ ମଧ୍ୟରୁ ଅନେକେ ଆଉ ଚାଳଘରେ ରହୁନାହାନ୍ତି କି କ୍ରମବର୍ଦ୍ଧମାନ ଦରଦାମକୁ ଖାତର କରୁନାହାନ୍ତି । ସେମାନଙ୍କର ଜୀବନ-ଧାରଣର ମାନ ଉନ୍ନତ ।

ଏବେ ଏହି ପାନ ଚାଷର ଉନ୍ନତି ଓ ପ୍ରସାର ପାଇଁ ଆର୍ଥିକ ସହାୟତା ସକାଶେ ସ୍ଥାନୀୟ ଜାତୀୟ ବ୍ୟାଙ୍କମାନ ନିଃସମ୍ବଳ ଚାଷୀଙ୍କୁ ସ୍ୱଳ୍ପ ହାର ସୁଧରେ ଋଣ ଲଗାଣ କରାଯାଉଛି, ପ୍ରୋକ୍ତ କାରଣମାନଙ୍କ ହେତୁ, ଭୋଗରାଇର ଅର୍ଥନୀତିକ ପ୍ରଗତି କ୍ଷେତ୍ରରେ ପାନ ଫସଲର ଅବଦାନ ସର୍ବପ୍ରଧାନ ଏବଂ ସର୍ବାଧିକ ହୋଇଉଠିଛି । ରୋଗ-ବୈରାଗ ଏବଂ ପ୍ରାକୃତିକ ଦୁର୍ଯୋଗ ହିଁ କେବଳ ଏହି ପାନଚାଷର ପ୍ରଧାନ ଶତ୍ରୁ ।



Digitized by srujanika@gmail.com

ପାନଘର ବା ପାନବରଜକୁ ଲୋକେ କାଳୀମାଆଙ୍କ ମନ୍ଦିର ସଦୃଶ ଜ୍ଞାନ କରନ୍ତି । ଏଣୁ ପାନବରଜ ବା ପାନ ବ୍ୟବସାୟର ଯାବତୀୟ କାର୍ଯ୍ୟରେ ଯଥାସମ୍ଭବ ପବିତ୍ରତା ସମସ୍ତେ ରକ୍ଷାକରି ଚାଲନ୍ତି । ପାନ ହିଁ ଭୋଗରାଇ ଅର୍ଥନୀତିର ପ୍ରାଣକେନ୍ଦ୍ର କହିଲେ ଅତ୍ୟୁକ୍ତି ହେବନାହିଁ ।

**ଖଡ଼ି-ଇକଡ଼ (ବେଣା ଓ ଯୁଣ) :**

ପାନବରଜ ଛାଇବା ଏବଂ ତାଟିମାନ ବାନ୍ଧି ଆକଟ କରିବା ପାଇଁ ଇକଡ଼ ଏବଂ ବେଣାର ବିଶେଷ ପ୍ରୟୋଜନ ହୁଏ । (ଏହି କାମରେ କଞ୍ଚାନଡ଼ିଆ ବରଡ଼ା ଏବଂ ଖଜୁରୀ ପିଛା ମଧ୍ୟ ବ୍ୟବହୃତ ହୋଇଥାଏ) । ପାନଗଛକୁ ମଡ଼ାଇ ସିଧାକରି ଉପରକୁ ତୋଳିବା ସକାଶେ ପ୍ରତି ପାନଗଛ ମୂଳରେ ଖଡ଼ିପୋତି, ପାନଲତାକୁ ଯୁଣ ସହାୟତାରେ ବାନ୍ଧି, ଖଡ଼ି ଦିହରେ ଲଟକାଇ ସାରିସାରି କରି ଛିଡ଼ା କରାଯାଏ । ଏହି ଖଡ଼ି, ଇକଡ଼, ବେଣା ଓ ଯୁଣ ଭିନ୍ନଭିନ୍ନ ପ୍ରକାର ଘାସ ଅଟେ । ଏଗୁଡ଼ିକ ଯଥେଷ୍ଟ ସାବଧାନତା ସହ ଚାଷ କରାଯାଏ । ପୂର୍ବେ ବନ୍ୟାକବଳିତ ଧୋଇଆ ଅଞ୍ଚଳରେ ଧାନ ହୋଇ ପାରୁନଥିବାରୁ, କେବଳ ଏହି ଚାଷ ହୋଇଥାଏ । କିନ୍ତୁ ବର୍ତ୍ତମାନ ପାନଚାଷର ବହୁଳ ପ୍ରସାର ସଂଗେସଂଗେ ଏହି ଖଡ଼ି, ଇକଡ଼, ବେଣା ଓ ଯୁଣ ଚାଷର ବ୍ୟାପକ ପ୍ରସାର ଉତ୍ତର ଭୋଗରାଇର ଚିତେଇ ନଦୀ ଅବବାହିକାରେ ବିଶେଷ ଭାବେ ଦେଖାଯାଏ । ଏହି ଚାଷ ପାଇଁ ଅବଶ୍ୟ ପଟୁମାଟି ଏବଂ ପଙ୍କମାଟିର ଆବଶ୍ୟକ ହୋଇଥାଏ । ବଳକା ଖଡ଼ି, ଇକଡ଼ ଓ ବେଣା ଘାସ, ବାଲିଆପାଳ, ରାମନଗର, ଏଗ୍ରା, ମୋହନପୁର ଏବଂ ପଟାସପୁର ପ୍ରଭୃତି ଅଞ୍ଚଳକୁ ଭୋଗରାଇରୁ ରପ୍ତାନି କରାଯାଏ ।

**ଲୁଣି ମାଛ :** ଭୋଗରାଇ ସମୁଦ୍ର କୂଳବର୍ତ୍ତୀ ବେଶ୍ କିଛି ସଂଖ୍ୟକ ଲୋକ ଗଭୀର ଏବଂ ଅଗଭୀର ସମୁଦ୍ରରୁ ନୌକା ଏବଂ ମୋଟର ଲଞ୍ଚ ସାହାଯ୍ୟରେ ମାଛ ମାରି କୋଲକାତାକୁ ଚାଲାଣ କରିଥାନ୍ତି । ଏହି ମତ୍ସ୍ୟଜୀବୀମାନେ ଅନେକେ ସରକାରୀ ଏବଂ ବେସରକାରୀ ବିଭିନ୍ନ ସୂତ୍ରରୁ ବୋଟ ଏବଂ ଜାଲ ପାଇଁ ଋଣ ପାଇ ପାରୁଛନ୍ତି । ସମୁଦ୍ରରୁ ମାଛ ମାରିବା ଏବଂ ରପ୍ତାନୀ କରିବା ସେମାନଙ୍କର ପ୍ରଧାନ ଜୀବିକା । ଏବେ ଭିନ୍ନ ଜାତି ଓ ଶ୍ରେଣୀର ସମୁଦ୍ର କୂଳବର୍ତ୍ତୀ ଗ୍ରାମମାନଙ୍କର କିଛି ସଂଖ୍ୟକ ଲୋକ ଏହି କାମରେ ନିଜକୁ ନିୟୋଜିତ କରି ରୋଜଗାରକ୍ଷମ ହୋଇ ଉଠିଛନ୍ତି । ଏହି ମାଛମରା ବ୍ୟବସାୟ



Digitized by srujanika@gmail.com

ମାଧ୍ୟମରେ ବେଶ୍‌କିଛି ପରିମାଣ ଅର୍ଥ ମଧ୍ୟ ଭୋଗରାଇ ଭିତରକୁ ପ୍ରବେଶ କରୁଥିବାର ଲକ୍ଷ୍ୟ କରାଯାଏ ।

**କାଜୁବାଦାମ ଓ ନଡ଼ିଆ :** ଭୋଗରାଇର କ୍ରମ ବର୍ଦ୍ଧମାନ ଲୋକସଂଖ୍ୟା ଚାପରେ ସ୍ଥାନାଭାବ ଦେଖାଦେଇଥିବାରୁ ଭୋଗରାଇ ଅଞ୍ଚଳରେ ପୁରୀ, ଗୋପ ଏବଂ ସାକ୍ଷୀଗୋପାଳ ଭଳି ନଡ଼ିଆ ବଗିଚାମାନ ଦେଖାଯାଏ ନାହିଁ । ଜନବସତି ଶୂନ୍ୟ ବିସ୍ତୀର୍ଣ୍ଣ ପ୍ରାନ୍ତର ଅଭାବ ହେତୁ ଏଠାର ଅଧିକାଂଶ ଲୋକେ ଅଧିକାଂଶ ସ୍ଥଳେ ବାଧହୋଇ ଘରଡିହ ଓ ବାରି ଚାରିପଟେ ନଡ଼ିଆଗଛମାନ ଲଗାଇଥାନ୍ତି ।

ପାନବରଜ ପତା ଏବଂ ପତିତ ବାଲିଆଡ଼ିଆରେ କାଜୁବାଦାମ ଗଛ ଚାଷ କରାଯାଏ । ସମୁଦ୍ରରୁ ଲବଣାକ୍ତ ଜଳବାୟୁ, ଏହି ଦୁଇ ଚାଷ ସକାଶେ ଏକାନ୍ତ ଉପଯୋଗୀ ଅଟେ । ସେଥିପାଇଁ ସମୁଦ୍ର ତଟବର୍ତ୍ତୀ ଅଞ୍ଚଳଠାରୁ ଅପେକ୍ଷାକୃତ ଦୂରବର୍ତ୍ତୀ ଅଞ୍ଚଳରେ ନଡ଼ିଆ ଏବଂ କାଜୁବାଦାମ ଫଳ ସେତେ ଦେଖାଯାଏ ନାହିଁ । ନଡ଼ିଆ, ପଇଡ଼ ଓ କାଜୁବାଦାମ ବିନିମୟରେ ଲୋକେ ଅର୍ଥ ମଧ୍ୟ ଉପାର୍ଜନ କରିଥାନ୍ତି । ପୂର୍ବେ ଗୋଟିଏ ନଡ଼ିଆଗଛରୁ ଆୟ ମାଣେ ଜମିର ଆୟ ସହ ସମାନ ଥିଲା । ଅଣଚାଶର ଝଡ଼ ତୋଫାନରେ ସେସବୁ ଗଛ ଭାଂଗି ନଷ୍ଟ ହୋଇଯାଇଛି । ଏବେ ଉନ୍ନତ କିସମର ନଡ଼ିଆ ଚାରା ରୋପଣ ସକାଶେ, ଭୋଗରାଇରେ ଏକ ନଡ଼ିଆଚାରା ଉତ୍ପାଦନ ନାରସାରୀ ୧୯୫୯ଠାରୁ ପ୍ରତିଷ୍ଠା କରାଯାଇଛି ଏବଂ ନଡ଼ିଆ ଚାରା ସୁଲଭ ମୂଲ୍ୟରେ ଯୋଗାଇ ଦିଆଯାଉଛି । ଏସବୁ ସାକ୍ଷୀଗୋପାଳ ଏବଂ କେରଳୀ ଜାତିର ନଡ଼ିଆ ଅଟେ ।

ଭୋଗରାଇର ସାମଗ୍ରିକ ଅର୍ଥନୀତିକୁ ସାହାଯ୍ୟ ଓ ସବଳ କରିବା ପାଇଁ ସେପରି କିଛି ଶିଳ୍ପ କାରଖାନା ବା ବ୍ୟବସାୟ କେନ୍ଦ୍ର ଏଯାଏ ଏଠାରେ ପ୍ରତିଷ୍ଠା ହୋଇନାହିଁ । ରାଜ୍ୟ ଶିଳ୍ପ ବିଭାଗ ଏ ଦିଗରେ ସଂପୂର୍ଣ୍ଣ ଉଦାସୀନ ହୋଇ ରହିଗଲେ । ଉତ୍ପନ୍ନ କଞ୍ଚାମାଲ, ନଡ଼ିଆକତା, କାଜୁବାଦାମ, କୁଟା, ମସିଣାକାଠିର ସଠିକ୍ ବ୍ୟବହାର ଅଞ୍ଚଳ ମଧ୍ୟରେ ହୋଇନପାରି ବାହାରକୁ ପଠାଯାଉଛି ଏବଂ ସେଗୁଡ଼ିକ ସେମାନଙ୍କ କାମରେ ବେଶ୍ ଆସିପାରୁଛି । କିନ୍ତୁ ଆମ ନଡ଼ିଆକତାରେ ଅଧିକ ପରିମାଣରେ ଧୂଳି ରହୁଥିବାରୁ ଏବଂ ଆମ କାଜୁବାଦାମର ଆକାର ଖର୍ବ ହୋଇଥିବାରୁ, ଶିଳ୍ପାନୁଷ୍ଠାନ ଗଢ଼ିବା ଲାଭଜନକ ହେବନାହିଁ କହି ସେମାନେ ନିଶ୍ଚିନ୍ତ । ଏପ୍ରକାର ମନ୍ତବ୍ୟ ଆମପକ୍ଷେ ସେମାନଙ୍କର



Digitized by srujanika@gmail.com

ବୈମାତ୍ରେୟ ଭାବ ସଦୃଶ ଜଣାଯାଏ । ଆମପାଇଁ ଏ ଦିଗରେ ସରକାରଙ୍କର ଆନ୍ତରିକତାର ଅଭାବ, ଦୁର୍ଭାଗ୍ୟକ୍ରମେ ଆରମ୍ଭରୁ ଲକ୍ଷ୍ୟ କରାଯାଇଛି ।

ସେ କାରଣରୁ ଏହି ଆୟକ୍ଷମ ସ୍ଥାନୀୟ କୃଷିକୁ କେବଳ କେନ୍ଦ୍ରକରି ଜୀବନର ଚଲାପଥରେ ଏକା ଏକା ଆଗେଇ ଯାଉଥିବାବେଳେ ଭୋଗରାଇବାସୀ ଅବଶ୍ୟ ବିଭିନ୍ନ ସମୟରେ ସରକାରୀ ଋଣ ଓ ଆର୍ଥିକ ସାହାଯ୍ୟ ସାମୟିକ ଭାବେ ପାଇଛନ୍ତି । ଶିକ୍ଷା ଏବଂ ଗମନାଗମନ ସୁବିଧାର ଉନ୍ନତି ଏବଂ ପ୍ରସାର ମଧ୍ୟ ଏ ଅଞ୍ଚଳର ଲୋକମାନଙ୍କ ମନରେ ଅନେକାଂଶରେ ବଳ ଏବଂ ସାହସ ଆଣିଦେଇଛି, ଏକଥା ଅସ୍ୱୀକାର କରିହେବନାହିଁ । କଟକ, ଭୁବନେଶ୍ୱର, ଏପରିକି ବାଲେଶ୍ୱର କିମ୍ୱା ତାର ଆଖପାଖ ଅଞ୍ଚଳ ପରି ଯଦି ଭୋଗରାଇ ଉପରେ ସରକାରଙ୍କର ସୁଦୃଷ୍ଟି ପଡ଼ିଥାନ୍ତା, ତେବେ ଭୋଗରାଇ ପୁଅ ତାର ନିଜସ୍ୱ ବିଦ୍ୟାବୁଦ୍ଧି ବଳରେ ଆର୍ଥନୀତିକ ପ୍ରଗତି କ୍ଷେତ୍ରରେ ରୋମାଞ୍ଚକର ଅଗ୍ରଗତି ଦେଖାଇବାକୁ ସମର୍ଥ ହୋଇ ପାରିଥାନ୍ତା ।

**ପ୍ରତିରକ୍ଷା ଏବଂ ଭୋଗରାଇ :**

ବିଂଶ ଶତାବ୍ଦୀ କାଳରେ ଜାତୀୟ ମୁକ୍ତିସଂଗ୍ରାମରେ ପୁରୁଷ ପୁରୁଷ ଧରି ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଭୋଗରାଇର ବୀର ସନ୍ତାନମାନଙ୍କର ଚରମ ଆତ୍ମତ୍ୟାଗ ଓ ବଳିଦାନ ଚିର ସ୍ମରଣୀୟ ହୋଇ ରହିଛି । ଘୋର ଦୁର୍ଭିକ୍ଷ ଦ୍ୱାରରେ ବସି ମଧ୍ୟ ଭୋଗରାଇର ଶତସହସ୍ର ପ୍ରାଣ ଯେତେବେଳେ ଅନ୍ନ ବିନା ପୋକମାଛି ପରି ରାସ୍ତାକଡ଼ରେ ଟଳି ପଡୁଥିଲେ, ସେମାନଙ୍କର କଙ୍କାଳ ଜାଗିଉଠି ଦେଶମାତାର ଶୃଙ୍ଖଳଛିନ୍ନ କରିବାପାଇଁ ଦୁର୍ବାର ଗତିରେ ଆଗେଇ ଯାଇଛି । ଉତ୍କଳର ବୀରକୁଳର ଉପଯୁକ୍ତ ବଂଶଧର ରୂପେ ସେମାନେ ସଂକଟ ପରେ ସଂକଟ ପାରିହୋଇ ଜାତୀୟ ମୁକ୍ତିସଂଗ୍ରାମରେ ସ୍ରୋତ ବଢ଼ାଇ ଦ୍ରୁତତର କରିବାରେ ଭୋଗରାଇର ଅଦମ୍ୟ ଓ ଆପ୍ରାଣ ପ୍ରଚେଷ୍ଟା କିଛି କମ୍ ନୁହେଁ ।

ଦେଶ ବିଦେଶୀ କବଳରୁ ମୁକ୍ତ ହେଲା । ଦେଶକୁ ନିର୍ଭର ଏବଂ ଏକାନ୍ତ ଆପଣାର କରି ଗଢ଼ିବାର ଦୁର୍ବାର ସଂଗ୍ରାମ ସର୍ବତ୍ର ଚାଲିଛି । ଭୋଗରାଇ ମାଟିକୁ ନୂତନ ରୂପରେଖ ଦେବାରେ ଆକାଂକ୍ଷା ସେମାନଙ୍କର ପ୍ରବଳ । ସରକାରୀ ପ୍ରଚେଷ୍ଟା ଯାହା ହେଉନା କାହିଁକି, ସ୍ୱାଧୀନ ଦେଶର ନାଗରିକ ଭାବେ ସେମାନଙ୍କର ବ୍ୟକ୍ତିଗତ ଓ ସମଷ୍ଟିଗତ ଉଦ୍ୟମ ବନ୍ଦନୀୟ ଏବଂ ଅଭିନନ୍ଦନୀୟ । ଅଧୁନା କାଳର କୁପ୍ରଭାବକୁ ଏଡ଼ି ଏହିପରି ଏକ ସୁନେଲି ସ୍ୱପ୍ନ ନିଜ ମାଟିମା'କୁ କେନ୍ଦ୍ରକରି ଦେଖୁଥିବାବେଳେ



Digitized by srujanika@gmail.com

ହଠାତ୍ ଏକ କ୍ଷେପଣାସ୍ତ୍ର ପରୀକ୍ଷା ଘାଟି ନିଜ ବୁକୁ ଉପରେ ପ୍ରତିଷ୍ଠାର ଜାତୀୟ ପରିକଳ୍ପନା ବିଷୟ ଏଠାରେ ଜନମାନସକୁ ବିଶେଷ ଶଙ୍କିତ ଏବଂ ଉଦ୍‌ବେଳିତ କରି ପକାଇଥିଲା । ଏ ଦିଗରେ ବିକଳ୍ପ ପ୍ରସ୍ତାବ ଗୁଡ଼ିକର ସଯତ୍ନ ଯାଞ୍ଚପରେ ସର୍ବଶେଷରେ ବାଲେଶ୍ୱରରୁ ଉପଗ୍ରହ ପ୍ରେରଣ ଲାଗି 'ଜାତୀୟ ଟେଷ୍ଟ ରେଞ୍ଜ ଘାଟି' ପ୍ରତିବେଶୀ ବାଲିଆପାଳ ଉପକୂଳରେ ନିର୍ମାଣ କରିବାର ସରକାରୀ ସିଦ୍ଧାନ୍ତ ଘୋଷଣା ହେଲା । ଏତଦ୍ ଅଞ୍ଚଳର ଭୌଗୋଳିକ ଅବସ୍ଥିତି ହିଁ ଏଥିପାଇଁ ଉପଯୁକ୍ତ ବୋଲି କୁହାଗଲା । ଭୋଗରାଇ ଉପକୂଳ ଅଞ୍ଚଳ ମଧ ଏହି ଟେଷ୍ଟରେଞ୍ଜ ପରିସରରେ ଆସୁଥିଲା । ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ନିର୍ବିବାଦରେ ଏହାକୁ ମାନିନେବାକୁ ଅନୁରୋଧ କରାଗଲା । ଏହାଫଳରେ ଲୋକଙ୍କର ଯେଉଁ ଦୁଃଖ, ଦୁର୍ଦ୍ଦଶା ଉପୁଜିବ ସେସବୁର ମୋଚନ ପାଇଁ ସବୁପ୍ରକାର ଉଦ୍ୟମର ଆଶ୍ୱାସନା ମଧ ଦିଆଗଲା ।

ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ନିର୍ମାଣ ପାଇଁ ୧୯୭୮ ମସିହାରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଶ୍ରୀ ଜଗଜ୍ଜୀବନ ରାମ ସେତେବେଳେ ପ୍ରତିରକ୍ଷା ମନ୍ତ୍ରୀ ଥିଲେ । ଶ୍ରୀ ରାମ ସେତେବେଳେ ମନ୍ତବ୍ୟ ଦେଇ କହିଥିଲେ ଯେ, ରାଷ୍ଟ୍ରର ସ୍ୱାର୍ଥରକ୍ଷା ଲାଗି ଯଦି କେତେକ ଲୋକଙ୍କୁ ବାସଚ୍ୟୁତ କରାଯାଏ, ତେବେ ତାହାକୁ ସହ୍ୟ କରିବାକୁ ପଡ଼ିବ । ବାସଚ୍ୟୁତ ଲୋକଙ୍କୁ ଉପଯୁକ୍ତ ଭାବେ ଥଇଥାନ ସକାଶେ ସର୍ବପ୍ରକାର ବ୍ୟବସ୍ଥା କରାଯିବ । ବିଶେଷଜ୍ଞ କମିଟି ଅନ୍ୟ ପ୍ରସ୍ତାବିତ ସ୍ଥାନମାନଙ୍କୁ ନାକଚ କରିଛନ୍ତି । ସେତେବେଳେ ଜନତାଦଳର ଶ୍ରୀ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ଥିଲେ ଏବଂ ଶ୍ରୀ ଚରଣ ସିଂ ମଧ ମନ୍ତ୍ରୀ ଥିଲେ ।

ସୁନ୍ଦରବନ ଅଞ୍ଚଳରେ ବୈଦ୍ୟୁତିକ ଯନ୍ତ୍ରପାତି ଠିକ୍ ଭାବେ କାର୍ଯ୍ୟ କରିପାରିବ ନାହିଁ । ଏଠାରେ ପ୍ରଚୁର ପରିମାଣରେ ପ୍ରାକୃତିକ ବାଷ୍ପ ଏବଂ ତୈଳ ଥିବାର ଅନୁମାନ କରାଯାଏ । ରେଳ ସଂଯୋଗ ମଧ ଏ ଅଞ୍ଚଳ ସହ ନାହିଁ । କନ୍ୟାକୁମାରୀ ଅଞ୍ଚଳରେ ଯଥେଷ୍ଟ ପରିମାଣର ଉପକୂଳ ନାହିଁ । ତେଣୁ ବୈଦ୍ୟୁତିକ ଯନ୍ତ୍ର ସାହାଯ୍ୟରେ କ୍ଷେପଣାସ୍ତ୍ରର ଗତି ମାପିବା ସମ୍ଭବ ହେବନାହିଁ । ସାତଭାୟା ଅଞ୍ଚଳରେ ଉକ୍ତ ଘାଟି ପ୍ରତିଷ୍ଠା କରିବା ଲାଗି ଯଥେଷ୍ଟ ସ୍ଥାନ ନାହିଁ । କ୍ଷେପଣାସ୍ତ୍ର ଏଠାରେ ଛଡ଼ାଗଲେ ତାହା ପାରାଦ୍ୱୀପ ବନ୍ଦରକୁ ଯେଉଁ ଜାହାଜମାନ ଆସୁଛି, ସେଥିପ୍ରତି ବିପଦ ସୃଷ୍ଟି ହେବାର ସମ୍ଭାବନା ଅଛି । ଆଣ୍ଡାମାନ-ନିକୋବର ଦୀପପୁଞ୍ଜରେ ସବୁବେଳେ ମେଘୁଆ ପାଗ ।



Digitized by srujanika@gmail.com

ତେଣୁ ବୈଦ୍ୟୁତିକ ଯନ୍ତ ସାହାଯ୍ୟରେ କ୍ଷେପଣାସ୍ତ୍ରର ଗତିବିଧି ନିୟନ୍ତ୍ରଣ କରିହେବ ନାହିଁ ଏବଂ ଏଠାରେ ଘାଟି ନିର୍ମାଣ କରିବାକୁ ଗଲେ ଅନେକ ଅର୍ଥ ବ୍ୟୟ ହେବ ଏବଂ ପରିବେଶ ଉପରେ ଯଥେଷ୍ଟ କୁପ୍ରଭାବ ପଡ଼ିବ । ଦ୍ୱାରକା ଅଞ୍ଚଳରେ ଉକ୍ତ ଘାଟି ନିର୍ମାଣ ନିରାପତ୍ତା ଦୃଷ୍ଟିରୁ କରାଯାଇ ପାରିବ ନାହିଁ । ତେଣୁ ବାଲିଆପାଳରେ ଉକ୍ତ ଘାଟି ନିର୍ମାଣ ପାଇଁ ନିଷ୍ପତ୍ତି ନିଆଗଲା । ସରକାର ନିଷ୍ପତ୍ତି ନେଲେ ବାଲିଆପାଳର ୧୭ହଜାର ଏକର ଏବଂ ଭୋଗରାଇର ୯ହଜାର ଏକର ଜମି ଦଖଲ କରାଯିବ । ଭୋଗରାଇକୁ ନିରାପତ୍ତା ଅଞ୍ଚଳ ଭାବେ ରଖାଯିବ । ଏସବୁ ଅଞ୍ଚଳରେ ଶତକଡ଼ା ୪୮ଭାଗ ଜମି ସରକାରଙ୍କର । ବାସଚ୍ୟୁତ ଲୋକଙ୍କର ପୁନର୍ବାସ ସକାଶେ ସମ୍ଭାବ୍ୟ ସର୍ବପ୍ରକାର ବ୍ୟବସ୍ଥା ଗ୍ରହଣ କରାଯିବ । ମାତ୍ର ସଂପୃକ୍ତ ଆମ ସମସ୍ତଙ୍କ ପକ୍ଷେ ଏହି ପ୍ରତିରକ୍ଷା ଘାଟି ଏକ ମାନବିକ ସମସ୍ୟା ରୂପେ ଦେଖାଦେଲା । ପ୍ରତିରକ୍ଷା କ୍ଷେତ୍ରରେ ଏସିଆ ମହାଦେଶର କ୍ଷେପଣାସ୍ତ୍ର ଘାଟି ଭାବରେ ଏହି ପ୍ରକଳ୍ପ ସର୍ବ ବୃହତ୍ତମ ବୋଲି କୁହାଗଲା । ୧୯୭୮ଠାରୁ ଆଧୁନିକ ସମର ବିଶାରଦ ଓ ବିଶେଷଜ୍ଞ କମିଟି ଦ୍ୱାରା ପରୀକ୍ଷା ନିରୀକ୍ଷା କରାଯିବା ପରେ ସରକାର ଏଥିସହ ସମ୍ମତ ହେଲେ । ଏବଂ ଏହି ଜାତୀୟ ଟେଷ୍ଟରେଞ୍ଜ ପ୍ରତିଷ୍ଠା ପାଇଁ ଆବଶ୍ୟକ ଭୂମିର ମାପ, ଭୂମି ଅଧିଗ୍ରହଣ, କ୍ଷତିପୂରଣ ଦାନ ଉପଦ୍ରୁତ ଜନତା ଅପସାରଣ ଏବଂ ସେମାନଙ୍କର ଥଇଥାନ ଓ ପୁନର୍ବାସ ଆଦିର ଦାୟିତ୍ୱ ରାଜ୍ୟ ସରକାରର ଗ୍ରହଣ କଲେ । । କିନ୍ତୁ ଯେଉଁ ହଜାର ହଜାର ଗ୍ରାମବାସୀ, ଏହି ଜାତୀୟ ପ୍ରକଳ୍ପ ଦ୍ୱାରା ଭୂମିବାସ ଓ ସର୍ବସ୍ୱଚ୍ୟୁତ ହେବେ ସେମାନଙ୍କର ଇଚ୍ଛା, ଅନିଚ୍ଛା ଦିଗରେ କେହି ଦୃଷ୍ଟିଦେଲେ ନାହିଁ । ସରକାର ଆମର ବିଦେଶୀ ନୁହେଁ, ସଂପୂର୍ଣ୍ଣ ସ୍ୱଦେଶୀ ଏବଂ ଏହା ଏକ ଜନମତ ଏବଂ ଗଣତନ୍ତ୍ର ସରକାର । ଜାତୀୟ ସ୍ୱାର୍ଥ ଯେତେ ବୃହତ୍ ହେଲେ ମଧ୍ୟ କ୍ଷୁଦ୍ର ଆଞ୍ଚଳିକ ସ୍ୱାର୍ଥ ପ୍ରତି ଗଣତନ୍ତ୍ର ସରକାରର ସମ୍ମାନବୋଧ ଏବଂ ଆସ୍ଥା ରହିବା ଉଚିତ । ଗଣତନ୍ତ୍ର ସରକାର ଅମଳରେ ଜୋର ଜବରଦସ୍ତି, ଅଶାନ୍ତି ବା ନିପୀଡ଼ନର ସ୍ଥାନ ନାହିଁ । ଏହି ବିବଦମାନ ସ୍ଥାନ ନିରୂପଣ ସକାଶେ ରାଜ୍ୟ ନେତୃମଣ୍ଡଳୀ ଏବଂ ସମର ବିଶାରଦ, ବୈଜ୍ଞାନିକ ତଥା ବିଶେଷଜ୍ଞ କମିଟି ମଧ୍ୟରେ ପ୍ରଥମରୁ କଥାବାର୍ତ୍ତା ହେବା ଜରୁରୀ ଥିଲା । ଦେଶର ଅବସ୍ଥା ଯୁଦ୍ଧ ବା ଜରୁରୀକାଳୀନ ହୋଇଥିଲେ ଭିନ୍ନ ପନ୍ଥା ଥିଲା । ଆଞ୍ଚଳିକ ଜନମତକୁ ଅପେକ୍ଷା ନକରି ଆପଣାର ଶକ୍ତି ଏବଂ ଗର୍ବଗୌରବ ଉପରେ ଭରସା କରି ଆମର ନେତୃବୃନ୍ଦ ଏବଂ ସରକାର ଆଗେଇ ଆସିଲେ । ଦୁର୍ଭାଗ୍ୟକ୍ରମେ ରାଜ୍ୟର ବୃହତ୍ତମ ରାଜନୀତିକ ଦଳ କଂଗ୍ରେସ ଏ କ୍ଷେତ୍ରରେ ପ୍ରାରମ୍ଭରୁ



Digitized by srujanika@gmail.com

ମୌନଭାବ ଅବଲମ୍ବନ କଲେ । ପରସ୍ପର ମଧ୍ୟରେ ବୁଝାମଣା ଏବଂ ବିଚାରର ସୁଯୋଗ ହେଲାରେ ଏବଂ ଅକାରଣରେ ହରାଇ ଦିଆଗଲା ।

ଏ ପ୍ରକାର ଅବିମୃଶ୍ୟକାରିତା ଏବଂ ବ୍ୟର୍ଥତା ଯୋଗୁଁ କଂଗ୍ରେସ ସଂଗଠନ ଏବଂ ସରକାର, ଆପଣା ଲୋକଙ୍କର ବିଶ୍ୱାସ ହରାଇ ବସିଲେ । ଏଭଳି ଏକ ଦୟନୀୟ ବା ଅଭାବନୀୟ ପରିସ୍ଥିତି କାହାରି କାମ୍ୟ ନଥିଲା । ଜାଣିଶୁଣି ଅକଳ ଓ ଚିନ୍ତାହୀନ ଭାବରେ ଏକ ଶାନ୍ତିପୂର୍ଣ୍ଣ ସ୍ଥିତାବସ୍ଥାକୁ ସଂଗୀନ ଏବଂ ସଂକଟାପନ୍ନ କରାଗଲା । ତେଣୁ ଏହି ଜାତୀୟ ପ୍ରତିରକ୍ଷା ପରିକଳ୍ପନା ଏ ଅଞ୍ଚଳରେ ପ୍ରତିଷ୍ଠା ପଛରେ ଯେତେ ନ୍ୟାୟ, ଯୁକ୍ତି ଏବଂ ଜାତୀୟ ପ୍ରୟୋଜନୀୟତା ଥିଲେ ମଧ୍ୟ ତାହା ବର ନହୋଇ ଏକ ଅଭିଶାପ ରୂପେ ଦେଖାଦେଇଥିଲା ।

ଏଭଳି ଏକ ଅବିଶ୍ୱାସପୂର୍ଣ୍ଣ ବାତାବରଣ ମଧ୍ୟରେ ବାଲିଆପାଳ ଓ ଭୋଗରାଇ ଅଞ୍ଚଳର କିଛି ସ୍ଥାନୀୟ ଓ ରାଜ୍ୟସ୍ତରୀୟ ନେତୃବୃନ୍ଦଙ୍କ ନେତୃତ୍ୱରେ ଘାଟି ବିରୋଧୀ ଆନ୍ଦୋଳନ ତେଜି ଉଠିଲା । ତେଣୁ ସରକାର ବାଧ୍ୟ ହୋଇ ଏହି ନିଷ୍ପତ୍ତିକୁ ପ୍ରତ୍ୟାହାର କରିନେଲେ ଏବଂ ସବୁଦିନ ପାଇଁ ଜାତୀୟ ଟେଟେରେଜୋ ପ୍ରକଳ୍ପ ଶୀତଳ ଭଣ୍ଡାରକୁ ଚାଲିଗଲା ।





Digitized by srujanika@gmail.com

# ଉଚ୍ଚଶିକ୍ଷା ଓ ଜନସେବୀ ଅନୁଷ୍ଠାନ

ଦେଶ, ବିଦେଶୀ ଶାସନରୁ ମୁକ୍ତ ହେବା ପରେ ବିଭିନ୍ନ କ୍ଷେତ୍ରରେ ନେତୃତ୍ୱମାନ ଗଢ଼ି ଉଠିଲା । ସାହିତ୍ୟ, ସଂସ୍କୃତି, ସମାଜସେବା, ଜନପଦର ଉନ୍ନୟନ ଶିକ୍ଷାର ପ୍ରସାର, ବନ୍ୟାବାତ୍ୟା ଆଦି ପ୍ରାକୃତିକ ବିପର୍ଯ୍ୟୟର ନିରାକରଣ ଓ ଦାରିଦ୍ର୍ୟ ଦୂରୀକରଣ ଆଦି କ୍ଷେତ୍ରରେ ବେସରକାରୀ ସେବା ସଂଗଠନମାନ ବଢ଼ିବାକୁ ଲାଗିଲା । ମହତାବଜୀଙ୍କ ପ୍ରଜାତନ୍ତ୍ର ପରିସରରୁ ପ୍ରଚାରିତ ଗାଁ ମଜଲିସ ଓ ବିଷୁବ ମିଳନ ଆସର ଆଦି ଆଦର୍ଶ ଢାଞ୍ଚାରେ ସାହିତ୍ୟକୁ ଗଣ ସାହିତ୍ୟ ରୂପ ଦିଆଗଲା । ପଶ୍ଚିମ ଓଡ଼ିଶାରେ ହୀରାଖଣ୍ଡ, ବାଲେଶ୍ୱରରେ ଫକୀରମୋହନ ସାହିତ୍ୟ ପରିଷଦ, ଦୀନକୃଷ୍ଣ ସ୍ମୃତି ପରିଷଦ, ଜଳେଶ୍ୱରର ଭୋଗରାଇ ମାଟିରେ ମହତାବ ସାହିତ୍ୟ ଏକାଡେମୀ ଆଦି ସାନବଡ଼ ସାଂସ୍କୃତିକ ସାହିତ୍ୟାନୁଷ୍ଠାନ ଓ ସଂଗଠନମାନ କ୍ରମେ ରାଜ୍ୟବ୍ୟାପୀ ଗଢ଼ି ଉଠିଲା । ସୁପ୍ତ ଓଡ଼ିଆ ସାହିତ୍ୟ ସାରା ରାଜ୍ୟରେ ଯୁବକ ଯୁବତୀଙ୍କ ପ୍ରାଣରେ ଉଲ୍ଲାସ ଓ ଉଦ୍ଦାମତା ଜାତ କଲା । ଉତ୍ତର ଓଡ଼ିଶା ଅଞ୍ଚଳରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ସ୍ଥାନୀୟ ଶିକ୍ଷାବିତ୍ ଓ ବୁଦ୍ଧିଜୀବୀମାନେ ଉଦ୍ୟମ କଲେ । ଫଳରେ କିଛି ବର୍ଷ ହେଲା ବାରିପଦାରେ ଉତ୍ତର ଓଡ଼ିଶା ଓ ବାଲେଶ୍ୱରରେ ଫକୀରମୋହନ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇ ଅଞ୍ଚଳର ଯୁବ ଛାତ୍ରଛାତ୍ରୀମାନଙ୍କର ଉଚ୍ଚଶିକ୍ଷାର ଦ୍ୱାର ଉନ୍ମୁକ୍ତ ହୋଇପାରିଛି । ଉତ୍ତର ବାଲେଶ୍ୱରର ଗ୍ରାମାଞ୍ଚଳରେ ସୁବର୍ଣ୍ଣରେଖା ସାହିତ୍ୟ ସଂସଦ, ରାଧାମାଧବ ସାହିତ୍ୟ ସଂସଦ, ବେଳାଭୂମି ସାହିତ୍ୟ ସଂସଦ, ଶାମୁକା, ଶ୍ୟାମସୁନ୍ଦର ଅବସର ବିନୋଦନ କେନ୍ଦ୍ର, ବାପୁଜୀ ସେବାନିକେତନ, କହ୍ନେଇ କଥାକାର ସଂସଦ ଆଦି ଅନେକ ଅନୁଷ୍ଠାନ ଗଢ଼ି ଉଠିଛି । ଆଧ୍ୟାତ୍ମିକ କ୍ଷେତ୍ରରେ ଅଖଣ୍ଡମଣ୍ଡଳାକାର ସ୍ୱାମୀ ସ୍ୱରୂପାନନ୍ଦଙ୍କ 'ହରିଓଁ' ସଂସ୍ଥା ସ୍ୱରୂପ କ୍ଷେତ୍ର ନାରାୟଣପୁରରେ ବିଦଗ୍ଧ କବି ମୁରାରୀମୋହନ ସାହୁଙ୍କ ଉଦ୍ୟମରେ ପ୍ରତିଷ୍ଠା ଲାଭ କରିଛି । କୃଷ୍ଣପୁରଠାରେ ସ୍ୱାମୀ ନିଗମାନନ୍ଦ ମନ୍ଦିର, କମର୍ଦ୍ଦା, ସତ୍‌ସଂଗ ବିହାର ଓ ସତ୍ୟସାଇବାବା ସେବା ସଂଗଠନ ଆଦି ଗଢ଼ିଉଠି ଅଞ୍ଚଳ ମାନଙ୍କରେ ଆଧ୍ୟାତ୍ମିକ ଚେତନା ବଢ଼ାଇବାରେ ଲାଗିପଡ଼ିଛନ୍ତି । ଭୌତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଉନ୍ନତି ସକାଶେ ଏମାନଙ୍କର ଅବଦାନ କିଛି କମ୍ ନୁହେଁ । ଏହିସବୁ ଜନସେବୀ



Digitized by srujanika@gmail.com

ଅନୁଷ୍ଠାନମାନଙ୍କରେ ବାର୍ଷିକ ଉତ୍ସବମାନଙ୍କରେ ପୂଜ୍ୟପୂଜା କ୍ଷେତ୍ରରେ କଳା, କୃଷି, ଶିକ୍ଷା, ସେବା, ସାହିତ୍ୟ, ସଂଗ୍ରାମ ଓ ନାଟ୍ୟକଳା ଆଦିର ପାରଦର୍ଶିତା ଲାଭ କରିଥିବା କୃତି ପ୍ରତିଭାମାନଙ୍କୁ ସମ୍ବର୍ଦ୍ଧନା ଦେଇ ଉତ୍ସାହିତ କରାଯାଉଛି । ଏଣୁ ଗ୍ରାମାଞ୍ଚଳରେ ସାରସ୍ୱତ ଅଭ୍ୟୁଥାନ କ୍ରମେ ବଢ଼ିବଢ଼ି ଚାଲିଛି । ଏସବୁର ଫଳଶ୍ରୁତି ସ୍ୱରୂପ ଅନେକ ପ୍ରତିଭା ଏ ଅଞ୍ଚଳର ରାଜ୍ୟ, ରାଷ୍ଟ୍ର ଓ ଆନ୍ତର୍ଜାତିକ କ୍ଷେତ୍ରରେ ସମୁଜ୍ଜ୍ୱଳ ତାରକା ରୂପରେ ପ୍ରତିଭାତ ହୋଇପାରିଛନ୍ତି । ଏହା ଆମ ସମସ୍ତଙ୍କର ଗର୍ବ ଗୌରବର ବିଷୟ ନିଶ୍ଚିତ ଭାବରେ ।





Digitized by srujanika@gmail.com

# ସାମାଜିକ ପରିବର୍ତ୍ତନ ଓ ଚିନ୍ତା-ଚେତନା

ଏ ଦୁନିଆ କ୍ଷଣକ୍ଷଣକେ ଆନ । ସବୁକଥା ଦ୍ରୁତ ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟରେ ଗତି କରୁଛି । କେତେ ସମ୍ଭାବନା ଓ କେତେ ଦୁର୍ଘଟଣା ନିଜ ବୁକୁରେ ବହନ କରି ଚାଲିଛି ସମୟ । ସେସବୁକୁ କଲମ ମୁନରେ ପ୍ରକାଶ କରିବା ସମ୍ଭବ ନୁହେଁ । ଅଞ୍ଚଳ, ଦେଶ, ମହାଦେଶ ଜଗତରେ ପରିଣତ ହୋଇଛି । ଆଞ୍ଚଳିକତା, ଏବେ ଏସବୁ ସଂକୀର୍ଣ୍ଣତାବୋଧ ଛଡ଼ା ଆଉ କିଛି ନୁହେଁ । ତେବେ ବୃହତ୍ତର ମାନବ ସମାଜର ମୂଲ୍ୟବୋଧ କ୍ରମେ ହ୍ରାସ ପାଇବାରେ ଲାଗିଛି । ଜଗତର ସବୁ ମଣିଷକୁ ଛାଡ଼ି ଏକାଏକା କିଛି କରିହେବ ନାହିଁ । ବର୍ତ୍ତମାନ ସମୟର ମଣିଷ ସମଗ୍ର ବିଶ୍ୱକୁ ଆପଣାର ଅଂଶବିଶେଷ ନ ଭାବି ସ୍ଥାନେସ୍ଥାନେ ନିଜର ଉଗ୍ର ରୂପ ପ୍ରକାଶ କରି ଦେଶ ଦେଶ ଜାତିଜାତି ଓ ସମାଜ ସମାଜ ମଧ୍ୟରେ ଅଶାନ୍ତି ଓ ଯୁଦ୍ଧ ବିଗ୍ରହ ସୃଷ୍ଟି କରୁଛି । ସ୍ୱାର୍ଥାନ୍ଧ ଉଗ୍ରବାଦୀମାନେ ଲୁଚିଛପି ମଣିଷକୁ ପୋକମାଛି ପରି ହତ୍ୟା କରି ଚାଲିଥାନ୍ତି ଅବଲୀଳାକ୍ରମେ । ଏହି ଜଘନ୍ୟ ଉଗ୍ରବାଦ ବିରୁଦ୍ଧରେ କେହି କିଛି କରିପାରୁ ନାହାଁନ୍ତି । ଖାଲି ଯୋଜନା, ବଡ଼ବଡ଼ କଥା ଓ ବୈଠକମାନ ଚାଲିଛି । ଏଭଳି ଏକ ଆନ୍ତର୍ଜାତିକ ଘଡ଼ିସନ୍ଧି କ୍ଷଣରେ ଆଞ୍ଚଳିକ ମୂଲ୍ୟବୋଧ ଉପରେ କିଛି କହିବା ଲେଖିବା କେତେଦୂର ସମ୍ଭବ ତାହା ସହଜରେ ଅନୁମେୟ ।

ଜାତିର ଆଞ୍ଚଳିକ ଐତିହ୍ୟ, ଦୃଷ୍ଟି, ଇତିହାସ, ସାହିତ୍ୟ ଓ ସଂସ୍କୃତିକୁ ଛାଡ଼ି କେହି ବଂଚି ପାରିବେ ନାହିଁ । ଜୀବନକୁ ସଂପୂର୍ଣ୍ଣ ରୂପେ ପାଇ ଉପଭୋଗ କରିବାକୁ ହେଲେ ପ୍ରଥମରେ ଆମ ଜନ୍ମମାଟିକୁ ଭଲଭାବରେ ଚିହ୍ନିବାକୁ ହେବ । ଜନ୍ମମାଟିରେ ଘଟି ଯାଇଥିବା ଘଟଣା ବିଷୟରେ ସମ୍ୟକ୍ ଜ୍ଞାନ ଅର୍ଜନ କରିବାକୁ ହେବ । ଜନ୍ମମାଟିକୁ ଆପଣାର ସେବା, ତ୍ୟାଗ, କୃତିତ୍ୱ, ମହତ୍ୱ ଓ ତିତିକ୍ଷା ଦ୍ୱାରା ମହନୀୟ ଓ ସମୃଦ୍ଧ କରିଥିବା କୃତୀ ସନ୍ତାନମାନଙ୍କୁ ଭଲଭାବରେ ଚିହ୍ନି ଜାଣିବାକୁ ହେବ । ତାହା ନହେଲେ ଏ ଜୀବନ ଆମର ପୂର୍ଣ୍ଣାଙ୍ଗ ହେବନାହିଁ । ପୂର୍ଣ୍ଣାଙ୍ଗ ଜୀବନ ପାଇ ବଂଚି ନପାରିଲେ ମଣିଷ ଜନ୍ମର କିଛି ମୂଲ୍ୟ ରହିବ ନାହିଁ ।

ଏହି ଉପାନ୍ତ ଭୋଗରାଇ ମାଟିର ସୀମାରେଖା ଉପରେ ଛିଡ଼ାହୋଇ ଲେଖକ ଯେବେ ତା'ର ଦୃଷ୍ଟିକୁ ବିସ୍ତାରିତ କରି ଦକ୍ଷିଣକୁ ଲମ୍ବାଇ ଦିଏ ତା'ର ଆଖିରେ ସମଗ୍ର



Digitized by srujanika@gmail.com

ସୋର, ନୀଳଗିରି ଓ ବାଲେଶ୍ୱର ସୀମାଠାରୁ ଆରମ୍ଭ କରି ବସ୍ତା, ସିଙ୍ଗଲା, ବାଲିଆପାଳ, ରାଇବଣିଆ ଓ ଜଳେଶ୍ୱର ଅଞ୍ଚଳ ଭୋଗରାଇ ଅଞ୍ଚଳ ସହ ମିଶି ଏକାକାର ହୋଇଯାଏ । କାଂଶବାଂଶ, ସାଳନ୍ଦୀ, ବୁଢ଼ାବଳଙ୍ଗ, ପଞ୍ଚପଡ଼ା, ସୁବର୍ଣ୍ଣରେଖା ଓ ଚିତ୍ରରେଖା ଆଦି ନଦୀମାନଙ୍କର ଅବବାହିକାରେ ଗଢ଼ି ଉଠିଥିବା ଜନପଦମାନ, ତାଙ୍କର ଆଚାର ବ୍ୟବହାର, ଚାଲିଚଳନ, ଗଛଲତା, ଭାଷା ଓ ସଭ୍ୟତା ପ୍ରାୟ ସମାନ ଏକାପରିକା ଜଣାଯାଏ । କଥାବାର୍ତ୍ତାର ଶୈଳୀ ଓ ଉଚ୍ଚାରଣରେ କିଛିଟା ଫରକ ଅବଶ୍ୟ ରହିଛି । ଦେଖାହେଲେ ଆମେ ସଭିଏଁ ସହଜରେ ମିଶିଯାଇପାରୁ । ଏଣୁ ଆମମାନଙ୍କର ଆଞ୍ଚଳିକ ଇତିହାସ ବିଶେଷରେ ଏହିମାନଙ୍କୁ ଘେରି ସୃଷ୍ଟି ହୋଇଥାଏ । ତାହା ବଡ଼ ମଧୁର ସୁନ୍ଦର ଓ ଏକାନ୍ତ ଆପଣାର ମନେହୁଏ । ଆମ ସମସ୍ତଙ୍କ ମଧ୍ୟରେ ପରସ୍ପରର ଭାବର ଆଦାନ ପ୍ରଦାନ ପୂର୍ବାପେକ୍ଷା ବଢ଼ିଛି ।

ଗୋଟିଏ ସମୟରେ ସମଗ୍ର ଅଞ୍ଚଳ ମଧ୍ୟରେ ସଂପର୍କ ରକ୍ଷା କରିବାକୁ ସେହି ଏକ ବି.ଏନ୍.ଆର୍. ରେଳଲାଇନ୍ ଜଗନ୍ନାଥ ସଡ଼କ ଛଡ଼ା ଅନ୍ୟ ପନ୍ଥା ନଥିଲା । ଜିଲ୍ଲାବୋର୍ଡ଼ ଓ ବିଧାନସଭାର ଭୋଟବେଳେ ଓ କୋଟ କଚେରି କାମ ସକାଶେ ଯିବା ଆସିବାରେ ଏକମାତ୍ର ସୁଯୋଗ ଅଞ୍ଚଳ ମଧ୍ୟରେ ଥିଲା । ମାତ୍ର ସ୍ୱାଧୀନତା ପ୍ରାପ୍ତି ପରେ ବସ୍ତା, ବାଲିଆପାଳ, ଜଳେଶ୍ୱର ରାସ୍ତା ଯୋଡ଼ିଯୋଡ଼ି ହେଲା ଓ ଜନସଂପର୍କ ବଢ଼ି ଚାଲିଲା । ସାବାଳକ ଭୋଟ, ଗ୍ରାମପଞ୍ଚାୟତ ଭୋଟ ଓ ଶିକ୍ଷାର ପ୍ରସାର ଫଳରେ ଯିବା ଅସିବାର ଓ ଦେଖା ସାକ୍ଷାତର ସୁଯୋଗ ସୃଷ୍ଟି ହେଲା । ଅଞ୍ଚଳ ବକ୍ଷରେ ନିମ୍ନ ଓ ଉଚ୍ଚଶିକ୍ଷା ଅନୁଷ୍ଠାନମାନ ଗଢ଼ି ଉଠିଲା । ଓଡ଼ିଆ ଭାଷା, ସଂସ୍କୃତି ରକ୍ଷା ଓ ସାହିତ୍ୟର ପ୍ରସାର ପାଇଁ ଆନ୍ଦୋଳନ ଚାରିଆଡ଼େ ଦେଖାଦେଲା । ସ୍କୁଲ କଲେଜ ସହିତ ସାହିତ୍ୟ ସଂସ୍କୃତି ପରିଷଦମାନ ଗଢ଼ିଉଠିଲା । ଶିକ୍ଷା ସଭ୍ୟତା ବିସ୍ତାର ଦିଗରେ ଆଜି ଏ ମାଟିର ସନ୍ତାନମାନେ ସମଗ୍ର ଜିଲ୍ଲାରେ ଆଗୁଆ ଏଥିରେ ସନ୍ଦେହ ନାହିଁ ।

ଇଂରେଜ ଶାସନ ଅମଳରେ, ଅଞ୍ଚଳର କୁସଂସ୍କାରମାନ ଜନମାନସକୁ ଚାପି ରଖିଥିଲା । ହଇଜା, ବସନ୍ତ, ମ୍ୟାଲେରିଆ ଆଦିର ମାରାତ୍ମକ ପ୍ରଭାବ ଶହଶହ ଜୀବନକୁ ନଷ୍ଟ କରିଦେଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସାଂଗକୁ ୧୯୪୨-୪୩ର ପ୍ରଳୟଙ୍କରୀ ମହାବାତ୍ୟା, ବନ୍ୟା ଓ ଦୁର୍ଭିକ୍ଷ ହଜାର ହଜାର ପ୍ରାଣକୁ କବଳିତ କରି ଶ୍ମଶାନକୁ ଟାଣିନେଲା । ପ୍ରଚଣ୍ଡ ଖାଦ୍ୟାଭାବ ଅଞ୍ଚଳକୁ ଗ୍ରାସକରି ରଖିଲା । ଜିଲ୍ଲାସାରା ଲୋକଙ୍କର ଆର୍ଥିକ ଓ ନୈତିକ ମାନଦଣ୍ଡ ଭାଂଗି ମକଚି ନଇଁଗଲା । ଏଇ ବିଶ୍ୱଯୁଦ୍ଧ ପରେ ଭାରତବାସୀଙ୍କର



Digitized by srujanika@gmail.com

ବ୍ୟାପକ ଆନ୍ଦୋଳନ ଫଳରେ ବିଦେଶୀ ଶକ୍ତି ଦେଶରୁ ବିଦାୟ ନେଲେ । ବଙ୍କା କଙ୍କାଳ ଦେଇ ସ୍ୱାଧୀନତାର ମଳୟ ସ୍ପର୍ଶ ଲାଗି ଲକ୍ଷଲକ୍ଷ ପ୍ରାଣ ଉଲ୍ଲସିତ ଓ ମୁକୁଳେଇ ଉଠିଲା ।

ପ୍ରଜା ପ୍ରତିନିଧି ଶାସନ, ଗଣତନ୍ତ୍ରର ପ୍ରବର୍ତ୍ତନ, ପଞ୍ଚବାର୍ଷିକ ଯୋଜନା ତଥା ପଞ୍ଚାୟତରାଜର ପ୍ରତିଷ୍ଠା ଆଜି ବିଭିନ୍ନ କଲ୍ୟାଣମୂଳକ କାର୍ଯ୍ୟକ୍ରମ ମାଧ୍ୟମରେ ସ୍ୱଦେଶୀ ସରକାର ଦେଶ ଓ ଜାତିର ସବୁ ସ୍ତରରେ ବିକାଶ ସାଧନରେ ଲାଗିପଡ଼ିଲେ । ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ଜାତୀୟ ସ୍ୱାସ୍ଥ୍ୟ, ଶିକ୍ଷା, ଗମନାଗମନର ସୁବିଧା, ଦେଶର ସୁରକ୍ଷା, ଦେଶ ବିଦେଶର ସୁସଂପର୍କ ପ୍ରତିଷ୍ଠା ଓ ଦେଶ ମଧ୍ୟରେ ଆଧୁନିକ ଟେକ୍‌ନୋଲୋଜିର ପ୍ରସାର ସାଂଗକୁ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଚେତନାର ବିକାଶ ବଢ଼ିବଢ଼ି ଚାଲିଲା ।

ଅନ୍ୟପକ୍ଷରେ ଘନଘନ ଦୈବ ଦୁର୍ବିପାକ ଦୁର୍ଘଟଣାମାନ ଓ ଉଗ୍ରପନ୍ଥୀମାନଙ୍କର ଆକ୍ରମଣ ଓ ଜନସଂହାର ବଢ଼ିବଢ଼ି ଚାଲିଛି । ପରିସ୍ଥିତି ବର୍ତ୍ତମାନ ଏପରି ଛିଡ଼ା ହୋଇଛି ଯେ ଦେଶର ସରକାର ସ୍ଥବିର ପାଲଟି ଯାଇଛନ୍ତି । କ୍ଲୀବତ୍ୱ ଆକ୍ରମଣ କରିଛି ଦେଶର ନେତାମାନଙ୍କ ପ୍ରାଣକୁ । ସାମାନ୍ୟ ପଡ଼ୋଶୀ ରାଜ୍ୟ ଏତେବଡ଼ ଭାରତଦେଶକୁ ଡରାଇ ରଖିଛି । ସ୍ୱାଧୀନ ଭାବରେ ପ୍ରତିକାର କରିବାର ଶକ୍ତି ଆମର ନାହିଁ । ଯୁକ୍ତରାଷ୍ଟ୍ର ଆମେରିକା ହାତରେ ଚାବୁକ ଧରିଛି । ଜାତିସଂଘର କିଛି କର୍ତ୍ତୃତ୍ୱ ନାହିଁ । ଭାରତର ନୈତିକ ଅଧଃପତନ ପ୍ରବଳ ବେଗରେ ହେଉଛି । ଦୁରାଚାର, ଭ୍ରଷ୍ଟାଚାର, ମଦ, ଭଣ୍ଡାମି, ଗୁଣ୍ଡାଗିରି ଅଧିକାଂଶ ପ୍ରାଣକୁ ଗ୍ରାସକରି ପକାଇଛି । ନାରୀଜାତିର ସମ୍ମାନ ନାହିଁ, ପାଶବିକ ଅତ୍ୟାଚାର ଓ ନିର୍ଯାତନା ବଢ଼ି ଚାଲିଛି । ଆମକୁ ଲଜ୍ଜା ଲାଗିବା କଥା । ଏହାକୁ କଣ ସ୍ୱାଧୀନତା କୁହାଯାଏ ?

ଭଲ ହୋଇଛି । ଗାନ୍ଧି, ଗୋପବନ୍ଧୁ, ସୁଭାଷ ଓ ଇନ୍ଦିରା ଆଜି ଏବେ ଆଉ ନାହାନ୍ତି, ପରପାରିକୁ ଚାଲି ଯାଇଛନ୍ତି । ଅନ୍ୟଥା ସେମାନଙ୍କର ନିଃଶ୍ୱାସ ବନ୍ଦ ହୋଇଯାଇଥାନ୍ତା । ଆମକୁ ସେସବୁ ସୁହାଇ ଗଲାଣି । ଆକସ୍ମିକ କିଛି ଦୁର୍ଘଟଣାକୁ ଆମେ ସଦାବେଳେ ଅପେକ୍ଷା କରି ରହିଛୁ । ସବୁଆଡୁ ଆମେ ନିଃସ୍ୱ, କବଳିତ, ସ୍ତବ୍ଧ ଓ ଦୁର୍ବଳ । ଋଣ କରି କରି ନୟାନ୍ତ । ଧର୍ମ ନିରପେକ୍ଷତା ଶବ୍ଦର ଅର୍ଥ ବର୍ତ୍ତମାନ ଦେଶର ବୁଦ୍ଧିଜୀବୀମାନେ ଖୋଜୁଛନ୍ତି । ଇସ୍‌ଲାମିକ୍ ରାଷ୍ଟ୍ରମାନଙ୍କର ଗୁପ୍ତ ଉଗ୍ର ଆକ୍ରମଣ ଦେଶବକ୍ଷରେ ହିନ୍ଦୁତ୍ୱକୁ ବଢ଼ାଇବାରେ ବଳ ଯୋଗାଇଛି । ପ୍ରତିଦିନ ସୀମାନ୍ତରକ୍ଷୀ ଜବାନ ଓ ନିରୀହ ଭାରତୀୟ ଜନତା କେତେ ମାଇନ, ବୋମା, ଗୁଳିରେ ପ୍ରାଣ ଦେଇଛନ୍ତି ତାର ସୀମାନାହିଁ । ସନ୍ତ୍ରାସ ଦମନ କରିବାକୁ ଆମେ ଏକା ହିଁ ସମର୍ଥ । ଅନ୍ୟର ସାହାଯ୍ୟ ଦରକାର ନାହିଁ । କିନ୍ତୁ



Digitized by srujanika@gmail.com

ଦୁର୍ଭାଗ୍ୟ ଆମର ଯେ ଆମର ଏ ଏକ ବିଚିତ୍ର ଦେଶର ବିଚିତ୍ର ସରକାର । ଯିଏ କେବଳ ଗାଦି ସମ୍ଭାଳିବାକୁ ବ୍ୟସ୍ତ, ଦେଶର ଉନ୍ନତି କଥା ଚିନ୍ତା କରିବାକୁ ତା'ର ବେଳ କେଉଁଠୁ ଆସିବ ? ଯେଉଁ ସରକାର ଆମକୁ ସୁରକ୍ଷା ଦେଇ ପାରୁନାହିଁ, ଧନ ଜୀବନ ରକ୍ଷା କରିପାରୁନାହିଁ ତାଙ୍କଠାରୁ ଆଉ ଆମେ ଅଧିକ କ'ଣ ବା ଆଶା କରିବା । ସ୍ୱାଧୀନତା ପ୍ରାପ୍ତିର ଏତେବର୍ଷ ପୂରିଯିବା ପରେ ମଧ୍ୟ ଆମର ଏହି ଦୁରବସ୍ଥା । କାହା ଆଗେ କହିବା ଯେ ଆମେ ସ୍ୱାଧୀନ ଏବଂ ଆମର ଏକ ବିକାଶଶୀଳ ରାଷ୍ଟ୍ର ?





Digitized by srujanika@gmail.com

# ଏ ମାଟିର ବରପୁତ୍ର

## କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

କାନ୍ତକବି ଭଦ୍ରକରେ ଜନ୍ମଗ୍ରହଣ କରିଥିଲେ । କବିତା, ସଂଗୀତ ଓ ଗୀତିକାବ୍ୟ ଆଦି ଚରନା କରି ସାରା ରାଜ୍ୟରେ ବିଶେଷ ଖ୍ୟାତି ଲାଭ କରିଛନ୍ତି । ସେ ଜଣେ ପ୍ରତିଭାଧର କବି ଥିଲେ ଏବଂ କାନ୍ତକବି ଭାବରେ ତାଙ୍କୁ ସମସ୍ତେ ଜାଣି ଆସିଛନ୍ତି । ସେ କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇଥିଲେ । ସେ ଭଗବାନ କୃଷ୍ଣଙ୍କ ଏକାନ୍ତ ଭକ୍ତ ଥିଲେ । ତାଙ୍କର ସବୁ ଗୀତିକାବ୍ୟ ସଂଗୀତାଞ୍ଜଳି ରୂପେ ଶ୍ରୀକୃଷ୍ଣଙ୍କ ପାଦରେ ଅର୍ପଣ କରି ଗୁହାରି କରିଥିଲେ । ତାଙ୍କର ବିଖ୍ୟାତ ସଂଗୀତ 'ସବୁଥିରୁ ବଂଚିତ କରି କେଉଁ ଯଶବାନା ଉଡ଼ାଇବ ହେ' ରାଜ୍ୟରେ ଚହଳ ସୃଷ୍ଟି କରିଥିଲା । ଓଡ଼ିଆ ଘରର ନିତ୍ୟସାଥୀ ଶାଗ, ଆମ୍ବୁଲ ରାଇତା, ଶୁଖୁଆ ଆଦି ତାଙ୍କ କାବ୍ୟରେ ଭଗବାନଙ୍କ ଲାଗି ସଜାଡ଼ି ରଖି ସଖୀ ଲଳିତାଙ୍କ ମୁହଁରେ ତାଙ୍କୁ ବ୍ୟଙ୍ଗକରି ଗାଇଥିଲେ 'ସରିଗଲାଣି ତ ହାଣ୍ଡିରୁ ତୋରାଣି ହେ ବେଣୁପାଣି' । କାନ୍ତକବିଙ୍କର ଦୁଇ ପୁଅଙ୍କ ମଧ୍ୟରୁ ବଡ଼ପୁଅ ନିତ୍ୟାନନ୍ଦ ବିଖ୍ୟାତ ରାଜନେତା, ସ୍ୱାଧୀନତା ସଂଗ୍ରାମୀ, ସୁସାହିତ୍ୟିକ ଥିଲେ । ରାଜ୍ୟରେ ସେ ସମୟର କଟୁ ସମାଲୋଚନା ମୂଳକ ପତ୍ରିକା 'ଡଗର'ର ସଂପାଦନା ଦୀର୍ଘଦିନ ଧରି କରିଥିଲେ । ଭଦ୍ରକରୁ ବିଧାନସଭାର ସଭ୍ୟରୂପେ ନିର୍ବାଚିତ ହୋଇ ମନ୍ତ୍ରୀପଦ ଅଳଙ୍କୃତ କରିପାରିଥିଲେ । ସାନପୁଅ ଗୌରଚନ୍ଦ୍ର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଅଟନ୍ତି । ତାଙ୍କର ସୁପୁତ୍ରମାନେ ବର୍ତ୍ତମାନ ରାଜ୍ୟରେ ସାମ୍ବାଦିକତା ଓ ସାହିତ୍ୟ ଚର୍ଚ୍ଚା ସକାଶେ ବିଶେଷ ଖ୍ୟାତ । କାନ୍ତକବିଙ୍କର ପରିବାରବର୍ଗ ସମସ୍ତେ ଆଜି ରାଜ୍ୟକୁ ସାରସ୍ୱତ ରସରେ ରସାଣିତ କରି ରଖିବାରେ ସମର୍ଥ ହୋଇଛନ୍ତି ।

## ସ୍ୱଦେଶୀ କବି ବାଞ୍ଛାନିଧି ମହାନ୍ତି

ସେ ସ୍ୱଦେଶୀ ଯୁଗର ଜଣେ ଆଇନ୍‌ଜୀବୀ ଭାବେ ଜୀବନ ଆରମ୍ଭ କରିଥିଲେ । କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ପ୍ରଜାଦମନ ମୂଳକ ଅତ୍ୟାଚାର ବିରୁଦ୍ଧରେ ତାଙ୍କର ସ୍ୱଦେଶ ପ୍ରାଣର ଆକୁତି କରୁଣ ସଂଗୀତ ରୂପେ ପ୍ରଥମେ ପ୍ରକାଶ ପାଇଥିଲା ।

'କେତେଦିନ ଆଉ ଦୁଃଖିନୀ କନିକା ଅନୀତି ଯାତନା ସହିବ ଇତ୍ୟାଦି । ଏହି ସଂଗୀତ ରାଜ୍ୟର ଜନସାଧାରଣଙ୍କୁ କନିକାର ପ୍ରଜାମୁକ୍ତି ଆନ୍ଦୋଳନ ପ୍ରତି ଆକର୍ଷଣ



Digitized by srujanika@gmail.com

କରିଥିଲା । ମହତାବ ବାବୁ ଓ ଚକ୍ରଧର ବେହେରା ଆଦି ଏହି ଆନ୍ଦୋଳନର କର୍ଣ୍ଣଧାର ଥିଲେ ।

ତା'ପରେ ଗୋଟିଏ ପରେ ଗୋଟିଏ ଦେଶାତ୍ମବୋଧରେ ଭରପୂର ଶହଶହ ସଂଗୀତ ତାଙ୍କ କଣ୍ଠରୁ ନିର୍ଗତ ହୋଇ ରାଜ୍ୟବାସୀଙ୍କୁ ସ୍ୱଦେଶୀ ଆନ୍ଦୋଳନରେ ଯୋଗଦେବାକୁ ଉନ୍ମାଦନା ଓ ଉଦ୍ଦୀପନା ଯୋଗାଇଥିଲା । ସେ ସଂଗେସଂଗେ ସଂଗୀତ ରଚନା କରି ନିଜେ ଗାଇ ପାରୁଥିଲେ । ତାଙ୍କର ସଂଗୀତମାନ ପୁସ୍ତକ ଆକାରରେ ପ୍ରକାଶପାଇ ସେ ସମୟରେ ଜନାଦୃତ ହୋଇପାରିଥିଲା । 'ତୁମେ ମାର ଯେତେ ମାଡ଼ ମାରିବ' ବିପରୀତ କଥା ଶୁଣି କଳିକାଳ ପଡ଼ିଲାଣି ଓଲଟି' ଆଜି ସୁଦ୍ଧା ସଂଗ୍ରାମୀମାନଙ୍କ ତୁଣ୍ଡରେ ରହିଛି । ସ୍ୱଦେଶୀ ଆନ୍ଦୋଳନରୁ ସବୁ ସଭାସମିତି ମାନଙ୍କରେ ବାଞ୍ଛାନିଧି ବାବୁଙ୍କର ସ୍ୱରଚିତ ସଂଗୀତ ସେ ବୋଲି ଜନଗଣ ମନକୁ ବିମୋହିତ କରୁଥିଲେ । ଦେଶପ୍ରେମୀମାନେ ଏବେବି ତାଙ୍କର ସଂଗୀତ ବୋଲି ଅପାର ଆନନ୍ଦ ଲାଭ କରି ଆସୁଛନ୍ତି ।

ପରିବର୍ତ୍ତିତ ପରିସ୍ଥିତିରେ ଦେଶ ସ୍ୱାଧୀନ ହେଲାପରେ ଏହି ଅତ୍ୟାଚାରୀ ରାଜବଂଶର ସୁପୁତ୍ର ଶୈଳେନ୍ଦ୍ର ନାରାୟଣ ଭଂଜଦେଓ । ଇଂଜିନିଅରିଂ ବିଦ୍ୟାରେ ବିଶେଷ ପାରଦର୍ଶୀ ଥାଇ ବିଧାନସଭାକୁ ନିର୍ବାଚିତ ହୋଇ ମହତାବ ମନ୍ତ୍ରୀମଣ୍ଡଳରେ ପୂର୍ତ୍ତ ଓ ସେଚମନ୍ତ୍ରୀ ରୂପେ ନିଜର ଦକ୍ଷତା ପ୍ରମାଣ କରିପାରିଥିଲେ । ଜ୍ୟେଷ୍ଠା ରାଜକୁମାରୀ କନକଲତା ଦେଈ ନରସିଂହପୁର ରାଜ୍ୟର ମହାରାଣୀ ହୋଇଥିଲେ । ସେ ସୁବିଖ୍ୟାତ କବିମାନଙ୍କ ମଧ୍ୟରେ ସେ ସମୟରେ ପରିଗଣିତ ହୋଇଥିଲେ । ଗଣତନ୍ତ୍ର ଦଳର ବିଧାନସଭାର ସଦସ୍ୟା ଭାବରେ ତାଙ୍କର ଭାଷଣ ପୁଲକିତ କବିତା ମାଧ୍ୟମରେ ସମସ୍ତଙ୍କୁ ପ୍ରଭୂତ ଆନନ୍ଦ ଦାନ କରୁଥିଲା ।

## ଗାଞ୍ଜିକ ଅବଦୁଲ ରହିମ୍

ପେଶାରେ ସେ ଜଣେ ଅମିନ । ଘର ଭୋଗରାଇ ଗ୍ରାମରେ । ଅବଦୁଲ୍ ଚାଚାଙ୍କର ପୂର୍ବପୁରୁଷମାନେ ବିହାରର ସସାରାମରୁ ବ୍ୟବସାୟ ସୂତ୍ରରେ ଆସି ଭୋଗରାଇରେ ବସା ବାନ୍ଧିଥିଲେ । ଅମିନାତି ବିଦ୍ୟା ଅଧ୍ୟୟନ କରି ସରକାରୀ ଚାକିରି ଧରି ସାରା ଓଡ଼ିଶାରେ ବୁଲି ଜମିମାପ କରିଥିଲେ ବିଭିନ୍ନ ଇଲାକାର । କାର୍ଯ୍ୟରୁ ଅବସର ନେଲାପରେ ମଧ୍ୟ ସେ ସ୍ୱୟଂ ଏକ ଅମିନାତି ସ୍କୁଲ ଭୋଗରାଇରେ ଖୋଲି ବହୁ ସଂଖ୍ୟକ ପିଲାଙ୍କୁ ଜରିପ ଶିକ୍ଷା



Digitized by srujanika@gmail.com

ଦେବାରେ ସମର୍ଥ ହୋଇଥିଲେ । କିନ୍ତୁ ଏତିକି ତାଙ୍କ ଅସଲ ପରିଚୟ ନଥିଲା । ତାଙ୍କ ଭିତରେ ସାରସ୍ୱତ ପ୍ରତିଭା ଲୁଚି ରହିଥିଲା । ସେ ଯୁବାକାଳରୁ ଉପନ୍ୟାସ ଓ ଗଳ୍ପ ଲେଖିବା ଆରମ୍ଭ କରିଥିଲେ । ତାଙ୍କ ଯୌବନର ପ୍ରଥମ ଉପନ୍ୟାସ 'ସ୍ନେହଲତା'ର କାହାଣୀ ବଡ଼ ସୁନ୍ଦର ଓ ଆଦର୍ଶସ୍ଥାନୀୟ ଥିଲା କିନ୍ତୁ ତାହା ସେ ପ୍ରକାଶ କରିପାରି ନଥିଲେ ଲୋକଲୋଚନରେ । ତାଙ୍କର ଜୀବନକାଳ ମଧ୍ୟରେ ଯେତେ ଗଳ୍ପ ସେ ରଚନା କରିଥିଲେ ସେସବୁ ଗୋଟିଏ ଗୋଟିଏ ଲମ୍ବାଗଳ୍ପ ଉପନ୍ୟାସ ଢଙ୍ଗର । ବିଭିନ୍ନ ଅଞ୍ଚଳର ହିନ୍ଦୁ ପରିବାରମାନଙ୍କର ଘରକୋଣର ଜୀବନ୍ତ କାହାଣୀ । ଇସ୍‌ଲାମମ୍ ଧର୍ମାବଲମ୍ବୀ ଥାଇ ହିନ୍ଦୁ ପରିବାରର ସତ୍ୟଘଟଣା ଆଧାର କରି ଅତି ସରଳ ସାବଲୀଳ ଭାଷାରେ ବର୍ଣ୍ଣନା କରିବାର ତାଙ୍କର ଦକ୍ଷତା ଥିଲା । ସେସବୁ ସମସ୍ତଙ୍କର ମନପ୍ରାଣକୁ ଛୁଇଁ ପାରୁଥିଲା । କିନ୍ତୁ ଦୁର୍ଭାଗ୍ୟ ତାଙ୍କର ଉପନ୍ୟାସ ଓ ଗଳ୍ପ ଗୁଡ଼ିକ ଛପାଇ ପ୍ରକାଶ କରିପାରି ନଥିଲେ । ତେଣୁ ତାଙ୍କ ଜୀବଦ୍ଦଶାରେ କେହି ଜାଣିପାରି ନଥାନ୍ତି ଯେ ସେ ଜଣେ ବିଶିଷ୍ଟ ସାହିତ୍ୟିକ ଓ ଔପନ୍ୟାସିକ ବୋଲି । ରହିମ୍ ଚାଚା ଜଣେ ଅତି ଧର୍ମପ୍ରାଣ, ସାମାଜିକ ଓ ଦେଶପ୍ରାଣ ବ୍ୟକ୍ତି ଥିଲେ । ତାଙ୍କୁ ସମସ୍ତେ ଚାଚାବୋଲି ଆଦରରେ ସମ୍ବୋଧନ କରୁଥିଲେ । ତାଙ୍କର ରଚନାମାନ ପରେ ଯେବେ ପ୍ରକାଶ ପାଇଲା ଲୋକେ ପଢ଼ି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଫକୀରମୋହନଙ୍କ ପରେ ତାଙ୍କ ଶୈଳୀରେ ରହିମ୍ ବାବୁଙ୍କ ଲେଖାମାନ ରଚିତ ହୋଇଥିଲା । ମାତ୍ର ଅଳ୍ପକିଛି ବର୍ଷ ପୂର୍ବରୁ ଭୋଗରାଇ ଗ୍ରାମର ସୁପୁତ୍ର ପ୍ରାବନ୍ଧିକ ଡ.ରମାକାନ୍ତ ବେହେରା ତାଙ୍କର ସାହିତ୍ୟ ବ୍ୟକ୍ତିତ୍ୱ ବିଷୟ ଜାଣିପାରି ବହୁ ଚେଷ୍ଟାକରି ନଷ୍ଟହେବାକୁ ବସିଥିବା ପାଣ୍ଡୁଲିପିମାନ ସଂଗ୍ରହ ଓ ସଂକଳନ କରି ଏକ ଦୀର୍ଘ ଗ୍ରନ୍ଥାବଳୀ ଆକାରରେ ଲୋକଲୋଚନକୁ ଆଣିପାରିଛନ୍ତି । ଅନ୍ୟଥା ଏହି ସାରସ୍ୱତ ସାଧକଙ୍କ ସବୁ ଅମୂଲ୍ୟ ସୃଷ୍ଟି ଅନ୍ଧକାରରେ ଲୀନ ହୋଇଯାଇଥାନ୍ତା । ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ରହିମ୍ ଗ୍ରନ୍ଥାବଳୀର ଦାନ ପ୍ରକୃତରେ ଅତୁଳନୀୟ ଏବଂ ଆମ ସମସ୍ତଙ୍କର ଗର୍ବଗୌରବର ବିଷୟ, ଏଥିରେ ସନ୍ଦେହ ନାହିଁ ।

ଅବଦୁଲ୍ ରହିମ୍‌ଙ୍କର ରଚନା ମଧ୍ୟରେ ସ୍ନେହଲତା ସହିତ ସ୍ୱର୍ଣ୍ଣଲତା, କନକଲତା, ସୁକୁମାରୀ, ଅମୃତକୁମାରୀ, ପଦ୍ମାବତୀ, ପଦ୍ମରେଖା, କାଳୀକନ୍ୟା ଲକ୍ଷ୍ମୀ, ସାଗରିକା, ମୋ ମାଉସୀ ଆଦି ପ୍ରଧାନ । ଉପନ୍ୟାସ ବିଶ୍ୱରଂଜନ, ଗନ୍ଧମାର୍ଦ୍ଦନ ଓ ଭୋଗରାଇ କଥା ଆଦି କାହାଣୀମାନ ପ୍ରଧାନ ଅଟେ । ଏହି ଗ୍ରନ୍ଥାବଳୀ ଉତ୍ତର ବାଲେଶ୍ୱରବାସୀଙ୍କର ସାରସ୍ୱତ ଗୌରବ ବଢ଼ାଇବାରେ ସମର୍ଥ ହୋଇପାରିଛି ବହୁ ପରିମାଣରେ ।



Digitized by srujanika@gmail.com

## ରାଜନେତା ନନ୍ଦକିଶୋର ଦାସ

ସୋର ଗୁହାରିଆ ସାହିରେ ନନ୍ଦବାବୁଙ୍କ ଘର । ସେ କଲିକତା ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ । ନନ୍ଦବାବୁ ସ୍ୱଭାବତଃ ସ୍ୱଦେଶୀ ପ୍ରେମୀ ଓ ଭକ୍ତିଭାବର ଲୋକଥିଲେ । କଲିକତାରୁ ଫେରିଲାବେଳକୁ ଗାଁ ଭୂଇଁ ଆତ୍ମୀୟସ୍ୱଜନ ସ୍ୱଦେଶୀ ଆନ୍ଦୋଳନରେ ବ୍ୟସ୍ତ । ଏହା ବିଂଶ ଶତାବ୍ଦୀର ତୃତୀୟ ଦଶକର କଥା । ନନ୍ଦବାବୁ ଭବିଷ୍ୟତ କଥା କିଛି ବିଚାର ନକରି ନିଜକୁ ସେହି ଆନ୍ଦୋଳନରେ ଭସାଇ ଦେଲେ । ତାପରେ ଜେଲ୍ ଜୋରିମାନା ଓ ପୁଲିସର ଅତ୍ୟାଚାର ତାଙ୍କ ଉପରେ ଚାଲିଲା । ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ଆମ ଜିଲ୍ଲାରେ ସେ ସବୁଠାରୁ ଉଚ୍ଚଶିକ୍ଷିତ ବ୍ୟକ୍ତି ଥିଲେ । ପରବର୍ତ୍ତୀ କାଳରେ ସେ ଓଡ଼ିଶା ବିଧାନସଭାର ବାଚସ୍ପତି ଆସନ ଅଳଙ୍କୃତ କରିଥିଲେ । ଜେଲ୍ ଭିତରେ ସେ ସମସ୍ତଙ୍କୁ ପ୍ରାର୍ଥନା ଗୀତ ଶିଖାଇବାରେ ଅଗ୍ରଣୀ ଥିଲେ । ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ପ୍ରତିଦିନ ଚରଖାରେ ସୂତାକଟାକୁ ବ୍ରତ ହିସାବରେ ଗ୍ରହଣ କରିଥିଲେ । ତାଙ୍କର ଶାନ୍ତ, ସୌମ୍ୟ ନିରାଭରଣ କାନ୍ତି ସମସ୍ତଙ୍କୁ ମୋହିତ କରୁଥିଲା । ଗାନ୍ଧିବାଦର ଜଣେ ପ୍ରମୁଖ ବକ୍ତା ଭାବରେ ସେ ସମଗ୍ର ରାଜ୍ୟରେ ଖ୍ୟାତ ଥିଲେ । ଓଡ଼ିଶା ବିଧାନସଭାର ସେ ଦ୍ୱିତୀୟ ବାଚସ୍ପତି ରୂପେ ନିର୍ବାଚିତ ହୋଇଥିଲେ । ସ୍ୱଦେଶୀ ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ସେ ଅନ୍ୟ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ସହ ଜିଲ୍ଲା ତମାମ ଗସ୍ତକରି ସୁନାମ ଅର୍ଜନ କରିଥିଲେ ।

## କଥାକାର ହରିଶ ଚନ୍ଦ୍ର ବଡାଳ

ବାଲେଶ୍ୱରର ବଟେଶ୍ୱର ଗ୍ରାମର ଅଧିବାସୀ ଥିଲେ । ବିଂଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ଗାଳ୍ପିକ ଓ ସୁଲେଖକ ହରିଶ ଚନ୍ଦ୍ର ବରାଳ ରାଜ୍ୟର ସାହିତ୍ୟ କ୍ଷେତ୍ରରେ ବିଶେଷ ସୁନାମ ଅର୍ଜନ କରିଥିଲେ । ସେ ଏକ ଦରିଦ୍ର ପରିବାରର ପୁଅ ଥିଲେ । ସଂସାରରେ ତାଙ୍କର ଦୁଃଖିନୀ ମା' ଛଡ଼ା କେହି ନଥିଲେ । ମା' ଢିଙ୍କିରେ ଧାନକୁଟି, ବିକ୍ରୟ କରି ସଂସାର ଯାତ୍ରା ନିର୍ବାହ କରୁଥିଲେ । ପଇସା ଅଭାବରୁ ହରିଶ ମ୍ୟୁନିସିପାଲଟି ରାସ୍ତାର ବତୀଖୁଣ୍ଟ ଆଲୁଅରେ ପାଠ ପଢୁଥିଲେ ଏବଂ ଜଣେ ମେଧାବୀ ଅଧ୍ୟବସାୟୀ ଛାତ୍ରରେ ପରିଣତ ହୋଇଥିଲେ । କର୍ମକ୍ଷେତ୍ରରେ ନିଜର ଦକ୍ଷତା ବଳରେ ସେ ଭାରତୀୟ ପଶ୍ଚିମ ରେଳପଥର ଟ୍ରାଭଲିଂ ସୁପରିନ୍‌ଟେଣ୍ଡେଣ୍ଟ ପଦକୁ ଉନ୍ନୀତ ହୋଇଥିଲେ । ବଟେଶ୍ୱର ରାସ୍ତାରେ ଏକ ବଡ଼ ଅଟ୍ଟାଳିକା ନିର୍ମାଣ କରି ତାର ଗର୍ଭଗୃହ ମଧ୍ୟରେ ତାଙ୍କର ଦୁଃଖିନୀ ମା'ଙ୍କର ଢିଙ୍କି ସହ ପଲାଘରଟିକୁ ଅକ୍ଷତ ଅବସ୍ଥାରେ ସୁରକ୍ଷିତ କରି ରଖିଥିଲେ ମାତୃଭକ୍ତିର



Digitized by srujanika@gmail.com

ନିଦର୍ଶନ ସ୍ୱରୂପ । ବହୁ ଗଳ୍ପ ଓ ଉପନ୍ୟାସର ସ୍ରଷ୍ଟା ଥିଲେ ସେ । ସେ ବେଳରେ ଜଣେ ବିଶିଷ୍ଟ କଥାକାର ଭାବରେ ଯଥେଷ୍ଟ ସୁନାମ ଅର୍ଜନ କରି ଅମର ହୋଇ ରହିଛନ୍ତି । ମୁଁ ଛାତ୍ର ଅବସ୍ଥାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ହରିଶବାବୁଙ୍କୁ ସାକ୍ଷାତ କରି ଉଚ୍ଚଶିକ୍ଷା ସକାଶେ ସାହାଯ୍ୟ ଭିକ୍ଷା କରିଥିଲି ଏବଂ ତାଙ୍କରି ସାହାଯ୍ୟରେ କଲିକତାରେ କିଛିଦିନ ପାଇଁ ଡାକ୍ତରୀପାଠ ପଢ଼ିବାର ସୌଭାଗ୍ୟ ଅର୍ଜନ କରିପାରିଥିଲି । ହରିଶ ବାବୁ ଏହିପରି ବହୁ ଗରିବ ଛାତ୍ରଛାତ୍ରୀଙ୍କୁ ସାହାଯ୍ୟ କରି ପାଠ ପଢ଼ାଇଥିଲେ ।

## ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ସେବାବତାର ଲକ୍ଷ୍ମୀନାରାୟଣ ବାବୁଙ୍କ ଜନ୍ମ ବାଲେଶ୍ୱରର ବାରବାଟି ଗ୍ରାମରେ । ଆପଣାର ଧୀଶକ୍ତି ବଳରେ ବିଶ୍ୱବିଦ୍ୟାଳୟ ସର୍ବୋଚ୍ଚ ଡିଗ୍ରୀ ହାସଲ କଲାପରେ କୌଣସି ସରକାରୀ ଚାକିରି କରିବା ତାଙ୍କର ଇଚ୍ଛା ନଥିଲା । ଜନ୍ମରୁ ସେ ଦେଶର ଦାରିଦ୍ର୍ୟ ଓ ଦୁରବସ୍ଥା ପ୍ରତି ସଜାଗ ଥିଲେ ଏବଂ ଆର୍ତ୍ତ ଜନତାର ଅପ୍ରମିତ ଦୁଃଖର ଚିତ୍କାର ତାଙ୍କର ସମ୍ବେଦନଶୀଳ ପ୍ରାଣକୁ ସର୍ବଦା ବିବ୍ରତ କରୁଥିଲା । ତେଣୁ ମନପ୍ରାଣ ଶରୀରରେ ନିଜକୁ ଜନତା ସେବାରେ ଉତ୍ସର୍ଗ କରିପାରିଥିଲେ । ଏତିକିବେଳେ ପାଠପଢ଼ା ଶେଷକରି 'ଭାରତ ସେବକ ସମାଜ' ଭଳି ଏକ ସର୍ବଭାରତୀୟ ସେବାନୁଷ୍ଠାନର ଅନ୍ତର୍ଭୁକ୍ତ ହେଲେ । ବାଲେଶ୍ୱର, ଓଡ଼ିଶା ଓ ଭାରତ ସାରା ବୁଲି ସମାଜସେବା ତଥା ଆର୍ତ୍ତ ଜନତାର ସେବାରେ ନିଜକୁ ନିୟୋଜିତ କଲେ ଜୀବନର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ । ତାଙ୍କର ଦେହ ଓ ପ୍ରାଣ ବିଶାଳ ଓ ବଳିଷ୍ଠ ଥିଲା । ଜ୍ଞାନର ପରିସର ମଧ୍ୟ ଥିଲା ଅମାପ । ମୋର ମନେପଡ଼େ, ଉତ୍ତର ବାଲେଶ୍ୱରରେ ୧୯୪୪ ମସିହାର ପ୍ରଳୟଙ୍କରୀ ବାତ୍ୟା, ବନ୍ୟା ଓ ଦୁର୍ଭିକ୍ଷ ସମୟରେ ଭାରତ ସେବାସଂଘର ଅନ୍ୟତମ ପ୍ରତିଷ୍ଠାତା ଠକ୍କର ବାପା ଓ ଗାନ୍ଧିବାଦୀ ନେତା ଈଶ୍ୱରଲାଲ୍ ବ୍ୟାସଙ୍କ ସହ ଭୋଗରାଇର ଦୁର୍ଭିକ୍ଷ ପୀଡ଼ିତ ଲୋକଙ୍କର ସାହାଯ୍ୟ ଓ ସେବା ଲାଗି ବାରମ୍ବାର ସେ ଆସି ଛିଡ଼ା ହୋଇଥିଲେ । ତାଙ୍କର ଅତୀବ ଦୟାର୍ଦ୍ର ହୃଦୟ ସଦାସର୍ବଦା ଜନତାର ଅପ୍ରମିତ ଦୁଃଖରେ ଦ୍ରବୀଭୂତ ହୋଇଯାଉଥାଏ । ଗୋପବନ୍ଧୁଙ୍କ ପରେ ଲକ୍ଷ୍ମୀବାବୁଙ୍କ ଭଳି ଏପରି ଏକନିଷ୍ଠ ସେବକ ଓଡ଼ିଆ ମାଟିରେ ଆଉ ଦେଖାଯାଇନାହିଁ । ଯେଉଁଠି ବନ୍ୟା ବାତ୍ୟା ଓ ଖାଦ୍ୟାଭାବ ସେ ସେଠାରେ ଅବଲୀଳାକ୍ରମେ ହାଜର ହୋଇଯାଉଥିଲେ ।

ଏଣୁ ଏହି ମହାନ ଜନସେବକଙ୍କୁ ଭାରତ ସରକାର ପ୍ରୀତ ହୋଇ ପଦ୍ମଶ୍ରୀ ଉପାଧିରେ ଭୂଷିତ କରି ସମ୍ମାନିତ କରିଥିଲେ । ବାଲେଶ୍ୱରର ସେ ହେଉଛନ୍ତି ପ୍ରଥମ ପଦ୍ମଶ୍ରୀ ମଣ୍ଡିତ ବ୍ୟକ୍ତି ଏବଂ ଗର୍ବ ଗୌରବ ।



Digitized by srujanika@gmail.com

## ସମାଜସେବୀ ଈଶ୍ୱରଲାଲ୍ ବ୍ୟାସ

ବ୍ୟାସଜୀ ଗୁଜୁରାଟ ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ । ଗାନ୍ଧିଜୀଙ୍କର ଆଦର୍ଶ, ନୀତିନିୟମ ଓ ରଚନାତ୍ମକ କାର୍ଯ୍ୟରେ ସେ ନିପୁଣ ଥିଲେ । ସୂତାକଟା, ଖଦି, ଗ୍ରାମୋଦ୍ୟୋଗ କାର୍ଯ୍ୟର ତାଲିମ୍ ସେ ସାବରମତୀ ଆଶ୍ରମରୁ ଗ୍ରହଣ କରିଥିଲେ । ଗାନ୍ଧୀ ସେବାସଂଘ ଅଧୀନରେ କାର୍ଯ୍ୟଭାର ଗ୍ରହଣ କରି ଓଡ଼ିଶା ରାଜ୍ୟର ବାଲେଶ୍ୱର ଜିଲ୍ଲାରେ ପ୍ରଥମେ କାର୍ଯ୍ୟ ଆରମ୍ଭ କରିଥିଲେ । ସୋର ପୁରୁବାଈ ଆଶ୍ରମ ପରିସରରେ କନ୍ୟାଶ୍ରମ ଓ ଅନାଥାଶ୍ରମର ପରିଚାଳନା ଦାୟିତ୍ୱ ତାଙ୍କୁ ମିଳିଥିଲା । ସମଗ୍ର ଜିଲ୍ଲାରେ ଗାନ୍ଧି ସେବାଶ୍ରମ ପ୍ରତିଷ୍ଠା କାମ ସେ ହାତକୁ ନେଇ ବିଭିନ୍ନ ସ୍ଥାନରେ ସୂତାକଟାକେନ୍ଦ୍ର, ଖଦିବୁଣା କେନ୍ଦ୍ର, ଅନାଥାଶ୍ରମ ଓ ସେବାଶ୍ରମମାନ ଗଢ଼ିଥିଲେ । ସେଥିମଧ୍ୟରୁ ଝାଡ଼ପିପଳ, ସାଁତିଆ, ଲକ୍ଷ୍ମୀପାଟଣା, ଆମ୍ବଚୁଆ, ଗୁଛିଦା, ତେଘରି, ସରବଣି ଆଦି ପ୍ରଧାନ ଥିଲା । ତାଙ୍କର ସୁନ୍ଦର, ସୁଢଳ ଗୌରକାନ୍ତି, ମଧୁର ବ୍ୟବହାର ଓ ହିନ୍ଦୀ ଓଡ଼ିଆ ମିଶା ଭାଷାରେ କଥାବାର୍ତ୍ତା ସମସ୍ତଙ୍କୁ ବହୁତ ଆନନ୍ଦ ଦେଉଥାଏ । ଦୁର୍ଭିକ୍ଷ ସମୟରେ ସମଗ୍ର ଉତ୍ତର ବାଲେଶ୍ୱର ଅଞ୍ଚଳରେ ସେ ଗାନ୍ଧି ସେବାସଂଘ ତରଫରୁ ରିଲିଫ୍ ବଣ୍ଟନ କାର୍ଯ୍ୟରେ ଚରଖା ପରି ଘୂରି ବୁଲୁଥାନ୍ତି । ତାଙ୍କୁ ଦେଖି ଅଞ୍ଚଳର ଲୋକ ଆଶ୍ୱସ୍ତି ଲାଭ କରୁଥାନ୍ତି । ବ୍ୟାସଜୀଙ୍କୁ ବାରମ୍ବାର ଦେଖିବାର ସୁଯୋଗ ଏ ଦୀନ ଲେଖକଙ୍କର ଜୀବନରେ ଘଟିଛି । ଏହି ଭିନ୍ନ ଦେଶୀ ସେବାବତାର ଜଣକ ସମଗ୍ର ଜିଲ୍ଲାକୁ ଉପଯୁକ୍ତ ସେବା ଦାନ କରି ସମସ୍ତଙ୍କର ପୂଜ୍ୟ ଓ ଆଶ୍ରୟର ସ୍ଥଳ ପାଲଟି ଯାଇଥିଲେ । ବ୍ୟାସଜୀଙ୍କ ଐକାନ୍ତିକ ସ୍ନେହ ପ୍ରେମପୂର୍ଣ୍ଣ ବ୍ୟବହାରରେ ଜିଲ୍ଲାବାସୀ ଧନ୍ୟ ହୋଇଛନ୍ତି । ସେ ପ୍ରଶାସନିକ ଜନପ୍ରତିନିଧି ଓ ଜନସାଧାରଣଙ୍କ ମଧ୍ୟରେ ସୁସ୍ଥ ସମନ୍ୱୟ ସ୍ଥାପନ କରିବାରେ ଅଦ୍ୱିତୀୟ ଥିଲେ । ସୁଦୂର ଗୁଜୁରାଟ ରାଜ୍ୟରୁ ଆସି ଜଣେ ଅଣଓଡ଼ିଆ ହୋଇ ମଧ୍ୟ ଓଡ଼ିଆ ଜାତିକୁ ସେ ଯେଉଁ ଅନାବିଳ ସ୍ନେହ, ଶ୍ରଦ୍ଧା ଓ ଅବଦାନ ଦେଖେଇ ଯାଇଛନ୍ତି ଫଳସ୍ୱରୂପ ଜିଲ୍ଲାବାସୀ ସବୁଦିନ ପାଇଁ ତାଙ୍କୁ ମନେରଖିଥିବେ ।

ଏକଦା ଏହି ମହାନ୍ ଆତ୍ମା ରଚନାତ୍ମକ କାର୍ଯ୍ୟ ପ୍ରଚାରରେଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଓ ମା' ରମାଦେବୀଙ୍କ ଗହଣରେ ମୋର ପତ୍ର କୁଡ଼ିଆରେ ପଦାର୍ପଣ କରି ମୋର ଭିଟାମାଟିକୁ ଧନ୍ୟ କରିଯାଇଛନ୍ତି ।

## ଐତିହାସିକ କୈଳାସ ଚନ୍ଦ୍ର ମହାନ୍ତି

ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି ନୀଳଗିରିର ସନ୍ତରାଗଡ଼ିଆ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବୃତ୍ତିରେ ସେ ଓକିଲ ଥିଲେ ଏବଂ ଭାରତୀୟ ଇତିହାସ ଶାସ୍ତ୍ରରେ ଜଣେ ବିଜ୍ଞ



Digitized by srujanika@gmail.com

ପ୍ରବକ୍ତା ଭାବରେ ଖ୍ୟାତିଲାଭ କରିଥିଲେ । ନୀଳଗିରିର ପ୍ରଜାମଣ୍ଡଳ ଆନ୍ଦୋଳନରେ ସେ ନେତୃତ୍ୱ ନେଇଥିଲେ । ଜିଲ୍ଲା କଂଗ୍ରେସ ସହ ସେ ସକ୍ରିୟ ସଂପର୍କ ରକ୍ଷା କରିଥିଲେ । ନୀଳଗିରିର ହାଡ଼ିବନ୍ଧୁ ରାଜ ଓ ବନମାଳୀ ଦାସ ଆଦି ବିପ୍ଳବୀ ନେତାମାନେ ତାଙ୍କର ଅନୁଗାମୀ ଥିଲେ । ବାଲେଶ୍ୱର ଜିଲ୍ଲାର ଜଣେ ଗାନ୍ଧିବାଦୀ କଂଗ୍ରେସ ନେତା ଭାବରେ ସାରା ରାଜ୍ୟରେ ତାଙ୍କର ବହୁତ ସୁନାମ ଓ ପ୍ରତିପତ୍ତି ଥିଲା । ଦେଶ ସ୍ୱାଧୀନ ହେଲା ଉତ୍ତାରୁ ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରୀମଣ୍ଡଳରେ ସେ ଯୋଗ ଦେଇଥିଲେ । ସଭାସମିତିରେ ତାଙ୍କର ଜ୍ଞାନଗର୍ଭ ଭାଷଣ ମନୋମୁଗ୍ଧକର ଥିଲା । ତାଙ୍କର ଭ୍ରାଇଁ ଭଦ୍ରକର ଗାନ୍ଧିବାଦୀ ନେତା ଗୋକୁଳାନନ୍ଦ ମହାନ୍ତି ବାଲେଶ୍ୱରରୁ ଲୋକସଭା ସଦସ୍ୟ ଭାବେ ନିର୍ବାଚିତ ହୋଇଥିଲେ ।

## ଚାରୁଚନ୍ଦ୍ର ରାୟ ମହାଶୟ

ଭୋଗରାଇର ଦେହୁର୍ଦା ଗ୍ରାମର ଏକ ସ୍ୱନାମଧନ୍ୟ ଜମିଦାର ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ପେଶାରେ ସେ ବାଲେଶ୍ୱରରେ ଜଣେ ବିଖ୍ୟାତ ଓକିଲ ଭାବେ ଆପଣାର ଜୀବନ ଜୀବିକା ଅର୍ଜନ ପାଇଁ ବସା ବାନ୍ଧିଥିଲେ । ଚାରୁବାବୁ ପ୍ରଥମରୁ କଂଗ୍ରେସର ସମର୍ଥକ ଥିଲେ । ସୁଭାଷ ବୋଷଙ୍କ ଅନୁଗାମୀ ଥିଲେ । ତତ୍କାଳୀନ ଜିଲ୍ଲା ବୋର୍ଡ଼ର ଉପସଭାପତି ଭାବେ ନିର୍ବାଚିତ ହୋଇଥିଲେ । ବିଂଶ ଶତାବ୍ଦୀର ଚତୁର୍ଥ ଦଶକ କାଳରେ ସେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଉତ୍ତର ବାଲେଶ୍ୱର ନିର୍ବାଚନ ମଣ୍ଡଳୀରୁ । ଏଣୁ ବାଲେଶ୍ୱର ଜିଲ୍ଲାରେ ସେତେବେଳେ ଜଣେ ପ୍ରତିପତ୍ତିଶାଳୀ ବ୍ୟକ୍ତି ଭାବରେ ଖ୍ୟାତ ଥିଲେ । ତାଙ୍କର ଭଣଜା ରାୟବାହାଦୁର ମନ୍ମଥନାଥ ବସୁ (କଖଡ଼ା ଗ୍ରାମର), ପୁରୀ, ବାଲେଶ୍ୱର ଜିଲ୍ଲାର କଲେକ୍ଟର ଥାଇ ବହୁ ଜନହିତକର କାର୍ଯ୍ୟ କରି ସୁନାମ ଅର୍ଜନ କରିଥିଲେ । ଚାରୁବାବୁଙ୍କର ସାନପୁଅ ସୋବେଶ ରାୟ କଟକ ହାଇକୋର୍ଟରେ ଆଡଭୋକେଟ୍ ଜେନେରାଲ କାର୍ଯ୍ୟରେ ନିଯୁକ୍ତ ହୋଇ ଅଞ୍ଚଳର ମୁଖ ଉଜ୍ଜ୍ୱଳ କରିବାକୁ ସମର୍ଥ ହୋଇ ପାରିଥିଲେ ।

ସେ ଉତ୍ତର ବାଲେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳ ତରଫରୁ ନିର୍ବାଚିତ ହୋଇଥିଲେ । ପରିବର୍ତ୍ତିତ ପରିସ୍ଥିତିରେ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ସେ ପାରଳା ମନ୍ତ୍ରୀମଣ୍ଡଳକୁ ସମର୍ଥନ କରି କଂଗ୍ରେସ ଦଳରୁ ଓହରି ଯାଇଥିଲେ ।



Digitized by srujanika@gmail.com

## ମୌଲବି ମହମ୍ମଦ ହନିଫ୍

କଂଗ୍ରେସପନ୍ଥୀ ଏହି ପରିଶୁଦ୍ଧ ବ୍ୟକ୍ତିଜଣକ ଭଦ୍ରକ ସହରରେ ଜନ୍ମଗ୍ରହଣ କରିଥିଲେ । ସେ ସମୟରେ ସେ ବାଲେଶ୍ୱର ଜିଲ୍ଲାର ଏକମାତ୍ର ମୁସଲମାନ ନେତା ଥିଲେ । ଖଦି ପ୍ରସ୍ତୁତ ପତ୍‌ଲୁନ୍ ପଞ୍ଜାବୀ ଓ ଗାନ୍ଧିଟୋପି ମଣ୍ଡିତ ତାଙ୍କର ସୌମ୍ୟକାନ୍ତ ଚେହେରା ବଡ଼ ସୁନ୍ଦର ଥିଲା । ସେ ସରଳ, ଶାନ୍ତ ଓ ମିଷ୍ଟଭାଷୀ ଥିଲେ । ବାଲେଶ୍ୱର ଜିଲ୍ଲାବୋର୍ଡ଼ର ସଭାପତି ପଦରେ ଦୀର୍ଘଦିନ ଧରି ଅଧିଷ୍ଠିତ ରହି ବହୁ ଜନହିତକର କାର୍ଯ୍ୟ କରିବାକୁ ସମର୍ଥ ହୋଇଥିଲେ । ସ୍ୱଦେଶୀ ଆନ୍ଦୋଳନରେ ସେ ଜିଲ୍ଲାର ଜଣେ ସମର୍ଥ ନେତା ରୂପେ ପରିଚିତ ଥିଲେ ଏବଂ ଏଥିପାଇଁ ବହୁବାର କାରାବରଣ କରିଥିଲେ । ତାଙ୍କର ପୁତ୍ର କମ୍‌ରୁଲ୍ ଲୋଦା ଆଜାଦ୍ ୧୯୪୨ ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ । ହନିଫ୍ ବାବୁଙ୍କ ଉତ୍ତମ ବନ୍ଧୁବତ୍ସଳ ବ୍ୟବହାର ପାଇଁ ତାଙ୍କୁ ସମସ୍ତେ ଶ୍ରଦ୍ଧା କରୁଥିଲେ । ଜିଲ୍ଲା ତମାମ୍ ତାଙ୍କର ବହୁତ ସୁନାମ ଓ ଖ୍ୟାତି ଥିଲା ।

## ସବୁରି ପ୍ରିୟ : ପ୍ରିୟନାଥ ସରକାର

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ବାଲେଶ୍ୱର ସହରରେ ଗୋପାଳଗାଁରେ ପ୍ରିୟବାବୁଙ୍କ ଜନ୍ମ । ସେ ମାତ୍ର ୨୦ବର୍ଷ ବୟସରେ ଏମ୍.ଏ.ବି.ଏଲ୍. ପାସ୍‌କରି ଆଇନ୍ ବ୍ୟବସାୟ ଆରମ୍ଭ କରିପାରିଥିଲେ । ତାଙ୍କର ବାପା ରେବତୀମୋହନ ସରକାର ମଧ୍ୟ ପୂର୍ବରୁ ଜଣେ ଆଇନ୍‌ଜୀବୀ ଭାବେ ବିଶେଷ ଖ୍ୟାତିଲାଭ କରିଥିଲେ । ପ୍ରିୟବାବୁଙ୍କ ମାମୁଘର କଲିକତାର ଗଡ଼ପାର ରୋଡ଼ରେ । ତାଙ୍କର ସାନମାମୁ ତୁଳସୀ ଘୋଷ ବି.ଏ.ପାସ୍ କରି ସରକାରୀ ବାସଭବନରେ ରହୁଥାନ୍ତି । ମାମୁ, ଭଣଜା ଉଭୟ ଦେଶର ଅହିଂସା, ଅସହଯୋଗ ଆନ୍ଦୋଳନରେ ଯୋଗଦେଇ କାରାବରଣ କରି ପାଟଣା ଜେଲ୍‌ରେ ବନ୍ଦୀଥିଲେ ଲୁଣମରା ଆନ୍ଦୋଳନ ପୂର୍ବରୁ । ସେମାନଙ୍କ ସହ ମୋ ବଡ଼ଭାଇ ପ୍ୟାରୀବାବୁଙ୍କ ସହ ସେଠାରେ ଦେଖାସାକ୍ଷାତ ହୋଇଥିଲା । ସେ ସମସ୍ତେ ୧୯୩୦ ମସିହା ପୂର୍ବରୁ ଜେଲ୍‌ରୁ ମୁକୁଳି ଆସି ସରକାର ବାସଭବନରେ ରହୁଥିଲେ । ତୁଳସୀ ବାବୁ ଉଭୟ ପ୍ରିୟ ଓ ପ୍ୟାରୀଙ୍କ ମାମୁଥିଲେ । ଦେଶାତ୍ମବୋଧ ସେମାନଙ୍କୁ ଘାରି ଯାଇଥିଲା । ପ୍ରିୟବାବୁ ଓକିଲାତି ଓ ତୁଳସୀ-ପ୍ୟାରୀ ତେଜରାତି ବ୍ୟବସାୟ ଆରମ୍ଭ କରିଥାନ୍ତି ମୋତିଗଞ୍ଜ ବଜାରରେ । ୧୯୩୯ ମସିହାରେ ନେତାଜୀ ଶେଷଥର ପାଇଁ ଓଡ଼ିଶା ଆସି ପ୍ରିୟବାବୁଙ୍କ ଘରେ ଆମ ସମସ୍ତଙ୍କୁ ଦର୍ଶନ ଦେଇ ଧନ୍ୟ କରିଥିଲେ ।



Digitized by srujanika@gmail.com

ପ୍ରିୟବାବୁ ଜଣେ ଶାନ୍ତ, ଉଦାର ସାଧୁ ପ୍ରକୃତିର ଲୋକଥିଲେ । ଶତାବ୍ଦୀର ଚତୁର୍ଥ ଦଶକରେ ସେ ହସଗର ମ୍ୟୁନିସିପାଲିଟିର ଚେୟାରମେନ୍ ଭାବେ ନିର୍ବାଚିତ ହୋଇଥିଲେ । ସରକାର ବାସଭବନ ତତ୍କାଳୀନ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ବିଶେଷ ଆଡ୍ଡା ଥିଲା । ୧୯୩୮ରେ ମୁଁ ମଧ୍ୟ ପାଠପଢ଼ା ଉଦ୍ଦେଶ୍ୟରେ ଆସି ଉକ୍ତଘରେ ରହିବାର ସୌଭାଗ୍ୟ ଲାଭ କରିଥିଲି । ସ୍ୱାଧୀନତା ଆନ୍ଦୋଳନ କ୍ରମେ ଭାରତରେ ଏକ ବିସ୍ତୃତ ରଣାଙ୍ଗନରେ ପରିଣତ ହେଲା । ତେଣୁ ଆମେ ସମସ୍ତେ ୧୯୩୫ରୁ ୪୫ଯାଏ ମିଶି ଏହି ଯୁଦ୍ଧରେ ଅଂଶୀଦାର ହେବାକୁ ବାଧ୍ୟ ହେଲୁ ।

ପ୍ରିୟବାବୁ ପରବର୍ତ୍ତୀକାଳରେ ସ୍ୱାଧୀନତା ପ୍ରାପ୍ତିପରେ ପ୍ରଶାସନିକ କ୍ଷେତ୍ରରେ ଯୋଗଦେଇ ଏସ୍.ଡି.ଓ. ହୋଇ ଅବସର ନେଲାପରେ ଓଡ଼ିଶା ଖଦୀବୋର୍ଡ଼ର ସ୍ପେଶାଲ ଅଫିସର ରୂପେ କାର୍ଯ୍ୟ କରିଥିଲେ । ତାଙ୍କର ସୁପୁତ୍ର ଲକ୍ଷ୍ମୀକାନ୍ତ ସରକାର ରାଜ୍ୟ ସରକାରଙ୍କର ଜଳସେଚନ ବିଭାଗର ମୁଖ୍ୟ ଯନ୍ତ୍ରୀ ଭାବେ କାର୍ଯ୍ୟକରି ଅବସର ନେଇ ଏବେ ଏଇ ସରକାର ବାସଭବନରେ ରହିଛନ୍ତି ।

ଗୋପାଳଗାଁର ଏହି ସରକାର ବାସଭବନର ସେବା ଦେଶର ସ୍ୱାଧୀନତା ଆନ୍ଦୋଳନରେ ଅବଦାନ ଅଭୁଲା ଓ ଅନସ୍ୱୀକାର୍ଯ୍ୟ ।

## ସୁପ୍ରଶାସକ ମନ୍ମଥନାଥ ବସୁ

ଭୋଗରାଇର କଖଡ଼ା ଗ୍ରାମରେ ଏ ମହାଶୟଙ୍କର ଜନ୍ମ ହୋଇଥିଲା । ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀ ହାସଲ ପରେ ସେ ପ୍ରଶାସନିକ ବିଭାଗରେ ଯୋଗଦେଇ ନିଜ ଦକ୍ଷତା ବଳରେ ଦେଶ ସ୍ୱାଧୀନ ହେବା ପୂର୍ବରୁ ଜିଲ୍ଲା କଲେକ୍ଟର ଭାବରେ ଉନ୍ନୀତ ହୋଇ ପାରିଥିଲେ । ଭଦ୍ରଖରେ ଏସ୍.ଡି.ଓ. ଥିବାବେଳେ ୧୯୩୪ ମସିହାରେ ଗାନ୍ଧିଜୀଙ୍କର ହରିଜନ ପଦଯାତ୍ରା ବେଳେ ୧୪୪ଧାରା ଜାରି କରି ତାଙ୍କ ସଭାକୁ ବନ୍ଦ କରିଥିଲେ । ଫଳରେ ବ୍ରିଟିଶ ସରକାର ପ୍ରୀତ ହୋଇ ତାଙ୍କୁ ରାୟ ବାହାଦୁର ପଦରେ ଭୂଷିତ କରିଥିଲେ । ପୁରୀ କଲେକ୍ଟର ଥିବାବେଳେ ସେ ଅବସର ନେଇ ପୁରୀରେ ରହିଥିଲେ । ୧୯୪୩-୪୪ ଦୁର୍ଭିକ୍ଷ ସମୟରେ ପାରଳା ମନ୍ତ୍ରୀମଣ୍ଡଳ ତାଙ୍କୁ ବାଲେଶ୍ୱର କଲେକ୍ଟର ଭାବରେ ପୁନଃ ନିଯୁକ୍ତି ଦେଇ ଉତ୍ତର ବାଲେଶ୍ୱରର ଦୁର୍ଭିକ୍ଷ ଜନିତ ଦୁଃଖ ଅବସ୍ଥା ସମ୍ଭାଳିବାକୁ କହିଥିଲେ । ମନ୍ମଥବାବୁ ପୂର୍ବାର୍ଜିତ ଅଭିଜ୍ଞତା ଓ ଦକ୍ଷତା ବଳରେ ବହୁତ ଚେଷ୍ଟା ଚଳାଇ ଆର୍ତ୍ତ ପୀଡ଼ିତ ଜନତାର ସେବାରେ ତତ୍ପର ହୋଇ ସୁନାମ ଅର୍ଜନ କରିଥିଲେ । ଭୋଗରାଇ ଇଲାକାରେ ମନ୍ମଥବାବୁଙ୍କର ସେବା କାର୍ଯ୍ୟ ଏବେ ସୁଦ୍ଧା ଲୋକେ ମନେପକାନ୍ତି ।



Digitized by srujanika@gmail.com

ମନବାବୁଙ୍କର ବଂଶ ଏକ ବୁନିଆଦି ବଂଶ ଥିଲା । ତତ୍କାଳୀନ ଏମ୍.ଏଲ୍.ଏ. ଚାରୁଚନ୍ଦ୍ର ରାୟ ତାଙ୍କର ମାମୁଥିଲେ । ତାଙ୍କର ଜଣେ ଭ୍ରାତୃପୁତ୍ର ଅନନ୍ତ ବସୁ ଜଣେ ମାଜିଷ୍ଟ୍ରେଟ୍ ହୋଇ ପାରିଥିଲେ ଓ ପୁଅ ବସନ୍ତ ବସୁ ଜଣେ ପ୍ରସିଦ୍ଧ ଡାକ୍ତର ଥିଲେ । କଖଡ଼ା ଗ୍ରାମର ଏହି ବୃହତ୍ ବସୁ ପରିବାରର ପୂର୍ବଜମାନେ ଅତିଶୟ ସମ୍ଭ୍ରାନ୍ତ ସୁଶିକ୍ଷିତ ଥିଲେ । ସେମାନଙ୍କର କୃତିତ୍ୱ ଓ ମହତ କାର୍ଯ୍ୟକଳାପ ଏହି ଗ୍ରାମକୁ ସମଗ୍ର ଅଞ୍ଚଳରେ ବିଶେଷ ପ୍ରସିଦ୍ଧି ଆଣି ଦେଇଛି । ଏହି ବଂଶର କବି ଅମୀୟ ବସୁ, ସିନେ ଚିତ୍ରଶିଳ୍ପୀ ଅସୀମ ବସୁ, ଇଂଜିନିଅର ହରେନ୍ଦ୍ରଲାଲ ବସୁ ଓ ଡାକ୍ତର ସୁରେନ୍ଦ୍ର ଲାଲ୍ ବସୁ ଆଦି ସର୍ବତ୍ର ସୁବିଦିତ ଅଟନ୍ତି ।

## ଶିଳ୍ପୀ ଗୌରାଙ୍ଗ ସୋମ୍

ଭୋଗରାଇର ବିଶିଷ୍ଟ ବ୍ୟକ୍ତି ୰ଜ୍ଞାନେନ୍ଦ୍ର ସୋମ୍‌ଙ୍କ ବଂଶରେ ଗୌରାଙ୍ଗ ବାବୁଙ୍କର ଜନ୍ମ । ଛାତ୍ରାବସ୍ଥାରୁ ତାଙ୍କର ଚାରୁଚିତ୍ର କଳାପ୍ରତି ଆଗ୍ରହ ଦେଖାଯାଇଥିଲା । ଗୌରାଙ୍ଗ ମହାପ୍ରଭୁଙ୍କ ଭଳି ସେ ସୁନ୍ଦର ସୁଠାମ ଶରୀର ଧାରଣ କରିଥିଲେ । ଜମାଲପୁର ହାଇସ୍କୁଲରେ ଡ୍ରଇଂ ଶିକ୍ଷକ ରୂପେ ସେ ପ୍ରଥମେ ଯୋଗଦେଇଥିଲେ । ରାଜ୍ୟ ସରକାରଙ୍କର ଛାତ୍ରବୃତ୍ତି ପ୍ରତିଯୋଗିତାରେ ସେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ଉତ୍କର୍ଷ ଚାରୁଚିତ୍ର କଳା ଅଧ୍ୟୟନ ସକାଶେ ବିଶ୍ୱକବିଙ୍କର ଶାନ୍ତିନିକେତନ ବିଶ୍ୱବିଦ୍ୟାଳୟରେ ଯୋଗଦେଇ ପାରିଥିଲେ । ସମ୍ବଲପୁରର ପୁଝାରୀ ପରିବାରର ବାଲ୍ୟବିଧବା ବୀଣା ପୁଝାରୀ ମଧ ସେତିକିବେଳେ ଶାନ୍ତିନିକେତନ ଆସି ତାଙ୍କ ସହ ଚିତ୍ରକଳା ଶିକ୍ଷା ସକାଶେ ଯୋଗ ଦେଇଥିଲେ । ପରେ ଉଭୟେ ସମ୍ମାନର ସହ ଶାନ୍ତିନିକେତନରୁ ଉଚ୍ଚ ଡିଗ୍ରୀ ହାସଲ କରି ରାଜସ୍ଥାନର ବିରଳା ମଣ୍ଡେଶ୍ୱରୀ ଚାରୁଚିତ୍ରକଳା କଲେଜରେ ଅଧ୍ୟାପକ ଓ ଅଧ୍ୟାପିକା ଭାବରେ ଯୋଗଦେଇ ଦୀର୍ଘବର୍ଷ ଧରି ଦକ୍ଷତାର ସହ କାର୍ଯ୍ୟଭାର ବହନ କରିବାକୁ ସକ୍ଷମ ହୋଇପାରିଥିଲେ । ସମଗ୍ର ଭାରତରେ ସେମାନେ ବିଶିଷ୍ଟ ଚିତ୍ରକର ଭାବରେ ଜି.ସୋମ୍ ଓ ବି.ସୋମ୍ ଭାବରେ ବିଖ୍ୟାତ ଓ ସୁପରିଚିତ । ଏମାନେ ଶେଷରେ ବିବାହ ସୂତ୍ରରେ ଆବଦ୍ଧ ହୋଇ ଚିତ୍ରରେଖା ଓ ସୁବର୍ଣ୍ଣରେଖା ନାମ୍ନୀ ଦୁଇଟି କନ୍ୟାକୁ ଜନ୍ମ ଦେଇଥିଲେ । ମାତୃଭୂମି ଭୋଗରାଇ ପ୍ରତି ସେମାନଙ୍କର ଗଭୀର ଅନୁରାଗ ରହିଆସିଛି । ସେମାନଙ୍କର କୃତିତ୍ୱରେ ଆମେ ସମସ୍ତେ ମହିମାନ୍ୱିତ । ରଂଗ ତୂଳୀ, ପେନ୍‌ସିଲ୍, କାଗଜ, କାର୍‌ପେଟ୍, ବୋର୍ଡ଼, ପ୍ରସ୍ତରଖଣ୍ଡ, ଚୂନ, ଗୁଡ଼, କି ସମେଣ୍ଟ ବାଲି ତାଙ୍କର ଚିତ୍ରକଳ୍ପ ଓ ମୂର୍ତ୍ତିଗଠନର ଉପାଦାନ ଥିଲା । ଏହି ଅଭିନବ ଶିଳ୍ପୀ ଦମ୍ପତିଙ୍କର ଚିତ୍ରମାନ ସବୁ ପତ୍ରିକା ଖବରକାଗଜରେ ବହୁଳ ଭାବରେ ପ୍ରକାଶିତ ।



Digitized by srujanika@gmail.com

## ବିପ୍ଳବୀ ବନମାଳୀ ଦାସ

୧୯୪୧ ମସିହାରେ ନୀଳଗିରିର ସର୍ବକାଳୀନ ନେତା ଭାବରେ ପ୍ରଜାମଣ୍ଡଳ ଆନ୍ଦୋଳନ କାଳରୁ ନିଜର ରାଜନୀତି ଜୀବନ ଆରମ୍ଭ କରିଥିଲେ । ସ୍ୱର୍ଗତଃ କୈଳାସ ଚନ୍ଦ୍ର ମହାନ୍ତିଙ୍କ ଅଧ୍ୟକ୍ଷତାରେ ସେ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗଦେଇ ନିଜର ଦକ୍ଷତା ପ୍ରତିପାଦନ କରିପାରିଛନ୍ତି । ସେ ସାମ୍ୟବାଦୀ ଭାବାପନ୍ନ ଥିଲେ । ସେ ଜଣେ ମହାନ୍ ତ୍ୟାଗୀ ଓ ସେବାପରାୟଣ ବ୍ୟକ୍ତିଭାବେ ସମଗ୍ର ରାଜ୍ୟରେ ପରିଚିତ । ଆମମାନଙ୍କର ସଂଗ୍ରାମୀ ଜୀବନରେ ବନମାଳୀବାବୁ ଆମର ଆଦର୍ଶ ଥିଲେ । ତାଙ୍କର ଅତି ସାଧାରଣ ଜୀବନଧାରା ସମସ୍ତଙ୍କୁ ଆକୃଷ୍ଟ କରିପାରିଥିଲା । ଦୁର୍ନୀତି, ଅତ୍ୟାଚାର, ପ୍ରଜାପୀଡ଼ନ ବିରୁଦ୍ଧରେ ସେ ସଦା ସ୍ୱର ଉତ୍ତୋଳନ କରିଆସିଛନ୍ତି । ଦାରିଦ୍ର୍ୟ ଓ ଶରୀର ପୀଡ଼ା ତାଙ୍କର ଅଂଗର ଭୂଷଣ ଥିଲା । ଅତ୍ୟାଚାର ସହିସହି ସେ ପାଷାଣ ପାଲଟି ଯାଇଥିଲେ । କିଛିବର୍ଷ ସେ ନୀଳଗିରିର ବିଧାୟକ ଭାବେ ନିର୍ବାଚିତ ହୋଇ ନୀଳଗିରିକୁ କୁସଂସ୍କାରମୁକ୍ତ, ଉନ୍ନତ କରି ଗଢ଼ିବାକୁ ସକ୍ଷମ ହୋଇପାରିଥିଲେ । ତାଙ୍କଭଳି ଜଣେ ବିପ୍ଳବୀ ତ୍ୟାଗୀ ସେବକଙ୍କ ତ୍ୟାଗପୂତ ଜୀବନର ପଟାନ୍ତର ନାହିଁ ।

## ସଂଗ୍ରାମୀ କରୁଣାକର ପାଣିଗ୍ରାହୀ

ଜୀବନରେ ବହୁ ଚର୍ଚ୍ଚିତ ଏହି ବ୍ୟକ୍ତି ଖଣ ତାଦଡ଼ା ଅଞ୍ଚଳରେ ମହାରାଜାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଶରୀରର ଉଚ୍ଚତା କମ୍ ଥିଲା । ରେଭେନ୍ସା କଲେଜରେ ସେ ମହତାବବାବୁଙ୍କ ସତୀର୍ଥ ଥିଲେ । ତାଙ୍କର ଚାଉଳ କଳମାନ ଥିଲା । ତାଙ୍କ ପରିବାରର ଅନେକେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇଥିଲେ ତାଙ୍କ ସହିତ । ଜିଲ୍ଲାର କଂଗ୍ରେସ ଆନ୍ଦୋଳନର ସେ ଜଣେ ପ୍ରଧାନ ପୁରୋଧା, ମୁକ୍ତିଯୋଦ୍ଧା ଓ ସଂଗଠକ ଭାବରେ ଖ୍ୟାତିଲାଭ କରିଥିଲେ । ଜିଲ୍ଲା କଂଗ୍ରେସର ସଭାପତି ବିଧାନସଭାର ସଭ୍ୟ ଓ ଜିଲ୍ଲାବୋର୍ଡ଼ର କର୍ମକର୍ତ୍ତା ପଦ ସମ୍ଭାଳିବାକୁ ସେ ବହୁବାର ସମର୍ଥ ହୋଇଥିଲେ । ସେ ତୀକ୍ଷ୍ଣବୁଦ୍ଧି ସଂପନ୍ନ ବ୍ୟକ୍ତିଥିଲେ । ବ୍ୟବହାର ମଧ୍ୟ ରୁଚିକର ଥିଲା । ସମସ୍ତ ପ୍ରଶାସନ କର୍ମଚାରୀ କରୁଣାକରବାବୁଙ୍କୁ ସମ୍ମାନ କରୁଥିଲେ । ଉତ୍ତର ବାଲେଶ୍ୱର ତଥା ଦକ୍ଷିଣ ବାଲେଶ୍ୱରର ବିଧାନସଭାର ପଦବୀରେ ରହି ସେ ବହୁ ଉନ୍ନତିମୂଳକ କାର୍ଯ୍ୟ କରିଯାଇଛନ୍ତି । ସାରାଜୀବନ ସେ ଜିଲ୍ଲାର କର୍ଣ୍ଣଧାର ଥାଇ ସୁନାମ ଅର୍ଜନ କରିପାରିଛନ୍ତି । ଆପଣାର ତୀକ୍ଷ୍ଣ ଧୀଶକ୍ତି ବଳରେ ସେ ବହୁ ଅସାଧ୍ୟକୁ ସାଧନ କରିବାକୁ ସକ୍ଷମ ହୋଇପାରିଥିଲେ । ସେ



Digitized by srujanika@gmail.com

ବହୁ ସ୍ୱାଧୀନତା ସଂଗ୍ରାମୀ ଓ କଂଗ୍ରେସକର୍ମୀମାନଙ୍କର ଜୀବନଧାରଣର ମାନ ସହଜ କରିଯାଇଛନ୍ତି । କରୁଣାକରବାବୁଙ୍କୁ ଏ ଜିଲ୍ଲାର ଜନସାଧାରଣ ବହୁଦିନ ମନେରଖିବେ ନିଶ୍ଚୟ ।

## ଐତିହାସିକ ପ୍ରଫେସର ମନ୍ମଥ ନାଥ ଦାସ

ଉତ୍ତର ବାଲେଶ୍ୱର ମାଟିରେ ଜନ୍ମଲାଭ କରି ଇତିହାସ, ସାହିତ୍ୟ ଓ ରାଜନୀତିକ ପ୍ରତିଭା ବିସ୍ତାର କରି ଆନ୍ତର୍ଜାତିକ କ୍ଷେତ୍ରରେ ନିଜକୁ ସୁପରିଚିତ କରି ପାରିଥିବା ବ୍ୟକ୍ତି ହେଲେ ପ୍ରଫେସର ମନ୍ମଥ ନାଥ ଦାସ । ଭୋଗରାଇର ଶଙ୍ଖାରୀ ଗ୍ରାମରେ ଜନ୍ମଲାଭ କରିଥିଲେ । ପ୍ରାତଃ ସ୍ମରଣୀୟ ଧର୍ମପ୍ରାଣ ମଦନମୋହନ ଦାସ ତାଙ୍କର ପିତାମହ । ମାତୃଦେବୀ କାଦମ୍ବିନୀ ଦେବୀ ଓ ଅନୁଜ ମନୋଜ ଦାସ ବିଶ୍ୱବିଖ୍ୟାତ ଗାଳ୍ପିକ ଓ ଆଧ୍ୟାତ୍ମବାଦୀ ଶିକ୍ଷାବିତ୍ ଅଟନ୍ତି । ମନ୍ମଥବାବୁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ମୋର ସହପାଠୀ ଥିଲେ ।

ଉଚ୍ଚଶିକ୍ଷା ଲାଭକରି ସେ ବାଲେଶ୍ୱର ଫକୀରମୋହନ କଲେଜରେ ପ୍ରଥମେ ଇତିହାସ ଅଧ୍ୟାପକ ଭାବେ ଯୋଗଦେଇଥିଲେ ବିଂଶ ଶତାବ୍ଦୀର ୫ମ ଦଶକରେ । ମହତାବବାବୁଙ୍କ ପ୍ରେରଣାରେ ସେ ଓଡ଼ିଶାର ଇତିହାସକୁ ଇଂରାଜୀରେ ଅନୁବାଦ କରିବାକୁ ସକ୍ଷମ ହୋଇଥିଲେ । ପରେପରେ ଭାରତ ତଥା ବିଶ୍ୱର ଇତିହାସକୁ ଜୀବନ୍ତ ଓ କାଳଜୟୀ ରୂପ ଦେବାକୁ ସେ ଚେଷ୍ଟା କରିଥିଲେ । ବିଲାତରୁ ପି.ଏଚ୍.ଡି. ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡିଲିଟ୍ ଉପାଧି ହାସଲ କରି ସେ ଏହି ବିଶ୍ୱବିଦ୍ୟାଳୟର କୁଳପତି ରୂପେ ଦୀର୍ଘବର୍ଷ ଦକ୍ଷତାର ସହ କାର୍ଯ୍ୟ କରିଥିଲେ । ଇତିହାସ ଛଡ଼ା ବହୁ ଗଳ୍ପ, ପ୍ରବନ୍ଧ, ନାଟକମାନ ସେ ସରଳ ଜୀବନ୍ତ ଭାଷାରେ ଲେଖିଛନ୍ତି । ରାଜ୍ୟସଭାର ସଦସ୍ୟପଦ ସେ ଅବାଧରେ ପାଇ ଅଞ୍ଚଳ ତଥା ଉତ୍କଳର ପ୍ରଭୂତ ସେବାକରିବାରେ ସକ୍ଷମ ହୋଇପାରିଛନ୍ତି । ମା' କାଦମ୍ବିନୀ ଦେବୀ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା କାବ୍ୟ ରଚନା କରି ଏବଂ ଏହି ଅଞ୍ଚଳରେ ବହୁ ଧର୍ମାନୁଷ୍ଠାନମାନ ପ୍ରତିଷ୍ଠା କରି ଅମର ହୋଇ ଯାଇଛନ୍ତି । ଚନ୍ଦନେଶ୍ୱରର ଜଗନ୍ନାଥ ମନ୍ଦିର ତାଙ୍କର କୀର୍ତ୍ତି । ଦୁର୍ଭିକ୍ଷ ସମୟରେ ଏହି ବୀରାଙ୍ଗନା ଜଣକ ପ୍ରବଳ ପ୍ରତାପୀ ଡକାୟତ ଦଳକୁ ନିଜ ସାହସ ଓ ବାହୁବଳରେ ଘରୁ ହଟାଇ ଦେବାକୁ ସକ୍ଷମ ହୋଇପାରିଥିଲେ । ଏଭଳି ଏକ ଉଚ୍ଚ ଚେତନାଶୀଳ ମା' ଗର୍ଭରୁ ଜନ୍ମଲାଭ କରିଥିବା ମନ ଓ ମନ୍ଟୁ - ମନ୍ମଥ ଓ ମନୋଜ ଏତେବଡ଼ ହେବେନାହିଁ ତ ଆଉ କିଏ ହେବ ? ଧନ୍ୟ ସେ ମାଟି ଶଙ୍ଖାରୀ । ଧନ୍ୟ ସେ ଦାସବଂଶ । ଏହି ମହାପ୍ରାଣମାନଙ୍କୁ କୋଳରେ ଧରି ଆଜି ବିଶ୍ୱରେ ବନ୍ଦିତ, ଚର୍ଚ୍ଚିତ ଓ ଚିର ସ୍ମରଣୀୟ ହୋଇ ରହିଛି । ଏହି ଧାର୍ମିକ, ସୁସାହିତ୍ୟିକ, ଐତିହାସିକ ପରିବାରର



Digitized by srujanika@gmail.com

ସଭ୍ୟ ଥାଇ ବାବାଜୀ ଗୋପାଳ ଚନ୍ଦ୍ର ଦାସ, କକା ଶିକ୍ଷାବିତ୍ ଡକ୍ଟର କାଳୀକୁମାର ଦାସ, ଭାଇବୋହୂ ଡାକ୍ତର କମଳା ଦାସ ଭୋଗରାଇରୁ ପ୍ରଥମ ମନ୍ତ୍ରୀପଦ ଅଳଙ୍କୃତ କରିପାରିଥିଲେ । ମନୋଜବାବୁଙ୍କ କଥା କହିଲେ ନସରେ । ସେ ତ ଉଚ୍ଚକୋଟୀର ସାହିତ୍ୟ ରଚନାକାରୀ ଭାବେ ଏବଂ ଅତିମାନସ ଚେତନାର ପ୍ରବକ୍ତା ଓ ଶିକ୍ଷାବିତ୍ ଭାବେ ଭୁବନ ବିଜୟ କରିପାରିଛନ୍ତି ।

ଶଙ୍ଖାରୀ ଦାସ ପରିବାର ସହ ମୋର ମଧୁର ପାରିବାରିକ ସଂପର୍କ ପିଲାଦିନୁ ରହିଆସିଛି । ସେମାନଙ୍କ ଆଦର୍ଶରେ ମୋର ଜୀବନଚର୍ଯ୍ୟା ବିଶେଷ ଭାବେ ଅନୁପ୍ରାଣିତ ।

ମନ୍ମଥବାବୁ ଓଡ଼ିଆ ଭାଷାରେ ଯୁଗେଯୁଗେ ଉତ୍କଳୀୟ ଧର୍ମ ଓ ସାହିତ୍ୟ, ଅସ୍ତରାଗ, ଅସ୍ପଷ୍ଟ ଆଖ୍ୟାନ, ସମୟ ସାଗର ତୀରେ, ଜୀବନର ପଥପ୍ରାନ୍ତେ, ଦିଗନ୍ତର ଦୃଶ୍ୟ, ଆଧାତ୍ମିକ ଆଭା ଆଦି ପୁସ୍ତକ ରଚନା କରିଥିଲେ ।

ସେ ଥିଲେ ବାଲେଶ୍ୱର ମାଟିର ସନ୍ତାନ ଭାବରେ ବିଶ୍ୱବିଦ୍ୟାଳୟର ସର୍ବପ୍ରଥମ କୁଳପତି । ତାଙ୍କ ପରେ ସିଂଲା ଥାନାର ପ୍ରଫେସର ସୁଦର୍ଶନ ନନ୍ଦ ଏହି ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ମନୋନୀତ ହୋଇଥିଲେ ।

## ବନ୍ଧୁ ବୁଦ୍ଧିଜୀବୀ ମୃତ୍ୟୁଞ୍ଜୟ ଜେନା

ଭୋଗରାଇର ଉତ୍ତର ବାରବାଟିଆ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାପା ସ୍ୱର୍ଗତଃ ରାମକୃଷ୍ଣ ଜେନା ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଜେଜେମା' ସଚଳା ଦେବୀ ଲବଣ ସତ୍ୟାଗ୍ରହ ବେଳେ ଲୁଣମାରି କାରାବରଣ କରିଥିଲେ । ଏହାଙ୍କର ଜନ୍ମ ଏକ ଧନୀ ଚାଷୀ ପରିବାରରେ । ତାଙ୍କର ବାପା ଜଣେ ସାହସୀ ଦେଶପ୍ରାଣ ବ୍ୟକ୍ତି ଥିଲେ । ଭୋଗରାଇର ସ୍ୱାଧୀନତା ଆନ୍ଦୋଳନକାରୀ ବ୍ୟକ୍ତିମାନଙ୍କୁ ସେ ସବୁମତେ ସାହାଯ୍ୟ କରି ନିଜେ ଜେଲ୍‌ବରଣ କରିବାକୁ ବାଧ ହୋଇଥିଲେ । ଜେନାମଣି ଦାନବୀର ବିଶ୍ୱନାଥ ପରିଡ଼ା ଜଳେଶ୍ୱରଙ୍କର ନାତୁଣୀକୁ ବିବାହ କରିଥିଲେ । ମୃତ୍ୟୁଞ୍ଜୟ ବାବୁ ପ୍ରଫେସର ମନ୍ମଥନାଥ ଦାସ ଓ ମୋର ଦୀର୍ଘଦିନର ସହପାଠୀ ଥିଲେ । ଚାଟାର୍ଡ଼ ଏକାଉଣ୍ଟାନ୍‌ସି ପାସ୍ କରିବା ପରେ ଭୂଦାନ ଆନ୍ଦୋଳନରେ ଯୋଗଦେଇଥିଲେ । କଂଗ୍ରେସର ରଚନାତ୍ମକ କାର୍ଯ୍ୟକ୍ରମ ତାଙ୍କର ଅତୀବ ପ୍ରିୟଥିଲା । ସେ ରାଜନୀତି ପସନ୍ଦ କରୁନଥିଲେ । ତାଙ୍କର ତୀକ୍ଷ୍ଣ ଧୀଶକ୍ତି ଓ ପ୍ରବଳ ସ୍ମୃତିଶକ୍ତି ରହିଥିଲା । ପୃଥିବୀର ସବୁ ଖବର ତାଙ୍କର ନଖଦର୍ପଣରେ ଥିଲା । ଖବରକାଗଜ ଓ ବଡ଼ବଡ଼ ଲୋକଙ୍କର ପ୍ରଣୀତ ପୁସ୍ତକର ସେ ନିୟମିତ ପାଠକ



Digitized by srujanika@gmail.com

ଥିଲେ । ବିଶ୍ୱର ଯେକୌଣସି ସମସ୍ୟା ଉପରେ ସେ ସାରଗର୍ଭକ ମନ୍ତବ୍ୟ ଦେବାରେ ସମର୍ଥ ଥିଲେ । ସେ ସାହସୀ ଓ ଅପ୍ରିୟ ସତ୍ୟ ଭାଷୀ ଥିଲେ ତାଙ୍କର ବକ୍ତବ୍ୟରେ । ଯୁକ୍ତିରେ କେହି ତାଙ୍କୁ ଟପି ପାରୁନଥିଲେ । ଏକଦା ସେ ଜିଲ୍ଲା କଂଗ୍ରେସର ସଭାପତି ଦାୟିତ୍ୱ ବହନ କରିବାରେ ସମର୍ଥ ହୋଇଥିଲେ ଶ୍ୟାମସୁନ୍ଦର ମହାପାତ୍ରଙ୍କ ନେତୃତ୍ୱ ଅମଳରେ । ଜୀବନ ସଂଗ୍ରାମରେ ସେ କଦାପି ପରାସ୍ତ ହୋଇନାହାଁନ୍ତି । ଭୋଟ ରାଜନୀତି ସେ ପରିତ୍ୟାଗ କରିଥିଲେ । ନିଜର ବିପୁଳ ସମ୍ପତ୍ତି ସେ ପର ଉପକାରରେ ଲଗାଇ ଦେଇ ଶେଷକୁ ନିଃସ୍ୱ ହୋଇଯାଇଥିଲେ । ଏବଂ ରୋଗଶଯ୍ୟାରେ ପଡ଼ି ବହୁ ଦୁଃଖ କଷ୍ଟ ଓ ଯନ୍ତଣା ଭୋଗକରି ପରଲୋକ ପ୍ରାପ୍ତ ହୋଇଥିଲେ । ଉତ୍ତର ବାଲେଶ୍ୱରର ସେ ଜଣେ ଦାନୀ, ମାନୀ, ବୁଦ୍ଧିମାନ, ଶିକ୍ଷିତ ବ୍ୟକ୍ତି ଭାବରେ ପରିଗଣିତ ଅଟନ୍ତି । ତାଙ୍କ ସକାଶେ ବାଲେଶ୍ୱର ଜିଲ୍ଲା ବିଶେଷ ଭାବରେ ଗୌରବାନ୍ୱିତ ।

## ବିଖ୍ୟାତ କଥାଶିଳ୍ପୀ ପଦ୍ମଶ୍ରୀ ମନୋଜ ଦାସ

ଏ ମହାତ୍ମା ବିଶ୍ୱବିଖ୍ୟାତ ଐତିହାସିକ ପ୍ରଫେସର ମନ୍ମଥ ନାଥ ଦାସଙ୍କର ସାନଭାଇ ଅଟନ୍ତି । ବୟସରେ ତାଙ୍କଠାରୁ ଦଶବର୍ଷ ସାନ । ଡାକ ନାମ ମଣ୍ଟୁ । ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀ ହାସଲ ପରେ ସେ କଟକ ସହରକୁ ଆପଣାର ସାରସ୍ୱତ ସାଧନାର କ୍ଷେତ୍ର ରୂପେ ନିର୍ବାଚନ କରି ସେହିଠାରେ ଅବସ୍ଥାନ କରିଥିଲେ । ପୂର୍ବରୁ ବାଲେଶ୍ୱରରେ ଭାଇଙ୍କ ପାଖରେ ରହି ପାଠପଢ଼ିଲା ବେଳେ ସେ 'ଦିଗନ୍ତ' ନାମରେ ଏକ ସାରସ୍ୱତ ପତ୍ରିକା ବାହାର କରିଥିଲେ । ପ୍ରାରମ୍ଭରୁ ମନୋଜବାବୁ ବାମପନ୍ଥୀ ଭାବଧାରାର ଲୋକଥିଲେ । ତାଙ୍କର ଲେଖାମାନ ବିଭିନ୍ନ କାଗଜରେ ସେତେବେଳେ ପ୍ରକାଶ ପାଇ ଆସୁଥିଲା । ସେ କୁଜଙ୍ଗ ରାଜ ପରିବାରରୁ ବିବାହ କରିଥିଲେ । ତାଙ୍କର ଏକମାତ୍ର ପୁତ୍ରର ଅକାଳ ମୃତ୍ୟୁପରେ ଏହି ନବଦମ୍ପତି ପଣ୍ଡିଚେରୀ ଯାଇ ଶ୍ରୀମା ଅରବିନ୍ଦ ଆଶ୍ରମର ଅନ୍ତର୍ଭୁକ୍ତ ହେଲେ । ସେଠାରେ ସେ ଅରବିନ୍ଦଙ୍କ ଅତିମାନସ ଚେତନାରେ ଉଦ୍‌ବୁଦ୍ଧ ହେବା ସହ ଗବେଷଣା ନିରତ ହେଲେ । ପଣ୍ଡିଚେରୀରେ ସେ ଇଂରାଜୀ ଅଧ୍ୟାପକ ଭାବେ ଅଧ୍ୟାପନା ଦାୟିତ୍ୱ ବହନ କରି 'ହେରିଟେଜ୍' ନାମକ ଏକ ଇଂରାଜୀ ପତ୍ରିକାର ସଂପାଦନା କରିବାକୁ ଲାଗିଲେ । ଋଷି ଅରବିନ୍ଦଙ୍କ ଅତିମାନସ ଚେତନାର ଜଣେ ନିଷ୍ଠାବାନ ପ୍ରବକ୍ତା ଭାବେ ଭାରତ ଭ୍ରମଣ କରିବାକୁ ଲାଗିଲେ ।

ପ୍ରାରମ୍ଭରୁ ମନୋଜବାବୁ ଜଣେ ଓଡ଼ିଆ ଭାଷାର ସାରସ୍ୱତ ସାଧକ ଥିଲେ । ତାଙ୍କର ସବୁ ଗଳ୍ପ ପ୍ରଥମେ ଓଡ଼ିଆ ଓ ପରେ ଇଂରାଜୀ ଭାଷାରେ ସାରା ଭାରତ ଓ ବିଶ୍ୱର



Digitized by srujanika@gmail.com

ସବୁ ଦେଶରେ ପ୍ରକାଶିତ ହେବାକୁ ଲାଗିଲା । ଗଳ୍ପ ଗଠନରେ ତାଙ୍କର ଅଭିନବ କଳ୍ପନା ସମସ୍ତଙ୍କୁ ଚକିତ କରିଛି । ଆଜି ସେ ସାରା ବିଶ୍ୱରେ ଜଣେ ଖ୍ୟାତିସଂପନ୍ନ ଗାଳ୍ପିକ ଭାବେ ପ୍ରତିଷ୍ଠିତ ହୋଇପାରିଛନ୍ତି ।

ମନୋଜବାବୁ ନିଜର ମାତୃଭୂମିକୁ ଭୁଲିନାହାଁନ୍ତି । ସେ ଆମନ୍ତ୍ରିତ ହୋଇ ଓଡ଼ିଶା, ବାଲେଶ୍ୱର ଏବଂ ଭୋଗରାଇର ଭାଇ ଭଉଣୀମାନଙ୍କୁ ଆସି ଦେଖିଯାଆନ୍ତି ମଝିରେ ମଝିରେ । ବଡ଼ ଭକ୍ତି ଓ ସ୍ନେହ ବାତ୍ସଲ୍ୟପ୍ରବଣ ବ୍ୟକ୍ତି ସେ । ମୁଖର ଭାଷା ସୁରଭିର ଭାବ ବହନ କରି ସମସ୍ତଙ୍କୁ ଚକିତ କରେ । ସଂସାର ଧନ ସଂପତ୍ତିର ବାସନା ବନ୍ଧନରୁ ମୁକ୍ତି ଓ ଭଗବତ ପ୍ରାପ୍ତି ଚିନ୍ତା ଓ ଚେତନାରେ ସେ ମଗ୍ନ । ତାଙ୍କର ପୋଷାକ ପରିଛଦରେ କଥିତ ବିକାଶ ରହିଛି କିନ୍ତୁ ବ୍ୟବହାର ଚିନ୍ତା ଭାଷା ଓ ଜ୍ଞାନରେ ଅତି ମଧୁର ଓ ଉଦାର । ଏହି ବିଶ୍ୱବିଖ୍ୟାତ ଆଧ୍ୟାତ୍ମବାଦୀ ଗାଳ୍ପିକ ଜଣକ ନିଜର ନିରନ୍ତର ଅଧ୍ୟବସାୟ, ସାରସ୍ୱତ ସାଧନା ଓ ତପସ୍ୟା ବଳରେ ଯାହା ପାଇଛନ୍ତି ତାହା ଆମ ସମସ୍ତଙ୍କ ଗର୍ବ ଗୌରବ ଓ ସଂପତ୍ତି ପାଲଟି ଯାଇଛି । ଈଶ୍ୱର ତାଙ୍କୁ ଦୀର୍ଘ ନିରାମୟ ଜୀବନ ଦିଅନ୍ତୁ । ତାଙ୍କ ରଚିତ ପୁସ୍ତକ ଭଣ୍ଡାରରୁ କିଛି ନିମ୍ନରେ ଉଦ୍ଧୃତ ହେଲା - ବିପ୍ଳବୀ ଫକୀରମୋହନ, ସମୁଦ୍ରର କ୍ଷୁଧା, ଆରଣ୍ୟକ, ଶେଷବସନ୍ତର ଚିଠି, ଉପନିବେଶ, ଦୂରଦୂରାନ୍ତର, ଲକ୍ଷ୍ମୀର ଅଭିସାର, ଆବୁପୁରୁଷ, ଧୂମ୍ରାଭ ଦିଗନ୍ତ, ମନୋଜ ପଞ୍ଚବିଂଶତି, କେତେ ଦିଗନ୍ତ, ଭିନ୍ନ ମଣିଷ, ପ୍ରଭଞ୍ଜନ, ଗୋଧୂଳିର ବାଘ, ଅମୃତଫଳ, ଆକାଶର ଇସାରା, ତନ୍ଦ୍ରାଲୋକର ପ୍ରହରୀ, ଅନ୍ତରଂଗ ଭାରତ ଓ ଉପକଥା ଶତକ । ଏତଦ୍‌ବ୍ୟତୀତ ଡ. ଦାସ ଏବେବି ସାରସ୍ୱତ ସାଧନାରେ ସଦାବ୍ରତୀ । ତାଙ୍କର ବହୁ କାଳଜୟୀ ଅମର କୃତି ଏବେ ପ୍ରକାଶ ଅପେକ୍ଷାରେ ।

**ସତ୍ୟନାରାୟଣ ଦାସ**

ପେଶାରେ ଓକିଲ । ଜନ୍ମ ତାଙ୍କର ସୋର ଅଞ୍ଚଳର ଅନନ୍ତପୁର ଗ୍ରାମରେ । ବଡ଼ଭାଇ ଡାକ୍ତର ଦେବେନ୍ଦ୍ର ନାରାୟଣ ଦାସ ସିଭିଲ୍ ସର୍ଜନ ଥିଲେ । ସତ୍ୟବାବୁ ବାଲେଶ୍ୱର ଗୋପାଳଗାଁ ବାସୀ ଥିଲେ । ସେ କଂଗ୍ରେସର ଜଣେ ଆଗଧାଡ଼ିର ନେତାଭାବେ ପରିଚିତ ଥିଲେ । ବାଲେଶ୍ୱର ଜିଲ୍ଲା ପରିଷଦ ଓ ଜିଲ୍ଲାବୋର୍ଡ଼ର ଅଧ୍ୟକ୍ଷ ଭାବେ ଦକ୍ଷତାର ସହ କାର୍ଯ୍ୟ କରିଯାଇଛନ୍ତି ଦୀର୍ଘଦିନ ପର୍ଯ୍ୟନ୍ତ । ସେ ଜଣେ ଜନପ୍ରିୟ ବ୍ୟକ୍ତି ଥିଲେ । ତାଙ୍କର କାର୍ଯ୍ୟକାଳ ମଧ୍ୟରେ ବାଲେଶ୍ୱର ଜିଲ୍ଲାରେ ପ୍ରାଥମିକ ଶିକ୍ଷାର ବିଶେଷ ଉନ୍ନତି ଘଟିଥିଲା । କରୁଣାକରବାବୁ ଓ ସତ୍ୟବାବୁଙ୍କ ମିଳିତ ଉଦ୍ୟମରେ ଆମ ଜିଲ୍ଲାର ବିଭିନ୍ନ କ୍ଷେତ୍ରରେ ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ତାଙ୍କର ପୁଅ ଗୋପନାରାୟଣ ଜିଲ୍ଲାର ଜଣେ ଜଣାଶୁଣା ରାଜନେତା ଅଟନ୍ତି ।



Digitized by srujanika@gmail.com

## ଗଙ୍ଗା ନାରାୟଣ ଦାସ

ଜଳେଶ୍ୱର ଅଞ୍ଚଳରେ ଖୁଲୁଡ଼ା ଗ୍ରାମରେ ଏହାଙ୍କର ଜନ୍ମ । ଜନ୍ମରୁ ସେ ଥିଲେ ସ୍ୱାଧୀନଚେତା ଓ ସମାଜ ସଂସ୍କାରକ । ଦେଶର ମୁକ୍ତି ସଂଗ୍ରାମର ସୈନିକ ଭାବରେ ସଂଗ୍ରାମ କରି କାରାବରଣ କରିଛନ୍ତି । ସ୍ୱୟଂ ଜଣେ ଗାନ୍ଧିବାଦୀ ଥାଇ ରଚନାତ୍ମକ କାର୍ଯ୍ୟକ୍ରମ ମାଧମରେ ଦେଶର ସେବା କରିବାକୁ ଯାଇ ଝାଡ଼ପିପଳ ଗ୍ରାମରେ ସେ ଏକ ଗାନ୍ଧି କର୍ମମନ୍ଦିର ସ୍ଥାପନ କରି ସୂତାକଟା, ଲୁଗାବୁଣା ଆଖୁ ଚାଷ, ଆଳୁ ଓ ଗୁଡ଼ ଆଦି ଉତ୍ପାଦନ କରିବାରେ ବ୍ରତୀ ଥିଲେ । ତାଙ୍କର ସହାୟକ ଥିଲେ ଉକ୍ତ ଗ୍ରାମର ଶ୍ରୀହରି ଦାସ, ଶ୍ୟାମସୁନ୍ଦର ଅଣ୍ଡିଆ ଓ ଉପେନ୍ଦ୍ର ମୁଖୀ ପ୍ରମୁଖ ସେ ସମୟରେ । ସମାଜରୁ ଛୁଆଁ ଅଛୁଆଁ କୁସଂସ୍କାର ଦୂର କରିବା ଓ ନିଶା ନିବାରଣ ଆଦି କାର୍ଯ୍ୟରେ ସେ ଅଞ୍ଚଳରେ ନେତୃତ୍ୱ ନେଇଥିଲେ । ଦୁର୍ଗତ ଲୋକଙ୍କ ସେବାରେ ନିଜକୁ ଉତ୍ସର୍ଗ କରି ସେମାନଙ୍କୁ ନାନା ପ୍ରକାର ସହାୟତା କରୁଥିଲେ । ତାଙ୍କର ଆଶ୍ରମ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଆଶ୍ରୟ ଥିଲା । ତାଙ୍କ ହୃଦୟରେ ଦୟା ଓ ସେବାଭାବ ସମସ୍ତଙ୍କ ସକାଶେ ଭରି ରହିଥିଲା । ସେ ଜଣେ ଗାନ୍ଧିବାଦୀ ନେତା ଭାବରେ ସମଗ୍ର ଜିଲ୍ଲାରେ ଖ୍ୟାତ ଥିଲେ ।

## ଶିକ୍ଷାବିତ୍ ପୂର୍ଣ୍ଣଚନ୍ଦ୍ର ପ୍ରଧାନ

ଏହାଙ୍କ ଜନ୍ମ ଜଳେଶ୍ୱର ଅଞ୍ଚଳର ଗୋପ ଗ୍ରାମରେ । ସେ ଲକ୍ଷ୍ମଣନାଥ ରାଣୀ ଗୋଲକମଣି ହାଇସ୍କୁଲର ପ୍ରଧାନଶିକ୍ଷକ ପଦରେ ସୁନାମର ସହ ଦୀର୍ଘବର୍ଷ ଧରି ରହି ଆସିଥିଲେ । ସେ ଜଣେ ସ୍ୱନାମଧନ୍ୟ ଶିକ୍ଷାବିତ୍ ଭାବେ ପ୍ରସିଦ୍ଧି ଲାଭ କରିଥିଲେ । ଶିକ୍ଷାଦାନ ସହିତ ଏକ ଉଦ୍‌ଗତ କାବ୍ୟିକ ପ୍ରତିଭା ତାଙ୍କ ଚରିତ୍ରରେ ଯୋଡ଼ି ହୋଇଥିଲା । ତାଙ୍କର ଲେଖନୀ ନିଃସୃତ କାବ୍ୟଧାରାମାନ ଏକାଧିକ ପୁସ୍ତକ ଆକାରରେ ପ୍ରକାଶିତ ହୋଇଛି ସୁନ୍ଦର ସୁଲଳିତ ପଦ୍ୟଛନ୍ଦରେ ଏହି ଗ୍ରାମାଞ୍ଚଳରେ । ଏହି ସାରସ୍ୱତ ଶିକ୍ଷକ ଜଣକର କାବ୍ୟକୃତିମାନ ସ୍ଥାନୀୟ ଗ୍ରାମବାସୀମାନେ ଧରି ରଖିଛନ୍ତି ଶ୍ରଦ୍ଧା ଓ ସମ୍ମାନର ସହ ଆଜିସୁଦ୍ଧା । ସେ ଥିଲେ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ କାଳର ଜଣେ କାଳଜୟୀ ସ୍ରଷ୍ଟା । ତାଙ୍କର ପୁଣ୍ୟ ଜନ୍ମଜୟନ୍ତୀ ଗୋପ ଗ୍ରାମର ସାହିତ୍ୟପ୍ରେମୀମାନେ ପ୍ରତିବର୍ଷ ମହାସମାରୋହରେ ପାଳନ କରି ଆସୁଛନ୍ତି । ତାଙ୍କର ନାତି ଡାକ୍ତର ମିହିର କୁମାର ମଧ ଜଣେ ସାରସ୍ୱତ ସ୍ରଷ୍ଟା ଭାବେ ପରିଚିତ ।

## ପଣ୍ଡିତ ପ୍ରବର ପୁଣ୍ଡରୀକାକ୍ଷ ମିଶ୍ର

ଦେବଭାଷା ସଂସ୍କୃତ ଭାଷା ସାହିତ୍ୟରେ ପ୍ରଗାଢ଼ ଜ୍ଞାନ, ପାଣ୍ଡିତ୍ୟ ଓ ବିଦ୍‌ବତ୍ତା ଥିବା ବ୍ୟକ୍ତିଭାବେ ଉତ୍କଳ ଓ ବଂଗଖଣ୍ଡରେ ସୁପରିଚିତ ବ୍ୟକ୍ତି ସେ ଥିଲେ । ସେ ୧୯୧୩



Digitized by srujanika@gmail.com

ମସିହାରେ ଭୋଗରାଇ ସୀମାନ୍ତ ଅଞ୍ଚଳରେ ଜୟରାମପୁର ଗ୍ରାମର ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ । ଜଣେ ପ୍ରତିଭାବାନ ଛାତ୍ର ଭାବରେ ସେ ପ୍ରାଇମେରୀ ଶିକ୍ଷା ସମାପ୍ତ କରି ପୁରୀ ଜଗନ୍ନାଥଧାମ ସ୍ଥିତ ସଦାଶିବ ସଂସ୍କୃତ ମହାବିଦ୍ୟାଳୟରେ ଭର୍ତ୍ତି ହୋଇଥିଲେ । ସେଠାରେ ସେ ସଂସ୍କୃତ ଭାଷା ଶିକ୍ଷାର ବିଭିନ୍ନ ବିଭାଗରେ ଆପଣାର ପ୍ରଗାଢ଼ ଧୀଶକ୍ତି ବଳରେ ପରୀକ୍ଷାରେ ସର୍ବପ୍ରଥମ ହୋଇ ସ୍ୱର୍ଣ୍ଣପଦକ ସହ ଉତ୍ତୀର୍ଣ୍ଣ ହୋଇଥିଲେ । ପାରିବାରିକ ଅନଟନ ହେତୁ ମିଶ୍ର ମହାଶୟ ଭୋଗରାଇ ସ୍ଥିତ ଶ୍ୟାମସୁନ୍ଦର ସଂସ୍କୃତ ଟୋଲ୍‌ରେ ପ୍ରଧାନ ଶିକ୍ଷକ ଭାବେ ବହୁବର୍ଷ ପର୍ଯ୍ୟନ୍ତ ଶିକ୍ଷକତା କରିଥିଲେ । ତାଙ୍କର ଅଧ୍ୟାପନାର ଅନନ୍ୟ ଶୈଳୀ ଓ ବିଦ୍‌ବତ୍ତାର ପ୍ରଭାବ ଫଳରେ ଦେଶ ବିଦେଶର ବହୁ ଛାତ୍ର ଆସି ଭୋଗରାଇରେ ଶିକ୍ଷାଲାଭ କରିବାକୁ ସମର୍ଥ ଥିଲେ । ସେ ଜଣେ ସଂସ୍କୃତ ଭାଷାର କବି ଥିଲେ ଏବଂ ସଂସ୍କୃତରେ ବହୁ ଶ୍ଳୋକ, ଜ୍ଞାନଗର୍ଭ ପ୍ରବନ୍ଧ ଓ ନାଟକ ରଚନା କରିଯାଇଛନ୍ତି ।

ତାଙ୍କରି ଉଦ୍ୟମ ଓ ପ୍ରଚେଷ୍ଟାରେ ଭୋଗରାଇ ସଂସ୍କୃତ ଟୋଲ୍ ଶ୍ୟାମସୁନ୍ଦର ସଂସ୍କୃତ ମହାବିଦ୍ୟାଳୟରେ ଅଚିରେ ପରିଣତ ହୋଇଥିଲା । ଏବଂ ମିଶ୍ର ମହାଶୟ ତା'ର ଅଧ୍ୟକ୍ଷ ଭାବରେ ଅବସ୍ଥିତ ହୋଇ ୧୯୮୨ ମସିହାରେ ଅବସର ଗ୍ରହଣ କରିଥିଲେ । ଭାରତର ମହାମାନ୍ୟ ରାଷ୍ଟ୍ରପତି ତାଙ୍କୁ ୧୯୭୧ରେ ରାଷ୍ଟ୍ରପତି ପୁରସ୍କାର ପ୍ରଦାନ କରି ସମ୍ମାନିତ କରିଥିଲେ । ମିନିଷ୍ଟ୍ରି ଅଫ୍ ଏଜୁକେସନ ଏଣ୍ଡ୍ ସୋସିଆଲ୍ ୱେଲଫେଆର ତରଫରୁ ତାଙ୍କ ଅବଦାନର ପ୍ରଶସ୍ତିରେ ମୁଖର ହୋଇ ଉଠିଲା ସେ ସମୟରେ । ଭୋଗରାଇ ସଂସ୍କୃତ ମହାବିଦ୍ୟାଳୟରୁ ଅବସର ନେଲାପରେ ପୁରୀର ଶ୍ରୀ ଜଗନ୍ନାଥ ମହାବିଦ୍ୟାଳୟ ଏହି ପଣ୍ଡିତ ପ୍ରବରଙ୍କୁ ଅତିଥି ଅଧ୍ୟାପକ ଭାବେ ନିଯୁକ୍ତି ପ୍ରଦାନ କରିଥିଲେ । ପୁରୀ ମୁକ୍ତିମଣ୍ଡପରେ ସଭାପତି ଭାବେ ମିଶ୍ର ମହାଶୟ ବେଶ୍ କିଛିବର୍ଷ କାର୍ଯ୍ୟକରି ସୁନାମ ଅର୍ଜନ କରିଥିଲେ ।

ସରଳ ସଂସ୍କୃତ ଭାଷାରେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ବାଗ୍‌ମିତା ସର୍ବତ୍ର ଶ୍ରୋତାମାନଙ୍କୁ ଚକିତ କରିଥିଲା । ତାଙ୍କର ଉଚିତ ପୁସ୍ତକମାନଙ୍କ ମଧ୍ୟରେ ସୁଧାହରଣ, ବାଣ ହରଣ, ସୁଭଦ୍ରା ହରଣ ଏବଂ ସୁଦାମା ଚରିତମ୍ ଆଦି ପ୍ରଧାନ ଥିଲା । ଏଗୁଡ଼ିକ ନାଟକ ଥିଲା । ଏହି ମହାନ୍ ପଣ୍ଡିତ ୧୯୮୭ରେ ପରଲୋକ ପ୍ରାପ୍ତ ହୋଇଥିଲେ । ତାଙ୍କର ଚାରିଜଣ ପୁତ୍ର । ସମସ୍ତେ ଉଚ୍ଚଶିକ୍ଷିତ ଏବଂ ଶିକ୍ଷା ବିଭାଗରେ ଉଚ୍ଚ ପଦବୀରେ ଅଧିଷ୍ଠିତ । ଜ୍ୟେଷ୍ଠପୁତ୍ର ୰ଜଗଦୀଶ ଚନ୍ଦ୍ର ଆଉ ଜୀବିତ ନାହାଁନ୍ତି । ମଧ୍ୟମପୁତ୍ର ହୃଷିକେଶ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ କାର୍ଯ୍ୟରତ । ପଣ୍ଡିତ ପ୍ରବରଙ୍କ ବିୟୋଗରେ ଆମ ରାଜ୍ୟ ଜଣେ ମହାନ୍ ସଂସ୍କୃତ ଶିକ୍ଷକ, ପଣ୍ଡିତ ଓ ନାଟ୍ୟକାରଙ୍କୁ ହରାଇଛି । ତାଙ୍କର ଶୂନ୍ୟସ୍ଥାନ ପୂରଣ କେବେ ହେବ ଭଗବାନ ଜାଣନ୍ତି ।



Digitized by srujanika@gmail.com

## ବିପ୍ଳବୀ କବି ବନମାଳୀ ସେନାପତି

ଉତ୍ତର ବାଲେଶ୍ୱରର ବିଦଗ୍ଧ ବିପ୍ଳବୀକବି ବନମାଳୀ ସେନାପତି ରାଜ୍ୟରେ ସର୍ବତ୍ର ସୁପରିଚିତ । ତାଙ୍କ କଲମରୁ ସବୁଦିନେ ବିପ୍ଳବାତ୍ମକ କବିତାମାନ ଝରି ଆସୁଥିଲା । ପ୍ରତିରକ୍ଷା ବିଭାଗ ଯେତେବେଳେ ଶସ୍ୟଶ୍ୟାମଳା ବାଲିଆପାଳକୁ ଗ୍ରାସିବାକୁ ଚେଷ୍ଟାକଲା ସେ ଅମର ସହିଦ୍ ଗଦାଧର ଗିରିଙ୍କ ସହ ହାତ ମିଶାଇ ବାଲିଆପାଳ ନାମରେ ଏକ ବିପ୍ଳବୀ କବିତାପୁସ୍ତକ ରଚନା କରି ବହୁ ଚର୍ଚ୍ଚିତ ହୋଇ ପାରିଥିଲେ । ଜଳେଶ୍ୱରର 'ସୁବର୍ଣ୍ଣା ସାହିତ୍ୟ ପରିଷଦ' ତାଙ୍କର ସର୍ଜନା । ପ୍ରତିବର୍ଷ ଥରେ ଏହି ଅନୁଷ୍ଠାନର ବାର୍ଷିକ ସମାରୋହ ବଡ଼ ଆଡ଼ମ୍ବରର ସହକାରେ ପାଳିତ ହୁଏ । କବିଙ୍କ ରଚିତ ବହୁ ସଂଖ୍ୟକ କବିତା ପୁସ୍ତକ ଲୋକଲୋଚନରେ ପ୍ରକାଶିତ ହୋଇସାରିଛି । ସେଗୁଡ଼ିକ ସର୍ବତ୍ର ପାଠକୀୟ ସ୍ୱୀକୃତି ଲାଭ କରିଛି । ରାଜ୍ୟରେ ସେ ଜଣେ ବିପ୍ଳବୀ କବି ଭାବେ ସାରସ୍ୱତ ମହଲରେ ସୁପରିଚିତ । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ତାଙ୍କର ଅବଦାନ ଅନବଦ୍ୟ ଓ ଅତୁଳନୀୟ ।

## କଥାକାର କହ୍ନେଇଲାଲ ଦାସ

ଏହି ସାରସ୍ୱତ ସାଧକଙ୍କ ଜନ୍ମ କମର୍ଦ୍ଦା (ଭୋଗରାଇ) ଗ୍ରାମରେ । ଏକ ସରକାରୀ ଅଫିସ୍‌ରେ ଚାକିରି କାମରେ ସେ ପ୍ରଥମେ ଯୋଗ ଦେଇଥିଲେ ଏବଂ ତରୁଣ ଅବସ୍ଥାରେ ଅକାଳ ମୃତ୍ୟୁ ବରଣ କରିଥିଲେ । ଏହି ସ୍ୱଳ୍ପକାଳ ମଧ୍ୟରେ ସେ ଭିନ୍ନ ସ୍ୱାଦର ଅନେକ ଗଳ୍ପ ଲେଖି ସମସ୍ତଙ୍କର ପ୍ରାଣକୁ ଆକର୍ଷିତ କରିପାରିଥିଲେ । ତାଙ୍କର ଗଳ୍ପଲେଖାର ଶୈଳୀ ଚିରାଚରିତ ନଥିଲା କିନ୍ତୁ ଅନବଦ୍ୟ ଓ ଆକର୍ଷଣୀୟ ଥିଲା । ଯାହାକି ଗଳ୍ପ ଜଗତରେ ଅମର ସ୍ୱାକ୍ଷର ରଖିବାରେ ସମର୍ଥ ହୋଇପାରିଛି । ଦୁଇଟି ଗଳ୍ପ ସଂକଳନ ତାଙ୍କର ପ୍ରକାଶିତ । 'ଯାହା ଯେମିତି ହୁଏ' ଓ 'କହ୍ନେଇ କଥାଘର' । ସେଗୁଡ଼ିକୁ ପଢ଼ି ଏବେବି ଲୋକେ ଚକିତ ଓ ବିସ୍ମିତ ହୋଇଯାନ୍ତି ।

କମର୍ଦ୍ଦାର ସାହିତ୍ୟ ପ୍ରେମୀମାନେ ତାଙ୍କର ସାରସ୍ୱତ ସୃଷ୍ଟିକୁ ମନେ ପକାଇବାକୁ ପ୍ରତିବର୍ଷ ପ୍ରେମପୂର୍ଣ୍ଣ ଉତ୍ସବ ପାଳନ କରି ଆସିଛନ୍ତି କହ୍ନେଇ କଥାକାର ନାମରେ ।

## ବିଶିଷ୍ଟ ରାଜନେତା ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର

ବାମପନ୍ଥୀ ଛାତ୍ରନେତା ଭାବରେ ବାଲେଶ୍ୱରରେ ନିଜର ରାଜନୀତିକ ଜୀବନ ଆରମ୍ଭ କରିଥିଲେ । ଓଜସ୍ୱିନୀ ବକ୍ତୃତା ଦେଇ ସମସ୍ତଙ୍କୁ ମୋହିତ କରିପାରୁଥିଲେ । ଡାକ୍ତର ରାଧାଦେବୀଙ୍କୁ ସେ ବିବାହ କରିଥିଲେ । ସେ ସମୟରେ ସମଗ୍ର ଜିଲ୍ଲାରେ ଶ୍ୟାମବାବୁଙ୍କର



Digitized by srujanika@gmail.com

ବିରାମହୀନ ଭାଷଣରେ ଗୋଟିଏ କୁହୁକ ଥିଲା । ତରୁଣ ଛାତ୍ରଛାତ୍ରୀମାନେ ଟାଣିହୋଇ ଯାଉଥିଲେ । ମଲ୍ଲିକାଶପୁରର ସ୍ୱାଧୀନତା ସଂଗ୍ରାମୀ ଆଇନ୍‌ଜୀବୀ ଗୋଲକ ବିହାରୀ ଦେଙ୍କ ପୁତ୍ର ଅରୁଣ ଦେ ଶ୍ୟାମବାବୁଙ୍କର ବିଶେଷ ଅନୁଗାମୀ ହୋଇପଡ଼ିଥିଲେ । ଅନୁରୂପ ଭାବେ ଛାତ୍ରୀ ରାଧାଦେବୀ ଶ୍ୟାମବାବୁଙ୍କର ସୌମ୍ୟକାନ୍ତ ଓ ବାଗ୍‌ମିତାରେ ନିଜକୁ ହଜାଇ ଦେଇଥିଲେ । ଶ୍ରୀ ମହାପାତ୍ର ମୋ'ଠାରୁ ବୟସରେ ସାନଥିଲେ । ସେତେବେଳେ ପି.ଏସ୍.ପି. ନେତା ରବୀନ୍ଦ୍ରମୋହନ ଦାସ ବାଲେଶ୍ୱରରେ ରାଜନୀତି କରୁଥିଲେ । ସାଧାରଣ ନିର୍ବାଚନରେ ତାଙ୍କୁ ପରାସ୍ତ କରିବା ଦୁରୂହ ଥିଲା । ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଗାନ୍ଧିବାଦୀ ନେତା ଥିଲେ । ୧୯୬୧ ମସିହାରେ ବିଜୁବାବୁ ଓଡ଼ିଶା କଂଗ୍ରେସ ଦଳର ଲଗାମ ନିଜ ହାତକୁ ନେଲେ । ବିଜୁବାବୁ ଓଡ଼ିଶା କଂଗ୍ରେସର ସଭାପତି ଓ ବାଲେଶ୍ୱରର କଂଗ୍ରେସ ଏମ୍.ଏଲ୍.ଏ. ବିଜୟ କୃଷ୍ଣ ଦେ ପି.ସି.ସି. ସାଧାରଣ ସଂପାଦକ କାର୍ଯ୍ୟ ତୁଲାଉଥିଲେ । ଏକ ପ୍ରତ୍ୟୁଷରେ ମୁଁ ବିଜୁବାବୁଙ୍କୁ ତାଙ୍କ ଭୁବନେଶ୍ୱର କ୍ୱାଟରରେ ସାକ୍ଷାତ କରିବା ଅବସରରେ ବିଜୁବାବୁ ହଠାତ୍ ବାଲେଶ୍ୱର ନିର୍ବାଚନ ମଣ୍ଡଳୀ ବିଷୟରେ ଜଣେ ବଳିଷ୍ଠ ପ୍ରାର୍ଥୀ ବିଷୟରେ ମୋତେ ପଚାରିଲେ । ମୁଁ ଶ୍ୟାମବାବୁଙ୍କ ନାମ ପ୍ରସ୍ତାବ ରଖିଥିଲି । ସଂଯୋଗବଶତଃ ସେତିକିବେଳେ ଶ୍ୟାମବାବୁ ଭୁବନେଶ୍ୱରରେ ଥାଆନ୍ତି । ବିଜୁବାବୁ ଶ୍ୟାମବାବୁଙ୍କ ସହ କଥା ହେଲେ । ଦୁଇନେତାଙ୍କର କଥାବାର୍ତ୍ତା ପରେ ଶ୍ୟାମବାବୁ ବାମପନ୍ଥୀରୁ କଂଗ୍ରେସ ପ୍ରାର୍ଥୀ ପାଲଟିଗଲେ ଏବଂ ୧୯୬୧ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଭାବେ ବାଲେଶ୍ୱରରୁ ନିର୍ବାଚନ ଲଢ଼ିଥିଲେ । ସର୍ବପ୍ରଥମେ କିନ୍ତୁ ରବିବାବୁଙ୍କଠାରୁ ସେ ହାରିଗଲେ ।

ସେହିଦିନଠାରୁ ବାଲେଶ୍ୱରରେ ଶ୍ୟାମବାବୁଙ୍କର କଂଗ୍ରେସ ରାଜନୀତି ଆରମ୍ଭ ହେଲା । ୧୯୬୭ ମସିହାରେ ବିଜୁବାବୁ କଂଗ୍ରେସ ନେତୃତ୍ୱରୁ ବହିଷ୍କୃତ ହେବାପରେ ଆଶ୍ଚର୍ଯ୍ୟଜନକ ଭାବରେ ଓଡ଼ିଶା କଂଗ୍ରେସ ଦଳର ନେତୃତ୍ୱ ଶ୍ୟାମବାବୁଙ୍କ ହାତକୁ ଆସିଗଲା । ଶ୍ୟାମବାବୁ ସାରା ରାଜ୍ୟ ଗସ୍ତକରି କଂଗ୍ରେସକୁ ପୁନର୍ଗଠନ କଲେ । ୧୯୭୧-୭୨ର ସାଧାରଣ ନିର୍ବାଚନରେ ଶ୍ୟାମବାବୁ ବାଲେଶ୍ୱର ଲୋକସଭା ଓ ରାଉରକେଲା ବିଧାନସଭା ନିର୍ବାଚନ ଲଢ଼ି ବିପୁଳ ଭୋଟ ବ୍ୟବଧାନରେ ଜୟଯୁକ୍ତ ହେଲେ । କିନ୍ତୁ ଦୁର୍ଭାଗ୍ୟରୁ ସେ ମୁଖ୍ୟମନ୍ତ୍ରୀ ହୋଇପାରିଲେ ନାହିଁ । ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ନନ୍ଦିନୀ ଦେବୀଙ୍କୁ ଦିଲ୍ଲୀରୁ ମୁଖ୍ୟମନ୍ତ୍ରୀ କରି ପଠାଇଦେଲେ ଓଡ଼ିଶା ଏବଂ ତାଙ୍କୁ ପି.ସି.ସି.ର ସଭାନେତ୍ରୀ ମଧ୍ୟ କରିଦେଲେ । ନନ୍ଦିନୀ ଦେବୀ ବାମପନ୍ଥୀ ଘର ଝିଅ ହୋଇ ଜନ୍ମ ଲାଭ କରିଥିଲେ ସତ, କିନ୍ତୁ ବିଜୁବାବୁ ଓ ଇନ୍ଦିରାଗାନ୍ଧୀଙ୍କ ସଂସର୍ଗରେ ଆସି କଂଗ୍ରେସ ବନିଯାଇଥିଲେ ।



Digitized by srujanika@gmail.com

ସେତିକିବେଳେ ଓଡ଼ିଶା ବିଧାନସଭାରେ ସେତେ ସଂଖ୍ୟା ଗରିଷ୍ଠତା ନଥିବାରୁ ଶ୍ୟାମବାବୁଙ୍କୁ ଲୋକସଭା ସଦସ୍ୟ ପଦରୁ ଓହରିଯିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ଶ୍ୟାମବାବୁଙ୍କର ଆଶା ଓ ଆକାଂକ୍ଷା ଅତି ଉଚ୍ଚ ଥିଲା । ସେ ଏମ୍.ଏଲ୍.ଏ. ପଦ ଛାଡ଼ି ଏମ୍.ପି. ରହିବାକୁ ଅଧିକ ପସନ୍ଦ କଲେ । ଏଣୁ ନନ୍ଦିନୀ ଦେବୀ ତାଙ୍କୁ ଦଳରୁ ନିଲମ୍ବିତ କଲେ । ଶ୍ୟାମବାବୁ ନିଜର ଆସନ ଅଳ୍ପକାଳ ମଧ୍ୟରେ ଆପଣାର ବାଗ୍ମିତା ବଳରେ ଜୋରଦାର କରିନେଲେ ଏବଂ ଇନ୍ଦିରାଜୀଙ୍କର ଅତି ପାଖ ଲୋକ ବନିଗଲେ । ଏ.ଆଇ.ସି.ସି.ର ସାଧାରଣ ସଂପାଦକ ଭାବେ ସେ ନିଯୁକ୍ତି ପାଇଲେ । କୂଟ ରାଜନୀତିରେ ପାରଦର୍ଶିତା ଶ୍ୟାମବାବୁଙ୍କ ଚରିତ୍ରରେ ଜନ୍ମରୁ ରହି ଆସିଥିଲା । ଇନ୍ଦିରା ମନ୍ତ୍ରୀମଣ୍ଡଳର ଆଭ୍ୟନ୍ତରୀଣ ଓ ଆନ୍ତର୍ଜାତିକ ବ୍ୟାପାରରେ ଶ୍ୟାମବାବୁ ବିଶେଷ ଭାବରେ ନିଜକୁ ମଜବୁତ୍ କରିନେଲେ । ମୁସଲମାନ ରାଷ୍ଟ୍ରମାନଙ୍କ ସହ କଥାବାର୍ତ୍ତାରେ ସେ ନେତୃତ୍ୱ ନେବାକୁ ଲାଗିଲେ । ବିଲାତ ଓ ଆମେରିକା ରାଷ୍ଟ୍ର ଗସ୍ତକରି ଇନ୍ଦିରାଜୀଙ୍କୁ ଉକ୍ତ ରାଷ୍ଟ୍ରମାନଙ୍କୁ ଭାରତକୁ ଆମନ୍ତ୍ରଣ କରିବାର ଲବି ସେ ବିଚକ୍ଷଣତା ସହ କରି ସମର୍ଥ ହୋଇପାରିଥିଲେ । ଆରବ ଲିଗ୍ ଅଫ୍ ନେସନ୍ସ୍ ଓ ଅନ୍ୟାନ୍ୟ ତୈଳଖଣି ମାଲିକ ମୁସଲମାନ ଦେଶ ସହ ବାଣିଜ୍ୟ ଚୁକ୍ତି କରିବାରେ ସେ ମୁଖ୍ୟଭୂମିକା ଗ୍ରହଣ କରିଥିଲେ । ଫଳରେ ଏହି ରାଷ୍ଟ୍ରମାନଙ୍କର ମୁଖ୍ୟମାନେ ମିଷ୍ଟର ମହାପାତ୍ରଙ୍କର ବିଶେଷ ବନ୍ଧୁ ହୋଇପାରିଥିଲେ । ଶ୍ୟାମବାବୁଙ୍କ ରାଜନୀତିକ ବିଚକ୍ଷଣତା ଇନ୍ଦିରାଙ୍କୁ ଦେଶ ପରିଚାଳନାରେ ବିଶେଷ ସହାୟତା କରୁଥିଲା । ଦିଲ୍ଲୀର ଅନ୍ୟ କଂଗ୍ରେସ ନେତାମାନେ ଏଥିସକାଶେ ଶ୍ୟାମବାବୁଙ୍କ ଉପରେ ଈର୍ଷା ପରାୟଣ ଥିଲେ ସ୍ୱାଭାବିକ ଭାବରେ ।

ଇଂଲଣ୍ଡର ତତ୍କାଳୀନ ରାଜା ପ୍ରିନ୍ସ ଚାର୍ଲ୍ସ ଭାରତ ଗସ୍ତରେ ଆସି ଗୁଜୁରାଟର ଆନନ୍ଦଠାରେ ପ୍ରତିଷ୍ଠିତ ଫୋର୍ଡ଼ ଫାଉଣ୍ଡେସନ୍ ଦ୍ୱାରା ପରିଚାଳିତ ଅମୁଲ୍ ସ୍ପ୍ରେ ଓ ବାଟାର କାରଖାନା ପରିଦର୍ଶନ ବେଳେ ଶ୍ୟାମବାବୁ ଭାରତ ସରକାରଙ୍କ ତରଫରୁ ବିଶେଷ ଗାଇଡ୍ ଭାବରେ ଦକ୍ଷତା ସହ କରିପାରିଥିଲେ ସେ କାର୍ଯ୍ୟ ।

ଇନ୍ଦିରାଜୀ ଆପଣାର ଦେହରକ୍ଷୀ ଆତତାୟୀମାନଙ୍କ ଦ୍ୱାରା ହଠାତ୍ ନିହତ ହେବାପରେ ରାଜୀବ ଗାନ୍ଧି ଭାରତର ପ୍ରଧାନମନ୍ତ୍ରୀ ହେଲେ । ସେ ଶ୍ୟାମବାବୁଙ୍କୁ ଆଉ ବିଶେଷ ଗୁରୁତ୍ୱ ଦେଇନଥିଲେ । ତେଣୁ ଭାରତୀୟ ରାଜନୀତିରେ ସେ ପଛରେ ପଡ଼ିଗଲେ । ତାଙ୍କର ହୃତ୍‌ପିଣ୍ଡ ଆକ୍ରାନ୍ତ ହେଲା । ବାଇପାସ୍ ସର୍ଜରୀ କରାଯାଇ ସେ ରୋଗମୁକ୍ତ ହେଲେ । ଦିଲ୍ଲୀରେ ପଞ୍ଜାବୀବାଗ୍‌ଠାରେ ସେ ନିଜର ଘର ବାନ୍ଧିଥିଲେ । ତେଣୁ କିଛିବର୍ଷ ତଳେ ସେ ଶେଷରେ ସବୁଦିନ ପାଇଁ ଆମକୁ ଛାଡ଼ି ଆରପାରିକୁ ଚାଲିଗଲେ । ସେ ଆଜି ଆମ



Digitized by srujanika@gmail.com

ଗହଣରେ ନାହାଁନ୍ତି ସତ କିନ୍ତୁ ତାଙ୍କର ଅମର କୃତିତ୍ୱ ବଳରେ ବାଲେଶ୍ୱର ଆଜି ସମଗ୍ର ବିଶ୍ୱରେ ପରିଚିତ ହୋଇପାରିଛି ଏଥିରେ ସନ୍ଦେହ ନାହିଁ ।

ମହତାବବାବୁ, ବିଜୁବାବୁ ଶ୍ୟାମବାବୁ ଓ ସମରେନ୍ଦ୍ର କୁଣ୍ଡୁ ମିଶି ଓଡ଼ିଆ ଜାତିର ଟେକ ସମଗ୍ର ଦେଶରେ ଓ ବାହାରେ ରଖିବାକୁ ସମର୍ଥ ହୋଇଛନ୍ତି । ମୋର ଶ୍ୟାମବାବୁଙ୍କ ସହ ଶେଷ ପର୍ଯ୍ୟନ୍ତ ବିଶେଷ ବନ୍ଧୁତା ଥିଲା ।

ବିଭୁକୃପାରୁ କେତେକ ଆଶ୍ଚର୍ଯ୍ୟ ଗୁଣ ତାଙ୍କ ଚରିତ୍ରରେ ଜନ୍ମରୁ ଥିଲା । ବିଭିନ୍ନ ଭାଷା ଉପରେ କର୍ତ୍ତୃତ୍ୱ ସେ ଖୁବ୍ ସହଜରେ ହାସଲ କରିପାରୁଥିଲେ । ଓଡ଼ିଆ, ବଂଗଳା, ହିନ୍ଦୀ ଓ ଇଂରାଜୀ ଭାଷାରେ ଘଣ୍ଟାଘଣ୍ଟା ଧରି ବକ୍ତୃତା ସେ ଛାତ୍ରାବସ୍ଥାରୁ ଦେଇ ପାରୁଥିଲେ । ରାଜନୀତିରେ କୂଟନୀତି ଓ ବିଚକ୍ଷଣତା ତାଙ୍କର ସ୍ୱଭାବସିଦ୍ଧ ଥିଲା । ଯେକୌଣସି ବ୍ୟାପାରରେ ଲବି କରି ସେ ନିଜ ଆଡ଼କୁ ଅନ୍ୟଙ୍କୁ ଆକର୍ଷଣ କରିବାରେ ଥିଲେ ଅଦ୍ୱିତୀୟ । ତାଙ୍କର ବ୍ୟବହାର ଖୁବ୍ ମଧୁର ଥିଲା । ଖୁବ୍ ଶୀଘ୍ର ସେ ଅପରିଚିତମାନଙ୍କ ସହ ବନ୍ଧୁ ବାନ୍ଧିପାରୁଥିଲେ । ସମ୍ଭ୍ରାନ୍ତ ଭାବ ତାଙ୍କ ଜୀବନଶୈଳୀର ଚରିତ୍ରଗତ ଥିଲା । ନିଜର ଭୁଲ୍ ସେ ସହଜରେ ସ୍ୱୀକାର କରୁଥିଲେ । ଚେହେରା ଓ କଥାବାର୍ତ୍ତାରେ ତାଙ୍କର କୁହୁକ ଥିଲା ।

## ଆଜୀବନ ସମାଜସେବୀ ଚିନ୍ତାମଣି ଜେନା

ଏହି ଅନନ୍ୟ ସାଧାରଣ ବ୍ୟକ୍ତିଜଣକ ସିଂଲା ଥାନା ଅନ୍ତର୍ଗତ ନାଇକୁଡ଼ି ଗ୍ରାମ ପଞ୍ଚାୟତର ନାଡ଼ବ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଶିକ୍ଷାଗତ ଯୋଗ୍ୟତା ଏନ୍‌ଟ୍ରାନ୍ସ ପାସ୍ । ନିଜ ଗ୍ରାମର ପଞ୍ଚାୟତ ସଂପାଦକ ଭାବେ ଜୀବନ ଆରମ୍ଭ । ପରେ ଆପଣାର ଅଧ୍ୟବସାୟ ଓ ବିଚକ୍ଷଣ କାର୍ଯ୍ୟଦକ୍ଷତା ବଳରେ ବସ୍ତା ପଞ୍ଚାୟତ ସମିତିର ଅଧ୍ୟକ୍ଷ ଭାବେ ନିର୍ବାଚିତ ହୋଇ ଦୀର୍ଘଦିନ ଧରି କାର୍ଯ୍ୟ କରିଥିଲେ । ତାପରେ ବସ୍ତା ବିଧାନସଭା ନିର୍ବାଚନ ମଣ୍ଡଳୀର ସଭ୍ୟ ରୂପେ ନିର୍ବାଚିତ ହୋଇ ରାଜ୍ୟ ବିଧାନସଭାର ଉପବାଚସ୍ପତି ପଦରେ ବସି ପାରିଥିଲେ । ଆପଣାର ମଧୁର ଅମାୟିକ ବ୍ୟବହାର ଓ ସେବା ବଳରେ ସର୍ବଜନ ପ୍ରିୟ ହୋଇ ଜନସେବାରେ ନିଜକୁ ନିୟୋଜିତ କରିଥିଲେ । କଂଗ୍ରେସ ଦଳର ସଭ୍ୟ ଭାବରେ ସେ ଦୁଇ ଦୁଇଥର ରାଜ୍ୟ କଂଗ୍ରେସର ସଭାପତି ପଦ ଅଳଙ୍କୃତ କରିଥିଲେ । ଚିନ୍ତାମଣିଙ୍କଠାରେ କୌଣସି କାର୍ଯ୍ୟ ଅସାଧ୍ୟ ନଥିଲା । ସାନରୁ ବଡ଼ଯାଏ ସେ ସଭିଙ୍କ ପ୍ରିୟପାତ୍ର ଥିଲେ । ରୋଗା କଳାରଂଗର ବ୍ୟକ୍ତିଙ୍କ ଠାରୁ ସମସ୍ତେ ଅନ୍ତତଃ ହସହସ ମୁହଁରେ ନମସ୍କାରଟିଏ ପାଇପାରୁଥିଲେ । ଏକାଗ୍ରତା ଅଧ୍ୟବସାୟ ଓ ନିଷ୍ଠାବଳରେ ମଣିଷ ଅତି ତଳସ୍ତରରୁ ଉପରୁ ଉଠିପାରେ ଚିନ୍ତାମଣିବାବୁ ତାଙ୍କ ଜୀବନରେ ପ୍ରମାଣ କରି ଦେଖାଇଛନ୍ତି ।



Digitized by srujanika@gmail.com

ବାଲେଶ୍ୱରରର ଲୋକସଭା ସଦସ୍ୟ ଭାବେ ଦୁଇଦୁଇଥର ଚିନ୍ତାମଣିବାବୁ କଂଗ୍ରେସ ଦଳରୁ ନିର୍ବାଚିତ ହୋଇଥିଲେ । ଜଣେ ବ୍ୟକ୍ତିଗତ ବନ୍ଧୁ ଓ ପରମ ସୁହୃଦ୍ ଭାବରେ ଜୀବନର ଶେଷ କ୍ଷଣ ଯାଏ ତାଙ୍କ ସହ ମୋର ଅନ୍ତରଂଗ ସଂପର୍କ ରହିଥିଲା । ଶେଷରେ କିଛିବର୍ଷ ପୂର୍ବରୁ ସେ ଆମ ସମସ୍ତଙ୍କୁ ଛାଡ଼ି ଆରପାରିକୁ ଚାଲିଗଲେ ।

## ଭୂଦାନକର୍ମୀ ସୁଧାଂଶୁ ଶେଖର ଦାସ

ଜଳେଶ୍ୱର ଅଞ୍ଚଳର ନାମ୍ପ ଗ୍ରାମର ଏକ ସମ୍ଭ୍ରାନ୍ତ ପରିବାରରେ ତାଙ୍କର ଜନ୍ମ । କଲିକତାରେ ଉଚ୍ଚ ଶିକ୍ଷାଲାଭ କଲାପରେ ତତ୍‌କାଳୀନ ବିନୋବାଙ୍କ ପ୍ରବର୍ତ୍ତିତ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ । ନିଜର ଅଧ୍ୟବସାୟ ଓ ଆନ୍ତରିକତା ବଳରେ ସେ ରାଜ୍ୟ ଭୂଦାନ କମିଟିର ସଂପାଦକ ପଦରେ ଅଧିଷ୍ଠିତ ହୋଇପାରିଥିଲେ । ତାଙ୍କରି ଚେଷ୍ଟାରେ ବିନୋବାଜୀଙ୍କ ଗସ୍ତକ୍ରମ ଓଡ଼ିଶା ମାଟିରେ ଲକ୍ଷ୍ମଣନାଥ ଜଳେଶ୍ୱର ହୋଇ ନାମ୍ପ ଗ୍ରାମଯାଏ ଲମ୍ବି ଯାଇଥିଲା । ସେ ରାଜନୀତିରେ ଯୋଗ ନଦେଇ ଗାନ୍ଧିଜୀଙ୍କର ରଚନାତ୍ମକ କାର୍ଯ୍ୟକ୍ରମମାନ ଅଞ୍ଚଳରେ ବହୁଳ ଭାବେ ପ୍ରବର୍ତ୍ତନ କରିବାରେ ପ୍ରୟାସୀ ଥିଲେ । ସେ ଜଣେ ବିଚକ୍ଷଣ ବୁଦ୍ଧିମାନ ବ୍ୟକ୍ତି । ଜନ୍ମରୁ ସେ କଂଗ୍ରେସର ଆଦର୍ଶରେ ଅନୁପ୍ରାଣିତ ଥିଲେ । ତାଙ୍କର ପୁତ୍ର କନ୍ୟାର ସଂସାରଟି ସାମାନ୍ୟ ବଡ଼ ଥିଲା । ଏବେ ସେମାନେ ସମାଜରେ ପ୍ରତିଷ୍ଠିତ ହୋଇ ରହିଛନ୍ତି ।

## ଜନନେତା ସମରେନ୍ଦ୍ର କୁଣ୍ଡୁ

ପେଶାରେ ଓକିଲ ଥିଲେ । ଘର ବାଲେଶ୍ୱର ସହରର ବାରବାଟି ଗ୍ରାମରେ । ତତ୍କାଳୀନ ପି.ଏସ୍.ପି. ଦଳର ଜଣେ ପ୍ରବଳ ମୁଖପାତ୍ର ଥିଲେ । ବାଲେଶ୍ୱରର ନିର୍ବାଚିତ ଲୋକସଭା ସଦସ୍ୟ ଭାବରେ ମୋରାରଜୀ ମନ୍ତ୍ରୀମଣ୍ଡଳର ବୈଦେଶିକ ବ୍ୟାପାର ରାଷ୍ଟ୍ରମନ୍ତ୍ରୀ ଭାବରେ ଦକ୍ଷତାର ସହ କାର୍ଯ୍ୟ କରିବାରେ ସକ୍ଷମ ହୋଇ ପାରିଥିଲେ । ତାଙ୍କରି ପ୍ରଚେଷ୍ଟାରେ ନୂଆ ବଜାରଠାରୁ ଅର୍ଡ଼ର ବଜାର ବସ୍‌ଷ୍ଟାଣ୍ଡ ଯାଏ ରେଳଲାଇନ୍ ଉପରେ ଏକ ସୁଦୃଢ଼ ଓଭରବ୍ରିଜ୍ ନିର୍ମିତ ହୋଇପାରିଥିଲା । ସେ ଜଣେ ଦକ୍ଷ ରାଜନୀତିଜ୍ଞ ଓ ପାର୍ଲାମେଣ୍ଟରିଆନ୍ ଥିଲେ । ଅତିକ୍ରାନ୍ତ ବୟସରେ ବିବାହ କରି ସଂସାର ବନ୍ଧନରେ ଆବଦ୍ଧ ହୋଇଥିଲେ । ଆଜି ସେ ନାହାନ୍ତି ସତ କିନ୍ତୁ ବାଲେଶ୍ୱରବାସୀ ତାଙ୍କୁ ଭଲଭାବରେ ଆଜି ଯାଏ ମନେ ରଖିଛନ୍ତି ।



Digitized by srujanika@gmail.com

## ସର୍ବହରା ସଂଗ୍ରାମୀପୁରୁଷ ଗଦାଧର ଗିରି

ବାଲିଆପାଳର ଅସ୍ତିଗ୍ରାମରେ ଏହି ସଂଗ୍ରାମୀ ପୁରୁଷଙ୍କ ଜନ୍ମ ଏକ ଦରିଦ୍ର ପରିବାରରେ । ବି.ଏ. ପାଠ ପଢ଼ିସାରି କିଛିଦିନ ଶିକ୍ଷକତା ମଧ୍ୟ ସେ କରିଥିଲେ । ସୁବର୍ଣ୍ଣରେଖା ନଦୀକୂଳ ବନ୍ଧ ଉପରେ ତାଙ୍କର ଘର ଖଣ୍ଡି ରହିଥାଏ । ଜନ୍ମରୁ ଗରିବ ଥାଇ ଗରିବଲୋକଙ୍କ ସହିତ ସେ ସହଜରେ ମିଶି ସେମାନଙ୍କର ପୀଡ଼ା ଓ ସମସ୍ୟା ପ୍ରାଣରେ ଧରିପାରୁଥିଲେ । ସମାଧାନର ଚେଷ୍ଟା ମଧ୍ୟ ସେ କରିବାରେ ତତ୍ପରତା ପ୍ରକାଶ କରିଛନ୍ତି । ଗରିବଙ୍କ ସକାଶେ ତାଙ୍କର ତ୍ୟାଗ ଅସୀମ । ନିଜର ତ୍ୟାଗ ନିଷ୍ଠା ଓ ଅଧ୍ୟବସାୟ ବଳରେ ସେ ଜଳେଶ୍ୱର ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଜଳେଶ୍ୱର, ବାଲିଆପାଳ ଗ୍ରାମମାନଙ୍କରେ ବୁଲିବୁଲି ନିଜର ପିନ୍ଧା ଧୋତି କାନିରେ ସେ ମୁଢ଼ି, ପିଆଜ, ଲଙ୍କା ଖାଇଖାଇ ଲୋକଙ୍କର ସେବା କରୁଥିଲେ । ଦୁର୍ନୀତିକୁ ସବୁସ୍ତରରୁ ମୂଳପୋଛ କରିବାକୁ ସବୁସ୍ତରରୁ ସେ ଦୃଢ଼ପ୍ରତିଜ୍ଞ ଥିଲେ । ତାଙ୍କ ମୁହଁର ଭାଷା ଉଗ୍ର ଓ ନିଷ୍କଳୁଷ ଥିଲା ।

ଭାରତ ସରକାରଙ୍କର ପ୍ରତିରକ୍ଷା ବିଭାଗର ନିଷ୍ଠୁର ସିଦ୍ଧାନ୍ତ ଏତିକିବେଳେ ଶସ୍ୟଶ୍ୟାମଳା ବାଲିଆପାଳବାସୀଙ୍କୁ ମାଡ଼ିପଡ଼ିଲା । ଚାନ୍ଦିପୁର ଆଗ୍ନେୟାସ୍ତ୍ର ଅସ୍ତ୍ରଶସ୍ତ୍ର ପରୀକ୍ଷା ଘାଟି ଏହି ଉପକୂଳ ଅଞ୍ଚଳକୁ ଲମ୍ବି ଆସିଲା । ଲୋକେ ଆତଙ୍କିତ ହୋଇପଡ଼ିଲେ । ଭାରତ ସରକାରଙ୍କର ଏହି ପରୀକ୍ଷାମୂଳକ ସିଦ୍ଧାନ୍ତ ବିରୁଦ୍ଧରେ ପ୍ରତିରୋଧ ଶିବିର ମାନ ଗଢ଼ି ଉଠିଲା । ରାଜ୍ୟସ୍ତରୀୟ ବିରୋଧୀ ଦଳର ନେତାମାନେ ବାଲିଆପାଳ ମାଟିରେ ତୁମୁଳ ହଟଗୋଳ ଆରମ୍ଭ କଲେ । ଗଦାଧରବାବୁ ଏହି ମହା ଆନ୍ଦୋଳନର ନେତୃତ୍ୱ ନେଲେ ତତ୍କାଳୀନ ସରକାର ବିରୁଦ୍ଧରେ । ପ୍ରତିରୋଧ ଆନ୍ଦୋଳନ ତେଜି ଉଠିଲା । ସରକାର ଅସ୍ତବ୍ୟସ୍ତ ହୋଇଗଲେ । ରାତିଦିନ ଅଖିଆ ଅପିଆ ରହି ସେ ଚରକି ପରି ସମଗ୍ର ଅଞ୍ଚଳ ଗସ୍ତକରି ପ୍ରତିରୋଧ ଆନ୍ଦୋଳନକୁ ଦୃଢ଼ କଲେ । ସରକାରଙ୍କ କୌଣସି ପ୍ରତିନିଧି ବା କର୍ମଚାରୀ ବାଲିଆପାଳ ମାଟିରେ ପ୍ରବେଶ କରିପାରିଲେ ନାହିଁ । ପ୍ରତିରକ୍ଷା ସିଦ୍ଧାନ୍ତ ଭାରତ ସରକାର ପରିବର୍ତ୍ତନ କରିବାକୁ ବାଧ୍ୟ ହେଲେ ।

ଏହି ଆପ୍ରାଣ ଉଦ୍ୟମ ଓ ଅକ୍ଲାନ୍ତ ପରିଶ୍ରମ ଫଳରେ ଗଦାଧର ବାବୁଙ୍କ ଶରୀରରେ ଏକ ଦୁରାରୋଗ୍ୟ ବ୍ୟାଧି ଦେଖାଦେଲା । ବହୁ ଚେଷ୍ଟା ପରେ ମଧ୍ୟ ସେ ସେଥିରୁ ମୁକୁଳି ପାରିଲେ ନାହିଁ । ଶେଷରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଉତ୍ତର ବାଲେଶ୍ୱରବାସୀ ତାଙ୍କର ପ୍ରିୟ ନେତାକୁ ହରାଇ ଅଶ୍ରୁ ଢାଳି ଚାଲିଲେ । ସନ୍ତପ୍ତ ଅଞ୍ଚଳବାସୀ ଆକୁଳଚିତ୍କାର



Digitized by srujanika@gmail.com

କରି ତାଙ୍କର ଶ୍ରାଦ୍ଧତର୍ପଣ କଲେ ନଦୀକୂଳ ଗ୍ରାମ ବାଲିଆପାଳରେ ଏକତ୍ର ହୋଇ । ତାଙ୍କୁ କେହି ଭୁଲିପାରିବେ ନାହିଁ ।

ଏହି ସର୍ବସ୍ୱ ତ୍ୟାଗୀ ବୀରପୁରୁଷ ବାଇଗଣ ବାଡ଼ିଆ ସରପଞ୍ଚ ସୁରେନ୍ଦ୍ର ପ୍ରଧାନଙ୍କ କନ୍ୟା ଲବଙ୍ଗକୁ ବିବାହ କରିଥିଲେ । ମୃତ୍ୟୁବେଳକୁ ଗିରିବାବୁଙ୍କ ପରିବାର ସକାଶେ କୌଣସି ସଞ୍ଚୟ ନଥିଲା । ପିଲାଛୁଆଙ୍କୁ ଧରି ଲବଙ୍ଗ ଦାରିଦ୍ର୍ୟର କଷାଘାତରେ ଜର୍ଜରିତ ହୋଇ ବଂଚି ରହିଛନ୍ତି ମାତ୍ର ।

ଦେଶମାଟି ଓ ମଣିଷ ପାଇଁ ନିଜକୁ ମାଟିରେ ମିଶେଇ ଦେଇଥିବା ଏପରି ସଂଗ୍ରାମୀ ପୁରୁଷ ମୋ ଜୀବନରେ ମୁଁ ତୃତୀୟ ଥର ପାଇଁ ଦେଖିଲି । ତାଳଚେରର ପବିତ୍ର ମୋହନ ପ୍ରଧାନ ଓ କଟକର ବିରେନ୍ ମିତ୍ର (ମୁଖ୍ୟମନ୍ତ୍ରୀ)ଙ୍କୁ ମୁଁ ଦେଖିଛି ସେମାନଙ୍କର ସଂଗ୍ରାମ ଓ ସର୍ବସ୍ୱ ଦାନ ଦୁଃଖୀଜନ ସେବାରେ, - ଏବେ ଦେଖିଲି ଗଦାଧର ବାବୁଙ୍କୁ । ମୋର ଆଖି ସଜଳ ହୋଇ ତାଙ୍କୁ ସ୍ମରଣ କରେ । ଏହି ଉନ୍ନତ ମସ୍ତିଷ୍କ ବୀର ପୁରୁଷ କେବେକେବେ ମୋତେ ଦେଖିଲେ ମୋ ପାଦ ଆଡ଼କୁ ତାଙ୍କ ହାତ ଦୁଇଟି ଥରେଥରେ ଲମ୍ବି ଆସୁଥାଏ ସ୍ପର୍ଶ ଆଶାରେ କାହିଁକି କେଜାଣି । ପରମେଶ୍ୱର ତାଙ୍କ ଆତ୍ମାର ସଦ୍‌ଗତି କରିବେ ।

## ଶିକ୍ଷାବିତ୍ ଯଦୁନାଥ ଦାସ ମହାପାତ୍ର

ଯଦୁବାବୁ ଆମର ସମସାମୟିକ ଭାବେ ସୋର ଅଞ୍ଚଳରେ ଜନ୍ମଗ୍ରହଣ କରିଛନ୍ତି । ଜଣେ ଉଚ୍ଚଶିକ୍ଷାପ୍ରାପ୍ତ ଶିକ୍ଷାବିତ୍ ଓ ବୁଦ୍ଧିଜୀବୀ ଭାବେ ବେଶ୍ କିଛି ବର୍ଷ ବାଲେଶ୍ୱର ସହରରେ ଆପଣାର ଜୀବନ ଜୀବିକା ପ୍ରସାରିତ କରି ରହିଥିଲେ । ତାଙ୍କର କଥା ସାହିତ୍ୟ ସର୍ଜନା କରିବାରେ ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରକାଶ ପାଇ ସାରିଥିଲା ଯୌବନକାଳରୁ । ନିଜର ବାଗ୍ମିତା ଓ ଧୀଶକ୍ତି ବଳରେ ସେ ଓଡ଼ିଶା ବିଧାନସଭାର ସଭ୍ୟରୂପେ ନିର୍ବାଚିତ ହୋଇ ରାଜ୍ୟର ଶିକ୍ଷାମନ୍ତ୍ରୀ ପଦ ଗୌରବର ସହ ମଣ୍ଡନ କରିପାରିଥିଲେ । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ତାଙ୍କର ଅବଦାନ ଜଣେ ବିଶିଷ୍ଟ କଥାକାର ଭାବେ ସ୍ମରଣୀୟ ହୋଇ ରହିପାରିଛି । କେବଳ ଜଣେ ବାଗ୍ମୀ, ଶିକ୍ଷାବିତ୍ ଓ ବୁଦ୍ଧିଜୀବୀ ଭାବେ ସେ ଖ୍ୟାତ ନୁହଁନ୍ତି ଜଣେ ସୁସାହିତ୍ୟିକ ଭାବେ କାଳକାଳକୁ ସେ ଜୀବିତ ରହିଥିବେ ଏଥିରେ ସନ୍ଦେହ ନାହିଁ । ତାଙ୍କର ରଚିତ ଅନେକ ସାରସ୍ୱତ ପୁସ୍ତକ ଓଡ଼ିଆ ସାହିତ୍ୟାଗାରକୁ ପୁଷ୍ଟ କରିପାରିଛି ।

## ମାନବବାଦୀ ଡାକ୍ତର ଅତୁଲ ଚନ୍ଦ୍ର ପାତ୍ର

ମେଦିନୀପୁର ଜିଲ୍ଲାର କୁଂଜପାଡ଼ା ଗ୍ରାମରେ ଏହି ଉଦାର ଦାନବୀର ପୁରୁଷଙ୍କର ଜନ୍ମ ଏକ ସ୍ୱାଧୀନତା ସଂଗ୍ରାମୀ କଂଗ୍ରେସ ପରିବାରରେ । ଡାକ୍ତରୀ ଚିକିତ୍ସା ଶାସ୍ତ୍ରରେ



Digitized by srujanika@gmail.com

ସର୍ବୋଚ୍ଚ ଶିକ୍ଷାଲାଭ କରି ସେ ୧୯୫୬ ମସିହାରେ ଆସି ଜଳେଶ୍ୱର ମାଟିରେ ତାଙ୍କର ଚିକିତ୍ସା କାର୍ଯ୍ୟ ଆରମ୍ଭ କରିଥିଲେ । ତାଙ୍କ ରକ୍ତରେ ଦେଶାତ୍ମବୋଧ, ସେବାଧର୍ମ ଓ ସ୍ୱାଧୀନ ଚେତନାର ଉନ୍ମେଷ ବଂଶଗତ ଥିଲା । ସେ ଜଣେ ମିଷ୍ଟଭାଷୀ ମେଳାପୀ ସତ୍‌ପ୍ରକୃତିର ବ୍ୟକ୍ତିଥିଲେ । ସବୁ ଶ୍ରେଣୀର ରୋଗୀମାନଙ୍କ ପ୍ରତି ତାଙ୍କର ଅପାର କରୁଣା ଓ ଗଭୀର ସହାନୁଭୂତି ଥିଲା । ଅର୍ଥ ଉପାର୍ଜନ ସକାଶେ ସେ ଲାଳାୟିତ ନଥିଲେ । ଯେତେ କଷ୍ଟ ହେଉପଛେ ସେ ଜଳେଶ୍ୱର ଓ ଆଖପାଖ ଅଞ୍ଚଳରେ ରୋଗୀଙ୍କ ଘରେ ପହଞ୍ଚି ଚିକିତ୍ସାର ବ୍ୟବସ୍ଥା କରୁଥିଲେ । ସେଥିପାଇଁ ସେ ଜୀବନରେ ଜଣେ ସଫଳ ଚିକିତ୍ସକ ଭାବେ ଖ୍ୟାତି ଅର୍ଜନ କରିପାରିଥିଲେ । ଚିକିତ୍ସା ତାଙ୍କର ପେଶା ଥିଲା କିନ୍ତୁ ମଣିଷଟି ନିଆରା । ସମାଜସେବାକୁ ଜୀବନର ବ୍ରତ ଭାବରେ ସେ ଗହଣ କରିଥିଲେ । ଫଳରେ ସମଗ୍ର ଅଞ୍ଚଳରେ ସେ ଜଣେ ଆଦର୍ଶ ବ୍ୟକ୍ତିଭାବେ ପରିଗଣିତ ହୋଇପାରିଥିଲେ । ରାଜନୀତିରେ ସେ ପ୍ରତ୍ୟକ୍ଷ ଭାବେ ଅଂଶଗ୍ରହଣ କରୁନଥିଲେ । ସେଥି ସକାଶେ ତାଙ୍କର ଆଗ୍ରହ ମଧ୍ୟ ନଥିଲା । ସାଧାରଣ ସେବାନୁଷ୍ଠାନମାନ ଗଢ଼ିବାରେ ତାଙ୍କର ଦାନ ଅକୃତ୍ରିମ ଓ ଅପାର ତଥା ପ୍ରତ୍ୟାଶାହୀନ ଥିଲା । ତାଙ୍କ ସହ ଯେ ସାକ୍ଷାତ କରିଛି ସେ ମୋହିତ ହୋଇଛି । ପ୍ରଖ୍ୟାତ ଡାକ୍ତର ଚୌଧୁରୀ ସତ୍ୟବ୍ରତ ନନ୍ଦ ଓ ହରିଶ୍ଚନ୍ଦ୍ର ଜେନା ପ୍ରମୁଖ ତାଙ୍କର ପଦାଙ୍କ ଅନୁସରଣ କରି ବଡ଼ ହୋଇପାରିଛନ୍ତି । ବଂଗ-ଉତ୍କଳ ମୈତ୍ରୀ ବନ୍ଧନର ଆଦର୍ଶ ସେ ତାଙ୍କର ଅମୂଲ୍ୟ ଜୀବନକାଳ ମଧ୍ୟରେ ପ୍ରମାଣ କରି ଯାଇଛନ୍ତି । ଶ୍ରୀ ଜଗନ୍ନାଥ ମହିଳା କଲେଜ, ସ୍ୱର୍ଣ୍ଣଲତା ସଂଗୀତ ମହାବିଦ୍ୟାଳୟ ଓ ହନୁମାନ ମନ୍ଦିର ଆଦି ବହୁ ଜନକଲ୍ୟାଣକାରୀ ଅନୁଷ୍ଠାନ ମାନ ତାଙ୍କର ବହୁମୂଲ୍ୟ ସମ୍ପତ୍ତି ଦାନରେ ଆଜି ପୁଷ୍ଟ । ସେ ଜଣେ ମାନବବାଦୀ ମଣିଷ ଥିଲେ । ଜଳେଶ୍ୱର ଅଞ୍ଚଳବାସୀ ତାଙ୍କୁ ସବୁଦିନେ ଗଭୀର ଶ୍ରଦ୍ଧା ଓ ଭକ୍ତି ସହ ମନ ପକାଉଥିବେ ଏଥିରେ ସନ୍ଦେହ ନାହିଁ ।

## ମାନବବାଦୀ କବି ବ୍ରଜନାଥ ରଥ

କବିଙ୍କର ଜନ୍ମ ବାଲେଶ୍ୱର ସହରର ସୁନହଟ ଗ୍ରାମରେ ୧୯୩୭ ମସିହାରେ । ୧୯୪୭ରୁ ସ୍କୁଲ ଜୀବନରୁ କାବ୍ୟସାଧନା ଆରମ୍ଭ କରି ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ନିରବଚ୍ଛିନ୍ନ ଭାବରେ ସୃଷ୍ଟିଶୀଳ ରହି ଓଡ଼ିଆ ସାହିତ୍ୟକୁ ପୁଷ୍ଟ କରି ଆସିଛନ୍ତି । ପ୍ରଗତିଶୀଳ ଓ ମାନବବାଦୀ ଭାବଧାରାର ଜଣେ ସଫଳ କାବ୍ୟଶିଳ୍ପୀ ଭାବରେ ସୁପରିଚିତ ଓ ଜଣେ ପ୍ରାଜ୍ଞ ସମାଲୋଚକ ଓ ଅନୁବାଦକ ଭାବରେ ରାଜ୍ୟରେ ସୁଖ୍ୟାତ ଅଟନ୍ତି ।



Digitized by srujanika@gmail.com

ଏହି କବିବନ୍ଧୁ ଜଣକ ଫକୀରମୋହନ ସାହିତ୍ୟ ପରିଷଦ, ଯୁବ ଲେଖକ ସମ୍ମିଳନୀ ଓଡ଼ିଶା ଓ ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମିଳନୀ, ସୁବର୍ଣ୍ଣଶ୍ରୀ ପ୍ରତିଷ୍ଠାନର ସଭାପତି ପଦ ଅଳଙ୍କୃତ କରି ଆସିଛନ୍ତି । କେନ୍ଦ୍ରସାହିତ୍ୟ ଅକାଦେମୀ, ଓଡ଼ିଶା ସାହିତ୍ୟ ଏକାଡେମୀ, ଓ ଉତ୍କଳ ସାହିତ୍ୟ ସମାଜର ସଭ୍ୟପଦରେ ସେ ରହି ଆସିଛନ୍ତି । ଫକୀରମୋହନ ମହାବିଦ୍ୟାଳୟ, ବଳାଙ୍ଗୀ ମହାବିଦ୍ୟାଳୟ ଓ ଶ୍ରୀରାମଚନ୍ଦ୍ର ସଂସ୍କୃତ ମହାବିଦ୍ୟାଳୟ ସହିତ ଜିଲ୍ଲା ଉତ୍କଳ ସମ୍ମିଳନୀ ସଭାପତି ପଦ ସେ ସମ୍ଭାଳି ଆସିଛନ୍ତି । କବି ଓଡ଼ିଶା ଓ ରାଜ୍ୟ ବାହାରେ, ଭାରତ ତଥା ବାଂଲାଦେଶର ସାହିତ୍ୟ ସମାଜ ଦ୍ୱାରା ବିଶେଷ ଭାବରେ ସମ୍ମାନିତ ଅଟନ୍ତି । କବିଙ୍କୁ ପ୍ରଥମ ଶୂଦ୍ରମୁନି ସାହିତ୍ୟ ପୁରସ୍କାର ମଧ୍ୟ ମିଳିଛି ।

ତାଙ୍କର ପ୍ରକାଶିତ କାବ୍ୟଗ୍ରନ୍ଥମାନ ହେଲା - ମରୁଗୋଲାପ, ନିଜସ୍ୱ ସଂଳାପ, ନିଃଶବ୍ଦ ପ୍ରତିବାଦ, ସଭ୍ୟତାର ମୁହଁ, ମନର ମାନଚିତ୍ର, ହେ ମହାଜୀବନ, ହେ ମୋର ସ୍ୱଦେଶ, ସମୟର ଶବ୍ଦଲିପି, ଲଘୁଶତକ, ଗଡ଼ିଗଡ଼ି ଗଲି ବଲ୍, ସାମନ୍ୟ ଅସାମାନ୍ୟ, ଏକ ଏକ ଏକପଦୀ, ମିଳିତ କଣ୍ଠ ଇତ୍ୟାଦି । ଅନୁବାଦ ଗ୍ରନ୍ଥ- ତସଲିମା ନାସରିନ୍ଙ୍କର କେତେକ କବିତା, ଆତ୍ମଜୀବନୀ ଓ ଗଦ୍ୟ ସମ୍ଭାର ଓ ମଧ୍ୟଯୁଗୀୟ କବି ଭରତ ଚନ୍ଦ୍ର ରାୟ (ପଶ୍ଚିମବଂଗ)ଙ୍କର ଅନ୍ନଦା ମଂଗଳ ତଥା ବିଶ୍ୱକବି ରବୀନ୍ଦ୍ରନାଥଙ୍କର କ୍ଷୁଦ୍ର କବିତାମାନ । ସଂପାଦନା ଓ ସଂକଳନ- ବହୁ ବିଖ୍ୟାତ କବିମାନଙ୍କର କାବ୍ୟ କବିତା ଓ ପତ୍ରପତ୍ରିକା ତଥା ସ୍ମରଣିକା ପୁସ୍ତକ ।

ମୋଟ ଉପରେ କବି ବ୍ରଜନାଥ ରଥ, ଆମରାଜ୍ୟରେ ଜୀବିତ ରହି ଆଜିସୁଦ୍ଧା କାବ୍ୟ ସାଧନା କରୁଥିବା କବି ମାନଙ୍କ ମଧ୍ୟରେ ଶ୍ରେଷ୍ଠତମ କବି ଓ ସାହିତ୍ୟକାର ଅଟନ୍ତି । ଏତେବଡ଼ ମାପର କବି ହୋଇ ମଧ୍ୟ ସେ ଅତି ସାଧାରଣ ଓ ଅମାୟିକ ବ୍ୟକ୍ତି ଅଟନ୍ତି । ତାଙ୍କର ପୋଷାକ ପରିଚ୍ଛଦ, ଖାଇବା ପିଇବା, ବ୍ୟବହାର ଓ ଚାଲିଚଳଣରେ ଅତୀବ ସାଧା ଓ ନିରହଂକାର ଅଟନ୍ତି । ସଦା ମିଷ୍ଟଆଳାପୀ ଓ ବନ୍ଧୁବତ୍ସଳ ମଧ୍ୟ । ଓଡ଼ିଆ ସାହିତ୍ୟ ସଂଗଠନ ଗଢ଼ିବାରେସଦା ସଚେଷ୍ଟ ଓ ବ୍ରତୀ ହୋଇ ସେ ନିଷ୍ଠାପର ଭାବରେ କାର୍ଯ୍ୟକରି ଚାଲିଛନ୍ତି । ମୋଟ ଉପରେ ସେ କେବଳ ଜଣେ କାବ୍ୟ-ସାହିତ୍ୟ ପୁରୁଷ ନୁହଁନ୍ତି, ଜଣେ ଦେଶପ୍ରେମୀ ଓ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପ୍ରେମୀ ମାନବବାଦୀ ଓଡ଼ିଆ ।

ବହୁ ପ୍ରଥିତଯଶା ଲେଖକ ଓ ମନୀଷୀଙ୍କର ଲିଖିତ ପୁସ୍ତକମାନ ସେ ସବୁବେଳେ ଅଧ୍ୟୟନ କରନ୍ତି ଆପଣାର ଜ୍ଞାନର ପରିସର ବୃଦ୍ଧି ସକାଶେ । ପୁସ୍ତକମାନ ରଖିରଖି ଏକ ବୃହତ୍ ପାଠାଗାରରେ ପରିଣତ ହୋଇଛି ତାଙ୍କର ବାସଭବନ । କବିଙ୍କର ପ୍ରଶସ୍ତ ଦୋମହଲା କୋଠାର ଉପର ତଳ ସ୍ଥାନମାନ କେବଳ ମୂଲ୍ୟବାନ ଗ୍ରନ୍ଥ ସମ୍ଭାରରେ



Digitized by srujanika@gmail.com

ଭରପୂର । ଶୋଇବା, ବସିବା, ରୋଷେଇ ଓ ଖାଇବା ଘରମାନଙ୍କରେ ଯୁଆଡ଼େ ଚାହଁ କେବଳ ପୁସ୍ତକ ହିଁ ପୁସ୍ତକ । ସମଗ୍ର ଘରଟା ଏକ ବୃହତ୍ ପାଠାଗାରରେ ପରିଣତ ହୋଇଛି । ପାଠାଗାରଟି ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ।

ଅତୀତରେ ବାଲେଶ୍ୱର ସହରର ସୁଖ୍ୟାତ ପାଠାଗାର 'ସୁବୋଧ ଚନ୍ଦ୍ର ବାଣୀଭବନ' ଏହି ସୁନହଟ ଗ୍ରାମରେ ଜନ୍ମଲାଭ କରିଥିଲା । ମୁଁ ଜିଲ୍ଲାସ୍କୁଲରେ ପଢ଼ିବାବେଳେ ଏହା ଗୋପାଳଗାଁ ସ୍ଥିତ ସରକାର ବାସଭବନକୁ ସ୍ଥାନାନ୍ତରିତ ହୋଇ ଆସି ପ୍ରିୟନାଥଙ୍କ ଘରଗୁଡ଼ାକୁ ଅଧିକାର କରି ବସିଲା ଏବଂ ଏହି ବାଣୀଭବନ ପାଠାଗାର ପିଣ୍ଡାରେ ୧୯୪୧ ମସିହାରେ ନେତାଜୀ ସୁଭାଷ ଚନ୍ଦ୍ର ଓଡ଼ିଶା ଗସ୍ତରେ ଆସି ପଦାର୍ପଣ କରି ଗୃହକର୍ତ୍ତା ପ୍ରିୟନାଥ ସରକାରଙ୍କ ସହ ବାର୍ତ୍ତାଳାପ କରିଥିଲେ । କବିଙ୍କର ନିର୍ମିତ ପାଠାଗାର ସେହି ବହୁ ଚର୍ଚ୍ଚିତ ସୁନହଟ ଗ୍ରାମରେ ଦ୍ୱିତୀୟ ସୁବୋଧ ଚନ୍ଦ୍ର ବାଣୀଭବନରୂପେ ପ୍ରତିଭାତ ବୋଲି ଆଜି ମୋର ମନେହୁଏ ।

## ବାଲେଶ୍ୱର ମଣି ରାଧାଦେବୀ

ରାଧା-ଶ୍ୟାମ, ଛାତ୍ରଜୀବନରୁ ପରସ୍ପର ସଂସ୍ପର୍ଶରେ ଆସି ଗଭୀର ପ୍ରେମରେ ଆବଦ୍ଧ ହୋଇ ପରସ୍ପରକୁ ଜୀବନସାଥୀ ଭାବେ ବାଛି ନେଇଥିଲେ । ସ୍ୱାମୀ ଶ୍ୟାମସୁନ୍ଦର ମହାପାତ୍ର ବାମପନ୍ଥୀ ଦଳର ଛାତ୍ରନେତା, ଭାଷଣ ବାଜିରେ ସମସ୍ତଙ୍କୁ ମୋହିତ କରି ବାଲେଶ୍ୱରରେ ନିଜ ଆସନ ଗାଡ଼ିବାକୁ ସହଜରେ ସମର୍ଥ ହୋଇଥିଲେ । କିନ୍ତୁ ବେକାର ଥାଇ ଧର୍ମପତ୍ନୀ ଡାକ୍ତର ରାଧାଦେବୀଙ୍କ ରୋଜଗାରରେ ପ୍ରଥମେ ଜୀବନରେ ରାଜନୀତି କରିବାକୁ ସମର୍ଥ ହୋଇଥିଲେ । ଆପଣାର ଚିକିତ୍ସା ବ୍ୟବସ୍ଥା ସହ ବାଲେଶ୍ୱରର ନାରୀମହଲରେ ସମାଜସେବା କରିବାରେ ବେଶ୍ ତତ୍ପର ଥିଲେ । ସ୍ୱମହିମାରେ ସେ ମହିମାନ୍ୱିତା ହୋଇ ନାରୀକଲ୍ୟାଣ ମୂଳକ କାର୍ଯ୍ୟରେ କେବଳ ବାଲେଶ୍ୱର ନୁହେଁ ସମଗ୍ର ରାଜ୍ୟରେ ସେ ସୁପରିଚିତ । ନିକଟରେ ଡକ୍ଟର ରବୀନ୍ଦ୍ରନାଥ ଦାସ ସ୍ମୃତି ଫାଉଣ୍ଡେସନ ଟ୍ରଷ୍ଟ ତାଙ୍କୁ 'ବାଲେଶ୍ୱର ମଣି' ଉପାଧିରେ ଭୂଷିତ କରିଛି । ତାଙ୍କର ଅପାର କୃତିତ୍ୱ ସକାଶେ ସାରସ୍ୱତ ସଭାସମିତି, ସମାଜସେବା ସଂଗଠନ କ୍ଷେତ୍ରରେ ରାଧାଦେବୀଙ୍କ ଉପସ୍ଥିତି ବିନା ଅପୂର୍ଣ୍ଣ ରହିଆସିଛି । ଭାରତ ବିଖ୍ୟାତ ରାଜନୀତିଜ୍ଞ ଶ୍ୟାମସୁନ୍ଦର ମହାପାତ୍ରଙ୍କ ସଂସର୍ଗ ତାଙ୍କୁ ପ୍ରଭୂତ ଉତ୍ସାହ ଦେଇଛି ଓ ସୁଖ୍ୟାତିର କାରଣ ହୋଇଛି ଏଥିରେ ସନ୍ଦେହ ନାହିଁ । ବଡ଼ସ୍ନେହୀ ନାରୀ ଭାବେ ସେ ସର୍ବତ୍ର ଆଦୃତ ହୋଇ ଆସିଛନ୍ତି । ରାଧାଦେବୀ ଜଣେ ସୁନାଭାଉଜ ଭାବେ ସମସ୍ତଙ୍କର ସୌଭାଗ୍ୟର କାରଣ ହୋଇ ଆସିଛନ୍ତି । ପ୍ରକୃତରେ ସେ ବାଲେଶ୍ୱରର ନାରୀ ମଣି ।



Digitized by srujanika@gmail.com

## ବିଦଗ୍ଧ କବି ମୁରାରୀମୋହନ ସାହୁ

୧୯୬୪ ମସିହା ଭାରତ-ଚୀନ୍ ଯୁଦ୍ଧର ବହୁପୂର୍ବରୁ ଜଣେ ଦରିଦ୍ର ପ୍ରାଇମେରୀ ଶିକ୍ଷକ ଭାବେ ଜୀବନ ଆରମ୍ଭ କରିଥିଲେ ଭୋଗରାଇର ହରିହରପୁର ନିବାସୀ ଶ୍ରୀଯୁକ୍ତ ମୁରାରୀମୋହନ ସାହୁ । ତାଙ୍କର ଦରଦୀ କବି ପ୍ରତିଭା ଏତିକିବେଳେ ତାଙ୍କ କଲମରୁ ପ୍ରକାଶ ପାଇଥିଲା । ସେ କେବଳ ଶବ୍ଦ ସଂଯୋଜନା କରି କବିତା ସୃଷ୍ଟି କରନ୍ତି ନାହିଁ, ରାତିର ନିଥର ପ୍ରହରରେ କବିତା ମଂଜରୀ ତାଙ୍କ ପ୍ରାଣରୁ ଝରି ଆସୁଥିଲା । କବି ଜାଗ୍ରତ ହୋଇ ତାକୁ କଲମ ମୁନରେ ଧରି ରଖୁଥିଲେ । ଉକ୍ତ କବିତାଗୁଡ଼ିକ କେବେ ଗଦ୍ୟ ବା ଛନ୍ଦବଦ୍ଧ ଭାବରେ ସେ ଲେଖି ପରେ ସଂଶୋଧନ କରି ପକାଉଥିଲେ । ଅନେକ ସମୟରେ କବିତାଗୁଡ଼ିକର ନିଗୂଢ଼ ଅର୍ଥ ସେ ନିଜେ ବୁଝି ପାରୁନଥିଲେ । ଏହିପରି ବହୁତ କବିତା ସେ ପ୍ରକାଶ କରି ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ଦେଉଥିଲେ । ଅବଚେତନ ମନରେ କବିତାମାନ ତାଙ୍କ ହୃଦୟରେ ଅବତରଣ କରି ଆସୁଥିଲା । ସାରସ୍ୱତ ସ୍ରଷ୍ଟାମାନଙ୍କ ମଧ୍ୟରେ ଏବେ ସେ ଜଣେ ବିଦଗ୍ଧ କବି ଭାବରେ ପରିଚିତ । ତାଙ୍କର ବହୁ କବିତା ସଂକଳନ ସେ ପ୍ରକାଶ କରି ସାରିଛନ୍ତି ।

ଏହିପରି ଏକ ମନ୍ତ୍ରମୁଗ୍ଧ କବି ମୁରାରୀମୋହନ ବାବୁ ସ୍ୱାମୀ ସ୍ୱରୂପାନନ୍ଦଙ୍କ ଭକ୍ତ ହୋଇ ତାଙ୍କର ଧର୍ମ ଏ ଅଞ୍ଚଳରେ ପ୍ରଚାର ଓ ପ୍ରସାର କରିବାରେ ଏବେ ସେ ବ୍ୟସ୍ତ । ଅଖଣ୍ଡମଣ୍ଡଳେଶ୍ୱର ହରିଓଁଙ୍କ ଏକ ସୁଦୃଶ୍ୟ ମନ୍ଦିର ଅନ୍ୟ ଭକ୍ତ ଭାଇ ଭଉଣୀମାନଙ୍କ ସହାୟତାରେ ତାଙ୍କର ଗ୍ରାମ ପାଖ ନାରାୟଣପୁରଠାରେ ଗଠନ କରିବାକୁ ସେ ସମର୍ଥ ହୋଇପାରିଛନ୍ତି ।

ସ୍ୱାମୀ ସ୍ୱରୂପାନନ୍ଦ ଏକାଧିକବାର ଏହି ଗ୍ରାମକୁ ଜୀବଦ୍ଦଶାରେ ଆସିଥିଲେ ଏବଂ ଭକ୍ତମାନଙ୍କୁ ଦର୍ଶନ ଦେଇଥିଲେ । ଏଣୁ ପ୍ରତିବର୍ଷ ତାଙ୍କ ଜନ୍ମଦିବସ ଏଠାରେ ମହା ସମାରୋହରେ ପାଳନ କରାଯାଏ । ରାଜ୍ୟ ଓ ରାଜ୍ୟ ବାହାରୁ ଶହଶହ ଶ୍ରଦ୍ଧାଳୁ ଭକ୍ତ ଏଠାରେ ରୁଣ୍ଡ ହୋଇ ଭକ୍ତିଅର୍ଘ୍ୟ ଅର୍ପଣ କରିଥାନ୍ତି । କବି ମୁରାରୀବାବୁ କବିତା ସର୍ଜନା ସହିତ ମଠାଧୀଶ ରହି ଅତି ପବିତ୍ର ଜୀବନଯାପନ କରୁଛନ୍ତି ।

କବିଙ୍କର କିଛି ଉଚ୍ଚଶିକ୍ଷା ନାହିଁ କି ପାଶ୍ଚାତ୍ୟ ସାରସ୍ୱତ ସ୍ରଷ୍ଟାମାନଙ୍କର ରଚନା ସମ୍ଭାର ମାନଙ୍କରେ ତାଙ୍କର ପରିଚୟ ନଥାଇ ମଧ୍ୟ ସେ ଜଣେ ସ୍ୱଭାବ କବି ଓ ଅଭିନବ ସ୍ରଷ୍ଟା । କାବ୍ୟ ଜଗତରେ ତାଙ୍କର ସୃଷ୍ଟିରେ ଆଧ୍ୟାତ୍ମିକ ରସ ସମ୍ଭାର ଭରି ରହିଛି ।



Digitized by srujanika@gmail.com



୧୯୫୨-୫୩ ମସିହାରେ ବାଲେଶ୍ୱର ଜିଲ୍ଲା ଲୋକାଲବୋର୍ଡ ଅଧ୍ୟକ୍ଷ ଥିଲାବେଳେ ବୋର୍ଡର ସଦସ୍ୟ ଓ ମାନ୍ୟଗଣ୍ୟ ନେତୃବୃନ୍ଦଙ୍କ ଗହଣରେ (୨ୟ ଧାଡ଼ି ବାମରୁ ଷଷ୍ଠ)

Digitized by srujanika@gmail.com



ଧର୍ମପତ୍ନୀ ବିଥୀକାଙ୍କ ସହ ପରିଣତ ବୟସରେ

Digitized by srujanika@gmail.com



୧୯୫୭ ମସିହାରେ ଭୋଗରାଇରୁ ବିଧାନସଭାକୁ ନିର୍ବାଚିତ ହେବାପରେ ଅନ୍ୟ ବିଧାୟକଙ୍କ ଗହଣରେ
(ପ୍ରଥମଧାଡ଼ି ବାମରୁ ଷଷ୍ଠ)

Digitized by srujanika@gmail.com



ଉତ୍ତର ବାଲେଶ୍ୱରର ସତୀର୍ଥ ସ୍ୱାଧୀନତାସଂଗ୍ରାମୀଙ୍କ ସହିତ ଏକ ବିଶେଷ ମୁହୂର୍ତ୍ତରେ (ପଛଧାଡ଼ି ବାମରୁ ଚତୁର୍ଥ)

Digitized by srujanika@gmail.com



୨୦୦୮ ରେ ଫକୀରମୋହନ ଜୟନ୍ତୀ ଉତ୍ସବରେ ଫକୀରମୋହନ ସାହିତ୍ୟ ପରିଷଦ **ପକ୍ଷରୁ ସମ୍ବର୍ଦ୍ଧିତ ହେବା ଅବସରରେ**

Digitized by srujanika@gmail.com



୨୦୦୮ରେ ଦେଶର ଅନ୍ୟତମ ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ ଭାବେ ରାଷ୍ଟ୍ରପତି ଭବନରେ ତତ୍କାଳୀନ ରାଷ୍ଟ୍ରପତି ପ୍ରତିଭା ଦେବୀ ସିଂ ପାଟିଲଙ୍କଠାରୁ ସମ୍ବର୍ଦ୍ଧିତ ହେବା ଅବସରରେ ।

Digitized by srujanika@gmail.com

ଏହି ଗ୍ରନ୍ଥର ଲେଖକ ଶ୍ରୀ ଦୁର୍ଗା ଶଙ୍କର ଦାସ, ପିତା ୰ତ୍ରୈଲୋକ୍ୟ ନାଥ ଦାସ, ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଭୋଗରାଇ ଥାନାର ପଶ୍ଚିମବଙ୍ଗ ସୀମାନ୍ତବର୍ତ୍ତୀ ତଲାଡ଼ି ଗ୍ରାମରେ ଏକ ଦରିଦ୍ର ପରିବାରରେ ସନ ୧୩୨୮ ସାଲ ଆଶ୍ୱିନ ମାସ ୩୦ ଦିନ ଦୁର୍ଗାପୂଜା ପବିତ୍ର ସପ୍ତମୀ ତିଥିରେ ଜନ୍ମଗ୍ରହଣ କରିଥିଲେ । ଶୈଶବରୁ ପିତୃମାତୃହୀନ ହୋଇ ସେ ପରଘରେ ରହି ବହୁ କଷ୍ଟ ସ୍ୱୀକାର କରି ଶିକ୍ଷାଲାଭ କରିଥିଲେ ।

୧୯୪୨ ମସିହା ଅଗଷ୍ଟ ମାସରେ କଲେଜପଢ଼ା ଛାଡ଼ି ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ ୧୯୪୨-୪୫ ମସିହା ମଧ୍ୟରେ ସେ ତିନିଥର ତିରିଶମାସ କାଳ କାରାବରଣ କରିଥିଲେ ଏବଂ ୯ମାସ ଭୂମିଗତ ରହି ସାରାଜିଲ୍ଲାରେ ଅଗଷ୍ଟବିପ୍ଳବ ସଂଗଠନର ନେତୃତ୍ୱ ନେଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥିବା ସମୟରେ ୧୯୪୩ ମସିହା ଏପ୍ରିଲ ମାସ ଉତ୍ତର ବାଲେଶ୍ୱର ଅଞ୍ଚଳରେ ଘୋର ଦୁର୍ଭିକ୍ଷ ବେଳେ ଅଠର ହଜାର ବୁଭୁକ୍ଷୁ ନରନାରୀଙ୍କର ଏକ ଐତିହାସିକ ବିରାଟ ପଟୁଆର ଧରି ସେ ବାଲେଶ୍ୱର ମୁକାମକୁ ଆସିଥିଲେ ଏବଂ ଇଂରେଜ ସରକାରଙ୍କୁ ଦୁର୍ଭିକ୍ଷର ଉପଯୁକ୍ତ ପ୍ରତିକାର ପାଇଁ ବାଧ କରିଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ୧୯୪୫ରୁ ୫୧ ମସିହା ଯାଏ ସେ ଉତ୍ତର ବାଲେଶ୍ୱରର କଂଗ୍ରେସ ସଂଗଠନ ଦାୟିତ୍ୱରେ ରହିଥିଲେ । କିଛିଦିନ ପାଇଁ ଜିଲ୍ଲା କଂଗ୍ରେସର ସାଧାରଣ ସଂପାଦକ ଦାୟିତ୍ୱ ମଧ୍ୟ ବହନ କରିଥିଲେ । ୧୯୪୯ରେ ଲକ୍ଷ୍ମଣନାଥ ଦୁର୍ଗାପୂଜାରେ ଗଣ-ପଶୁବଳି ପ୍ରଥା ଉଚ୍ଛେଦ କରିବା ଦିଗରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ୧୯୫୩ରୁ-୫୬ ମସିହା ଯାଏ ସେ ବାଲେଶ୍ୱର ସଦର ଲୋକାଲ ବୋର୍ଡ଼ର ଦାୟିତ୍ୱ ବହନ କରିଥିଲେ । ୧୯୫୭ରୁ ୬୧ ମସିହା ପର୍ଯ୍ୟନ୍ତ ସେ ଭୋଗରାଇ ନିର୍ବାଚନ ମଣ୍ଡଳୀର ଲୋକପ୍ରତିନିଧି ଭାବରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୬୨-୬୭ ଏବଂ ୧୯୭୧ରୁ ୭୭ ଯାଏ ସେ ଭୋଗରାଇ ପଞ୍ଚାୟତ ସମିତିର ଅଧକ୍ଷ ଦାୟିତ୍ୱ ମଧ୍ୟ ତୁଲାଇ ଥିଲେ । ୧୯୮୪ରୁ ଦୀର୍ଘକାଳ ଧରି ବାଲେଶ୍ୱର ଜିଲ୍ଲାର ସ୍ୱାଧୀନତାସଂଗ୍ରାମୀ ସମିତିର ସଂଯୋଜକ ପଦରେ ରହି କାର୍ଯ୍ୟ କରିଥିଲେ ।

ଆଜୀବନ ଜଣେ ସଚ୍ଚୋଟ ଓ ନିଷ୍ପାପର କଂଗ୍ରେସ କର୍ମୀଭାବେ ସେ ନିଜକୁ ସମାଜସେବାରେ ଉତ୍ସର୍ଗ କରି ଆସିଛନ୍ତି । ଜୀବନର ସାୟାହ୍ନରେ ଉପନୀତ ହେଲେ ମଧ୍ୟ ଦୁର୍ନୀତି, ଅନ୍ୟାୟ, ଅତ୍ୟାଚାର, ଭ୍ରଷ୍ଟାଚାର ବିରୋଧରେ ସଦା ସ୍ୱର ଉତ୍ତୋଳନ କରି ଏବେବି ସଂଗ୍ରାମରତ ।

'ଅମୃତ ସ୍ୱାକ୍ଷର' ତାଙ୍କର ସୁଦୀର୍ଘ କର୍ମମୟ ସଂଗ୍ରାମୀ ଜୀବନର ଅନୁଭୂତି ଓ ଅଭିଜ୍ଞତା ପ୍ରସୂତ ଜୀବନ-ସ୍ମୃତି ଗ୍ରନ୍ଥ । ଯେଉଁଥିରୁ କି ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ସ୍ୱାଧୀନତାସଂଗ୍ରାମ, ରାଜନୀତି ଓ ବିଭିନ୍ନ ସାମାଜିକ ତଥା ସାଂସ୍କୃତିକ ଇତିହାସ ଜାଣିହେବ ।

ପ୍ରକାଶକ

ସୁବର୍ଣ୍ଣଶ୍ରୀ ପ୍ରକାଶନୀ

Digitized by srujanika@gmail.com